ମରାଠୀ ଭାଷାରେ
ସମର୍ଥ ରାମଦାସ କୃତ

# ଶ୍ରୀ ଦାସବୋଧ

ଗଦ୍ୟାନୁବାଦ
**ଗୋରାଚାନ୍ଦ ମିଶ୍ର**

ପ୍ରକାଶକ
**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**
ଦରଜୀ ସାହି, ଚାନ୍ଦିନୀ ଚୌକ
କଟକ-୭୫୩ ୦୦୨

# ଶ୍ରୀ ଦାସବୋଧ

(ପଦ୍ୟରେ ମୂଳ ମରାଠୀ ରଚନା)

**ସମର୍ଥ ରାମଦାସ**


ଗଦ୍ୟାନୁବାଦ :
**ଶ୍ରୀ ଗୋରାଚାନ୍ଦ ମିଶ୍ର**
ପି/୩ ଲେବର କଲୋନି
କଟକ-୭୫୩ ୦୦୯



ପ୍ରଥମ ସଂସ୍କରଣ : ଶ୍ରୀ ପଞ୍ଚମୀ-୨୦୦୩
ଦ୍ୱିତୀୟ ସଂସ୍କରଣ : ନବବର୍ଷ-୨୦୧୧

ପ୍ରକାଶକ :
**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**
ଦରଜୀ ସାହି, ଚାନ୍ଦିନୀଚୌକ
କଟକ - ୭୫୩ ୦୦୨

ଛାପା ସଂଖ୍ୟା : ୫୦୦

ଲିପି ସଂଯୋଜନା ଓ ମୁଦ୍ରଣ :
**ଗୁରୁପ୍ରସନ୍ନ ପ୍ରେସ୍**
ଝୋଲାସାହି (ନିଉ କଲୋନୀ), କଟକ-୧


## SRI DASABODHA

*Written in Marathi by*
**Samartha Ramdas**


*Prose rendering in Oriya by*
**Shree Gorachand Mishra**
P/3, Labour Colony, Cuttack - 9



*Second Edition* : **2011**

*Published by*
**Shree Govind Charan Patra**
Darjee Sahi, Chandinichowk
Cuttack - 753 002

**Price : Rs. 200.00**

# ସମର୍ଥ ରାମଦାସ
# ଓ
# ଶ୍ରୀ ଦାସବୋଧ

ଶ୍ରୀ ଦାସବୋଧ, ଜ୍ଞାନେଶ୍ୱରୀ ଓ ଏକନାଥୀ ଭାଗବତ ।

ମରାଠୀ ସାହିତ୍ୟରେ ଏହି ତିନୋଟି ଗ୍ରନ୍ଥ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତଥା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଭଳି । କିଏ କାହାଠୁଁ ଊଣା ନୁହଁନ୍ତି । ଠାଏ ପଢ଼ିଥିଲି, ଲୋକମାନ୍ୟ ବାଳଗଙ୍ଗାଧର ତିଳକ କହିଥିଲେ, 'ଶ୍ରୀ ଦାସବୋଧ' ହେଉଚି ପୃଥିବୀର ଶ୍ରେଷ୍ଠ ଗ୍ରନ୍ଥ । ପଢ଼ିବା ଦିନଠାରୁ ମୋର ଜିଜ୍ଞାସୁ ମନ ''ଶ୍ରୀ ଦାସବୋଧ''କୁ ବହୁତ ଖୋଜୁଥିଲା । ଶ୍ରୀ ଦାସବୋଧର ସନ୍ଧାନ କରୁ କରୁ ପାଇଥିଲି 'ଜ୍ଞାନେଶ୍ୱରୀ'କୁ ଅର୍ଥାତ୍ ଜ୍ଞାନର ଭଣ୍ଡାରକୁ । ତାକୁ ଓଡ଼ିଆରେ ଅନୁବାଦ କରିବା ପରେ ପ୍ରଭୁଙ୍କ କୃପା ଯୋଗୁଁ ହସ୍ତଗତ ହେଲା 'ଶ୍ରୀ ଦାସବୋଧ' ।

ତା ଆଗରୁ ମୁଁ 'ସନ୍ଥ ଜୀବନୀମାଳା'ରେ ଏହି 'ଶ୍ରୀ ଦାସବୋଧ'ର ରଚୟିତା ସମର୍ଥ ରାମଦାସଙ୍କ ଗୋଟିଏ ଛୋଟ ଜୀବନୀ ଲେଖିଥିଲି । ତାହା ଓଡ଼ିଆ ପାଠକଙ୍କ ଦ୍ୱାରା ବେଶ୍ ଆଦୃତ ହୋଇଥିବା ଲକ୍ଷ୍ୟ କଲି । କାରଣ ବର୍ଷକ ଭିତରେ ତାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ନିକଟରେ ଏହାର ତୃତୀୟ ସଂସ୍କରଣ ହେବ । 'ଗୀତା-ଜ୍ଞାନେଶ୍ୱରୀ'ର ଓଡ଼ିଆ ଅନୁବାଦ ମଧ୍ୟ ଜନପ୍ରିୟ ହେବା ପରେ 'ଶ୍ରୀ ଦାସବୋଧ'ର ଅନୁବାଦ ଲାଗି ମତେ ଯଥେଷ୍ଟ ଉତ୍ସାହ ମିଳିଲା । ଇତିମଧ୍ୟରେ ମରାଠୀ ଭାଷା ବୁଝିବାରେ ମଧ୍ୟ ବିଶେଷ କୌଣସି ଅସୁବିଧା ରହିଲା ନାହିଁ । ଏହାର ହିନ୍ଦୀ ଅନୁବାଦ ମଧ୍ୟ ଦୈବାତ୍ ମିଳିଗଲା । ମରାଠୀ ବୁଝି ନ ପାରିଲେ ହିନ୍ଦୀରୁ, ହିନ୍ଦୀ ବୁଝିବାରେ ଅସୁବିଧା ହେଲେ ମରାଠୀକୁ ଦେଖି ଦେଖି ଅତି ସନ୍ତର୍ପଣରେ ସନ୍ତରଣ କରି କରି ଶେଷରେ ମୁଁ ଅତିକ୍ରମ କଲି 'ଶ୍ରୀ ଦାସବୋଧ' ବାରିଧିକି । ଏଥିପାଇଁ ମତେ ପ୍ରାୟ ବର୍ଷେ ସମୟ ଲାଗିଗଲା ।

'ଶ୍ରୀ ଦାସବୋଧ' ଏକ ତାତ୍ତ୍ୱିକ ଗ୍ରନ୍ଥ । ଏହି ଗ୍ରନ୍ଥରେ ମନୁଷ୍ୟ ମନର ବହୁ ସମସ୍ୟାର ସମାଧାନ କରାଯାଇଚି । ଏଥିରେ କ'ଣ ଯେ ନାହିଁ ତା ନୁହଁ । ସଂକ୍ଷେପରେ ବହୁ ଗୂଢ଼ ନିଗୂଢ଼ ବିଷୟକୁ ଅତି ସୁନ୍ଦର ଓ ସରଳ ଭାବରେ ଏବଂ ସଂକ୍ଷେପରେ ଶ୍ରୋତାମାନଙ୍କୁ ବୁଝାଇ ଦିଆଯାଇଚି । 'ଶ୍ରୀ ଦାସବୋଧ'ର ଅର୍ଥ ହେଉଚି ସର୍ବଶକ୍ତିମାନ ଭଗବାନଙ୍କ ନିକଟରେ ନିଜକୁ ସମର୍ପଣ କରି ତାଙ୍କର ଦାସତ୍ୱ ଅନୁଭବ କରିବା । ଏହାକୁ କୁହାଯାଏ ପ୍ରପତ୍ତି ବା ପ୍ରପନ୍ନ-ଭାବ । 'ଶ୍ରୀ ଦାସବୋଧ'କୁ ତତ୍ତ୍ୱବୋଧ ବୋଲି ମଧ୍ୟ କୁହାଯାଇପାରେ । ରଘୁବୀର ଦାଶରଥି ଶ୍ରୀ ରାମଚନ୍ଦ୍ରଙ୍କ ଦାସାନୁଦାସ ହେବାରେ ଶ୍ରୀ ରାମଦାସ ସମର୍ଥ ହୋଇଥିବାରୁ ସେ ସର୍ବତ୍ର ସମର୍ଥ ରାମଦାସ ନାମରେ ପରିଚିତ । ସେ ଥିଲେ ଛତ୍ରପତି ଶିବାଜୀଙ୍କ ଗୁରୁ ।

ସମର୍ଥ ରାମଦାସଙ୍କ ଜୀବନୀ ଅତ୍ୟନ୍ତ କୌତୂହଳପ୍ରଦ । ସେ ଥିଲେ ମହାରାଷ୍ଟ୍ରର ଶ୍ରେଷ୍ଠ କୁଳିନ ବ୍ରାହ୍ମଣ ପରିବାରର ସନ୍ତାନ । ତାଙ୍କ ପିଲାଦିନର ନାଁ ଥିଲା ନାରାୟଣ । ତାଙ୍କର ଜନ୍ମ ୧୬୦୮ ଚୈତ୍ର ଶୁକ୍ଳ ନବମୀ ତିଥିରେ ଜମ୍ବ ନାମକ ଏକ ଗ୍ରାମରେ । ଏହି ଗାଁଟି ଗୋଦାବରୀ ନଦୀ କୂଳରେ । ପିତା ସୂର୍ଯ୍ୟ ପନ୍ଥ, ମା ରାନୁ ବାଈ (ରେଣୁକା ବାଈ) ଥିଲେ ଅତି ଧର୍ମପରାୟଣ । ଏମାନେ ଜମଦଗ୍ନି ଓ ପର୍ଶୁରାମଙ୍କ ବଂଶଧର । ନାରାୟଣ ଥିଲେ ବାପମାଆଙ୍କ ଦ୍ୱିତୀୟ ପୁତ୍ର ସନ୍ତାନ । ତାଙ୍କ ବଡ଼ଭାଇ ଗଙ୍ଗାଧର ନଅ ବର୍ଷ ବୟସରେ ହନୁମାନଙ୍କ ଦର୍ଶନ ଲାଭ କରିଥିଲେ । ତା'ପରେ ତାଙ୍କୁ ଲୋକେ ଡାକୁଥିଲେ ରାମୀ ରାମଦାସ । ରାମୀ ଅର୍ଥ ଶ୍ରେଷ୍ଠ । ସେ ସର୍ବଦା ଭଗବତ୍ ଚିନ୍ତାରେ ମଗ୍ନ ରହୁଥିଲେ ।

ନାରାୟଣଙ୍କ ବ୍ରତୋପନୟନ ପରେ ପିତା ସୂର୍ଯ୍ୟ ପନ୍ଥଙ୍କର ଦେହାନ୍ତ ହୋଇଯାଇଥିଲା । ପିଲାଙ୍କ ଭରଣପୋଷଣର ସମସ୍ତ ଦାୟିତ୍ୱ ପଡ଼ିଥିଲା ମାଆ ରାନୁବାଈଙ୍କ ଉପରେ । ବଡ଼ପୁଅ ଗଙ୍ଗାଧରର ମତିଗତିକୁ ଦେଖି ମାଆ ସବୁବେଳେ ଭାବୁଥିଲେ ଦିନେ ନା ଦିନେ ସେ ସନ୍ନ୍ୟାସୀ ହୋଇ ପଳେଇବ । ତେଣୁ ତାଙ୍କର ବଡ଼ ଆଶାଭରସା ଥିଲା ସାନପୁଅ ନାରାୟଣ ଉପରେ । କିନ୍ତୁ ପରେ ସେ ଜାଣିପାରିଲେ ନାରାୟଣ ମଧ୍ୟ ତହୁଁ ବଳକା ।

(ଗ)

ଦିନେ ତୁଳିମୁଣ୍ଡରେ ବସି ନାରାୟଣ ଗୁଣୁଗୁଣୁ ହେଉଥିବା ଦେଖି ମାଆ ପଚାରିଲେ, ଇମିତି ହେଉଚୁ କାହିଁକି ? ନାରାୟଣ ମାଆଙ୍କୁ ଉତ୍ତର ଦେଇଥିଲେ, ମୁଁ ବିଶ୍ୱବ୍ରହ୍ମାଣ୍ଡକୁ ନିରୀକ୍ଷଣ କରୁଚି ।

ରାନୁବାଈ ଚମକି ପଡ଼ିଥିଲେ । ମନେ ମନେ ଭାବିଲେ, ଏ ପିଲାଟା ମୁଣ୍ଡରେ ଏସବୁ କଥା ପୂରାଇଲା କିଏ ? ଏତିକିବେଳୁ ନାରାୟଣକୁ ବିବାହ ବନ୍ଧନରେ ନ ବାନ୍ଧିଲେ ଚଳିବନି ଭାବି ସେହି ଯୋଗାଡ଼ରେ ଲାଗିଲେ ସେ । ସ୍ଥିର ହେଲା ଯେ ବାନାଜୀ ବୋଦଲ ପୁରୀଙ୍କ ଝିଅ ସହିତ ନାରାୟଣର ବିବାହ ହେବ ।

ମାଆଙ୍କ ପ୍ରସ୍ତାବକୁ ବିରୋଧ କଲେନାହିଁ ନାରାୟଣ । କିନ୍ତୁ ତାଙ୍କ ମନରେ ଥିଲା ଅନ୍ୟ ଚିନ୍ତା । ଆଗରୁ ସେ ବଡ଼ଭାଇ ଗଙ୍ଗାଧରଙ୍କ ପାଖରେ ବସି ତାଙ୍କୁ ନାନା ପ୍ରଶ୍ନ କରୁଥିଲେ । କହୁଥିଲେ, ଭାଇ ! ଭଗବାନ କ'ଣ, ସେ କେଉଁଠି ରହନ୍ତି ? ତାଙ୍କ ସହିତ କିମିତି ସାକ୍ଷାତ ହୋଇପାରିବ ମତେ ଟିକିଏ ବୁଝେଇ ଦିଅ । କିନ୍ତୁ ଭାଇ ଗଙ୍ଗାଧର ସବୁବେଳେ କହୁଥିଲେ, ଇମିତି ପଚାରି ପଚାରି ତୁ ମନକୁ ମନ ଜାଣି ପାରିବୁ । କେହି ଆଉ ବୁଝେଇବା ଦରକାର ହେବ ନାହିଁ ।

ବିବାହ ଦିନ ସ୍ଥିର ହୋଇଗଲା । କନ୍ୟା ଘର ଆସନଗାଁରେ । ବର ନାରାୟଣ ସହିତ ସେଦିନ ଯାଇଥିଲେ ବହୁ ବରଯାତ୍ରୀ । ବାଇଦ ବାଜଣା ହୁଳହୁଳି ଧ୍ୱନିରେ କମ୍ପି ଉଠୁଚି ଆସନଗାଁ । ବେଦିରେ ନାରାୟଣ । ବୟସ ବାର ବର୍ଷ । ପାଖରେ ପାଞ୍ଚବର୍ଷର କନ୍ୟା । ମନ୍ତ୍ର ଉଚ୍ଚାରଣ ଚାଲିଚି । ସମସ୍ତେ ଅପେକ୍ଷା କରିଛନ୍ତି ହାତଗଣ୍ଠି ପଡ଼ିବାର ମୁହୂର୍ତ୍ତକୁ । ପଦ୍ମାସନରେ ବସିଛନ୍ତି ନାରାୟଣ । ଯିମିତି ଜଣେ କିଶୋର ତପସ୍ୱୀ । ପିଲାଟିକୁ ଦେଖି ପୁରୋହିତ ମଧ୍ୟ ବିସ୍ମିତ । ଏତେ କମ୍ ବୟସର ପିଲା ଘଣ୍ଟା ଘଣ୍ଟା ଧରି ପଦ୍ମାସନରେ ବସି ରହିବା କ'ଣ କମ୍ କଥା ! ଅସାଧାରଣ ଶକ୍ତି ଥିଲେ ହିଁ ଏହା ସମ୍ଭବ । ଚାଲିଚି ବେଦ ମନ୍ତ୍ର । ନାଦବ୍ରହ୍ମ ପ୍ରବେଶ କରୁଛି ନାରାୟଣର ହୃଦୟରେ । ରୋମାଞ୍ଚିତ ହୋଇ ଉଠୁଚି ତାର ଶରୀର ।

ହଠାତ୍ ପୁରୋହିତ ମନ୍ତ୍ର ଉଚ୍ଚାରଣ କରି କହିଲେ, ''ଯଃ ଯତ୍ର ତିଷ୍ଠତି, ସାବଧାନା ଭବନ୍ତୁ ତେ ।'' ଅର୍ଥାତ୍ ଯିଏ ଯେଉଁଠି ଅଛ ସାବଧାନ ରହନ୍ତୁ, ଶୁଭ

ମୁହୂର୍ତ୍ତ ଆସିଗଲା । ସେତେବେଳକୁ ନାରାୟଣଙ୍କ ହାତରେ ଥିଲା ଶ୍ରୁବ । (ଯେଉଁଥିରେ ଘିଅ ନିଆଯାଇ ଅଗ୍ନିରେ ଆହୂତି ଦିଆଯାଏ ।) 'ସାବଧାନ' ଶବ୍ଦର ଝଙ୍କାର କାନରେ ପଡ଼ିବାମାତ୍ରେ ନାରାୟଣଙ୍କ ଦେହର ଶିରା ପ୍ରଶିରାରେ ଯେପରି ବିଦ୍ୟୁତ୍ ଖେଳିଗଲା । ତାଙ୍କର ଅନ୍ତର୍ଚକ୍ଷୁ ଖୋଲିଗଲା । ନିଜକୁ ସାବଧାନ କରିନେଲେ ସେ । ତାଙ୍କର ମନେହେଲା ଯେପରି ସ୍ୱୟଂ ଭଗବାନ ଆସି କହୁଚନ୍ତି— ନାରାୟଣ ! ଏହା ହିଁ ଶୁଭ ମୁହୂର୍ତ୍ତ । ସାବଧାନ ! ବିବାହ ବନ୍ଧନ ଅର୍ଥ ଜୀବନସାରା ସାଂସାରିକ ବନ୍ଧନରେ ପଡ଼ିବା । ସଂସାର ହେଉଚି ମିଥ୍ୟା । କେବଳ ମାୟା ଓ ମୋହ ।

ସେତେବେଳକୁ ହାତଗଣ୍ଠି ପଡ଼ି ନ ଥାଏ । ପଡ଼ିବାକୁ ଆଉ ଅଳ୍ପ ସମୟ । ପଡ଼ିଯିବା ପରେ ସବୁ ଶେଷ । ତାପରେ ବର-କନ୍ୟା ଯିବେ ବର ଘରକୁ । ମାଆ ରାନୁବାଈ ଭାରି ଖୁସି ହେବେ । ବୋହୂକୁ ବନ୍ଦାପନା କରି ନେବେ ଘରକୁ । କିନ୍ତୁ ଗଣ୍ଠି ନ ପଡୁଣୁ ନାରାୟଣଙ୍କ ହାତ ଖସି ଖସି ଆସିଲା କନ୍ୟା ହାତରୁ । ପଦ୍ମାସନ ମଧ୍ୟ ଫିଟି ଫିଟି ଆସିଲା । ଚାରିଆଡ଼କୁ ଲକ୍ଷ୍ୟ କଲେ ସେ । ଦୁଇଜଣଙ୍କୁ ମୋହ ଫାଶରେ ବାନ୍ଧିବା ପାଇଁ ସମସ୍ତଙ୍କ ମନରେ କି ଆନନ୍ଦ !

ହଠାତ୍ ଦଣ୍ଡାୟମାନ ହେଲେ ନାରାୟଣ । ସମସ୍ତେ ଭାବିଲେ ପିଲାଟା ଏତେ ସମୟ ଧରି ପଦ୍ମାସନରେ ବସିବାରେ ଗୋଡ଼ ତାର ଝିମିଝିମି ହୋଇ ପଡ଼ିଥିବ । ସେଥିପାଇଁ ଠିଆ ହୋଇ ପଡ଼ିଚି ।

କିନ୍ତୁ ଇଏ କ'ଣ ହେଲା ? ''ଜୟ ରାମଜୀକି ଜୟ'' ଧ୍ୱନି ଦେଇ ବେଦିରୁ ଦୌଡ଼ିବାକୁ ଲାଗିଲା ସେ । ସମସ୍ତେ ତଟସ୍ଥ ହୋଇ ପଡ଼ିଲେ । ଭାବିଲେ ବୋଧହୁଏ ପିଲାଟା ପାଗଳ ହୋଇଗଲା । କେତେଜଣ ଗୋଡ଼େଇଲେ ତାକୁ ଧରିବା ପାଇଁ । କିନ୍ତୁ କେହି ଧରିପାରିଲେ ନାହିଁ । ନାରାୟଣ ଗଲେ ଯେ, ଆଉ ଫେରିଲେ ନାହିଁ ।

ଦେହରୁ ବରବେଶକୁ ଫିଙ୍ଗି ସେ ପିନ୍ଧିଲେ କୌପୀନ । ଧରିଲେ ଝୁଲାମୁଣି । ପହଞ୍ଚିଲେ ନାସିକର ପଞ୍ଚବଟୀ ଅରଣ୍ୟରେ । ଏକ ଗୁମ୍ଫା ଭିତରେ ସେ ଚଳେଇଲେ କଠୋର ତପସ୍ୟା । ଏକମାତ୍ର ଧ୍ୟାନ, ରଘୁବୀର ଶ୍ରୀ ରାମଚନ୍ଦ୍ର ।

ମନରେ ଏକମାତ୍ର ସଂକଳ୍ପ ସ୍ୱୟଂ ଭଗବାନ ଶ୍ରୀରାମଚନ୍ଦ୍ର ହିଁ ହେବେ ମୋର ଗୁରୁ । ଭକ୍ତ କାତର ଆହ୍ୱାନରେ ଶ୍ରୀରାମ ଅବତୀର୍ଣ୍ଣ ହେଲେ ନାରାୟଣଙ୍କ ସମ୍ମୁଖରେ । ରାମ-ମନ୍ତ୍ରରେ ଦୀକ୍ଷିତ ହେଲେ ନାରାୟଣ । ସେହିଦିନଠାରୁ ନାରାୟଣ ନାମ ଲୋପ ପାଇ ରହିଲା ରାମଦାସ । ସେ ନିଜକୁ କହିଲେ, ମୁଁ ରାମଙ୍କ ଦାସାନୁଦାସ । ରାମ ହିଁ ମୋର ସର୍ବସ୍ୱ । ସେ ଯାହା କହିବେ କରିବି, ଯାହା ଦେବେ ଖାଇବି, ଯାହା କୁହାଇବେ କହିବି ।

୧୬୩୨ରୁ ରାମଦାସ ଚାଲିଲେ ତୀର୍ଥ ଯାତ୍ରାରେ । ସେତେବେଳେ ଭାରତରେ ଚାଲିଥିଲା ହିନ୍ଦୁଙ୍କ ଉପରେ ବିଦେଶୀମାନଙ୍କ ଆକ୍ରମଣ । ଚାଲିଥିଲା ଲୁଟତରାଜ, ଗୃହଦାହ, ମଠ ମନ୍ଦିର ମାନଙ୍କରେ ମୁସଲମାନଙ୍କ ଚଢ଼ଉ । ଲୋକେ ଆତଙ୍କିତ ହୋଇ ଘରଦ୍ୱାରା ଛାଡ଼ି ଚାଲିଯାଉଥିଲେ ଜଙ୍ଗଲ ଭିତରକୁ । ରାମଦାସ ଭାବିଲେ ଏହାର ପ୍ରତିରୋଧ କରା ନଗଲେ ଯାହାବା ମଠ ମନ୍ଦିର, ଧର୍ମାନୁଷ୍ଠାନ ଅଛି ସେତକ ଧ୍ୱଂସ ହୋଇଯିବ । ନ୍ୟାୟ ଓ ଧର୍ମରକ୍ଷା କରି ଦେଶରେ ଧର୍ମନିରପେକ୍ଷ ଶାସନ ପ୍ରତିଷ୍ଠା କରିବାକୁ ପଡ଼ିବ । ଯିଏ ଯେଉଁ ଧର୍ମରେ ଦୀକ୍ଷିତ ହୋଇଥାଉ ନା କାହିଁକି, ଧର୍ମ ହେଉଚି ସତ୍ୟ ପାଳନ କରିବା । ସମସ୍ତେ ଯଦି ଧର୍ମର ଏହି ନୀତିଟିକୁ ବୁଝିଥାଆନ୍ତେ, କେହି ଅନ୍ୟ ଧର୍ମ ଉପରେ ହସ୍ତକ୍ଷେପ କରନ୍ତେ ନାହିଁ । ହିଂସା କରନ୍ତେ ନାହିଁ । ତେଣୁ ଲୋକଙ୍କୁ ଧର୍ମର ମର୍ମ ବୁଝାଇବାକୁ ପଡ଼ିବ । ନିଜର ଅଧିକାର ସମ୍ପର୍କରେ ସଚେତ କରାଇବାକୁ ପଡ଼ିବ । ତାହାହେଲେ ଯାଇ ଗଠିତ ହେବ ସୁଖୀ-ସମାଜ ।

ଏହାକୁ ସେ ରଘୁବୀର ଶ୍ରୀରାମଚନ୍ଦ୍ରଙ୍କ ଆଦେଶ ମନେକରି ଆରମ୍ଭ କଲେ ତାଙ୍କ ଅଭିଯାନ । ପର୍ଶୁରାମଙ୍କ ବଂଶଧର ସେ । ଧର୍ମରକ୍ଷା କରିବା ଲାଗି ପର୍ଶୁରାମ ପର୍ଶୁ ଧାରଣ କରିଥିଲେ । ରାମଦାସ ସେହି ଧର୍ମରକ୍ଷା ଲାଗି ହିଁ ହାତରେ ନ ଧରିଲେ ମଧ୍ୟ ମନରେ ଧରିଲେ ସେହି ତୀକ୍ଷ୍ଣ ପର୍ଶୁ ।

ଭୟତ୍ରସ୍ତ ମ୍ରିୟମାଣ ଲୋକଙ୍କ ଦେହରେ ସୃଷ୍ଟି କଲେ ନୂତନ ଉଦ୍ଦୀପନା । ଧର୍ମଯୁଦ୍ଧ ଲାଗି ଡାକରା ଦେଲେ । ସେ ଥିଲେ ଭକ୍ତପ୍ରବର ତୁକାରାମଙ୍କ

ସମସାମୟିକ । ଏହି ଅଭିଯାନ ଲାଗି ତାଙ୍କପ୍ରତି ତୁକାରାମଙ୍କର ଥିଲା ଆଶୀର୍ବାଦ । ରାମଦାସ ମନେ ମନେ ଖୋଜୁଥିଲେ ମହାଭାରତର ଅର୍ଜ୍ଜୁନଙ୍କ ଭଳି ଜଣେ ନିର୍ଭୀକ ଧର୍ମ ଓ କର୍ତ୍ତବ୍ୟନିଷ୍ଠ ପରାକ୍ରମଶାଳୀ ଯୋଦ୍ଧା । ରାମଦାସଙ୍କ ପ୍ରଥମ ଶିଷ୍ୟ ଥିଲେ ଉଦ୍ଧବ । ଇତିମଧ୍ୟରେ ରାମଦାସ ମହାରାଷ୍ଟ୍ରର ବହୁସ୍ଥାନରେ ମଠ ମନ୍ଦିରମାନ ନିର୍ମାଣ କରି, ସେଗୁଡ଼ିକର ଦାୟିତ୍ୱ ସମର୍ପଣ କରିଥିଲେ ଶିଷ୍ୟମାନଙ୍କ ଉପରେ ।

ଧର୍ମସଂରକ୍ଷଣ ଲାଗି ରାମଦାସ ଯେଉଁସବୁ ପରିକଳ୍ପନା ଚଳାଇଥିଲେ ସେହି ସମୟରେ ଶିବରାୟ (ପରେ ଏହାଙ୍କ ନାଁ ହେଲା ଶିବାଜୀ) ମଧ ମନେ ମନେ ଠିକ୍ ସେହି ଚିନ୍ତା କରୁଥିଲେ । ସେ ଖୋଜୁଥିଲେ ଜଣେ ଗୁରୁ । ସେଥିଲାଗି ସେ ଯାଇଥିଲେ ତୁକାରାମଙ୍କ ନିକଟକୁ । କିନ୍ତୁ ତୁକାରାମ ତାଙ୍କୁ ପଠାଇ ଦେଇଥିଲେ ରାମଦାସଙ୍କ ନିକଟକୁ । ଶିବାଜୀ ପାଇଲେ ରାମଦାସଙ୍କୁ, ରାମଦାସ ପାଇଲେ ଶିବାଜୀଙ୍କୁ । କୃଷ୍ଣ-ଅର୍ଜ୍ଜୁନଙ୍କ ଭଳି ମଣି-କାଞ୍ଚନର ସଂଯୋଗ ଘଟିଲା । ଶିବାଜୀଙ୍କ ରଥର ସାରଥୀ ହେଲେ ରାମଦାସ । ଶିଷ୍ୟ ହେବା ପାଇଁ ଶିବାଜୀଙ୍କ ଯୋଗ୍ୟତା ଅଛି କି ନାହିଁ, ସେଥିଲାଗି ରାମଦାସ ତାଙ୍କୁ ବହୁ ଭାବରେ ପରୀକ୍ଷା କରିଥିଲେ । ଶେଷରେ ୧୬୪୯ରେ ଛପଲାଠାରେ ରାମଦାସ ଦୀକ୍ଷାଦେଲେ ଶିବାଜୀଙ୍କୁ । ଏହାପରେ ରାମଦାସ ରଚନା କରିଥିଲେ 'ଶ୍ରୀ ଦାସବୋଧ' । ଶିବାଜୀ ଓ ଅନ୍ୟ ଶିଷ୍ୟମାନଙ୍କୁ ସେ ଦେଇଥିବା ଉପଦେଶଗୁଡ଼ିକ ହିଁ "ଶ୍ରୀ ଦାସବୋଧ"ର ବିଷୟବସ୍ତୁ ।

ଗତ ତିନି ଶହରୁ ଅଧିକ ବର୍ଷଧରି 'ଶ୍ରୀ ଦାସବୋଧ' ବିଭିନ୍ନ ମାଧ୍ୟମରେ ଜନସାଧାରଣଙ୍କ ଜୀବନକୁ ପ୍ରଭାବିତ କରି ଆସିଚି । ଏହି 'ଶ୍ରୀ ଦାସବୋଧ'ହିଁ ମହାରାଷ୍ଟ୍ରକୁ ଦେଇଚି ନୂତନ ଜୀବନ, ନୂତନ ପ୍ରେରଣା । ତେଣୁ ରାମଦାସଙ୍କ ନାଁ ଆଗରେ ଜନସାଧାରଣ ଯୋଡ଼ିଥିଲେ 'ସମର୍ଥ' ଶବ୍ଦଟିକୁ । ସମର୍ଥ ରାମଦାସ ନାମଟି ମହାରାଷ୍ଟ୍ରର ଘରେ ଘରେ ସୁପରିଚିତ । 'ଶ୍ରୀ ଦାସବୋଧ'କୁ ମରାଠୀମାନେ ଗୀତା ଭଳି ପାରାୟଣ କରିଥାଆନ୍ତି । ଏହା ଚରିତ ହୋଇଛି ପଦ୍ୟ

ଆକାରରେ । 'ଜ୍ଞାନେଶ୍ୱରୀ' ଭଳି ଓବିଛନ୍ଦରେ । ଓଡ଼ିଆ ଭାଷାରେ 'ନବାକ୍ଷରୀ' ଭଳି ଓବିଛନ୍ଦ ସବୁଠାରୁ ଜନପ୍ରିୟ ।

କବୀଶ୍ୱର ଶ୍ରୀ ରାମକୁମାର ଭାରତୀୟ ଲେଖିଛନ୍ତି— 'ଦାସବୋଧ'ର ରଚୟିତା ସମର୍ଥ ରାମଦାସ କେବଳ ମରହଟ୍ଟା-ରାଜ୍ୟର ସଂସ୍ଥାପକ ମହାରାଜ ଛତ୍ରପତି ଶିବାଜୀଙ୍କ ଗୁରୁ ଓ ମାର୍ଗ-ଦର୍ଶକ ନଥିଲେ; ସେ ଥିଲେ ଜଣେ ସାଧୁ ସନ୍ଥ ସନ୍ନ୍ୟାସୀ । ସାଧାରଣ ଲୋକଙ୍କ ଧାରଣା ଯେ ଯେଉଁମାନେ ଭଗବାନଙ୍କ ଭଜନ କରନ୍ତି, ଲୋକଙ୍କୁ ସଦୁପୋଦେଶ ଦିଅନ୍ତି ସେହିମାନେ ହିଁ ସାଧୁ, ସନ୍ନ୍ୟାସୀ, ମହାତ୍ମା । ଅବଶ୍ୟ ସେମାନଙ୍କ ମଧ୍ୟରେ ବହୁ ତ୍ୟାଗୀ, ପରୋପକାରୀ, ଶୁଦ୍ଧ ପବିତ୍ରାତ୍ମା ଯେ ନ ଥିବେ, ତା ନୁହେଁ; କିନ୍ତୁ ସମର୍ଥ ରାମଦାସଙ୍କଠାରେ ଏସବୁ ଗୁଣଥିବା ସଙ୍ଗେ ସଙ୍ଗେ ଆଉ ଏକ ବିଶିଷ୍ଟ ଗୁଣ ଥିଲା । ସେ ଗୁଣଟି ହେଉଚି ରାଷ୍ଟ୍ରରକ୍ଷା ଓ ଦେଶୋଦ୍ଧାର । ଆଧ୍ୟାତ୍ମିକ ସାଧନା ଓ ବିଚକ୍ଷଣ ଶକ୍ତି ଯୋଗୁଁ ସେ ଲକ୍ଷ ଲକ୍ଷ ଲୋକଙ୍କ ଦ୍ୱାରା ସମ୍ମାନ ଲାଭ କରିପାରିଥିଲେ ଏବଂ ''ଆଧ୍ୟାତ୍ମିକ ସନ୍ଥ'' ପଦବୀ ମଧ୍ୟ ଲାଭ କରିଥିଲେ । ବହୁ ମଠ ପ୍ରତିଷ୍ଠା କରିଥିଲେ । ତଥାପି କୌଣସି ମଠର ମହନ୍ତ ନ ହୋଇ ସେ ଗାଁ ଗାଁ ଘର ଘର ବୁଲି ଲୋକଙ୍କ ଆତ୍ମଶୁଦ୍ଧି ସଙ୍ଗେ ସଙ୍ଗେ ସମାଜକୁ ସଙ୍ଗଠିତ କରିବାରେ ଲାଗିଥିଲେ । କେବଳ ଉପଦେଶ ଦେଇ ସେ ନିଜର କର୍ତ୍ତବ୍ୟ ଶେଷ ହୋଇଗଲା ବୋଲି ଭାବୁନଥିଲେ । ଠିଆ କରିଥିଲେ ଏକ ବିରାଟ ସଙ୍ଗଠନ । ଏହି ସଙ୍ଗଠନଦ୍ୱାରା ସେ ବ୍ୟକ୍ତି ଓ ସମାଜରେ ଏଭଳି ଏକ ପରିବର୍ତ୍ତନ ଆଣିଥିଲେ, ଯାହା ଫଳରେ ବିଦେଶୀଙ୍କ ଦାସତ୍ୱ ସ୍ୱୀକାର କରି ଆସିଥିବା ଦେଶ ଜାଗ୍ରତ ହୋଇ ଉଠିଥିଲା । ତାଙ୍କର ଏହି ସଂଗଠନ ଦ୍ୱାରା ଦେଶଦ୍ରୋହୀମାନଙ୍କୁ ଠିକଣା ଜବାବ ଦିଆଯାଇ ପାରିଥିଲା ।

'ଶ୍ରୀ ଦାସବୋଧ'ହିଁ ଥିଲା ତାଙ୍କ ପ୍ରଚାର କାର୍ଯ୍ୟର ମାଧ୍ୟମ । ସେ ତାଙ୍କ କୀର୍ତ୍ତନ ପ୍ରାରମ୍ଭରେ ହିଁ ଶ୍ରୋତାମାନଙ୍କୁ ଛନ୍ଦୋବଦ୍ଧ ଉପଦେଶ ଶୁଣାଉଥିଲେ । ତାଙ୍କର ଜଣେ ଶିଷ୍ୟ ଏସବୁ ପଦ୍ୟକୁ ଲେଖି ରଖୁଥିଲେ । ପରେ ଏହା 'ଶ୍ରୀ ଦାସବୋଧ' ଗ୍ରନ୍ଥରୂପେ ପରିଚିତ ହେଲା । ଏହି ଗ୍ରନ୍ଥର ବଡ଼ ଗୁଣ ହେଉଚି, ଏଥିରେ ଯେଉଁ ଶିକ୍ଷା ଦିଆଯାଇଚି ସେସବୁ କେବଳ ଆଦର୍ଶ ଓ ସିଦ୍ଧାନ୍ତର ଉତ୍କର୍ଷ ଦେଖାଇବା ପାଇଁ ନୁହଁ, ଏହା ବ୍ୟାବହାରିକ ଦୃଷ୍ଟିରୁ ମଧ୍ୟ ଉପଯୋଗୀ । କାରଣ

ସମର୍ଥ ରାମଦାସ ଲୋକଙ୍କୁ ସାଧୁ ସନ୍ନ୍ୟାସୀ ହୋଇଯିବାକୁ କହୁନଥିଲେ । ସେ କହୁଥିଲେ ସ୍ୱାବଲମ୍ବୀ ହୁଅ, ସମାଜର କଲ୍ୟାଣ ଦିଗରେ ପରସ୍ପର ସହିତ ସହଯୋଗ କର । ତେଣୁ ସେ ଗୃହସ୍ଥାଶ୍ରମ ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ସେ କହୁଥିଲେ—

"ସବୁ ଆଶ୍ରମ ମଧ୍ୟରେ ଶ୍ରେଷ୍ଠ ହେଉଚି ଗୃହସ୍ଥାଶ୍ରମ । ଏଥିରେ ତିନିଲୋକର ପ୍ରାଣୀଙ୍କୁ ବିଶ୍ରାମ ମିଳିଥାଏ । ଦେବ, ଋଷି, ମୁନି, ଯୋଗୀ, ତପସ୍ୱୀ, ବୈରାଗୀ, ପିତୃ, ଅତିଥି, ଅଭ୍ୟାଗତ ଆଦି ସମସ୍ତଙ୍କ ଉତ୍ପତ୍ତିସ୍ଥଳ ଏହି ଗୃହସ୍ଥାଶ୍ରମ । ଅବଶ୍ୟ ଏମାନେ ପରେ ଏହି ଆଶ୍ରମ ଛାଡ଼ି ଚାଲିଯାଇଥାଆନ୍ତି; ତଥାପି ଏମାନେ 'କୀର୍ତ୍ତି' ରୂପରେ ଗୃହସ୍ଥଙ୍କ ଘର ଘର ବୁଲିଥାଆନ୍ତି । ତେଣୁ ସବୁ ଆଶ୍ରମଠାରୁ ଗୃହସ୍ଥାଶ୍ରମ ହିଁ ବଡ଼ ।"

ଗୃହସ୍ଥମାତ୍ରେ ପରୋପକାର, ସମାଜ-ସେବା, ଧର୍ମସେବା, ରାଷ୍ଟ୍ର-ସେବା କରିବା ଉଚିତ ବୋଲି ସେ ଉପଦେଶ ଦେବା ସଙ୍ଗେ ସଙ୍ଗେ ଏକଥା ମଧ୍ୟ କହୁଥିଲେ ଯେ ଗୃହସ୍ଥ ଏସବୁ କରିବା ପୂର୍ବରୁ ନିଜର ସେବା ମଧ୍ୟ କରିବା ଆବଶ୍ୟକ । ଗୃହସ୍ଥ ନିଜ ପ୍ରତି ଧ୍ୟାନ ନ ଦେଲେ ଅନ୍ୟର ସେବା କରିବାକୁ ଯୋଗ୍ୟ ହେବ କିପରି ?

କିପରି ଗୃହସ୍ଥ ଜୀବନଯାପନ କରିବ, ସେ ସମ୍ପର୍କରେ ସେ କହିଛନ୍ତି— ପ୍ରଥମେ ଆବଶ୍ୟକତାନୁସାରେ ଭୋଜନ କରି ସାରିବା ପରେ ଯାହା ବଳିବ ତାହା ଅନ୍ୟକୁ ବାଣ୍ଟିବା ଉଚିତ । ସେହିଭଳି ମନୁଷ୍ୟ ପ୍ରଥମେ ନିଜ ଜ୍ଞାନଦ୍ୱାରା ତୃପ୍ତିଲାଭ କରିବା ପରେ ଯାଇ ଅନ୍ୟକୁ ଜ୍ଞାନ ବିତରଣ କରିବା ଉଚିତ । ଯିଏ ପହଁରି ଜାଣେ, ସେ କେବଳ ଅନ୍ୟକୁ ବୁଡିବାରୁ ଉଦ୍ଧାର କରିପାରିବ । ପ୍ରଥମେ ନିଜେ ଉତ୍ତମ ଗୁଣର ଅଧିକାରୀ ହେବାପରେ ଅନ୍ୟକୁ ସେହି ଗୁଣରେ ଗୁଣୀହେବା ପାଇଁ ଶିଖେଇବା ଉଚିତ । ଯିଏ ନିଜେ ଯେଉଁ କଥା ଆଚରଣ କରି ଶିଖିନାହିଁ, ସେ ଅନ୍ୟକୁ ସେହି କଥା ବତେଇବା ବୃଥା ଓ ମିଥ୍ୟା । ନିଜ ଶକ୍ତିକୁ ପରୋପକାରରେ ଲଗାଇବା ଉଚିତ ଯଦ୍ୱାରା କି ବହୁଲୋକଙ୍କର ଭଲ ହୋଇ-

ପାରିବ ।... ରାଷ୍ଟ୍ର ବା ସମାଜ ଉପରେ ଭୟଙ୍କର ବିପତ୍ତି ଆସିଲେ ନିଜ ବ୍ୟବସାୟକୁ କ'ଣ ନିଜ ଜୀବନକୁ ସୁଦ୍ଧା ବଳି ଦେବା ପାଇଁ ପ୍ରସ୍ତୁତ ହେବା ଉଚିତ । ଏହି ସମୟରେ ବିଚାର କରିବା ଉଚିତ ଯେ—ଯଦି ସମାଜ ଧ୍ୱଂସ ପାଇବ, ମୁଁ ରହିବି କେଉଁଠି ?''

ସମର୍ଥ ରାମଦାସଙ୍କ ସମୟରେ ଦେଶର ସର୍ବତ୍ର ମୁସଲମାନମାନଙ୍କ ପ୍ରଭାବ ଥିଲା । ଆଉରଙ୍ଗଜେବ୍ ଥିଲେ ଦିଲ୍ଲୀର ବାଦଶାହା । ସେ ଥିଲେ ଭୀଷଣ ହିନ୍ଦୁବିରୋଧୀ । ଚାରିଆଡ଼େ ହିନ୍ଦୁଙ୍କ ଉପରେ ଚାଲିଥିଲା ଅତ୍ୟାଚାର । ଏହି ଅତ୍ୟଚାରକୁ ଦମନ କରି ଛତ୍ରପତି ଶିବାଜୀ ମହାରାଷ୍ଟ୍ରରେ ସ୍ୱାଧୀନ ହିନ୍ଦୁରାଜ୍ୟ ପ୍ରତିଷ୍ଠା କଲେ । ଏ ଦିଗରେ ତାଙ୍କର ପ୍ରଧାନ ସହାୟକ ଥିଲେ ସମର୍ଥ ରାମଦାସ । ରାଜସ୍ଥାନରେ ଶସ୍ତ୍ରବଳ ନାମରେ ଜଣେ ପ୍ରତାପଶାଳୀ ରାଜା ଥିଲେ; କିନ୍ତୁ ଆଉରଙ୍ଗଜେବଙ୍କ ମୁକାବିଲା କରିବାରେ ସେ ଅସମର୍ଥ ହୋଇପଡ଼ିଥିଲେ । ତାର କାରଣ ତାଙ୍କ ରାଜ୍ୟରେ ଲୋକଙ୍କ ରାଷ୍ଟ୍ରୀୟତାର ବିଚାରଧାରା ଅତି ନଗଣ୍ୟ ହୋଇପଡ଼ିଥିଲା । କିନ୍ତୁ ରାମଦାସ ମହାରାଷ୍ଟ୍ରରେ ଲୋକଙ୍କ ମନରେ ଏହି ଚିନ୍ତାଧାରାକୁ ଉଦ୍ରେକ କରାଇଥିଲେ ଯେ—ଆମର କଲ୍ୟାଣ ହିନ୍ଦୁରାଜ୍ୟ ଦ୍ୱାରା ହିଁ ସମ୍ଭବ । ମୁସଲମାନ ହୁଅନ୍ତୁ, ପର୍ତ୍ତୁଗୀଜ, ଡଚ, ଇଂରେଜ ଆଦି କୌଣସି ବିଦେଶୀ ଜାତିର ଶାସନକୁ ଆମେ ସ୍ୱୀକାର କରି ନପାରୁ ।

ସେ କୌଣସି ଦେବୀ ମନ୍ଦିରକୁ ଯିବାମାତ୍ରେ ପ୍ରାର୍ଥନା କରୁଥିଲେ—

''ତୁଝାତୁ ବାଢ଼ବୀରାଜା, ଶୀଘ୍ର ଆମ୍ହାଚି ଦେଖତାଂ
ଦୁଷ୍ଟସଂହାରିଲେ ଭାଗେଁ, ଏସେ ଉଦଣ୍ଡ ଏକତୋ ।।
ପରନ୍ତୁ ରୋକଡ଼େ କୋହୀ, ମୂଳ ସାମର୍ଥୀ ଦାଖବାଁ ।।''

ଅର୍ଥାତ୍- ''ହେ ମାତା ! ଏହି ରାଜା (ଶିବାଜୀ ମହାରାଜ)ର ଉତ୍କର୍ଷସାଧନ ତୁ ମୋ ସାମନାରେ ଶୀଘ୍ର କରିଦେ । ଶୁଣିଚି, ତୁ ପ୍ରାଚୀନ-କାଳରେ ବହୁ ଦୁଷ୍ଟଙ୍କୁ ସଂହାର କରିଚୁ । ଏବେ ସେହି ସାମର୍ଥ୍ୟ ପ୍ରକଟ କର ।''

'ଶ୍ରୀ ଦାସବୋଧ'ର ମହତ୍ୱ ହେଉଚି ଏଥିରେ ଉଭୟ ଇହଲୋକ ଓ ପରଲୋକର କଲ୍ୟାଣ-ସାଧନ ମାର୍ଗ ପ୍ରଦର୍ଶନ କରାଯାଇଛି । ସମାଜ ଓ ରାଷ୍ଟ୍ରର ପ୍ରଗତି କିପରି ହୋଇପାରିବ ସେ ସମ୍ପର୍କରେ ଉପଦେଶ ଦିଆଯାଇଛି । ଧାର୍ମିକ ଓ ଆଧ୍ୟାତ୍ମିକ ଦିଗରେ ମଧ୍ୟ ଉନ୍ନତି ବିଧାନ ଲାଗି ସମୟାନୁକୂଳ ଶିକ୍ଷା ଦିଆ-ଯାଇଚି । ଏଥିରେ ବୁଝେଇ ଦିଆଯାଇଚି ଯେ ବିଭିନ୍ନ ଦେବଦେବୀଙ୍କ ପୂଜା କରିପାର; କିନ୍ତୁ ମନରେ ଏହି ଭାବ ରହିବା ଉଚିତ ଯେ ସବୁ ଦେବଦେବୀ ହେଉଚନ୍ତି ଏକମାତ୍ର ଶକ୍ତିର ବିଭିନ୍ନ ରୂପ । ଯଦି ମନରେ ଏହି ଭାବ ଦୃଢ଼ୀଭୂତ ନ ହୁଏ ତାହାହେଲେ ଶିବ ଉପାସକ, ବିଷ୍ଣୁ ଉପାସକର ନିନ୍ଦା କରିବ, ସେହିଭଳି ବିଷ୍ଣୁ ଉପାସକ ମଧ୍ୟ ଶୈବମାନଙ୍କୁ ଘୃଣା କରିବା ସାର ହେବ । ଏହି ସଂକୀର୍ଣ୍ଣ ସାଂପ୍ରଦାୟିକ ମନୋଭାବ ଯୋଗୁଁ ସମଗ୍ର ସମାଜ ବିଷାକ୍ତ ହୋଇପଡ଼ିବ । ତେଣୁ ସେ ସର୍ବଦେବତାଙ୍କ ସମନ୍ୱୟ ରକ୍ଷା କରିବା ଉପରେ ଗୁରୁତ୍ୱ ଆରୋପ କରୁଥିଲେ ।

'ଶ୍ରୀ ଦାସବୋଧ'ରେ ମୂର୍ଖର ଲକ୍ଷଣଠାରୁ ଆରମ୍ଭ କରି ରାଜନୀତି, ଧର୍ମନୀତି, ଗୁରୁ ପରିଚୟ, ଜ୍ଞାନ, ଅଜ୍ଞାନ, ମନ୍ତ୍ର, ଆଦର୍ଶ ଶିଷ୍ୟ, ଉପାସକ, ଜନ୍ମ ମୃତ୍ୟୁ, ଦ୍ୱୈତ, ଅଦ୍ୱୈତ, ସଗୁଣ, ନିର୍ଗୁଣ, ଆତ୍ମଦର୍ଶନ, ମୋକ୍ଷ, ଭକ୍ତି, ବିବେକ ଆଦି ଦୁଇ ଶହଟି ବିଷୟରେ ଅତି ତାତ୍ତ୍ୱିକ ବର୍ଣ୍ଣନା କରାଯାଇଛି ।

ମରାଠୀ ଭାଷାରେ ପଦ୍ୟରେ ଲିଖିତ ମୂଳ ଗ୍ରନ୍ଥର କ୍ରମକୁ ଅନୁସରଣ କରି ଓଡ଼ିଆ ଅନୁବାଦ କରାଯାଇଚି । ଏହା ଦଶଟି ଦଶକରେ ବିଭକ୍ତ । ପ୍ରତି ଦଶକରେ ଦଶଟି ସମାସ ରହିଛି । ଦଶକକୁ 'ଅଧ୍ୟାୟ' ଏବଂ 'ସମାସ'କୁ 'ପରିଚ୍ଛେଦ' ବୋଲି ଅନୁବାଦ କରାଯାଇପାରିଥାଆନ୍ତା । କିନ୍ତୁ ମୁଁ ମୂଳଗ୍ରନ୍ଥର କ୍ରମକୁ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ଦଶକ ଓ ସମାସ ହିଁ ରଖିଚି । କାରଣ ଏହାକୁ ଅକ୍ଷୁଣ୍ଣ ରଖିବାରେ କୌଣସି କ୍ଷତି ହେଉନାହିଁ ।

ରାମହିଁ ଥିଲେ ରାମଦାସଙ୍କ ସର୍ବସ୍ୱ । ସେ ତାଙ୍କ ଅଭଙ୍ଗ (ଭକ୍ତିଗୀତି)ରେ କହିଛନ୍ତି—

''ସଦା ରାମନାମେଁ ବଦା ପୂର୍ଣ୍ଣକାମେଁ
କଦା ବାଘିଜେନାପଦା ନିତ୍ୟନେମେଁ
ମଦାଲସ୍ୟ ହା ସର୍ବ ସୋଡୁନି ଦ୍ୟାବା
ପ୍ରଭାତେ ମନୋଁ ରାମ ଚିନ୍ତିତ ଦାବା ।''

ଅର୍ଥାତ୍‌, ସଦା ସର୍ବଦା ରାମନାମ ନିଅ, ପୂର୍ଣ୍ଣକାମ ହୋଇପାରିବ । ଏହି ରାମନାମ କୀର୍ତ୍ତନକୁ ନିତ୍ୟନିୟମରେ ପକାଅ । ତାହାହେଲେ କୌଣସି ଦୁଃଖ, ସନ୍ତାପ, ବାଧାବିଘ୍ନ ରହିବ ନାହିଁ । ଆଳସ୍ୟ ଛାଡ଼ । ପ୍ରତ୍ୟୁଷରୁ ଉଠିବାମାତ୍ରେ, ରେ ମନ ! କେବଳ ଶ୍ରୀରାମଙ୍କୁ ଚିନ୍ତା କର ।

''ଦେହ ରକ୍ଷଣ କାରଣେ ଯତ୍ନ କେଲା
ପରୀ ସେବଟି କାଳ ଘେଉନି ଗେଲା
କରିରେ ମନା ଭକ୍ତି ୟା ରାଘବାଚି
ପୁଢ଼େ ଅନ୍ତରୋଁ ସୋଡ଼ି ଚିନ୍ତା ଉବାଚି ।''

ଅର୍ଥାତ, ନିଜ ଦେହକୁ ରକ୍ଷା କରିବା ଏବଂ ତାର ଯତ୍ନ ନେବା ପାଇଁ ତୁମେମାନେ କେତେ ଯେ କଷ୍ଟ କରୁଚ ତାର ସୀମା ନାହିଁ । କିନ୍ତୁ ପରିଶେଷରେ ମୃତ୍ୟୁ ସେ ଦେହକୁ ଝିଙ୍କି ଓଟାରି ନେଇ ଯାଉଚି । ରେ ମନ ! ଶ୍ରୀରାଘବ ରାମଚନ୍ଦ୍ରଙ୍କ ଉପରେ ଅଟଳ ଭକ୍ତି ରଖ । ତାହାହେଲେ ତୁ ଜନ୍ମମୃତ୍ୟୁ ଚକ୍ରରୁ ରକ୍ଷା ପାଇ ପାରିବୁ ।

'ଶ୍ରୀ ଦାସବୋଧ' ପାଠ କରି ଓଡ଼ିଆ ପାଠକ ପାଠିକାମାନେ ଭଗବାନ ଶ୍ରୀ ରାମଚନ୍ଦ୍ରଙ୍କ କରୁଣା ଲାଭ କରନ୍ତୁ, ଏହା ହିଁ ସେହି ଶ୍ରୀରାମଙ୍କଠାରେ ମୋର ବିନୀତ ପ୍ରାର୍ଥନା ।

ଜୟ ଶ୍ରୀରଘୁବୀର ଶ୍ରୀରାମଚନ୍ଦ୍ର କି ଜୟ । ଇତି ।

**ଗୋରାଚାନ୍ଦ ମିଶ୍ର**

ତା ୩୧ । ୧୨ । ୮୨ ।



# ସୂଚୀ

## ପ୍ରଥମ ଦଶକ



## ଦ୍ୱିତୀୟ ଦଶକ

**ତୃତୀୟ ଦଶକ**



**ଚତୁର୍ଥ ଦଶକ**

**ପଞ୍ଚମ ଦଶକ**



**ଷଷ୍ଠ ଦଶକ**



**ସପ୍ତମ ଦଶକ**

**ଅଷ୍ଟମ ଦଶକ**



**ନବମ ଦଶକ**

**ଦଶମ ଦଶକ**



**ଏକାଦଶ ଦଶକ**

**ଦ୍ୱାଦଶ ଦଶକ**



**ତ୍ରୟୋଦଶ ଦଶକ**

**ଚତୁର୍ଦ୍ଦଶ ଦଶକ**



**ପଞ୍ଚଦଶ ଦଶକ**

**ଷୋଡ଼ଶ ଦଶକ**



**ସପ୍ତଦଶ ଦଶକ**

**ଅଷ୍ଟାଦଶ ଦଶକ**



**ଊନବିଂଶ ଦଶକ**

**ବିଂଶ ଦଶକ**





।। ଜୟ ଜୟ ଶ୍ରୀ ରଘୁବୀର ସମର୍ଥ ।।

# ଶ୍ରୀ ଦାସବୋଧ

## ପ୍ରଥମ ଦଶକ

### ପ୍ରଥମ ସମାସ
### ।। ମଙ୍ଗଳାଚରଣ ।।

ଶ୍ରୋତାମାନେ ପ୍ରଶ୍ନ କଲେ– ''ମହାରାଜ ! ଏହା କି ଗ୍ରନ୍ଥ ? ଏଥିରେ କ'ଣ ସବୁ କୁହାଯାଇଛି ? ଏହାକୁ ଶୁଣିବା ଦ୍ୱାରା କି ଲାଭ ମିଳିବ ?''

ବକ୍ତା ଉତ୍ତର ଦେଲେ– ''ଏହି ଗ୍ରନ୍ଥର ନାମ 'ଦାସବୋଧ' । ଏଥିରେ 'ଗୁରୁ-ଶିଷ୍ୟ-ସମ୍ବାଦ' ରୂପରେ ଭକ୍ତିମାର୍ଗ ଦେଖାଇ ଦିଆଯାଇଛି । ଏଥିରେ ଅଧିକାଂଶ ରହିଛି ଆଧାତ୍ମିକ ବିଚାର । ଏହି ଗ୍ରନ୍ଥ ପାଠ କଲେ ମନୁଷ୍ୟ ନିଶ୍ଚିତ ଭାବରେ ଭକ୍ତିମାର୍ଗରେ ଅଗ୍ରସର ହୋଇ ଭଗବାନଙ୍କୁ ପାଇପାରିବ । ଏହି ଗ୍ରନ୍ଥରେ ମୁଖ୍ୟତଃ ଭକ୍ତି, ଶୁଦ୍ଧଜ୍ଞାନ ତଥା ଆତ୍ମ-ସ୍ଥିତି, ବିଶୁଦ୍ଧ ଉପଦେଶ, ସାଯୁଜ୍ୟ-ମୁକ୍ତି, ମୋକ୍ଷ-ପ୍ରାପ୍ତି, ଶୁଦ୍ଧସ୍ୱରୂପ, ଦେହ ପ୍ରତି ନିର୍ଲିପ୍ତଭାବ ଆଦି ନାନା ବିଷୟ ନିର୍ଦ୍ଦିଷ୍ଟ ଭାବରେ ନିର୍ଣ୍ଣୟ କରାଯାଇଛି । ଏଥିରେ ଆହୁରି ମଧ୍ୟ ଅଳୀକ ମାୟାର ଉତ୍ପତ୍ତି, ପଞ୍ଚମହାଭୂତ, କର୍ତ୍ତାର ଲକ୍ଷଣ ସମ୍ପର୍କରେ ବୁଝେଇ ଦିଆଯାଇଛି । ମନୁଷ୍ୟ ମନରେ ଥିବା ବହୁ ସମସ୍ୟାର ସମାଧାନ କରାଯାଇ ପାରିଚି । ବହୁ ପ୍ରଶ୍ନର ଯଥାର୍ଥ ଉତ୍ତର ଦିଆଯାଇଛି । ଏହିଭଳି ବହୁ ବିଷୟରେ ଅତି ପ୍ରାଞ୍ଜଳ ଭାବରେ ଟିକିନିଖି ସବୁକଥା ଉଲ୍ଲେଖ କରାଯାଇଛି ଏହି ଗ୍ରନ୍ଥଟିରେ । ସମ୍ପୂର୍ଣ୍ଣ 'ଦାସବୋଧ'କୁ ''ଦଶକ''

ଅନୁସାରେ ବହୁବିଭାଗ କରାଯାଇଛି ଏବଂ ପ୍ରତ୍ୟେକ ଦଶକରେ ଗୋଟିଏ ଗୋଟିଏ ବିଷୟ ବିସ୍ତୃତ ଭାବରେ ବୁଝେଇ ଦିଆଯାଇଛି । ଏହି ଗ୍ରନ୍ଥ ପ୍ରଣୟନ ଲାଗି ଉପନିଷଦ, ବେଦ ବେଦାନ୍ତ ଏବଂ ଶ୍ରୁତିଆଦି ଅନେକ ଶାସ୍ତ୍ରର ସାହାଯ୍ୟ ନିଆଯାଇଛି । କିନ୍ତୁ ନିଜର ଶାସ୍ତ୍ରାନୁଭୂତି ହିଁ ଏହି ଗ୍ରନ୍ଥର ମୂଳାଧାର । ଏକଥା ଏହି ଗ୍ରନ୍ଥର ଅଧ୍ୟୟନ ଓ ସମୀକ୍ଷାଦ୍ୱାରା ପାଠକମାନେ ନିଜେ ମଧ୍ୟ ଅନୁଭବ କରିପାରିବେ ।

ଏକଥା ଏତିକିରେ ରହୁ । ପ୍ରତ୍ୟେକ ବ୍ୟକ୍ତି ନିଜର ଅଧିକାର ଓ ଯୋଗ୍ୟତା ଅନୁସାରେ ଏହାର ଉପଦେଶ ଗ୍ରହଣ କରିପାରିବେ । ତେଣୁ ମନରୁ ଅହଂଭାବ ତ୍ୟାଗ କରିବା ଉଚିତ । ଏହି ଗ୍ରନ୍ଥରେ କେଉଁ କେଉଁ ବିଷୟର ବିଚାର ବିବେଚନା କରାଯାଇଛି ସେ ସମ୍ପର୍କରେ ସଂକ୍ଷେପରେ ତଳେ ସୂଚନା ଦିଆଯାଇଛି ।

ଏହି ଗ୍ରନ୍ଥଟିକୁ ପାଠକରିବାଦ୍ୱାରା କି ସୁଫଳ ମିଳିବ ତାହା କୁହାଯାଇଛି । ଏହାକୁ ପାଠକଲେ ମନରୁ ସମସ୍ତ ସନ୍ଦେହ ତୁଟିଯିବା ସଙ୍ଗେ ସଙ୍ଗେ ଆଚାର-ବ୍ୟବହାରର ପରିବର୍ତ୍ତନ ଘଟିବ । ସାଯୁଜ୍ୟ-ମୁକ୍ତିର ରହସ୍ୟ ଜାଣିପାରିବ ଏବଂ ଏହି ମୁକ୍ତିଲାଗି ସୁଲଭମାର୍ଗ ଉପଲବ୍ଧି କରିପାରିବ । ଏଥିଲାଗି ଆଉ କୌଣସି କୁଚ୍ଛ୍ରସାଧନାର ଆବଶ୍ୟକତା ରହିବନାହିଁ । ଅଜ୍ଞାନ, ଦୁଃଖ ଓ ଭ୍ରାନ୍ତି ନଷ୍ଟହୋଇ ଶୀଘ୍ର ଜ୍ଞାନଲାଭ ହୋଇପାରିବ । ଯୋଗୀମାନଙ୍କର ପରମ ପ୍ରାପ୍ତି ହେଉଛି ବୈରାଗ୍ୟ । ଏହି ଗ୍ରନ୍ଥ ପାଠଦ୍ୱାରା ମନରେ ସେହି ବୈରାଗ୍ୟଭାବ ସ୍ୱତଃ ସୃଷ୍ଟି ହୋଇପାରିବ । ମନୁଷ୍ୟ ବିବେକୀ ଏବଂ ସୁଚତୁର ହୋଇପାରିବ । ଯାହାର ମନ ନାନା ସନ୍ଦେହ ଓ ସଂଶୟରେ ବିଜଡ଼ିତ, ଯାହାର ହୃଦୟ ନାନା ଦୁର୍ଗୁଣରେ ପରିପୂର୍ଣ୍ଣ, ଯାହାକୁ ଅଲକ୍ଷଣା କୁହାଯାଇଥାଏ, ଏହି ଗ୍ରନ୍ଥପାଠ ଦ୍ୱାରା ସେ ହେବ ସନ୍ଦେହମୁକ୍ତ, ସଦ୍‌ଗୁଣସମ୍ପନ୍ନ ଏବଂ ସୁଲକ୍ଷଣା । ଆଳସ୍ୟପରାୟଣ ବ୍ୟକ୍ତି ସକ୍ରିୟ ହୋଇ ଉଠିବ । ପାପୀମାନେ ଅନୁତାପ କରିବାଦ୍ୱାରା ସେମାନଙ୍କର ଚିତ୍ତ ଶୁଦ୍ଧ ହୋଇପାରିବ । ଯେଉଁମାନେ ଭକ୍ତିମାର୍ଗକୁ ନିନ୍ଦା କରିଥାଆନ୍ତି ସେମାନେ ଏହି ମାର୍ଗକୁ ହିଁ ପ୍ରଶଂସା କରିବେ । ପତିତ ହୋଇଉଠିବ ପବିତ୍ର, ତାର ସମସ୍ତ ଅପରାଧ ଧୋଇ ହୋଇଯିବ । ସାରାଂଶ ହେଉଛି— ଏହି ଗ୍ରନ୍ଥକୁ ଶୁଣିବା ବା ପାଠ କରିବା ମାତ୍ରେ ମନୁଷ୍ୟ ଉତ୍ତମ ଗତି ଲାଭକରିବ । ଦେହବୋଧରୁ ମନୁଷ୍ୟ ନାନା ସଂଶୟ

ଓ ସନ୍ଦେହ ଜାଲରେ ପଡ଼ିରହିଥାଏ । ଏହି ଗ୍ରନ୍ଥପାଠ କରିବାମାତ୍ରେ ସେ ଏହି ସଂଶୟର ଜାଲରୁ ଉଦ୍ଧାର ପାଇପାରିବ । ସେ ଅଧୋଗତିରୁ ମୁକ୍ତହୋଇ ମନରେ ଶାନ୍ତିଲାଭ କରିବ ।

ଏ ସବୁ ହେଉଛି ଏହି ଗ୍ରନ୍ଥର ମହିମା । ଏକଥା ସତ ଯେ ଯାହାର ଯେପରି ଭାବ, ତାକୁ ସେହିଭଳି ଫଳ ମିଳିଥାଏ ।

## ଦ୍ୱିତୀୟ ସମାସ
## ।। ଶ୍ରୀ ଗଣେଶ ସ୍ତବନ ।।

ସର୍ବସିଦ୍ଧିର ଫଳଦାତା, ଅଜ୍ଞାନ ଓ ଭ୍ରାନ୍ତି ବିନାଶକାରୀ ଜ୍ଞାନସ୍ୱରୂପ ହେ ଗଣନାୟକ, ଆପଣଙ୍କୁ ମୋର କୋଟି କୋଟି ନମସ୍କାର । ଆପଣ ମୋର ଅନ୍ତର ଭିତରେ ଚିରଦିନ ପାଇଁ ଅଧିଷ୍ଠିତ ରହିଥାଆନ୍ତୁ । ମୋ ଭଳି ମୂକ, ବଧିର, ମୂର୍ଖ ଓ ଦୁର୍ବଳ ବ୍ୟକ୍ତିପ୍ରତି କୃପାବର୍ଷଣ କରନ୍ତୁ । ଆପଣଙ୍କ କରୁଣାରେ ମନରୁ ଭ୍ରାନ୍ତିରୂପକ ଘନଘଟା ଦୂରୀଭୂତ ହୋଇଥାଏ ଏବଂ ସର୍ବଭକ୍ଷକ କାଳ ମଧ ଆପଣଙ୍କ ଦାସତ୍ୱ ସ୍ୱୀକାର କରିଥାଏ । ବାଧାବିଘ୍ନ ବୋଲି ଯାହା କିଛି ରହିଛି ଆପଣଙ୍କର କୃପାକଟାକ୍ଷ ମାତ୍ରକେ ସେ ସବୁ ନିସ୍ତେଜ ଭାବରେ ଭୟରେ ଥରହର ହୋଇ ପଡ଼ିଥାନ୍ତି । ତେଣୁ ଆପଣଙ୍କୁ ବିଘ୍ନନାଶକ କୁହାଯାଏ । ମୋ ଭଳି ଅନାଥମାନଙ୍କର ଆଶ୍ରୟଦାତା ହେଉଛନ୍ତି ଆପଣ । ହରି-ହର ଆଦି ଦେବଗଣ ଆପଣଙ୍କୁ ନମସ୍କାର କରିଥାନ୍ତି । ଆପଣ ସର୍ବମଙ୍ଗଳର ନିଧାନ, କଲ୍ୟାଣର ସାଗର । ତେଣୁ ଆପଣଙ୍କୁ ନମସ୍କାର କରିବାମାତ୍ରେ ସବୁକାର୍ଯ୍ୟ ସଫଳ ହୋଇଥାଏ ।

ଏହି ମଙ୍ଗଳକାର୍ଯ୍ୟରେ ଆପଣଙ୍କୁ ଆଘାତ, ବ୍ୟାଘାତ ଆଦି କେହି କେବେ ବାଧା ଦେଇ ନ ପାରନ୍ତି । ଆପଣଙ୍କ ସ୍ୱରୂପକୁ ଧ୍ୟାନ କରିବା ମାତ୍ରେ ସବୁ ସମସ୍ୟାର ସମାଧାନ ହୋଇଯାଏ । ସବୁ ଇନ୍ଦ୍ରିୟରୁ ହଟିଯାଇ କେବଳ ଆପଣଙ୍କର ଦର୍ଶନ ଲାଗି ମନର ନେତ୍ରଯୁଗଳ ସ୍ଥିର ହୋଇଯାଏ । ଆପଣଙ୍କର ସାକାର ସଗୁଣ ସ୍ୱରୂପ ଅତି କମନୀୟ । ନାନା ଭଙ୍ଗୀରେ ନୃତ୍ୟ କଲାବେଳେ ଆପଣଙ୍କ ନୃତ୍ୟକୁ ଦେଖି ସମସ୍ତ ଦେବଦେବୀ ଚକିତ ହୋଇପଡ଼ିଥାନ୍ତି । ଆପଣ

ସର୍ବଦା ବ୍ରହ୍ମାନନ୍ଦରେ ମଗ୍ନ । ଅତି ଆନନ୍ଦରେ ଆପଣ ସର୍ବଦା ଉଲ୍ଲସିତ, ତେଣୁ ନିରନ୍ତର ପ୍ରସନ୍ନ ବଦନ । ଆପଣଙ୍କ ବିଶାଳ ଲଲାଟ ସିନ୍ଦୂରଚର୍ଚ୍ଚିତ । ଆପଣ ଚଉଦଟିଯାକ ବିଦ୍ୟାର ପ୍ରବର୍ତ୍ତକ । ଆପଣଙ୍କ ରତ୍ନଜଡ଼ିତ ମୁକୁଟ ପ୍ରଭାମୟ । ବହୁବର୍ଣ୍ଣରେ ପ୍ରସ୍ଫୁଟିତ ଏହାର ତେଜ ।

ଆପଣଙ୍କ କର୍ଣ୍ଣକୁଣ୍ଡଳ ତେଜସ୍ୱୀ ନୀଳମଣି ଦ୍ୱାରା ବିଭାସିତ । ଆପଣଙ୍କ ଶୁଭ୍ର ସୁଦୃଢ଼ ଏକଦନ୍ତ ଏବଂ ବିଶାଳ ସ୍ଥୂଳୋଦର, କଟିର ସର୍ପମେଖଳା, ଆପଣଙ୍କ ଚତୁର୍ଭୁଜ ଏବଂ ଆପଣଙ୍କ ପରିହିତ ପୀତାମ୍ବରର ଶୋଭା ଅବର୍ଣ୍ଣନୀୟ । ବହୁବର୍ଣ୍ଣର ସୁବାସିତ ପୁଷ୍ପମାଳାରେ ଆପଣଙ୍କ ଶରୀର ସୁଶୋଭିତ ଓ ସୁବାସିତ । ଆପଣଙ୍କ ବକ୍ଷସ୍ଥଳରେ ସୁଦୀପ୍ତ ରତ୍ନଖଚିତ ପଦକ । ଆପଣଙ୍କ ଏକହସ୍ତରେ ପରଶୁ, ଆଉ ଏକହସ୍ତରେ କମଳ । ତୃତୀୟ ହସ୍ତରେ ତୀକ୍ଷ୍ଣ ଅଙ୍କୁଶ ଏବଂ ଚତୁର୍ଥ ହସ୍ତରେ ଆପଣଙ୍କ ଅତ୍ୟନ୍ତ ପ୍ରିୟ ଖାଦ୍ୟ ମୋଦକ । ଆପଣଙ୍କ ଦିବ୍ୟାମ୍ବରର ଆଲୋକରେ ଚତୁର୍ଦ୍ଦିଗ ଆଲୋକିତ । ଆପଣଙ୍କୁ ସବୁ ପ୍ରକାରର ସାମଗ୍ରୀର ଆସ୍ୱାଦନ ଉପଲବ୍ଧ କରାଇବାପାଇଁ ଅଷ୍ଟନାୟିକ ସର୍ବଦା ତତ୍ପର । ହେ ସର୍ବାଙ୍ଗ ସୁନ୍ଦର, ସର୍ବବିଦ୍ୟାର ଭଣ୍ଡାର ଶ୍ରୀ ଶ୍ରୀ ଗଣେଶଜୀ ! ମୋର ଭକ୍ତିପୂର୍ଣ୍ଣ ସାଷ୍ଟାଙ୍ଗ ନମସ୍କାର ଗ୍ରହଣ କରନ୍ତୁ ।

ଶ୍ରୀ ଗଣେଶଙ୍କୁ ଧ୍ୟାନ କରିବା ମାତ୍ରେ ଏବଂ ତାଙ୍କର ଗୁଣଗାନ କରିବା ମାତ୍ରେ ଅଜ୍ଞାନୀ ଲାଭ କରେ ସଦ୍‌ବୁଦ୍ଧି । ତାଙ୍କର ଗୁଣବର୍ଣ୍ଣନା ଶୁଣିବାଦ୍ୱାରା ସରସ୍ୱତୀ ପ୍ରସନ୍ନ ହୋଇଥାନ୍ତି ।

ଯାହାଙ୍କୁ ବ୍ରହ୍ମାଦିଦେବଗଣ ନତମସ୍ତକ ହୋଇ ପ୍ରଣିପାତ କରିଥାନ୍ତି, ତାଙ୍କର ଶରଣାଗତ ହୋଇ ମନୁଷ୍ୟମାତ୍ରେ ତାଙ୍କୁ ନମସ୍କାର କରିବାରେ ଆଶ୍ଚର୍ଯ୍ୟ କ'ଣ ଅଛି ?

ତେଣୁ ମନ୍ଦବୁଦ୍ଧିର ଲୋକେ ମଧ୍ୟ ଶ୍ରୀଗଣେଶଙ୍କୁ ଧ୍ୟାନ କରିଥାନ୍ତି, ତାଙ୍କୁ ପ୍ରଥମେ ଚିନ୍ତା କରିଥାନ୍ତି । ଦୀନହୀନ ମୂର୍ଖ ଅଜ୍ଞାନୀ ମଧ୍ୟ ଶ୍ରୀଗଣେଶଙ୍କ କରୁଣାରୁ ସବୁ ବିଷୟରେ ପ୍ରବୀଣ ହୋଇପାରେ । ଶ୍ରୀଗଣେଶ ହେଉଛନ୍ତି ପରମ ସମର୍ଥ । ସେ କେବଳ ଭକ୍ତମାନଙ୍କର ସମସ୍ତ ମନସ୍କାମନା ପୂର୍ଣ୍ଣ କରିପାରନ୍ତି । ତାଙ୍କୁ ଭଜନ କରିବା ମାତ୍ରେ ମନୁଷ୍ୟ ଭାବାବିଷ୍ଟ ହୋଇପଡ଼େ । ନବନବ ଅନୁଭୂତି ଲାଭ କରେ ସେ । ତେଣୁ ତାଙ୍କୁ ସ୍ମରଣ କର, ତୁମର କଲ୍ୟାଣ ହେବ । ଶାସ୍ତ୍ରରେ ଅଛି, ''କଲୌଚଣ୍ଡୀବିନାୟକୌ'' ଅର୍ଥାତ୍ କଳିଯୁଗରେ ଅନ୍ୟ ସମସ୍ତ ଦେବଦେବୀ ସୁପ୍ତ, କିନ୍ତୁ ମା ଚଣ୍ଡୀ (ଶାରଦାଦେବୀ) ଏବଂ ଶ୍ରୀଗଣେଶ ସଦା ଜାଗ୍ରତ ।

ମୁଁ ମନଭିତରେ ପରମାର୍ଥଲାଭର ଅଭିଲାଷ ରଖି ସର୍ବକଲ୍ୟାଣସ୍ୱରୂପ ଭଗବାନ ଶ୍ରୀଗଣେଶଙ୍କୁ ଯଥାସମ୍ଭବ ସ୍ତୁତି କରୁଛି ।

## ତୃତୀୟ ସମାସ
## ।। ଶ୍ରୀ ଶାରଦାସ୍ତବନ ।।

ଏବେ ମୁଁ ମା ଶ୍ରୀ ଶାରଦାଙ୍କୁ ନମସ୍କାର କରୁଛି । ସରସ୍ୱତୀ ଶ୍ରୀ ଶାରଦା ହେଉଛନ୍ତି ସବୁ ଶବ୍ଦର ଜନ୍ମଦାତ୍ରୀ, ଅର୍ଥାତ୍ ସେ ବେଦମାତା ଓ ବାଣୀର ଦେବତା । ସେ ମଧ୍ୟ ମୂଳମାୟା । ମୂଳବ୍ରହ୍ମର ''ଏକୋଽହଂ''ର ସଙ୍କଳ୍ପ ସହିତ ମୂଳମାୟା ଶାରଦା ପ୍ରକଟିତ । ତେଣୁ ତାଙ୍କୁ 'ବ୍ରହ୍ମସୁତା' କୁହାଯାଏ ।

ସେ ପରମବାଣୀ ରୂପରେ ଶବ୍ଦକୁ ବ୍ୟକ୍ତ କରି ବୈଖରୀ ବାଣୀ ରୂପରେ ଅସଂଖ୍ୟ ଶବ୍ଦକୁ ଉଚ୍ଚାରଣ କରିଥାଆନ୍ତି ଏବଂ ଶବ୍ଦ-ରହସ୍ୟକୁ ଉଦ୍‌ଘାଟନ କରିଥାଆନ୍ତି । ସେ ଯୋଗୀମାନଙ୍କର ସମାଧି ଏବଂ ଧୀରଶାନ୍ତ ପୁରଷର ସ୍ଥିରବୁଦ୍ଧି । ସେ ବିଦ୍ୟାଠାରୁ ଅବିଦ୍ୟାକୁ ପୃଥକ କରିଥାଆନ୍ତି । ପ୍ରକୃତି ସ୍ୱରୂପିଣୀ ଶାରଦାଙ୍କୁ ପୁରୁଷ ସ୍ୱରୂପ ଗଣେଶଙ୍କ ପତ୍ନୀ ଭାବେ ବିବେଚନା କରାଯାଇଥାଏ । ମାଆ ଶାରଦା ତୁରୀୟ ଅବସ୍ଥାର ଅତି ପାଖାପାଖି । ତାଙ୍କରି ସତ୍ତାଦ୍ୱାରା ସାଧୁ, ସତ୍‌ପୁରୁଷ ଉତ୍କୃଷ୍ଟ ତଥା ଶ୍ରେଷ୍ଠ କାର୍ଯ୍ୟରେ ପ୍ରବୃତ୍ତ ହୋଇଥାଆନ୍ତି । ସେଥିରେ ସନ୍ଥ ଓ ମହତ୍‌ବ୍ୟକ୍ତିମାନଙ୍କୁ ଶାନ୍ତି ମିଳିଥାଏ ।

ମା ସରସ୍ୱତୀ ଭଗବାନ ଶ୍ରୀ ଗଣେଶଙ୍କ ବୀର୍ଯ୍ୟଶକ୍ତି । ଜ୍ଞାନୀମାନଙ୍କ ବୈରାଗ୍ୟ ହେଉଚନ୍ତି ସେ । ସେ ଅସଂଖ୍ୟ ବ୍ରହ୍ମାଣ୍ଡର ସହଜଲୀଳାଦ୍ୱାରା ସୃଷ୍ଟି ଓ ସଂହାର ଉଭୟ କାର୍ଯ୍ୟ ସାଧନ କରି କରି ସ୍ୱୟଂ ମୂଳପୁରୁଷ ଦେହରେ ଲୀନ ହୋଇଥାଆନ୍ତି । ବ୍ରହ୍ମଦୃଷ୍ଟିରୁ ସୃଷ୍ଟିରୂପରେ ଏହାଙ୍କ କାର୍ଯ୍ୟ ଆମମାନଙ୍କୁ ଦେଖାଯାଇଥାଏ, କିନ୍ତୁ ଅନ୍ତର୍ଭାବ ଦ୍ୱାରା ବିଚାର କରି ଏହାଙ୍କୁ ଖୋଜିଲେ ଇଏ ଆଉ ମିଳନ୍ତି ନାହିଁ । ସେ ଅପ୍ରାପ୍ତ-ସାଗରରେ ଭାସୁଥିବା ମନେହୁଏ । ବ୍ରହ୍ମାଦି ଦେବତାମାନଙ୍କ ପକ୍ଷରେ ମଧ୍ୟ ସେ ଅଗମ୍ୟ । ଜୀବର ସମସ୍ତ ଉଦ୍ୟମର ପ୍ରେରଣାଦାୟିନୀ ବିଦ୍ୟାଦାୟିନୀ ସରସ୍ୱତୀ । ସେ ଶୁଦ୍ଧ ସ୍ଫୂର୍ତ୍ତ ଜ୍ଞାନମୟୀ । ଜ୍ଞାନଶକ୍ତି ହୋଇଥିବାରୁ ତାଙ୍କ ପ୍ରଭାବରେ ମନୁଷ୍ୟ ବ୍ରହ୍ମାନନ୍ଦର ଅନୁପମ ରସାସ୍ୱାଦନ କରିଥାଏ ।

''ତତ୍ତ୍ୱମସି'' ଆଦି ମହାବାକ୍ୟର ଆଧାର ହୋଇଥିବାରୁ ସେ ସଂସାରରୂପୀ ଭ୍ରାନ୍ତିକୁ ବିନାଶ କରିଥାଆନ୍ତି । ସେ ଅତ୍ୟନ୍ତ କଲ୍ୟାଣପ୍ରଦ ଏବଂ ମୋକ୍ଷଲକ୍ଷ୍ମୀ । ବ୍ରହ୍ମରନ୍ଧ୍ରରୁ ଯେଉଁ ଅମୃତର ସ୍ରବଣ କ୍ରିୟା ଘଟେ, ସେହି ସ୍ରବଣ କ୍ରିୟାର ଜୀବନକଳା ହେଉଚନ୍ତି ମା ବାଗ୍‌ଦେବୀ । ପରମ ସତ୍ତ୍ୱରୂପୀ ଶାନ୍ତିର ଲାବଣ୍ୟଖଣି ସେ । ଅବ୍ୟକ୍ତ ପୁରୁଷ (ବ୍ରହ୍ମ) ଏହାଙ୍କ ଦ୍ୱାରା ବ୍ୟକ୍ତ ହୋଇ ସାକାର ସଗୁଣ ହୋଇଥାଆନ୍ତି । ସେ ପରମାର୍ଥମାର୍ଗର ସାର-ଅସାର ବିଚାରର ବିଶ୍ଳେଷଣ କରି ଶବ୍ଦ ସାହାଯ୍ୟରେ ବୁଦ୍ଧିମାନଙ୍କୁ ଭବସାଗରରୁ ପାରି କରିଥାଆନ୍ତି ।

ପରା, ପଶ୍ୟନ୍ତି, ମଧ୍ୟମା, ବୈଖରୀ— ଏ ଚାରିବାଣୀ ରୂପରେ ସେ ମନୁଷ୍ୟ ଦେହରେ ଅଧିଷ୍ଠିତା । ତିନିବାଣୀ ଦ୍ୱାରା ମନରେ ଯେଉଁ କଳ୍ପନା ଉତ୍ପନ୍ନ ହୋଇଥାଏ, ତାକୁ ସେ ବୈଖରୀବାଣୀ ଦ୍ୱାରା ପ୍ରକଟିତ କରିଥାଆନ୍ତି । ତେଣୁ ସଂସାରରେ ଯେଉଁ କାର୍ଯ୍ୟ ହେଉଚି, ସବୁର କାରଣ ମାଆ ଶାରଦା । ହରିହର ବ୍ରହ୍ମାଦିଙ୍କର ମଧ୍ୟ ଜନନୀ ସେ । ସତ୍ତ୍ୱ, ରଜ, ତମମୟ ତ୍ରୈଲୋକ୍ୟର ସୃଷ୍ଟି ଓ ବିସ୍ତାର ତାଙ୍କରି ଯୋଗୁଁ । ସେ କେବଳ ଯେ ପରମାର୍ଥର ମୂଳ ତା ନୁହଁ, ସେ ସ୍ୱୟଂ ବ୍ରହ୍ମବିଦ୍ୟା ।

ନିଷ୍ପନ୍ଦ, ନିର୍ମଳ ଓ ନିଶ୍ଚଳ ଆତ୍ମସ୍ଥିତି ହେଉଚନ୍ତି ମାଆ ଶାରଦା । ଯୋଗୀମାନଙ୍କର ଧ୍ୟାନବିନ୍ଦୁ ସେ । ସାଧକମାନଙ୍କ ଚିନ୍ତନ ଓ ସିଦ୍ଧମାନଙ୍କ ସମାଧିରେ କେବଳ ତାଙ୍କରି ରୂପ । ନିର୍ଗୁଣର ରୂପକଳ୍ପନାରେ ତାଙ୍କରି ରୂପ । ସେ ସର୍ବଜୀବରେ ବ୍ୟାପ୍ତ ଓ ପରିପୂର୍ଣ୍ଣ । ସମସ୍ତ ଶାସ୍ତ୍ର, ପୁରାଣ, ବେଦ ଓ ଶ୍ରୁତିରେ ନିରବଚ୍ଛିନ୍ନ ଭାବରେ ତାଙ୍କର ସ୍ତୁତି କରାଯାଇଛି । ସମସ୍ତେ ତାଙ୍କୁ ନାନାରୂପରେ ସ୍ତୁତି କରିଥାଆନ୍ତି ।

ନିରୂପମ ପରବ୍ରହ୍ମର ଉପମା ସେ । ତାଙ୍କରି ଯୋଗୁଁ ଅନାମ ପରବ୍ରହ୍ମଙ୍କୁ ପରମାତ୍ମା ନାମରେ ସମ୍ବୋଧନ କରାଯାଇଥାଏ । ବହୁବିଦ୍ୟା, ଚଉଷଠି କଳା, ଅଷ୍ଟ ମହାସିଦ୍ଧି, ବୁଦ୍ଧିର ନାନାସିଦ୍ଧାନ୍ତ, ପରମାତ୍ମା ବସ୍ତୁର ସୂକ୍ଷ୍ମଜ୍ଞାନ—ସବୁ ହେଉଚି ଏହି ଶାରଦାଙ୍କ ସ୍ୱରୂପ । ଭକ୍ତମାନଙ୍କ ଆତ୍ମରତିରୂପକ ଭକ୍ତି, ନିଷ୍ଠାବାନର ଆତ୍ମନିଷ୍ଠା, ଜୀବନମୁକ୍ତର ସାଯୁଜ୍ୟ ମୁକ୍ତି—ଏସବୁ ହେଉଚି ମା ବୀଣାପାଣିଙ୍କ ସ୍ୱରୂପ । ବଡ଼ ବଡ଼ ବିଦ୍ୱାନମାନଙ୍କୁ ଜ୍ଞାନାଭିମାନରେ ପ୍ରବିଷ୍ଟ କରାଇବା ଦିଗରେ ଏହାଙ୍କର ଯେଉଁ ବୈଷ୍ଣବୀମାୟା ତାହା ଅସୀମ । ତେଣୁ ଏହାଙ୍କ ଲୀଳାରହସ୍ୟକୁ ବୁଝିବା ଅସମ୍ଭବ ।

ସାରାଂଶ ହେଉଚି—ଯାହା ଆଖିକୁ ଦେଖାଯାଏ, କାନରେ ଶୁଣାଯାଏ, ମନରେ ଚିନ୍ତା କରାଯାଏ ସବୁ ହେଉଚି ମାଆଙ୍କର ରୂପ । ସ୍ତବନ, ଭଜନ, ଭକ୍ତି-ଭାବ ଆଦି ଯାହା କରନା କାହିଁକି ମାୟାର ବିନା ସାହାଯ୍ୟରେ ଅସମ୍ଭବ । ଇଏ ଯାହା ସବୁ କୁହାଗଲା, ତାର ରହସ୍ୟ ଅନୁଭବୀ ବ୍ୟକ୍ତି ବ୍ୟତୀତ କେହି ଜାଣି ପାରିବେ ନାହିଁ । ଅତଏବ ହରହରାଦି ଶ୍ରେଷ୍ଠ ଦେବତାଙ୍କଠାରୁ ସର୍ବଶ୍ରେଷ୍ଠ ଈଶ୍ୱରଙ୍କ ଈଶ୍ୱର ମଧ୍ୟ ଶ୍ରୀଶାରଦା ମାତାଙ୍କୁ ତନ୍ମୟ ଓ ବିନୀତ ଭାବରେ ନତମସ୍ତକ ହୋଇ ନମସ୍କାର କରିଥାଆନ୍ତି ।

## ଚତୁର୍ଥ ସମାସ
## ।। ଶ୍ରୀ ସଦ୍‌ଗୁରୁ ସ୍ତବନ ।।

ଏବେ ସଦ୍‌ଗୁରୁଙ୍କୁ ସ୍ତବ କରାଯାଉଚି । ସଦ୍‌ଗୁରୁ ହେଉଚନ୍ତି ବ୍ରହ୍ମସ୍ୱରୂପ । ସ୍ୱରୂପର ବର୍ଣ୍ଣନା ମୋଦ୍ୱାରା କିଭଳି ବା ସମ୍ଭବ ହୋଇ ପାରିବ ? ଯେଉଁ ସ୍ୱରୂପ ସମ୍ପର୍କରେ ପ୍ରତ୍ୟକ୍ଷ ଶ୍ରୁତି ''ନେତି, ନେତି'' (ଇଏ ନୁହଁ, ଇଏ ନୁହଁ) କହି ନିଜର ଅଜ୍ଞତା ସ୍ୱୀକାର କରିଛି, ତାଙ୍କୁ ଜାଣିବା ଲାଗି ମୋଭଳି ମୂର୍ଖର ବୁଦ୍ଧି ହେବ କିପରି ? ତାଙ୍କର ବର୍ଣ୍ଣନା କିପରି କରାଯାଇ ପାରିବ, ମତେ ବୁଦ୍ଧିବାଟ ଦିଶୁନାହିଁ । ତେଣୁ ମୋଠାରେ ଯେତିକି ଶକ୍ତି ଅଛି ସେହିଥିରେ (ଦେହବୁଦ୍ଧି ଦ୍ୱାରା) ତାଙ୍କୁ ନମସ୍କାର କରୁଛି ଏବଂ ପ୍ରାର୍ଥନା କରୁଛି, ହେ ଗୁରୁଦେବ ! ମତେ ସଂସାର-ସାଗରରୁ ପାର କରାଅ ।

ମନଭିତରେ ସଦ୍‌ଗୁରୁ-ସ୍ତବନର ମିଥ୍ୟା ଅଭିଳାଷ ରହିଥିଲା, ଏବେ ସେହି ମାୟାର ଆଧାର ବିଲୁପ୍ତ ହୋଇଛି । ତେଣୁ ହେ ଦେବ ସଦ୍‌ଗୁରୁ ! ଆପଣଙ୍କ ବର୍ଣ୍ଣନା ଆପଣ ନିଜେ । ମୁଖ୍ୟ ପରମାତ୍ମାକୁ କଳନା କରାଯାଇ ପାରିବନି ବୋଲି ତାଙ୍କ ପ୍ରତିମା ନିର୍ମାଣ କରାଯାଇଥାଏ । ସେହିଭଳି ମାୟାକୁ ଆଶ୍ରୟ କରି ମୁଁ ସଦ୍‌ଗୁରୁଙ୍କ ମହିମା ବର୍ଣ୍ଣନା କରୁଛି । ମଣିଷ ଯେପରି ଭାବିଥାଏ ସେହି ଭାବନା ଅନୁଯାୟୀ ଦେବତାଙ୍କୁ ଧ୍ୟାନ କରେ । ସେହିଭଳି ଭାବରେ ମୁଁ ସଦ୍‌ଗୁରୁଙ୍କ ସ୍ତୁତି କରୁଛି ।

ଆଗରୁ କହିଚି, ଏବେ ମଧ୍ୟ କହୁଚି, ସଦ୍‌ଗୁରୁଙ୍କ ସ୍ତୁତି କରିବାଲାଗି ମନରେ ଯେଉଁ ମିଥ୍ୟା ଲାଳସା ଥିଲା, ଏବେ ସେ ମାୟାର ଆଧାର ଦୂର ହୋଇଛି । ତେଣୁ ହେ ସଦ୍‌ଗୁରୁଦେବ, ଆପଣଙ୍କର ଜୟ ହେଉ । ଆପଣ ବିଶ୍ୱର ମୂଳ କାରଣ । ବିଶ୍ୱର ପୋଷଣ ଆପଣଙ୍କ ଦ୍ୱାରାହିଁ ହୋଇଥାଏ । ଆପଣ ପରମ ପୁରୁଷ, ଦୀନବନ୍ଧୁ । ମୋକ୍ଷର ଧ୍ୱଜା ଆପଣ । ଅର୍ଥାତ୍ ଆପଣ ହେଉଛନ୍ତି ଶରଣାଗତର ମୋକ୍ଷଦାତା ।

ସୂର୍ଯ୍ୟାଲୋକରେ ଯେପରି ଅନ୍ଧକାରର ବିନାଶ ଘଟିଥାଏ, ସେହିଭଳି ଆପଣଙ୍କ ଅଭୟହସ୍ତ ଶରଣାଗତର ମସ୍ତକ ଉପରେ ପଡ଼ିବାମାତ୍ରେ ତାର ସମସ୍ତ ଭୟ ଦୂର ହୋଇଥାଏ । ଯେଉଁ ମାୟା ଅନିବାର୍ଯ୍ୟ, ସେ ମାୟା ମଧ୍ୟ ହଟିଯାଏ । ଅବଶ୍ୟ ସୂର୍ଯ୍ୟୋଦୟ ମାତ୍ରେ ଅନ୍ଧକାର ନଷ୍ଟ ହୁଏ କିନ୍ତୁ ସୂର୍ଯ୍ୟାସ୍ତ ପରେ ରାତ୍ରି ଆସେ, ସମଗ୍ର ବ୍ରହ୍ମାଣ୍ଡ ଅନ୍ଧକାରାଚ୍ଛନ୍ନ ହୋଇପଡ଼େ । କିନ୍ତୁ ହେ ସଦ୍‌ଗୁରୁଦେବ ! ଆପଣ ସେପରି ନୁହନ୍ତି । କାରଣ ଆପଣ ଅନ୍ୟର ଅଜ୍ଞାନର ମୂଳୋତ୍ପାଟନ କରି ତାକୁ ଜନ୍ମମରଣ ବନ୍ଧନରୁ ମୁକ୍ତ କରିଥାଆନ୍ତି । ସ୍ପର୍ଶମଣିର ସ୍ପର୍ଶରେ ଲୁହା ସୁନା ହୋଇଯିବାପରେ, ସୁନା ଆଉ ଲୁହା ହୋଇ ନପାରେ । ସେହିଭଳି ଯେଉଁ ଗୁରୁଭକ୍ତ ସଦ୍‌ଗୁରୁଙ୍କ କୃପାରେ ବ୍ରହ୍ମରୂପ ହୋଇଯାଏ, ସେ ପୁନର୍ବାର ଦେହବୁଦ୍ଧିର ସଂଶୟରେ ପଡ଼େନାହିଁ ।

ନଦୀ ଯେତେ ଛୋଟ ହେଉନା କାହିଁକି, ଏହା ଗଙ୍ଗାରେ ପଡ଼ିବାମାତ୍ରେ ଗଙ୍ଗା ପାଲଟିଯାଏ । ପୁଣି ଏହାକୁ ଗଙ୍ଗାଠାରୁ ଅଲଗା କରିବାକୁ ଚାହିଁଲେ ମଧ୍ୟ ଅଲଗା କରାଯାଇ ନପାରେ । ଗଙ୍ଗାରେ ପଡ଼ିବାପୂର୍ବରୁ କେହି ଏହି ଛୋଟ ନଦୀଟିକୁ ସେତେ ପବିତ୍ର ମନେକରି ନଥାନ୍ତି । ସଦ୍‌ଗୁରୁଙ୍କ ଶରଣାପନ୍ନ ଶିଷ୍ୟ ସମ୍ପର୍କରେ ଠିକ୍ ଏହା କୁହାଯାଇପାରେ । ସଦ୍‌ଗୁରୁଙ୍କ କୃପାଲାଭ ପରେ ଶିଷ୍ୟର ଶିଷ୍ୟତ୍ୱ ଶେଷହୁଏ । ସେ ନିଜେ ସଦ୍‌ଗୁରୁ ସ୍ୱାମୀ ହୋଇଯାଏ ।

ସ୍ପର୍ଶମଣି ଯେଉଁ ଲୁହାକୁ ସୁନା କରିଦିଏ ତାକୁ ତାର ଗୁଣଟିକୁ ଦେଇ ଦିଏ ନାହିଁ । ଅର୍ଥାତ୍ ସ୍ୱର୍ଣ୍ଣ ପାଲଟିଥିବା ଲୁହା ଇଚ୍ଛା କଲେ ମଧ୍ୟ ଅନ୍ୟକୁ ସୁନା କରି ନପାରେ; କିନ୍ତୁ ଯିଏ ସଦ୍‌ଗୁରୁଙ୍କର ପ୍ରକୃତ ସେବକ, ସିଏ ଅନେକ ଲୋକଙ୍କୁ ବ୍ରହ୍ମଜ୍ଞାନର ଉପଦେଶ ଦେବାର ଅଧିକାରୀ ହୋଇଥାଏ । ଅର୍ଥାତ୍ ସଦ୍‌ଗୁରୁଙ୍କ କୃପାରେ ଶିଷ୍ୟ ମଧ୍ୟ ସଦ୍‌ଗୁରୁ ହୋଇ ଯାଇପାରେ । ତେଣୁ ସ୍ପର୍ଶମଣିର ଗୁଣ

ସହିତ ସଦ୍‌ଗୁରୁଙ୍କ ଗୁଣ ତୁଳନୀୟ ନୁହଁ । ତାଙ୍କ ଗୁଣକୁ ସ୍ପର୍ଶମଣିର ଉପମା ଦିଆଯାଇ ନପାରେ । ସଦ୍‌ଗୁରୁଙ୍କୁ ସାଗରର ଉପମା ମଧ୍ୟ ଦିଆଯାଇ ନପାରେ । କାରଣ ସମୁଦ୍ରର ଜଳ ଲୁଣିଆ, ତାଛଡ଼ା ଏହା କେତେବେଳେ ଶାନ୍ତ ତ କେତେବେଳେ ଭୀଷଣ ଅଶାନ୍ତ । କିନ୍ତୁ ସଦ୍‌ଗୁରୁ ସର୍ବଦା ଶାନ୍ତ । ସେ ଅମୃତ-ମୋକ୍ଷ ସ୍ୱରୂପ ଅତ୍ୟନ୍ତ ମଧୁର ।

ତାଙ୍କୁ କ୍ଷୀରସାଗର ସହିତ ମଧ୍ୟ ତୁଳନା କରାଯାଇ ନପାରେ । କାରଣ କଳ୍ପାନ୍ତ ସମୟରେ କ୍ଷୀର ସାଗରର ମଧ୍ୟ ବିନାଶ ଘଟିଥାଏ । କିନ୍ତୁ ସଦ୍‌ଗୁରୁ-ସ୍ୱରୂପ ଚିରଶାଶ୍ୱତ । ତାଙ୍କୁ ସୁମେରୁ ପର୍ବତ ସହିତ ମଧ୍ୟ ତୁଳନା କରାଯାଇନପାରେ । କାରଣ ଏହି ପର୍ବତ ହେଉଚି ଜଡ଼, କଠୋର ପାଷାଣମୟ । କିନ୍ତୁ ସଦ୍‌ଗୁରୁଙ୍କ ହୃଦୟ ଅତ୍ୟନ୍ତ କୋମଳ । ଧୈର୍ଯ୍ୟ ଓ ସହିଷ୍ଣୁତା ଲାଗି ତାଙ୍କୁ ପୃଥିବୀ ସହିତ ତୁଳନା କରିବା ମଧ୍ୟ ବୃଥା । କାରଣ ପ୍ରଳୟକାଳରେ ପୃଥିବୀ ନିଶ୍ଚିହ୍ନ ହୋଇପଡ଼େ । ତେଜସ୍ୱୀ ଭାବେ ସୂର୍ଯ୍ୟଙ୍କ ସହିତ ମଧ୍ୟ ତାଙ୍କୁ ତୁଳନା କରାଯାଇ ନପାରେ । କାରଣ ସୂର୍ଯ୍ୟଙ୍କ ପ୍ରକାଶକୁ ମର୍ଯ୍ୟାଦା ଦିଆଯାଇଥାଏ କିନ୍ତୁ ସଦ୍‌ଗୁରୁଙ୍କ ଜ୍ଞାନ-ପ୍ରକାଶ ବା ଜ୍ଞାନାଲୋକ ମର୍ଯ୍ୟାଦାତୀତ । ଏହାକୁ ପ୍ରଶଂସା କରିବାପାଇଁ ଭାଷା ନାହିଁ ।

ଜଳ ସହିତ ମଧ୍ୟ ସଦ୍‌ଗୁରୁଙ୍କୁ ତୁଳନା କରାଯାଇ ନପାରେ । କାରଣ କଳ୍ପାନ୍ତରେ ଏହା ଶୁଖି ନଷ୍ଟ ହୋଇଯାଏ । କିନ୍ତୁ ସଦ୍‌ଗୁରୁଙ୍କ ସ୍ୱରୂପ ନିଶ୍ଚଳ, ଅବିନାଶୀ । ସଦ୍‌ଗୁରୁଙ୍କୁ ଅମୃତ ସହିତ ମଧ୍ୟ ତୁଳନା କରାଯାଇ ନପାରେ । କାରଣ ଯିଏ ଅମୃତପାନ କରାଏ, ଶେଷରେ ତାର ମଧ୍ୟ ମୃତ୍ୟୁ ଘଟେ । କିନ୍ତୁ ସଦ୍‌ଗୁରୁଙ୍କ କୃପାଦ୍ୱାରା ଶିଷ୍ୟ ଅମର ହୋଇ ଉଠେ ।

ଧର ତାଙ୍କୁ କଳ୍ପତରୁ ସହିତ ତୁଳନା କରିବା କିନ୍ତୁ ତାହା କ'ଣ ଠିକ୍ ? କଳ୍ପତରୁ କେବଳ ଇଚ୍ଛାନୁସାରେ ଫଳପ୍ରଦାନ କରେ । କିନ୍ତୁ ସଦ୍‌ଗୁରୁମାତ୍ରେ ଇଚ୍ଛାର ପରିସମାପ୍ତି ଘଟାଇ ନିର୍ବିକଳ୍ପ ପଦ ପ୍ରଦାନ କରିଥାଆନ୍ତି । ଯିଏ ନିର୍ବିକଳ୍ପ କଳ୍ପବୃକ୍ଷ ତାକୁ ଦେବ କ'ଣ ? ସେ ମଧ୍ୟ କଳ୍ପବୃକ୍ଷକୁ ସ୍ୱୀକାର କରିବେ କାହିଁକି ? ସଦ୍‌ଗୁରୁଙ୍କ କୃପାରେ ମନ ଯାହାର ଚିନ୍ତାମୁକ୍ତ ସେ ଚିନ୍ତାମଣିର ଇଚ୍ଛା କରିବ କିପରି ? ଯିଏ ନିଷ୍କାମ, କାମଧେନୁଠାରୁ ଦୁଗ୍ଧପାନ କରିବାର ତା'ର ଆବଶ୍ୟକତା କ'ଣ ?

ସଦ୍‌ଗୁରୁଙ୍କୁ ଲକ୍ଷ୍ମୀବନ୍ତପୁରୁଷ ବୋଲି ମଧ୍ୟ କୁହାଯାଇ ନପାରେ । କାରଣ ଲକ୍ଷ୍ମୀ କାହାପାଖରେ ସ୍ଥିର ହୋଇ ରହନ୍ତି ନାହିଁ । ତେଣୁ ତାଙ୍କ ନାଁ ଚଞ୍ଚଳା, ସେ

ମଧ୍ୟ ବିନାଶଶୀଳା । ତାଛଡ଼ା ମୋକ୍ଷଲକ୍ଷ୍ମୀ ତ ସଦ୍‌ଗୁରୁଙ୍କ ଦ୍ୱାରଦେଶରେ ସର୍ବଦା ହାତଯୋଡ଼ି ଠିଆ ହୋଇ ରହିଥାଆନ୍ତି । ତେଣୁ ଲକ୍ଷ୍ମୀ ଯାହାର ସେବିକା ତାଙ୍କୁ ଲକ୍ଷ୍ମୀବନ୍ତ କୁହାଯିବ କିପରି ? ସ୍ୱର୍ଗଲୋକ, ଇନ୍ଦ୍ରବୈଭବ ସବୁ ଧ୍ୱଂସଶୀଳ । କାଳାନ୍ତର ସମୟରେ ଏସବୁ ନଷ୍ଟ ହୋଇଥାଏ, କିନ୍ତୁ ସଦ୍‌ଗୁରୁଙ୍କ କୃପାରୁ ଲାଭ କରାଯାଇଥିବା ସୁଫଳ କେବେହେଲେ ନଷ୍ଟ ହୁଏନାହିଁ । ସୃଷ୍ଟି ମାତ୍ରେ ବିନାଶଶୀଳ । ତେଣୁ ସୃଷ୍ଟିର ପଦାର୍ଥ ସହିତ ସଦ୍‌ଗୁରୁଙ୍କ ତୁଳନା କରାଯିବ କିପରି ? ପଞ୍ଚମହାଭୂତର କ୍ରିୟାକଳାପ ସଦ୍‌ଗୁରୁଙ୍କ ଉପରେ କୌଣସି ପ୍ରଭାବ ପକାଇ ନପାରେ । ତେଣୁ ସଦ୍‌ଗୁରୁଙ୍କ ବର୍ଣ୍ଣନା ଅସମ୍ଭବ । ବେଶ୍, ସଦ୍‌ଗୁରୁଙ୍କ ଚରଣରେ ଏତିକି ମୋର ସ୍ତୁତି । କେବଳ ଅନ୍ତର୍ନିଷ୍ଠ ପୁରୁଷହିଁ ସଦ୍‌ଗୁରୁଙ୍କ ଅନ୍ତର୍ସ୍ଥିତିକୁ ଚିହ୍ନିପାରେ ।

## ପଞ୍ଚମ ସମାସ
## ।। ସନ୍ଥ-ସ୍ତବନ ।।

ସର୍ବଗୁଣସମ୍ପନ୍ନ ପରମାର୍ଥ ଆସନରେ ଅଧିରୂଢ଼ ସତ୍‌ପୁରୁଷଙ୍କୁ ମୋର ନମସ୍କାର । ସର୍ବସାଧାରଣଙ୍କ ପକ୍ଷରେ ଗୁପ୍ତ ଆତ୍ମଜ୍ଞାନ ଏହାଙ୍କ ଦ୍ୱାରା ପ୍ରକଟିତ ହୋଇଥାଏ । କେବଳ ସଦ୍‌ଗତି ଦ୍ୱାରା ଅତ୍ୟନ୍ତ ଦୁର୍ଲ୍ଲଭ ଏବଂ ଅପୂର୍ବ ପରବ୍ରହ୍ମଙ୍କ ପ୍ରାପ୍ତି ସୁଲଭ ହୁଏ । ଅବଶ୍ୟ ପ୍ରରବ୍ରହ୍ମ ପ୍ରକଟିତ କିନ୍ତୁ ସ୍ଥୂଳଦୃଷ୍ଟିରେ ଏହା କାହାକୁ ଦେଖାଯାଏ ନାହିଁ । ବହୁ କଠିନ ସାଧନା ତପସ୍ୟା କଲେ ମଧ୍ୟ ଏହାଙ୍କୁ କେହି ପାଇ ପାରନ୍ତି ନାହିଁ । ବଡ଼ ବଡ଼ ପରୀକ୍ଷକମାନେ ମଧ୍ୟ ବ୍ୟର୍ଥ ହୁଅନ୍ତି, ଆଖି ଥିଲେ ମଧ୍ୟ ଅନ୍ଧ ହୋଇ ପଡ଼ନ୍ତି । ସେମାନେ ଆତ୍ମବସ୍ତୁକୁ ଦେଖିଲେ ମଧ୍ୟ ପାଇ ପାରନ୍ତି ନାହିଁ । ଦୀପାଲୋକରେ କିମ୍ବା ଅନ୍ୟ କୌଣସି ଆଲୋକରେ ସେ ଦେଖାଦିଅନ୍ତି ନାହିଁ । ଆଖିରେ ଅଞ୍ଜନ ଲଗେଇଲେ ମଧ୍ୟ ତାଙ୍କୁ ଦେଖିବା ସମ୍ଭବ ନୁହଁ । ଷୋଳକଳାରେ ପ୍ରକାଶିତ ପୂର୍ଣ୍ଣଚନ୍ଦ୍ର କିମ୍ବା ପ୍ରଖର ସୂର୍ଯ୍ୟକିରଣ ଦ୍ୱାରା ମଧ୍ୟ ତାହା ଦୃଷ୍ଟି ଗୋଚର ହୁଏ ନାହିଁ । ଅଥଚ ଏହି ପରବ୍ରହ୍ମ ତଥା ପରମାତ୍ମ ବସ୍ତୁକୁ ସାଧୁସନ୍ଥମାନଙ୍କ ସତ୍‌ସଙ୍ଗ ଦ୍ୱାରା ସାଧକମାନେ ସହଜରେ ପାଇପାରନ୍ତି । ଯେଉଁ ଆତ୍ମବସ୍ତୁ ତଥା ଆତ୍ମତତ୍ତ୍ୱକୁ ପାଇବାଲାଗି ଅନୁମାନ ଯଥେଷ୍ଟ ନୁହେଁ, ଅର୍ଥାତ୍ ଯାହାକୁ ଧାରଣା କରିହେବନାହିଁ; ଯାହାକୁ ପାଇବା ଲାଗି ପ୍ରଯତ୍ନ ଓ ତର୍କ କୁଣ୍ଠିତ,

ବିବେକ ଓ ଶବ୍ଦ ଅସମର୍ଥ, ଯେଉଁଠି ମନର ଚପଳତା କୌଣସି କାମ ଦିଏନାହିଁ, ସହସ୍ରମୁଖବିଶିଷ୍ଟ ଶେଷନାଗ ଯାହାକୁ ବର୍ଣ୍ଣନା କରିକରି ଥକିଯାଆନ୍ତି; ସର୍ବଜ୍ଞାନର ଭଣ୍ଡାର ଯାହାକୁ ପ୍ରକଟିତ କରିବାଲାଗି ଅସମର୍ଥ, ସେହି ଆତ୍ମବସ୍ତୁକୁ ସନ୍ଥସଙ୍ଗତି ଦ୍ୱାରା ନିଜ ଅନୁଭୂତି ଫଳରେ ଜାଣିହୁଏ । ତେଣୁ ସତ୍‌ସଙ୍ଗର ମହିମାକୁ ଶବ୍ଦଦ୍ୱାରା ବର୍ଣ୍ଣନା କରିବ କିଏ ? ମାୟାର ଶକ୍ତି ବଡ଼ ଆଶ୍ଚର୍ଯ୍ୟଜନକ । ତଥାପି ମାୟା ମଧ୍ୟ ଏହି ଆତ୍ମବସ୍ତୁକୁ ଚିହ୍ନିପାରେ ନାହିଁ । ଏହି ମାୟାତୀତ ଅନନ୍ତ ପରମାତ୍ମା ଲାଭ ଲାଗି ସାଧୁସନ୍ଥମାନେ ହିଁ ମାର୍ଗ ପ୍ରଦର୍ଶନ କରିବାକୁ ସମର୍ଥ । ସାରାଂଶ ହେଉଛି, ଏହି ବସ୍ତୁର ବର୍ଣ୍ଣନା ଅସମ୍ଭବ । ଏହି ପରମାତ୍ମ ବସ୍ତୁ ସାଧୁସନ୍ଥମାନଙ୍କର ସ୍ୱରୂପ । ତେଣୁ ସାଧୁସନ୍ଥଙ୍କର ବର୍ଣ୍ଣନା କରିବା ମଧ୍ୟ କଠିନ ।

ସନ୍ଥମାତ୍ରେ ଆନନ୍ଦର ସାଗର । ସନ୍ଥ କେବଳ ସୁଖସ୍ୱରୂପ । ସେ ହେଉଛନ୍ତି ସନ୍ତୋଷର ମୂଳଭିତ୍ତି । ବିଶ୍ରାମ ଏବଂ ଭକ୍ତିର ଫଳଶ୍ରୁତି । ସେ ଧର୍ମର ଧର୍ମକ୍ଷେତ୍ର, ପୁଣ୍ୟର ପବିତ୍ରଧାମ ତଥା ପବିତ୍ର ମନ୍ଦିର । ବିବେକର ଭଣ୍ଡାର ସେ । ସାୟୁଜ୍ୟ ମୁକ୍ତିର ସଦନ ସେ । ସନ୍ଥଜନ ହେଉଛନ୍ତି ସତ୍ୟର ମୂର୍ତ୍ତିମାନ ସିଦ୍ଧାନ୍ତ । ମୋକ୍ଷର ଐଶ୍ୱର୍ଯ୍ୟ । ଜନ୍ମସଫଳତାର ସ୍ୱରୂପ ଏବଂ ସେ ଶ୍ରୀସମ୍ପନ୍ନ । ଅଗଣିତ ଦରିଦ୍ରଯୁବକଙ୍କୁ ସେ ପରମାର୍ଥର ନୃପତିପଦ ପ୍ରଦାନ କରିଥାନ୍ତି । ତେଣୁ ତାଙ୍କୁ ମହାନ-ସମର୍ଥ କୁହାଯାଉଥାଏ । ସେ ଅତି ଉଦାର ଏବଂ ଦାନବୀର । ଯାହାଙ୍କ ମହିମା ଏହିଭଳି ଅପାର, ସେଭଳି ସନ୍ଥଙ୍କୁ ସଦ୍‌ବିଚାର ଦାନ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।

## ଷଷ୍ଠ ସମାସ
## ।। ଶ୍ରୋତା-ସ୍ତବନ ।।

ଏବେ ଭକ୍ତ, ଜ୍ଞାନୀ, ସନ୍ଥ, ସାଧୁଜନ, ଯୋଗୀ, ବୈରାଗୀ, ଗୁଣୀ, ସତ୍ୟନିଷ୍ଠ ପ୍ରମୁଖ ବହୁ ପ୍ରକାରର ଶ୍ରୋତାଙ୍କୁ ମୋର ନମସ୍କାର । ଶ୍ରୋତାଙ୍କ ମଧ୍ୟରୁ କିଏବା ସତ୍ୟବାଦୀ, କେହି କେହି ଅତି ବୁଦ୍ଧିମାନ, କେହି କେହି ଅନେକ ଶବ୍ଦରତ୍ନର ଖଣି ସ୍ୱରୂପ । କେହି କେହି ଅନେକ ପ୍ରକାରର ଅର୍ଥରୂପୀ ଅମୃତର ଭୋକ୍ତା । କେହି କେହି ପ୍ରସିଦ୍ଧ ବକ୍ତା ମଧ୍ୟ । ଏହିଭଳି ଶ୍ରୋତାମଣ୍ଡଳୀଙ୍କ ଦ୍ୱାରା ଜନସଭା

ଶୋଭାମଣ୍ଡିତ । ଏହି ସଭାର ଶ୍ରୋତାମାନେ ଆତ୍ମସ୍ୱରୂପ ପ୍ରତି ଅତ୍ୟନ୍ତ ସାବଧାନ, ଭୂତଭବିଷ୍ୟ ଓ ବର୍ତ୍ତମାନର ଜ୍ଞାତା, ନିରହଂକାରୀ ଏବଂ ଆତ୍ମନିଷ୍ଠ । ସମସ୍ତ ବିଷୟକୁ ସେମାନେ ଟିକିନିଖି ଭାବରେ ନିରୀକ୍ଷଣ କରିଛନ୍ତି । ପ୍ରତ୍ୟେକ ପଦାର୍ଥର ସୂକ୍ଷ୍ମ ବିଚାର ସମସ୍ତଙ୍କ ମନରେ ନିଶ୍ଚିତ ଭାବରେ ରହିଛି । ମୁଁ ସେମାନଙ୍କୁ ଯାହା ଯାହା କହିବା ପାଇଁ ଚାହୁଁଛି ସେମାନେ ଆଗରୁ ସେସବୁ ବିଷୟ ଭଲଭାବରେ ଜାଣନ୍ତି । ଏହି ସର୍ବଗୁଣସମ୍ପନ୍ନ ଶ୍ରୋତାମାନଙ୍କୁ ମୁଁ ଜ୍ଞାତା ଭାବରେ କ'ଣ ବା ନିବେଦନ କରିବି ? ତଥାପି ମୋର ଶ୍ରୋତାମାନେ ଗୁଣଗ୍ରାହକ ହୋଇଥିବାରୁ ମୁଁ ନିର୍ଭୟ, ନିଃଶଙ୍କ ଭାବରେ ସେମାନଙ୍କୁ ଯାହା ଜାଣେ ତାହା କହିବା ପାଇଁ ସାହସ କରୁଛି । ଯେଉଁମାନେ ବଡ଼ ଓ ମହତ୍ ସେମାନେ ସବୁ ବିଷୟ ଆହରଣ କରିଥାନ୍ତି । ପ୍ରତ୍ୟେହ ସୁମିଷ୍ଟ ଦିବ୍ୟଭୋଜନ କରୁଥିବା ଲୋକେ ସମୟେ ସମୟେ ରୁଚି ପରିବର୍ତ୍ତନ ଲାଗି ଅତି ସାଦା ଆହାର କରିଥାନ୍ତି । ସେହିଭଳି ମୋର ଏହି ପ୍ରାକୃତ ବଚନକୁ କେହି ପାଣ୍ଡିତ୍ୟପୂର୍ଣ୍ଣ ମନେ କରିବା ଠିକ୍ ନୁହେଁ । ସାଦା ଆହାର ଭଳି ରୁଚି ପରିବର୍ତ୍ତନ ଲାଗି ମୁଁ ଶ୍ରୋତାମାନଙ୍କୁ ମୋ କଥା କଥିତ ଭାଷାରେ ଶୁଣାଉଛି ।

ଶାସ୍ତ୍ରରେ କୁହାଯାଇଚି ଶକ୍ତି ଅନୁସାରେ ଭକ୍ତିପୂର୍ବକ ପରମେଶ୍ୱରଙ୍କ ପୂଜା ଅର୍ଚ୍ଚନା କରିବ । କିନ୍ତୁ ପୂଜା ସାମଗ୍ରୀ କମ ହୋଇ ଯାଇଥିଲେ ପୂଜା କର ନାହିଁ ବୋଲି କୌଣସି ଶାସ୍ତ୍ରରେ କୁହାଯାଇ ନାହିଁ । ମୁଁ ହେଉଚି ବଚନ-ଦରିଦ୍ର, ଆଉ ଶ୍ରୋତାମାନେ ହେଉଚନ୍ତି ପରମେଶ୍ୱର ସ୍ୱରୂପ । ଯିଏ ଯାହା କହନ୍ତୁ ନା କାହିଁକି, ମୁଁ ସମସ୍ତଙ୍କୁ ପୂଜା କରିବାକୁ ଚାହେଁ । ବିଧିବଦ୍ଧ ଶାସ୍ତ୍ରାଧ୍ୟୟନ, ବିଦ୍ୟା, କଳା, ଚାତୁରୀ, କବିତ୍ୱ, ଭକ୍ତି, ଜ୍ଞାନ, ବୈରାଗ୍ୟ, ବାଗ୍ମିତାର ମଧୁରତା— ସେଥିମଧ୍ୟରୁ ଗୋଟିଏ ହେଲେ ଗୁଣ ମୋ ଠାରେ ନାହିଁ । ଯାହାଠି ଏହି ସୁଗୁଣ ବିଲକୁଲ ନାହିଁ, ସେପରି ଲୋକ ମୁଁ । ତେଣୁ ମୋ ବାଗ୍‌ବିଳାସ (ଭାଷଣ) କ'ଣ ହେବ ସହଜେ ଅନୁମେୟ । ତଥାପି ମୁଁ ଜଗଦୀଶ-ଭାବ ଲାଗି ଭୋକିଲା ଲୋକ ଭଳି ବିକଳ । ଏକଥା ଜାଣି ମୁଁ ଲମ୍ବାଚୌଡ଼ା କଥା କହିବାକୁ ଏଠାରେ ଉପସ୍ଥିତ ।

ହେ ଶ୍ରୋତାଗଣ ! ଆପଣମାନେ ପ୍ରତ୍ୟକ୍ଷ ଜଗଦୀଶ୍ୱରଙ୍କ ପ୍ରତୀକ । ଆପଣଙ୍କ ସମ୍ମୁଖରେ ମୋର ବିଦ୍ୟାବୁଦ୍ଧି ସୂର୍ଯ୍ୟାଲୋକରେ ଜୁଳୁଜୁଳିଆ ପୋକ

ଭଳି । ମୁଁ ନିର୍ବୋଧ ଓ ମନ୍ଦମତି । ତଥାପି ଆପଣମାନଙ୍କ ନିକଟରେ କଥା କହିବାକୁ ଚେଷ୍ଟା କରୁଚି । କୌଣସି ପ୍ରତିଭାଶାଳୀ ବଡ଼ଘରର ପୁଅ ମୂର୍ଖ ହେଲେ ବି ବାପର ବଳରେ ବଳୀୟାନ ହୋଇଥାଏ । ସେହିଭଳି ଆପଣମାନଙ୍କ ଭଳି ସାଧୁସନ୍ଥଙ୍କ ବାଳକପୁତ୍ର ଭାବରେ ମୁଁ ଆପଣମାନଙ୍କ ସମ୍ମୁଖରେ ଭାଷଣ ଦେଉଚି । ସିଂହ, ବାଘ ଆଦି ହିଂସ୍ର ତଥା ଭୟଙ୍କର ପ୍ରାଣୀମାନଙ୍କୁ ଦେଖିବାମାତ୍ରେ ଲୋକେ ଭୟରେ ଦୌଡ଼ି ପଳାନ୍ତି, କିନ୍ତୁ ସିଂହ ଓ ବାଘ ଛୁଆ ନିର୍ଭୟରେ ସେମାନଙ୍କ ମା ବାପାଙ୍କ ଆଗରେ ଖେଳୁଥାନ୍ତି । ସେହିଭଳି ମୁଁ ସାଧୁସନ୍ଥଙ୍କ ବାଳକ ଭାବରେ ଆପଣମାନଙ୍କ ଭଳି ସାଧୁସନ୍ଥଙ୍କ ସମ୍ମୁଖରେ କଥା କହୁଚି । ଯଦି କିଛି କମ ବେଶୀ କହିପକାଏ ତାହାହେଲେ ଆପଣମାନଙ୍କ ସନ୍ତାନ ମନେ କରି ନିଜର କ୍ଷମାଗୁଣରେ ମତେ କ୍ଷମା କରିବାକୁ ନିବେଦନ । କ୍ଷମା କରିବା ହେଉଚି ପ୍ରେମର ଲକ୍ଷଣ । ଇଏ ହେଉଚି ମନର ସହଜ ପ୍ରବୃତ୍ତି । ଆପଣମାନେ ସାଧୁସନ୍ଥ ତଥା ବିଶ୍ୱର ମାଆବାପ । ତେଣୁ ମୋ ନିବେଦନକୁ ମନରେ ରଖି, ଏହାପରେ ଯାହା ଯାହା କହିବି ଆପଣମାନେ ମନ ଦେଇ ଶୁଣିବେ ବୋଲି ମୋର ଦୃଢ଼ ବିଶ୍ୱାସ । ଏତିକି ହେଉଚି ଆପଣମାନଙ୍କୁ ଏହି ଦାସାନୁଦାସର ବିନୀତ ପ୍ରାର୍ଥନା ।

## ସପ୍ତମ ସମାସ
## ।। କବୀଶ୍ୱର ସ୍ତବନ ।।

ଶବ୍ଦ-ସୃଷ୍ଟିର ଈଶ୍ୱର ଏବଂ ବେଦରୂପୀ ପରମେଶ୍ୱରଙ୍କ ସହିତ ସମାନ କବୀଶ୍ୱରଙ୍କୁ ମୋର ପ୍ରଣାମ । କବି ଯଥାର୍ଥରେ ସରସ୍ୱତୀଙ୍କ ନିବାସସ୍ଥଳ, ବହୁ କଳାର ଜୀବନ ଏବଂ ଅନେକ ଶବ୍ଦର ମନ୍ଦିର । ପରମେଶ୍ୱରଙ୍କ ଅଗାଧଲୀଳା ତଥା ତାଙ୍କର ଯଶ ଗୌରବ ବର୍ଣ୍ଣନା କରିବା ଲାଗିହିଁ କବିମାନଙ୍କୁ ସୃଷ୍ଟି କରାଯାଇଛି । କବି ହେଉଛନ୍ତି ଶବ୍ଦ-ରତ୍ନର ସାଗର, ମୁକ୍ତିରୂପକ ମୋତିର ସରୋବର ଏବଂ ବହୁପ୍ରକାର ବୁଦ୍ଧିସମ୍ପଦର ଭଣ୍ଡାର । କବିଗଣ ଅଧ୍ୟାତ୍ମ-ଗ୍ରନ୍ଥର ଖଣି ଏବଂ ସବାକ୍ ଚିନ୍ତାମଣି । କାମଧେନୁର ଦୁଗ୍ଧସ୍ରୋତ କବିତା ରୂପରେ ଶ୍ରୋତାମାନଙ୍କ ଆଡ଼କୁ ପ୍ରବାହିତ ହୋଇଥାଏ । ଜ୍ଞାନୀ ପୁରୁଷର ପରମାର୍ଥ କବିରୂପରେ ପ୍ରତ୍ୟକ୍ଷଭାବରେ ପ୍ରକଟିତ ହୋଇଥାଏ । କବିହିଁ ନିର୍ଗୁଣ, ନିରଞ୍ଜନ

ପରବ୍ରହ୍ମଙ୍କୁ ଚିହ୍ନିତ କରିଥାଆନ୍ତି । ତେଣୁ କବି ହେଉଛନ୍ତି ମାୟାଭିନ୍ନ ପରମାତ୍ମା ସ୍ୱରୂପ । କବିଙ୍କ ରଚନା ଯୋଗୁଁ ବେଦର ରହସ୍ୟ ଭେଦ କରିବା, ଅଲଭ୍ୟ ପରମେଶ୍ୱରଙ୍କୁ ଲାଭ କରିବା ଏବଂ ଆତ୍ମବୋଧ ସମ୍ଭବ ଓ ସହଜ ହୋଇପାରୁଛି । କବି ହେଉଚନ୍ତି ମୁମୁକ୍ଷୁର ଚକ୍ଷୁ ଉନ୍ମୀଳକ-ଅଞ୍ଜନ । ସେ ସାଧକଙ୍କୁ ସାଧନମାର୍ଗ ଦେଖାଇ ଥାଆନ୍ତି । ସମସ୍ତ ପ୍ରକାର ସିଦ୍ଧିର ନିଶ୍ଚୟାତ୍ମକ ସମାଧାନ କରିଥାଆନ୍ତି ସେ । କବି ବୈରାଗ୍ୟର ସଂରକ୍ଷକ ଓ ଭକ୍ତମାନଙ୍କ ଭୂଷଣ । ସ୍ୱଧର୍ମର ରକ୍ଷକ ମଧ୍ୟ ଏହି କବି । କବି ହେଉଛନ୍ତି ଯୋଗୀମାନଙ୍କ ପ୍ରେମ-ଭାବନା, ଧ୍ୟାନ-ଧାରକର ଧ୍ୟାନ ଏବଂ ଉପାସକମାନଙ୍କ ଉପାସନା ।

କବିମାନଙ୍କଦ୍ୱାରାହିଁ ସଭା ଶୋଭା ପାଇଥାଏ । କବି ହେଉଚନ୍ତି ଦେବ-ଦେବୀମାନଙ୍କୁ ନାମ ଓ ରୂପ ଦେବାର କାରିଗର ଏବଂ ଋଷିମାନଙ୍କ ମହିମାର ଗାୟକ ଏବଂ ଶାସ୍ତ୍ରମାନଙ୍କ ସାମର୍ଥ୍ୟ ବର୍ଣ୍ଣନାର ଉଦ୍‌ଘୋଷକ । ମହାନ୍ କବିମାନଙ୍କଦ୍ୱାରା ଯଦି ବଡ଼ବଡ଼ ଉତ୍ତମରୁ ଉତ୍ତମ କାବ୍ୟଗ୍ରନ୍ଥ ରଚନା କରାଯାଇ ନ ଥାଆନ୍ତା ତେବେ ଜଗତର ଉଦ୍ଧାର କାର୍ଯ୍ୟ ସାଧିତ ହୁଅନ୍ତା କିପରି ? ସୁତରାଂ କବି ହେଉଚନ୍ତି ସମଗ୍ର ସୃଷ୍ଟିର ଆଧାର । ଅନେକ ବିଦ୍ୟା ଓ ଜ୍ଞାନ କବୀଶ୍ୱରଙ୍କ ବ୍ୟତୀତ ପାଇବା ସମ୍ଭବ ହୁଅନ୍ତା ନାହିଁ । କବିମାନଙ୍କଠାରୁହିଁ ସବୁ ବିଷୟରେ ଜ୍ଞାନ ଲାଭ ହୋଇଥାଏ । ପ୍ରାଚୀନ କାଳରେ ବ୍ୟାସ, ବାଲ୍ମୀକି ପ୍ରଭୃତି ବହୁ ମହାନ୍‌କବିଙ୍କ କାବ୍ୟକୃତୀ ଯୋଗୁଁହିଁ ଜନସାଧାରଣଙ୍କର ବିବେକବୁଦ୍ଧି ହୋଇପାରିଚି । ବଡ଼ ବଡ଼ କବିମାନେ ପ୍ରାଚୀନ କାଳରେ ବହୁ ମହାକାବ୍ୟ ରଚନା କରିଥିଲେ । ଫଳରେ ପରେ ଅନ୍ୟ ପଣ୍ଡିତମାନେ ବ୍ୟୁତ୍ପତ୍ତି ଲାଭ କରି ସୁଯୋଗ୍ୟ ହୋଇ ପାରିଛନ୍ତି । ସେହି କାବ୍ୟସବୁ ଅଧ୍ୟୟନ କରି କରି ପରବର୍ତ୍ତୀ କାଳରେ ବହୁ ଲୋକ କବି ହୋଇପାରିଚନ୍ତି । ବର୍ତ୍ତମାନ ଯେଉଁ କବିମାନେ ଅଛନ୍ତି ଏବଂ ଭବିଷ୍ୟତରେ ଯେଉଁମାନେ କବି ହେବେ ସେ ସମସ୍ତଙ୍କୁ ମୋର ନମସ୍କାର । କବି ହେଉଚନ୍ତି ଚାତୁର୍ଯ୍ୟର ମୂର୍ତ୍ତ ପ୍ରତୀକ ତଥା ସାକ୍ଷାତ୍ ବୃହସ୍ପତି । ବେଦ-ଶ୍ରୁତି ଆଦି ମଧ୍ୟ କବି ମୁଖରେ ପ୍ରକଟିତ ହେବା ଲାଗି କାମନା କରିଥାଆନ୍ତି । କବି ରୂପରେ ଅମୃତ-ପରିପୂର୍ଣ୍ଣ-ମେଘ ପୃଥିବୀ ଉପରେ ବର୍ଷା କରିଥାଏ । ତେଣୁ ଯିଏ ସର୍ବସୃଷ୍ଟିର ଆଧାର ସେହି କବିଙ୍କୁ ମୋର ସାଷ୍ଟାଙ୍ଗ ନମସ୍କାର ।

## ଅଷ୍ଟମ ସମାସ
## ।। ସଭା-ସ୍ତବନ ।।

ନାହଂ ବସାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ ।
ମଦ୍‌ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।।

ଯେଉଁ ସଭା ପାଇଁ ସ୍ୱୟଂ ଜଗଦୀଶ୍ୱର ବାଟ ଚାହିଁ ରହିଥାନ୍ତି ଏବଂ ଯାହାଫଳରେ ମୁକ୍ତି ସୁଲଭ ହୋଇଥାଏ, ସେହିଭଳି କୀର୍ତ୍ତନ କରାଯାଉଥିବା, ପୁରାଣ ପାଠ କରାଯାଉଥିବା ଏବଂ ଶାସ୍ତ୍ର ଆଲୋଚନା କରାଯାଉଥିବା ଭକ୍ତସଭାକୁ ମୋର ନମସ୍କାର । ଭଗବାନ ସ୍ୱୟଂ କହିଛନ୍ତି, "ହେ ନାରଦ ! ମୋତେ କଦାଚିତ ବୈକୁଣ୍ଠରେ ପାଇପାରିବ ନାହିଁ । ଯୋଗୀମାନଙ୍କ ହୃଦୟରେ ମଧ୍ୟ ପାଇ ନ ପାର । କିନ୍ତୁ ଯେଉଁ ସ୍ଥାନରେ ମୋର ପ୍ରିୟ ଭକ୍ତମାନେ ମୋର ନାମକୀର୍ତ୍ତନ କରିଥାନ୍ତି ସେଠାରେ ମୋତେ ନିଶ୍ଚୟ ପାଇବ ।" ତେଣୁ ଯେଉଁଠି ଭକ୍ତମାନେ ଭଗବାନଙ୍କ ଗୁଣକୀର୍ତ୍ତନ ଓ ନାମକୀର୍ତ୍ତନ କରିଥାନ୍ତି ତଥା ଭଗବାନଙ୍କର ଜୟଗାନ କରିଥାନ୍ତି ସେହି ସଭା ହେଉଛି ଶ୍ରେଷ୍ଠ । ଏହାହିଁ ପ୍ରତ୍ୟକ୍ଷ ବୈକୁଣ୍ଠ । ଏହି ସଭାମାନଙ୍କରେ ମୋ ପ୍ରିୟ ଭକ୍ତମାନେ ସର୍ବଦା ନାମକୀର୍ତ୍ତନ କରିଥାନ୍ତି । ଭଗବାନଙ୍କ କଥାହିଁ ବର୍ଣ୍ଣନା କରିଥାନ୍ତି । ହରିଙ୍କ ଗୁଣଗାନ କରିଥାନ୍ତି । ସେଠାରେ ବେଦର ବ୍ୟାଖ୍ୟା କରାଯାଇଥାଏ । ଅନେକେ ପୁରାଣଚର୍ଚ୍ଚା କରିଥାନ୍ତି, ଆଉ ଅନେକେ ତାକୁ ଶୁଣୁଥାନ୍ତି । ପରମେଶ୍ୱରଙ୍କ ଗୁଣାନୁବାଦ କରିଥାଆନ୍ତି । ସେଠାରେ ସବୁଠାରୁ ସୁସମ୍ବାଦ ହେଉଛି ଆଧ୍ୟାତ୍ମ-ନିରୂପଣ । ଅର୍ଥାତ୍ ସେଠାରେ ଅଧ୍ୟାତ୍ମଶାସ୍ତ୍ର ଉପରେ ବିଭିନ୍ନ ବିଷୟରେ ଚର୍ଚ୍ଚା ହୋଇଥାଏ ।

ଏହି ସଭାମାନଙ୍କରେ ବହୁ ପ୍ରକାରର ଅଭିଳାଷ ମେଣ୍ଟିଥାଏ । ବହୁ ସମସ୍ୟାର ସମାଧାନ ହୋଇଥାଏ । ଭକ୍ତମାନଙ୍କର ସମ୍ଭାଷଣଚାତୁରୀ ଦ୍ୱାରା ମନୁଷ୍ୟ ମନରେ ଧ୍ୟାନମୂର୍ତ୍ତି ସ୍ଥିର ହୋଇଥାଏ । ଭଗବାନଙ୍କ ପ୍ରିୟ ଭକ୍ତମାତ୍ରେ ପ୍ରେମୀ, ଭାବସମ୍ପନ୍ନ, ସଭ୍ୟ, ଗମ୍ଭୀର, ସାତ୍ତ୍ୱିକ, ରମଣୀୟ, ରସିକ, ଗୀତିକାର, ସୁଗାୟକ, ନିଷ୍ଠାବାନ, କର୍ମନିଷ୍ଠ, ଆଚାରଶୀଳ, ଦାନବୀର, ଧାର୍ମିକ, ପବିତ,

ପୁଣ୍ୟବାନ, ନିର୍ମଳହୃଦୟ, କୃପାବାନ, ଯୋଗୀ, ବୈରାଗ୍ୟସମ୍ପନ୍ନ, ଅନାସକ୍ତ, ନିତ୍ୟନେମୀ, ନିଗ୍ରହୀ, ତପସ୍ୱୀ, ତ୍ୟାଗୀ, ନିସ୍ପୃହ, ଅରଣ୍ୟବାସୀ, ସନ୍ନ୍ୟାସୀ, ଉପାସକ, ସନ୍ଥ, ସଜ୍ଜନ, ବିଦ୍ୱାନ, ବେଦଜ୍ଞ, ଶାସ୍ତ୍ରବିତ୍, ମହାତ୍ମା, ସର୍ବଜ୍ଞ, ଋଷିପ୍ରବର, ଦୂରଦର୍ଶୀ, ତତ୍ତ୍ୱବିତ୍ ଏବଂ ଏହିମାନେ ହିଁ ସଭାକୁ ମଣ୍ଡନ କରିଥାନ୍ତି । ଏହି ସଭାମାନଙ୍କରେ ନିତ୍ୟ କ'ଣ ଅନିତ୍ୟ କ'ଣ ଜାଣିପାରୁଥିବା ଭଳି ବିବେକ ସମ୍ପନ୍ନ ବହୁ ବିଶିଷ୍ଟ ବ୍ୟକ୍ତି ଯୋଗଦାନ କରିଥାନ୍ତି । ଏମାନଙ୍କ ମହିମା ଅପୂର୍ବ । ଯେଉଁଠାରେ ପରମାର୍ଥ ସାଧକମାନେ ଉପସ୍ଥିତ ସେଠାରେ ଲୋକେ ସହଜରେ ବିଷୟ-ପଙ୍କରୁ ଉଦ୍ଧାର ପାଇଥାନ୍ତି । ନାନାବିଦ୍ୟା, ନାନାକଳା- ସମ୍ପନ୍ନ ସଦ୍‌ଗୁଣଯୁକ୍ତ ଭଗବାନଙ୍କ ପ୍ରିୟଭକ୍ତ ଏହି ସଭାମାନଙ୍କରେ ଏକତ୍ରିତ ହୋଇଥାନ୍ତି । ଯେଉଁ ଭକ୍ତମାନଙ୍କ ସତ୍‌ସଙ୍ଗ ଫଳରେ ମନର ସମସ୍ତ ସନ୍ଦେହମୋଚନ ହୋଇଥାଏ, ସେହି ସତ୍‌ସଙ୍ଗ ସଭାକୁ ମୋର ନମସ୍କାର । ଯେଉଁଠାରେ ପ୍ରଭୁଙ୍କର ନାମକୀର୍ତ୍ତନ ହୋଇଥାଏ ସେହି ସଭାକୁ ମୋର ପ୍ରଣାମ ।

## ନବମ ସମାସ
## ।। ପରମାର୍ଥ-ସ୍ତବନ ।।

ବର୍ତ୍ତମାନ ପରମାର୍ଥର ସ୍ତବନ କରାଯାଉଛି । ପରମାର୍ଥ ହେଉଛି ପ୍ରକୃତ ସାଧକର ହିତକାରୀ । ସବୁ ଯୋଗ ମଧ୍ୟରେ ଶ୍ରେଷ୍ଠ ହେଉଛି ପରମାର୍ଥଯୋଗ । ଗୋଟିଏ ଦୃଷ୍ଟିରୁ ଦେଖିବାକୁ ଗଲେ ପରମାର୍ଥ ଅତ୍ୟନ୍ତ ସୁଲଭ । କିନ୍ତୁ ଲୋକେ ସନ୍ଥ ସମାଗମର ରହସ୍ୟ ଜାଣିନଥିବାରୁ ସେମାନଙ୍କ ପକ୍ଷରେ ଏହା ଦୁର୍ଲ୍ଲଭ ମନେ ହୁଏ । ଅନ୍ୟ ବହୁତ ସାଧନ ଶିକ୍ଷା କରିହେଉଥିଲେ ମଧ୍ୟ ପରମାର୍ଥ ଦ୍ୱାରା ଆତ୍ମସାକ୍ଷାତ ଶୀଘ୍ର ମିଳିଥାଏ । ବେଦ-ଶାସ୍ତ୍ରରେ ଯେଉଁ ସାରତତ୍ତ୍ୱ କୁହାଯାଇଛି ପରମାର୍ଥ ସାହାଯ୍ୟରେ ତାହା ପ୍ରତ୍ୟକ୍ଷ ଅନୁଭବ କରିହୁଏ । ପରବ୍ରହ୍ମ ପରମାତ୍ମା ଚତୁର୍ଦ୍ଦିଗରେ ପରିବ୍ୟାପ୍ତ । କିନ୍ତୁ ଚର୍ମଚକ୍ଷୁ ଦ୍ୱାରା ତାଙ୍କୁ ଆଦୌ ଦେଖି ହୁଏନାହିଁ । ସେ କାହା ସହିତ ଜଡ଼ିତ ନୁହନ୍ତି, ଅଲିପ୍ତ ସେ । ତେଣୁ ଏହାଙ୍କୁ ବାହ୍ୟିକ ଦୃଷ୍ଟିରେ ଦେଖିଲେ ଦେଖି ହୁଏନାହିଁ ।

ପରମାର୍ଥ ହେଉଛି ଆକାଶଭେଦୀ ସୂକ୍ଷ୍ମ ବିବେକଦ୍ୱାରା ଅହଂକାରରହିତ ହୋଇ ସଂସାର-ସାଗରକୁ ପାରିହେବାର ଗୁପ୍ତମାର୍ଗ । ପରମ ଶ୍ରେଷ୍ଠ ଯୋଗୀ ହିଁ ଏହି ମାର୍ଗକୁ ଜାଣିଥାଏ । ଅନ୍ୟମାନଙ୍କ ପକ୍ଷରେ ଏହା ସହଜ-ଉପଲବ୍‌ଧ ନୁହେଁ । ପରମାର୍ଥତତ୍ତ୍ୱ ହେଉଛି ସର୍ବସାର, ଉତ୍ତମରୁ ଉତ୍ତମ । ଏହା ଅଖଣ୍ଡ, ଅକ୍ଷୟ ଓ ଅପାର । ଏହାକୁ କେହି ଚୋରି କରି ନପାରନ୍ତି । ରାଜା, ଅଗ୍ନି କିମ୍ବା କୌଣସି ହିଂସ୍ରଜନ୍ତୁ ପ୍ରତି ଏହାର କୌଣସି ଭୟନାହିଁ । ପରବ୍ରହ୍ମ ଅଚଳ । ଏହା ପ୍ରତ୍ୟେକ ବ୍ୟକ୍ତିର ଅତି ଆପଣାର ନିଧି । ଅନନ୍ତକାଳ ଅତିବାହିତ ହେଲେ ମଧ ଏହାର କ୍ଷୟକ୍ଷତି ଘଟେ ନାହିଁ । ଗୁରୁକୃପାରୂପୀ ଅଞ୍ଜନ ବିନା ଖାଲି ଆଖିରେ ଏହା ଦେଖାଯାଏ ନାହିଁ । ଏହି ପରମାର୍ଥର ଅପୂର୍ବ ମହିମା ଅବର୍ଣ୍ଣନୀୟ । ଏହାକୁ ଯିଏ ଲାଭ କରେ ସେ ଜନ୍ମମୃତ୍ୟୁ ବନ୍ଧନରୁ ମୁକ୍ତ ହୁଏ ଏବଂ ସ୍ୱତଃ ସାଯୁଜ୍ୟ ମୁକ୍ତିର ଆନନ୍ଦ ଉପଭୋଗ କରେ । ବିବେକରୁ ମାତ୍ରାଜ୍ଞାନ ଦୂରୀଭୂତ ହୁଏ । କେବଳ ସାରବସ୍ତୁର ଉପଲବ୍‌ଧି ପରେ ଅନ୍ତର ଭିତରେ ପରବ୍ରହ୍ମର ଜ୍ୟୋତି ପ୍ରକାଶିତ ହୁଏ । ସର୍ବତ୍ର ବ୍ରହ୍ମହିଁ ଦେଖାଯାଏ । ଏହି ବ୍ରହ୍ମଭାଗରେ ସମଗ୍ର ବ୍ରହ୍ମାଣ୍ଡ ନିମଗ୍ନ ହୋଇ ପଞ୍ଚମହାଭୂତର ସବୁ ଲୀଳାଖେଳା ତୁଚ୍ଛ ଜଣାପଡ଼େ । ମନେହୁଏ ସାରା ସଂସାର ମିଥ୍ୟା, ସବୁ ମାୟା, ସବୁ କାଳ୍ପନିକ, ସବୁ ଭାସମାନ । ବିବେକ ବୁଦ୍ଧିଦ୍ୱାରା ଅନ୍ତର ଭିତରେ ଶୁଦ୍ଧଆତ୍ମାର ଦର୍ଶନ ମିଳେ ।

ଏହିଭଳି ଭାବରେ ବ୍ରହ୍ମସ୍ଥିତିର ଉପଲବ୍‌ଧିମାତ୍ରେ ମନରୁ ସବୁ ସଂଶୟ ତୁଟିଯାଏ । ଦୃଶ୍ୟସୃଷ୍ଟି ହେଉଥିବା ପୁରାତନ ପରଦା ହଟିଯିବା ପରେ ଯୋଗୀ ବ୍ରହ୍ମସ୍ୱରୂପରେ ଲୀନ ହୁଏ । ପରମାର୍ଥ ସମସ୍ତଙ୍କ ବିଶ୍ରାନ୍ତି ଓ ପ୍ରଶାନ୍ତିର ସ୍ଥଳ । ପରମାର୍ଥ ଦ୍ୱାରାହିଁ ଜନ୍ମ ସାର୍ଥକ ହୁଏ ଏବଂ ଏହା ସଂସାର-ସାଗର-ତାରଣ ନୌକା । ପରମାର୍ଥ ହିଁ ତପସ୍ୱୀ ଓ ସାଧକମାନଙ୍କ ଆଧାର । ଯିଏ ପରମାର୍ଥ ଲାଭ କରିପାରେ, ସେ ପ୍ରକୃତ ରାଜା ହୋଇଯାଏ । ଯିଏ ନପାରେ ସେ ଦରିଦ୍ର, ଭିକାରୀ ହୋଇ ରହିଥାଏ । ତେଣୁ ପରମାର୍ଥ ଅତୁଳନୀୟ । ଅନନ୍ତ ଜନ୍ମର ପୁଣ୍ୟ ବଳରେ ହିଁ ପରମାର୍ଥ ପ୍ରାପ୍ତି ସମ୍ଭବ ହୁଏ, କାରଣ ଏହାଦ୍ୱାରାହିଁ ପରମାତ୍ମା ତତ୍ତ୍ୱ ଅନୁଭୂତ ହୋଇଥାଏ । ଯିଏ ଏହି ପରମାର୍ଥକୁ ଜାଣେ ଅର୍ଥାତ୍ ପରମାତ୍ମ ତତ୍ତ୍ୱ ସହିତ ପରିଚିତ ହୋଇଯାଏ, ତା ଜନ୍ମ ସାର୍ଥକ ।

ତେଣୁ ସମସ୍ତେ ବୁଝିବା ଉଚିତ ଯେ ଯିଏ ଭଗବାନଙ୍କୁ ପାଇବା ଲାଗି ଚେଷ୍ଟା ନକରି, ରାତିଦିନ କେବଳ ସ୍ୱାର୍ଥ ସାଧନ ଏବଂ ପ୍ରଜନନ କ୍ରିୟାରେ ଲିପ୍ତ ରହିଥାଏ ତାର ସମସ୍ତ ଜନ୍ମ ବ୍ୟର୍ଥ । ତାର ଦେବଦୁର୍ଲ୍ଲଭ ମାନବ-ଦେହ ବ୍ୟର୍ଥ ହୋଇଯାଏ ।

ସାରାଂଶ— ସୂକ୍ଷ୍ମବିଚାରବାନ ବ୍ୟକ୍ତି ପରମାର୍ଥ ପରମତତ୍ତ୍ୱ ପରମାତ୍ମା ପ୍ରାପ୍ତି ଦିଗରେ ମନଦେଇ ଜୀବନକୁ ସାର୍ଥକ କରିବା ଉଚିତ ।

## ଦଶମ ସମାସ
## ।। ନରଦେହ ସ୍ତବନ ।।

ଏହି ନରଦେହ ଅତ୍ୟନ୍ତ ଶ୍ରେଷ୍ଠ । ଏହା କିପରି ଅପୂର୍ବ ସେକଥା ଶୁଣ । ପରମାର୍ଥ ସମ୍ପର୍କୀୟ ଇଚ୍ଛା ଏହି ନରଦେହରେ ହିଁ ସଫଳ ହୋଇପାରେ । ଏହି ନରଦେହକୁ ଆଶ୍ରୟ କରି କେହି କେହି ଭକ୍ତିମାର୍ଗ ଧରିଥାନ୍ତି ତ କେହି କେହି ତୀବ୍ରବୈରାଗ୍ୟ ଫଳରେ ଗିରିକନ୍ଦରକୁ ଯାଇ ସେଠାରେ ଆସନ ପାତିଥାନ୍ତି । କେହି କେହି ତୀର୍ଥଯାତ୍ରା କରନ୍ତି ତ କେହି କେହି ପୁରଶ୍ଚରଣ କରିଥାନ୍ତି । କେହି କେହି ନାମସ୍ମରଣ ଉପରେ ନିଷ୍ଠାରଖି ଅଖଣ୍ଡ ନାମକୀର୍ତ୍ତନ କରନ୍ତି । କେହି କେହି ତପସ୍ୟା ଓ ଯୋଗାଭ୍ୟାସ କରନ୍ତି ତ କେହି କେହି ଅଧ୍ୟୟନ କରି ବେଦଶାସ୍ତ୍ରଜ୍ଞ ହୁଅନ୍ତି । ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ କି ଈଶ୍ୱରଙ୍କୁ ପାଇବା ଲାଗି ବ୍ରତ ଉପବାସ କିମ୍ବା ହଠଯୋଗ ଦ୍ୱାରା ଶରୀରକୁ କ୍ଷୀଣ କରିଥାନ୍ତି । କେହି କେହି ଭାବସାଧାନା ଦ୍ୱାରା ଈଶ୍ୱର-ଅନୁସନ୍ଧାନ କରନ୍ତି । କେହି କେହି ମନସିଦ୍ଧି, ବାକ୍‌ସିଦ୍ଧି ଏବଂ କେହି କେହି ଅନ୍ୟ ନାନା ପ୍ରକାରର ସିଦ୍ଧି ଲାଭ କରିଥାନ୍ତି । ନିଜ ନିଜର ଉପାସନାପଦ୍ଧତି ଅନୁସାରେ କିଏ ସ୍ୱର୍ଗଲୋକକୁ ଯାଏ ତ କିଏ ସତ୍ୟଲୋକକୁ ଯାଇଥାଏ । ଏହିଭଳି ଅସଂଖ୍ୟ ସାଧୁସନ୍ଥ ଓ ସିଦ୍ଧପୁରୁଷ ନରଦେହ ମାଧ୍ୟମରେ ନିଜର କଲ୍ୟାଣ ସାଧନ କରିଛନ୍ତି । ସବୁପ୍ରକାରର ଉଦ୍ଧାରକାର୍ଯ୍ୟ ଏହି ନରଦେହଦ୍ୱାରା ହିଁ ସମ୍ଭବ ହୋଇପାରେ । ସନ୍ଥ-ମହନ୍ତ, ମୁନି ଋଷି, ସିଦ୍ଧସାଧୁ, ଭକ୍ତମୁକ୍ତ, ବ୍ରହ୍ମଜ୍ଞାନୀ, ତ୍ୟାଗୀଯୋଗୀ, ତପସ୍ୱୀ, ତତ୍ତ୍ୱବିତ୍ ସମସ୍ତେ ହେଉଛନ୍ତି ନରଦେହଧାରୀ ।

ଏଣୁ କହୁଛି, ନରଦେହ ହେଉଛି ସର୍ବଶ୍ରେଷ୍ଠ । ଏହାଦ୍ୱାରା ଜନ୍ମମୃତ୍ୟୁର ସଙ୍କଟମୋଚନ କରାଯାଇପାରେ । ନରଦେହ ସ୍ୱାଧୀନ । ଏହା ସହଜରେ ପରାଧୀନ ହୋଇ ନ ଥାଏ । ତେଣୁ ଏହାକୁ ପରୋପକାର କାର୍ଯ୍ୟରେ ଲଗାଇ କୀର୍ତ୍ତିଲାଭପୂର୍ବକ ଅମରତ୍ୱ ଲାଭ କରାଯିବା ଉଚିତ । ମୋ ଘର, ମୋର ଧନସମ୍ପତ୍ତି, ଏସବୁ ମୋହ ହେଉଛି ମିଥ୍ୟା । ସବୁ ଛାଡ଼ି ଦିନେ ନା ଦିନେ ସମସ୍ତଙ୍କୁ ସଂସାରତ୍ୟାଗ କରିବାକୁ ପଡ଼ିଥାଏ । ସଂସାର ହେଉଛି ଦିନେ ଦୁଇ ଦିନର ମୁସାଫିର ଖାନା । ଦେହକୁ ମଧ ମୋ'ର ବୋଲି କୁହାଯାଇ ନପାରେ । ଏହା ଉପରେ ମଧ କୃମିକୀଟ ମାନଙ୍କର ଯଥେଷ୍ଟ ଅଧିକାର ରହିଛି । ଏମାନେ ଦେହ ଭିତରେ ରହି ସବୁବେଳେ ରକ୍ତ ପିଇବାରେ ଲାଗିଛନ୍ତି । ମଶା, ଓଡ଼ଶ ଆଦି ମଧ ଶରୀରକୁ ଶୋଷଣ କରିଥାନ୍ତି । ଆମର ପେଟ, ରକ୍ତ ଓ କୋଷ ଆଦିରେ କୋଟି କୋଟି କୀଟାଣୁ ଭରିରହିଛନ୍ତି । ଦାନ୍ତ, ଆଖି, କାନରେ ମଧ ପୋକ ଲାଗନ୍ତି । ଆଜୀବନ ଆମେ ଯେଉଁ ଦେହର ସେବା କରିଥାଉ ସେହି ଦେହକୁ ଅଚାନକ ବାଘ ଖାଇଯାଏ । ଚୋର, ଡକାୟତ, ଘାତକ ମୁହୂର୍ତ୍ତକରେ ଶେଷ କରିଦିଅନ୍ତି । କିନ୍ତୁ ଆମେ ଏଭଳି ମୂର୍ଖ ଯେ ଏହି ଦେହଟିକୁ ନିଜର ଭାବି ଦିନରାତି ତାକୁ ସଜେଇବାରେ ଲାଗିଛୁ । ଏହି ଦେହକୁ ପରମାର୍ଥ କାର୍ଯ୍ୟରେ ସଦୁପଯୋଗ କରାଗଲେ ହିଁ ସାର୍ଥକ ହୋଇପାରିବ । ଯିଏ ସ୍ୱାର୍ଥାନ୍ଧ, କେବଳ ନିଜର ଭଲଲାଗି ଯିଏ ବ୍ୟସ୍ତ, ସେହି ମୂର୍ଖ ପକ୍ଷରେ ପରମାର୍ଥ-ଆନନ୍ଦର କଳ୍ପନା କରାଯାଇ ପାରେ କି ? ତେଣୁ ମୁଁ ପ୍ରଥମେ ସେହି ମୂର୍ଖର ଲକ୍ଷଣ କହୁଛି ଶୁଣ ।



# ଦ୍ୱିତୀୟ ଦଶକ

## ପ୍ରଥମ ସମାସ
## ।। ମୂର୍ଖର ଲକ୍ଷଣ ।।

ହେ ଓଁକାର ସ୍ୱରୂପ ଗଜାନନ ! ହେ ଏକଦନ୍ତ ! ହେ ତ୍ରିନୟନ ! ଆପଣ କୃପା ଦୃଷ୍ଟିରେ ଏହି ଭକ୍ତକୁ ଥରେ ହେଲେ ଅବଲୋକନ କରନ୍ତୁ । ହେ ବେଦମାତା ଶାରଦା ! ତୁମକୁ ମୋର ନମସ୍କାର । ହେ ଦୟାଶୀଳା, କରୁଣାମୟୀ ! ସ୍ଫୁର୍ତ୍ତି ରୂପରେ ମୋର ଅନ୍ତର ମନ୍ଦିରରେ ବାସ କରନ୍ତୁ । ପରବ୍ରହ୍ମ ଶ୍ରୀ ସଦ୍‌ଗୁରୁଙ୍କ ଚରଣ ବନ୍ଦନ କରି ଏବଂ ଉପାସ୍ୟ ଭଗବାନ ପ୍ରଭୁ ଶ୍ରୀରାମଙ୍କୁ ସ୍ମରଣ କରି ଏବେ ମୁଁ ଲୋକହିତ ଲାଗି ମୂର୍ଖମାନଙ୍କ ଲକ୍ଷଣ କ'ଣ କହିବି । କହିବାର ଉଦ୍ଦେଶ୍ୟ ହେଉଛି ଏହି ଲକ୍ଷଣଗୁଡ଼ିକ କ'ଣ ଜାଣିବା ପରେ ଲୋକେ ଏଗୁଡ଼ିକୁ ତ୍ୟାଗ କରିବା ଦିଗରେ ହୁଏତ ଚେଷ୍ଟା କରିବେ ।

ମୂର୍ଖମାନଙ୍କ ମଧ୍ୟରୁ କେତେକ ସାମାନ୍ୟ ମୂର୍ଖ ତ କେତେକ ଶିକ୍ଷିତ ମୂର୍ଖ । ମୂର୍ଖଙ୍କ ଲକ୍ଷଣ ଅଗଣିତ । ସେଥିମଧ୍ୟରୁ କେତୋଟି କହୁଛି । ଯାହାର ଆତ୍ମଜ୍ଞାନ ନାହିଁ, ଯିଏ କେବଳ ବିଷୟବୁଦ୍ଧିସମ୍ପନ୍ନ, କେବଳ ପ୍ରପଞ୍ଚରେ ଘାଣ୍ଟି ହୋଇଥାଏ, ସେହିଭଳି ଅଜ୍ଞାନୀ ଲୋକଙ୍କୁ ମୂର୍ଖ କୁହାଯାଇଥାଏ । ମୁଁ ସେହିମାନଙ୍କ ଲକ୍ଷଣ କହୁଛି ।

ଗୋଟିଏ ପ୍ରକାରର ମୂର୍ଖ ହେଉଚନ୍ତି ସେହିମାନେ ଯେଉଁମାନେ କି ପିତାମାତାଙ୍କୁ ବିରୋଧ କରି ପତ୍ନୀକୁ ନିଜର ପରମ ସଖା ଭାବି କେବଳ ତାର ବୋଲକରା ହୋଇ ରହିଥାଆନ୍ତି । ଆଉ ଏକ ପ୍ରକାରର ମୂର୍ଖ କେବଳ ପରସ୍ତ୍ରୀକୁ ଭଲ ପାଆନ୍ତି, ପ୍ରେମ କରନ୍ତି, ଶ୍ୱଶୁର ଘରେ ଘରଜ୍ୱାଇଁ ହୋଇ ରହନ୍ତି, ଅଜାତି କୁଳହୀନା କନ୍ୟା ସହିତ ବିବାହ କରନ୍ତି । ମୁଁ ହେଉଚି ଶ୍ରେଷ୍ଠ ପୁରୁଷ, ମୋଠୁ ବେଶୀ କେହି ଜାଣନ୍ତି ନାହିଁ ବୋଲି ଯେଉଁମାନେ ଗର୍ବ କରିଥାଆନ୍ତି ସେମାନେ

ନିପଟ ମୂର୍ଖ । ବିନା ସାମର୍ଥ୍ୟରେ ଯେଉଁମାନେ କ୍ଷମତା ହାସଲ କରି ନିଜକୁ ରାଜା ଏବଂ ଅନ୍ୟକୁ ପ୍ରଜା ମନେ କରିଥାଆନ୍ତି ସେମାନେ ହେଉଚନ୍ତି ମୂର୍ଖ । ଆଉ ଏକପ୍ରକାର ମୂର୍ଖ ନିଜର ବଡ଼େଇ କରିଥାଆନ୍ତି, ତା ସଙ୍ଗେ ସଙ୍ଗେ "ଆମର ଏହା ଥିଲା, ତାହା ଥିଲା" କହି ପୂର୍ବ ବଂଶଧରମାନଙ୍କର ମଧ୍ୟ ବଡ଼େଇ କରିଥାଆନ୍ତି । ବିପଦରେ ପଡ଼ି ନାନା ଦୁଃଖକଷ୍ଟ ଭୋଗିଲେ ମଧ୍ୟ ମୁହଁରୁ ସେମାନଙ୍କର ଏହି ଆତ୍ମପ୍ରଶଂସା ଯାଏ ନାହିଁ କିମ୍ବା ବିପଦସ୍ଥାନରୁ ସେମାନେ ହଟନ୍ତି ନାହିଁ, ସେଇଠି ପଡ଼ି ରହିଥାଆନ୍ତି । ମୂର୍ଖ ହେଉଚି ସେହି ଲୋକ ଯିଏ ବିନା କାରଣରେ ହସେ, ଅନ୍ୟ ଲୋକର କଥାକୁ ନ ଶୁଣିଲା ଭଳି ଛଳନା କରେ ଏବଂ ଅନ୍ୟମାନଙ୍କୁ ନିଜର ଶତ୍ରୁ ମନେକରେ ।

ଆଉ ଏକ ପ୍ରକାରର ମୂର୍ଖ ଅଛନ୍ତି ଯେଉଁମାନେ ନିଜର ପ୍ରିୟଜନଙ୍କୁ ଉପେକ୍ଷା କରି ପରକୁ ଭଲ ପାଆନ୍ତି ଅଥଚ ପୁଣି ସେମାନଙ୍କର ଛିଦ୍ର ଖୋଜି ନିନ୍ଦା କରିବାରେ ଲାଗିଥାଆନ୍ତି । ମୂର୍ଖ ହେଉଚନ୍ତି ସେହିମାନେ ଯେଉଁମାନେ କି ଅନ୍ୟମାନେ ଜାଗ୍ରତ ଥିବାବେଳେ ନିଜେ ହାତଗୋଡ଼ ପ୍ରସାରି ଆରାମରେ ଶୁଅନ୍ତି ଏବଂ କୌଣସି ପରିଶ୍ରମ ନ କରି ମାଗଣା ମିଳିବା ମାତ୍ରେ ପେଟେ ପେଟେ ଭୋଜନ କରନ୍ତି । ମୂର୍ଖମାତ୍ରେ ସେମାନଙ୍କର ମାନାପମାନ କିଛି ନଥାଏ, ସ୍ଥାନକାଳ ପାତ୍ର ବିଚାର ନ କରି ମନରୁ ଯାହା ଆସିଲା ବକନ୍ତି । ଜାରଣ-ମାରଣ ଆଦି ନାନା ହୀନକାର୍ଯ୍ୟରେ ଲିପ୍ତ ରହନ୍ତି । ଆଉ ଏକପ୍ରକାରର ମୂର୍ଖ ପର ଉପରେ ନିର୍ଭର କରି କୌଣସି ଉଦ୍ୟମ କରିବାକୁ କହିଲେ ଏ କାମ ମୋଦ୍ୱାରା ହେବନି କହି ମୁହଁ ମୋଡ଼ି ଦିଅନ୍ତି । ଏଭଳି ଲୋକ ଅନ୍ୟର ବୋଝ ତ ହୁଅନ୍ତି, ଅଳସୁଆ ଜୀବନଯାପନ କରି ଭାବନ୍ତି ଏହିଥିରୁ ବେଶ ଆନନ୍ଦ ମିଳୁଚି ।

ଯିଏ ନିର୍ଲ୍ଲଜ ଭାବରେ ବିଷୟାଦି ଭୋଗ ବିଳାସରେ ଲିପ୍ତ ରହେ, ରୋଗୀ ହୋଇ ସୁଦ୍ଧା ଔଷଧପତ୍ର ଓ ପଥ୍ୟ ଆଦିର ନିୟମ ପାଳନ କରେ ନାହିଁ ସେ ହେଉଚି ମୂର୍ଖ । ଯିଏ ସାଙ୍ଗସାଥୀଙ୍କୁ ନ ନେଇ ଏକା ଏକା ବିଦେଶ ଭ୍ରମଣ କରେ, ଅପରିଚିତ ଲୋକଙ୍କ ସହିତ ସାଙ୍ଗସୁଖ ହୁଏ ସିଏ ଖାଣ୍ଟି ମୂର୍ଖ । ଯିଏ ଅକାରଣରେ ଅନ୍ୟ ପାଖକୁ ବାରମ୍ବାର ଯାଏ, ଯିଏ ନିଜ ମାନମର୍ଯ୍ୟାଦା ଓ ପ୍ରତିଷ୍ଠାକୁ ପରୁଆ କରେ ନାହିଁ ଏବଂ ସଦା ଚଞ୍ଚଳମତି, ସିଏ ବି ଜଣେ ମୂର୍ଖ ।

ଯିଏ ପରୋପକାରୀ ନୁହଁ ଅଥଚ କୃତଘ୍ନ, ଯିଏ କମ କାମ କରି ବଡ଼ ବଡ଼ କଥା କହେ ସିଏ ମଧ୍ୟ ମୂର୍ଖ । କ୍ରୋଧୀ, ପେଟୁ, ଅଳସୁଆ, ଅପରିଷ୍କାର ଅପରିଚ୍ଛନ୍ନ, କୁଟିଳ, ଅଧୈର୍ଯ୍ୟ ବ୍ୟକ୍ତି ମାତ୍ରେ ମୂର୍ଖ । ବିଦ୍ୟା, ବିଭବ, ଧନ, ପରାକ୍ରମ, ଶକ୍ତିସାମର୍ଥ୍ୟ, ପ୍ରତିଷ୍ଠାହୀନ ବ୍ୟକ୍ତି ମୂର୍ଖ ପଦବାଚ୍ୟ । ଭୟାଳୁ, ମିଥ୍ୟାବାଦୀ, ଚତୁର, ଅପକର୍ମା, ଦାୟିତ୍ୱହୀନ, ଉଦ୍ଧତ, ଅତି ନିଦ୍ରାଳୁ ଲୋକ ମଧ୍ୟ ମୂର୍ଖ । ଯିଏ କେବଳ ନିଜର ଆତ୍ମୀୟସ୍ୱଜନଙ୍କୁ ସ୍ନେହ ଶ୍ରଦ୍ଧା କରିଥାଏ ତାଙ୍କୁ ମୂର୍ଖ କହିବା ସମୀଚୀନ । ଏଭଳି ଲୋକ ନୀଚବୃତ୍ତିର ଲୋକଙ୍କ ଦ୍ୱାରା ସହଜେ ଦବିଯାଏ । ଏପରି କେତେକ ମୂର୍ଖ ଥାଆନ୍ତି ଯେଉଁମାନେ କି ନିଜ ପରିବାକୁ ସବୁକିଛି ମନେ କରି ପ୍ରଭୁଙ୍କୁ ଭୁଲିଯାଇଥାନ୍ତି । ଏଭଳି ବ୍ୟକ୍ତି ବହୁ ସ୍ତ୍ରୀ ବିବାହ କରନ୍ତି ଏବଂ ଦିଅଁ ଦେବତା, ଗୁରୁ, ପିତାମାତା, ବ୍ରାହ୍ମଣ ଓ ପ୍ରଭୁଙ୍କ ପ୍ରତି କପଟ ଆଚରଣ କରନ୍ତି । ଏମାନେ ପର ଦୁଃଖରେ ସୁଖ ଏବଂ ପର ସୁଖରେ ଦୁଃଖ ଅନୁଭବ କରିଥାଆନ୍ତି । ଅତୀତକୁ ଭାଳି ଯିଏ ଶୋକ କରେ ସିଏ ହେଉଚି ମୂର୍ଖ ।

ଯିଏ ମଦ୍ୟପାନ କରେ ଏବଂ ପର ସ୍ତ୍ରୀ ଉପଭୋଗ କରେ ସିଏ ମୂର୍ଖ । ଅନ୍ୟକୁ ଯିଏ ନୀଚ, ହୀନ ମନେ କରିଥାଏ ; ଯିଏ କୁପଥଗାମୀ ଦୁରାଚାରୀମାନଙ୍କ ସହିତ ମୈତ୍ରୀ ସ୍ଥାପନ କରିଥାଏ; ଯାହାର କଥା ପ୍ରମାଣଯୋଗ୍ୟ ନୁହଁ; ଯିଏ ସର୍ବଦା ଥଟ୍ଟା ତାମସାରେ ଲିପ୍ତ ରହିଥାଏ; ଶ୍ରେଷ୍ଠ ବ୍ୟକ୍ତିମାନଙ୍କ ପ୍ରତି ଈର୍ଷା କରେ, ଦୁର୍ଲ୍ଲଭ ବସ୍ତୁ ପାଇବା ଲାଗି ଇଚ୍ଛା କରିଥାଏ, ନିଜ ଘରୁ ମଧ୍ୟ ଚୋରି କରିଥାଏ, ଜୀବନକୁ ସାର୍ଥକ ନକରି ବ୍ୟର୍ଥ କରିଦିଏ ଏବଂ ଦୁଃଖ କଷ୍ଟ ଆସିବା ମାତ୍ରେ ଭଗବାନଙ୍କୁ ଦୋଷ ଦିଏ, ସେ ନିଶ୍ଚିତଭାବେ ମୂର୍ଖ । ମୂର୍ଖ ହେଉଚି ସେହି ଲୋକ ଯିଏ ବିଶ୍ୱାସଘାତକତା କରେ, ପାପମାର୍ଗରେ ଧନ ସଞ୍ଚୟ କରେ, ଧର୍ମ ଓ ନ୍ୟାୟନୀତିର ବିରୁଦ୍ଧାଚରଣ କରେ, ଛନ୍ଦ କପଟ କରେ ଏବଂ ସର୍ବଦା ଦୁଶ୍ଚିନ୍ତାରେ ନିମଗ୍ନ ରହିଥାଏ । ଦୁଇଜଣ କଥା କହୁଥିବା ବେଳେ ଯିଏ ଉପରେ ପଡ଼ି କଥା କହେ, କୁଳି କରି ପାଣି ଭିତରେ ପକାଏ, ନୀଚ ଲୋକର ସେବା କରେ ଏବଂ ତା ଅଧୀନରେ ଚାକିରୀ କରେ, ମୂର୍ଖ ଲୋକଙ୍କ ସହିତ ମୈତ୍ରୀ ସ୍ଥାପନ କରେ, ମୂକ ପ୍ରାଣୀମାନଙ୍କୁ ଶସ୍ତ୍ରରେ ପ୍ରହାର କରେ, ଧନ ଅଭିମାନରେ ପୁରୁଣା କଥାକୁ ଭୁଲିଯାଏ; ଦେବ-ବ୍ରାହ୍ମଣଙ୍କ ଉପରେ ଅଧିକାର ସାବ୍ୟସ୍ତ କରି ବସେ; ଉତ୍ତମ ଗ୍ରନ୍ଥଗୁଡ଼ିକର ସୁରକ୍ଷା କରେ ନାହିଁ; ନିଜ ପାଖରେ ଥିବା ଗ୍ରନ୍ଥକୁ ନିଜେ ଅଧ୍ୟୟନ କରେ ନାହିଁ କି ଅନ୍ୟମାନଙ୍କୁ ଅଧ୍ୟୟନ କରିବାକୁ ଦିଏ ନାହିଁ— ସିଏ ମଧ୍ୟ ମୂର୍ଖ ।

ମୂର୍ଖମାନଙ୍କର ଆହୁରି ବହୁତ ଲକ୍ଷଣ ରହିଛି, ସବୁ କ'ଣ ବର୍ଣ୍ଣନା କରି ହେବ ? କେବଳ ଯେଉଁ ଲକ୍ଷଣଗୁଡ଼ିକୁ ତ୍ୟାଗ କରିହେବ ସେହିଭଳି କେତେକ ଲକ୍ଷଣ ଏଠାରେ କୁହାଗଲା । ସେଗୁଡ଼ିକ ତ୍ୟାଗ କରି ଉତ୍ତମ ଲକ୍ଷଣ ଗୁଡ଼ିକୁ ସ୍ୱୀକାର କରିବା ଉଚିତ ।

## ଦ୍ୱିତୀୟ ସମାସ
## ।। ଶ୍ରେଷ୍ଠ ଲକ୍ଷଣ ।।

ଉତ୍ତମ ତଥା ଶ୍ରେଷ୍ଠ ବ୍ୟକ୍ତିର ଲକ୍ଷଣ କ'ଣ କହୁଛି ଶୁଣ । ଭଲଭାବରେ ପଚରା ଉଚୁରା ନ କରି କୌଣସି ଅପରିଚିତ ମାର୍ଗରେ ସେ ଅଗ୍ରସର ହୁଏନାହିଁ । ସେ ନଜାଣିଥିବା କୌଣସି ଫଳ ଖାଏନାହିଁ । ପଡ଼ିଥିବା ବସ୍ତୁକୁ ଲୋଭରେ ଗୋଟେଇ ନିଜ ପାଖରେ ରଖେନାହିଁ । (କାରଣ ଏଭଳି କଲେ ଚୋରି ଅଭିଯୋଗରେ ହାତକଡ଼ି ପିନ୍ଧିବାର ଆଶଙ୍କା ରହିଥାଏ ।)କୌଣସି ଉତ୍ତମ ବ୍ୟକ୍ତି ଯୁକ୍ତିତର୍କ କିମ୍ବା ବାଦବିବାଦରେ ଲିପ୍ତ ରହେ ନାହିଁ । କାରଣ ଏଭଳି କଲେ ହୁଏତ ବହୁ ଦିନରୁ ରହି ଆସିଥିବା ସ୍ନେହ ସମ୍ବନ୍ଧ ତୁଟିଯାଇପାରେ ଏବଂ ବିରୋଧଭାବ ସୃଷ୍ଟି ହୋଇପାରେ । ଉତ୍ତମ ଲୋକର କପଟଭାବ ନ ଥାଏ । ସେ କୁଳଶୀଳ ସମ୍ପର୍କରେ ଭଲଭାବେ ନ ବୁଝି କନ୍ୟା ପସନ୍ଦ କରେ ନାହିଁ । ସଭାରେ ଅତି ବିନମ୍ର ଓ ସରଳ ଭାବରେ ପ୍ରଶ୍ନ କରେ । ସର୍ବସମ୍ମତିକ୍ରମେ କୌଣସି ନିଷ୍ପତ୍ତି ନିଆଯିବା ବେଳେ ସେ ମତଭେଦ ସୃଷ୍ଟି କରି ବାଧା ଦିଏ ନାହିଁ । ଯେଉଁଠାରେ ଅନ୍ତର୍ଯ୍ୟାମୀ ଭଗବାନଙ୍କ ସମ୍ପର୍କରେ ଆଲୋଚନା ହୋଇଥାଏ, ଉତ୍ତମ ବ୍ୟକ୍ତି ସେହି ସତ୍‌ସଙ୍ଗକୁ ତ୍ୟାଗ କରେ ନାହିଁ । ସଦ୍‌ଗୁରୁ ଓ ସନ୍ଥମାନଙ୍କ ପ୍ରତି ତାର ସବୁବେଳେ ଶ୍ରଦ୍ଧା ଓ ଭକ୍ତି ରହିଥାଏ । ଯେଉଁଠି ଭଲ କଥା କୁହାଯାଉଥାଏ ସେ ତାକୁ ଅବଶ୍ୟ ଶୁଣେ ଏବଂ ଅନ୍ୟକୁ ଆସି କହେ । କାହାର ନିନ୍ଦା କରେ ନାହିଁ କିମ୍ବା କାହାକୁ ତିରସ୍କାର ବା ଉପହାସ କରେ ନାହିଁ । ଚୁଗୁଲି ପ୍ରତି ସେ କାନ ଦିଏ ନାହିଁ କିମ୍ବା ନିଜେ କାହାର ଚୁଗୁଲି କରେ ନାହିଁ । ଚୁଗୁଲି ଶୁଣିବା ପାଇଁ ବାଧ କରାଗଲେ ମଧ ସେ ସେଥିପ୍ରତି ଧ୍ୟାନ ଦିଏ ନାହିଁ । ସେ ଆଳସ୍ୟ ପରାୟଣ ନୁହେଁ କିମ୍ବା ଭୋଗବିଳାସରେ ମାତ ରହେ ନାହିଁ । ସେ ସର୍ବଦା ପରିଶ୍ରମୀ ଓ ପ୍ରଯତ୍ନଶୀଳ । କାହାଠାରୁ ଋଣ କରେ ନାହିଁ, ଯଦି କରିବାକୁ ପଡ଼େ ସେ କାଳବିଳମ୍ବ ନ କରି ପରିଶୋଧ କରିଦିଏ ।

ସେ ଚାରିଆଡ଼କୁ ଆଖି ରଖି କାମ କରେ । କେବେହେଲେ ପରାଧୀନ ହୋଇ ପଡ଼େ ନାହିଁ କିମ୍ବା ଅନ୍ୟ କାହା ଉପରେ ନିଜର ବୋଝ ଲଦିଦିଏ ନାହିଁ । ଲେଖାପଢ଼ା ନ କରି କାହାକୁ କିଛି ଦିଏ ନାହିଁ, କିମ୍ବା କାହାଠାରୁ କିଛି ଆଣେ ନାହିଁ । ଖରାପ ପ୍ରକୃତିର ଲୋକଙ୍କଠାରୁ କରଜ କରେ ନାହିଁ । ବିନା ସାକ୍ଷୀରେ କୋର୍ଟକଚେରୀ କିମ୍ବା ରାଜଦରବାରକୁ ଯାଏ ନାହିଁ । ଅନ୍ୟାୟ ପକ୍ଷକୁ ସମର୍ଥନ କରେ ନହିଁ । ନିଜର ଆଗ୍ରହ ନାହିଁ ବୋଲି ଅନ୍ୟର ସଭାକୁ ଭଙ୍ଗ କରେ ନାହିଁ । ଯେଉଁଠାରେ ଆଦର ନାହିଁ ସେଠାରେ ଭାଷଣ ଦିଏ ନାହିଁ । କାହାପ୍ରତି ତାହାର ଈର୍ଷା କିମ୍ବା ଦ୍ୱେଷ ନ ଥାଏ । ନିଜର ବଳ ଅଛି ବୋଲି ଅନ୍ୟାୟ କାର୍ଯ୍ୟରେ ତାର ଦୁରୁପଯୋଗ କରେ ନାହିଁ । ଅତିଭୋଜନ କରେ ନାହିଁ କିମ୍ବା ଅତିନିଦ୍ରା କରେ ନାହିଁ । ସେ କେବେହେଲେ ଧୂମ୍ରପାନ କରେ ନାହିଁ । ଶରୀରକୁ ଉନ୍ମତ୍ତ ଏବଂ ଉତ୍ତେଜିତ କରୁଥିବା ମଦ, ଗଞ୍ଜେଇ, ଭାଙ୍ଗ ଆଦି ମାଦକଦ୍ରବ୍ୟ ସେବନ କରେ ନାହିଁ । ଖୋସାମତିଆ କିମ୍ବା ନାନା ଆଜେବାଜେ କଥା କହୁଥିବା ବ୍ୟକ୍ତିମାନଙ୍କ ସହ ସେ ବନ୍ଧୁତା ସ୍ଥାପନ କରେ ନାହିଁ । ସେ ସର୍ବଦା ଉଦ୍ୟମଶୀଳ । ସେ କେବେହେଲେ ନିଜର ଅପମାନକୁ ସହ୍ୟ କରେ ନାହିଁ । ବିନା ପରିଶ୍ରମରେ ଅନ୍ୟ କାହାର ଅନ୍ନ ସୁଦ୍ଧା ସେ ଭକ୍ଷଣ କରେ ନାହିଁ । କେବେହେଲେ କୁଭାଷା ବ୍ୟବହାର କରେ ନାହିଁ, ଅନ୍ୟମାନଙ୍କୁ ଥଟ୍ଟା କରେ ନାହିଁ କିମ୍ବା କାହା କଥାକୁ ହସରେ ଉଡ଼େଇ ଦିଏ ନାହିଁ । ଅନ୍ୟ କାହାର ଦୋଷ ତ୍ରୁଟି ଦେଖେନାହିଁ । ନିଜର ମର୍ଯ୍ୟାଦା ରକ୍ଷା କରିଥାଏ ଏବଂ କୁଳାଚାର ଧର୍ମକୁ ତ୍ୟାଗ କରିନଥାଏ । ମନରେ ମନ୍ଦବାସନା ପୋଷଣ କରେନାହିଁ କିନ୍ତୁ ସେଥିଲାଗି ଗର୍ବ କରେ ନାହିଁ । ଗୁରୁଙ୍କ ସାଙ୍ଗ ଛାଡ଼େ ନାହିଁ । ସର୍ବଦା ସତ୍ୟନିଷ୍ଠ ରହେ । ଦୁର୍ନାମ ହେବାଭଳି କୌଣସି କାର୍ଯ୍ୟ କରେ ନାହିଁ । ଏହି ଲକ୍ଷଣ ବା ଗୁଣକୁ ଯିଏ ଗ୍ରହଣ କରେନାହିଁ ସେ ହେଉଛି ଅଧମ । ଏହାପରେ ମୁଁ ଏହି ଅଧମ ଲୋକମାନଙ୍କର କୁଲକ୍ଷଣ ତଥା କୁବିଦ୍ୟା ସମ୍ପର୍କରେ କହିବି ।

## ତୃତୀୟ ସମାସ
## ।। କୁବିଦ୍ୟା ନିରୂପଣ ।।

ଯେଉଁ କୁବିଦ୍ୟା ବା କୁଲକ୍ଷଣ ଗୁଡ଼ିକୁ ତ୍ୟାଗ କରାଯିବା ଉଚିତ, ବର୍ତ୍ତମାନ ମୁଁ ସେହିକଥା କହୁଛି । ଏହିସବୁ କୁଲକ୍ଷଣ ଥିବା ମନୁଷ୍ୟର ଦେହ ବ୍ୟଥ

ହୋଇଥାଏ । ଏହି ଅଧମ, କୁଲକ୍ଷଣଯୁକ୍ତ ବ୍ୟକ୍ତିମାନଙ୍କର ଲକ୍ଷଣ କଣ ସମସ୍ତେ ଜାଣିବା ଉଚିତ । ଏମାନେ ସଦ୍‌ଗ୍ରନ୍ଥର ନାଁ ଶୁଣିବା ମାତ୍ରେ ଭାବନ୍ତି ମହାସଙ୍କଟ ଆସି ଉପସ୍ଥିତ ହେଲା । ସେମାନଙ୍କ ପକ୍ଷରେ ମନୁଷ୍ୟର ଜନ୍ମକୁ ସଫଳ କରିବା ଲାଗି ଉଚିତ ମାର୍ଗ ପ୍ରଦର୍ଶନ କରାଯାଇଥିବା ବେଦ, ବେଦାନ୍ତ, ଉପନିଷଦ ଆଦି ସଦ୍‌ଗ୍ରନ୍ଥର ବିଷୟକୁ ବୁଝିବା ଅତ୍ୟନ୍ତ କଠିନ ଓ କଷ୍ଟଦାୟକ ମନେ ହୋଇଥାଏ । ଏହିସବୁ ସଦ୍‌ଗ୍ରନ୍ଥର ବିପରୀତ ନାଟକ, ଉପନ୍ୟାସ ଏବଂ ନାନା ଉତ୍ତେଜନାପୂର୍ଣ୍ଣ ସାହିତ୍ୟଆଦି ପଢ଼ିବାରେ ସେମାନେ ତନ୍ମୟ ହୋଇ ଉଠିଥାନ୍ତି । ଏଭଳି ବ୍ୟକ୍ତିମାନଙ୍କ ମନରେ ଦମ୍ଭ, ଦର୍ପ, ଅଭିମାନ, କ୍ରୋଧ, କଠୋରତା, ଅଜ୍ଞାନ, ଦୁଶ୍ଚିନ୍ତା, କାମପ୍ରବୃତ୍ତି ଓ ନାନା କାମନା, ଅସନ୍ତୋଷ, ବିଷୟାସକ୍ତି, ଅନୀତି, ଦୁର୍ନୀତିଆଦି ଆସୁରୀକ ସମ୍ପତ୍ତି ଠୁଳ ହୋଇ ରହିଥାଏ । ଏହିସବୁ ଦୁର୍ଗୁଣ ନାନା ଭାବରେ ପ୍ରକାଶିତ ହୁଏ । ଏଭଳି ବ୍ୟକ୍ତି ଦରିଦ୍ର, କୃପଣ, ଅଳସୁଆ, ପେଟୁ, ପାପୀ, ନିନ୍ଦୁକ, ହୀନମତି, ହିଂସ୍ରକ, ଠକ, ଭଣ୍ଡ ଓ ଉପରଠାଉରିଆ । ଜପ ତପ ତା'ପାଇଁ ଦୁଃଖଦାୟକ । ଭଗବାନଙ୍କ ନାମ ସ୍ମରଣ କରିବାକୁ ଏମାନେ ସର୍ବଦା ଅନିଚ୍ଛୁକ । ଅନ୍ୟକୁ ଦୁଃଖଦେବାରେ ଏମାନେ ଆନନ୍ଦ ପାଆନ୍ତି । ଏମାନଙ୍କ କଥା କଠୋର, ଅସଭ୍ୟ, ତାସ୍ସଲ୍ୟପୂର୍ଣ୍ଣ । ସାଧାରଣତଃ ଏମାନେ କ୍ରୋଧୀ, କପଟୀ, ନୀଚମନା, କାମୁକ, ଚୋର, ଦୁର୍ବୃତ୍ତ, ନିନ୍ଦୁକ, ମୂଢ଼, କାପୁରୁଷ, ନିର୍ଲ୍ଲଜ, କଳହପ୍ରିୟ, ପ୍ରବଞ୍ଚକ ଓ ନାସ୍ତିକ । ଏମାନଙ୍କ ମନରେ ସର୍ବଦା ଭାବଭକ୍ତି, ଜ୍ଞାନ, ଆଚାର, ବୈରାଗ୍ୟ, କ୍ଷମା ଆଦି ଦୈବୀଗୁଣର ଘୋର ଅଭାବ ରହିଥାଏ । ଏମାନେ ନାନା ବିକାରଗ୍ରସ୍ତ, ତେଣୁ ମନ ସବୁବେଳେ ନାନା ଦୁଶ୍ଚିନ୍ତାରେ ବୁଡ଼ି ରହିଥାଏ । ଏଭଳି କୁବିଦ୍ୟା, କୁଲକ୍ଷଣ-ସମ୍ପନ୍ନ ବ୍ୟକ୍ତି ନିଜଲାଗି ଏବଂ ଅନ୍ୟଲାଗି ସର୍ବଦା ଅନୁପଯୋଗୀ । ଏଭଳି ବ୍ୟକ୍ତିର ମନୁଷ୍ୟଜନ୍ମ ବ୍ୟର୍ଥ ହୋଇଥାଏ ।

## ଚତୁର୍ଥ ସମାସ
## ।। ଭକ୍ତି ବିବେଚନ ।।

ବହୁ ଶୁଭକର୍ମର ଫଳସ୍ୱରୂପ ଜୀବ ନରଦେହ ଲାଭ କରିଥାଏ । ମନୁଷ୍ୟ ଜନ୍ମରେ ସତ୍‌ମାର୍ଗ ଲାଭ କରିବା ମଧ୍ୟ ଅତ୍ୟନ୍ତ ସୌଭାଗ୍ୟର ବିଷୟ ।

ନରଦେହରେ ମଧ୍ୟ ବ୍ରାହ୍ମଣଜନ୍ମ ଦୁର୍ଲ୍ଲଭ । ବ୍ରାହ୍ମଣଜନ୍ମ ଲାଭ କଲେ ମଧ୍ୟ ନିୟମିତ ସ୍ନାନ, ସନ୍ଧ୍ୟା ଆଦି ଷଡ଼କର୍ମ ଓ ସତ୍‌କର୍ମ କରିବା ଏବଂ ଭଗବତ୍‌ଭଜନ ପ୍ରତି ଆଗ୍ରହୀ ହେବା କଠିନ ବ୍ୟାପାର । ପୂର୍ବଜନ୍ମର ପୁଣ୍ୟଦ୍ୱାରାହିଁ ଏହା ସମ୍ଭବ । ଏହା ସହିତ ଯଦି ସତ୍‌ସଙ୍ଗ ଲାଭହୁଏ ତାହାହେଲେ ଜୀବନ ସାର୍ଥକ ହେଲା ବୋଲି ଜାଣିବ । ବିଧିବିଧାନ ଅନୁଯାୟୀ ପବିତ୍ର କର୍ମକରିବା; ଦୟାପୂର୍ବକ ଦାନ ଧର୍ମ ଓ ହରିଭଜନ କରିବା; ମନରେ ଅନୁତାପ ହେଲାଭଳି କାର୍ଯ୍ୟ ନ କରିବା; ଭକ୍ତିଯୋଗ ଓ ସତ୍‌ସଙ୍ଗ; ବିଭିନ୍ନ ଶାସ୍ତ୍ର, ଗ୍ରନ୍ଥର ସ୍ୱାଧ୍ୟାୟ; ତୀର୍ଥାଟନ ଓ ଗାୟତ୍ରୀ ପୁରଶ୍ଚରଣ କରିବାଦ୍ୱାରା ଜୀବନ ସାର୍ଥକ ହୋଇଥାଏ । ଏଭଳି ବ୍ୟକ୍ତିର ଜୀବନ ପରୋପକାରରେ ଅତିବାହିତ ହୁଏ । ସେ ସନ୍ଥ, ସଦ୍‌ଗୁରୁଙ୍କ ଅମୃତୋପମ ବାଣୀ ଶ୍ରବଣ କରେ, ସେମାନଙ୍କଠାରୁ ଜ୍ଞାନ ଆହରଣ କରେ ଏବଂ ଯେଉଁ ଜ୍ଞାନ ଲାଭ କରେ ସେଥିରେ ସେ ତାର ମନକୁ ନିମଗ୍ନ ରଖେ । ନିଜ ଜନ୍ମକୁ ସଫଳ କରିବା ଲାଗି ଏଭଳି ବ୍ୟକ୍ତି ନିରନ୍ତର କୌଣସି ନା କୌଣସି ସତ୍‌କର୍ମ କରିବାରେ ଲାଗିଥାଏ । କୌଣସି ନିଷ୍ଫଳ କର୍ମରେ ସେ ହାତ ଦିଏ ନାହିଁ କିମ୍ବା ସେଭଳି ଚିନ୍ତାରେ ମନକୁ ଭାରାକ୍ରାନ୍ତ କରେନାହିଁ ।

ଯିଏ ସତ୍‌କର୍ମ କରେନାହିଁ, ସେ ଜୀବିତ ଥିଲେ ମଧ୍ୟ ମୃତ । ଏଭଳି ବ୍ୟକ୍ତି କେବଳ ନିଜ ମାତୃଗର୍ଭକୁ କଳଙ୍କିତ କରିଥାଏ । ଯିଏ ସ୍ନାନ ସନ୍ଧ୍ୟା କରେ ନାହିଁ, ଭଜନ କୀର୍ତ୍ତନରେ ଯାହାର ମନ ଲାଗେ ନାହିଁ, ଯିଏ ମନ୍ତ୍ର-ଜପ, ଧ୍ୟାନ, ମାନସପୂଜା ମଧ୍ୟରୁ କୌଣସି ଗୋଟିଏ କାର୍ଯ୍ୟ ସୁଦ୍ଧା କରେ ନାହିଁ; ଯାହା ହୃଦୟରେ ପ୍ରଭୁଙ୍କ ପ୍ରତି ପ୍ରେମ, ଭକ୍ତି ଓ ନିଷ୍ଠା ନ ଥାଏ; ଯିଏ ଦାନ କରେ ନାହିଁ କି ଅତିଥି ସେବା କରେ ନାହିଁ; ହରିଙ୍କ କଥା ଶୁଣେ ନାହିଁ କିମ୍ବା ଅଧ୍ୟାତ୍ମ-ଆଲୋଚନାରେ ମନ ଦିଏ ନାହିଁ; ଯାହାର ଚିତ୍ତ ଶୁଦ୍ଧି ନୁହେଁ; ଯାହାର ମନ ମିଥ୍ୟା ଅହଂକାରରେ ବୁଡ଼ି ରହିଥାଏ; ଯିଏ ମୋକ୍ଷମାର୍ଗଠାରୁ ଦୂରରେ ରହିଥାଏ; ନ୍ୟାୟନୀତିକୁ ପଦାଘାତ କରି ଯିଏ ଦୁର୍ନୀତିପରାୟଣ; ଯାହାଠାରେ ବିଦ୍ୟାବୈଭବ, ଚାତୁର୍ଯ୍ୟ ଓ କୌଶଳର ବିନ୍ଦୁବିସର୍ଗ ନ ଥାଏ; ଯାହାର ମନ ଶାନ୍ତି, କ୍ଷମା, ଜୀବପ୍ରତି ଦୟାଭାବ, ସ୍ୱଧର୍ମାଚରଣ ଆଦି ସୁଗୁଣ ନ ଥାଏ; ଯିଏ ସ୍ୱେଚ୍ଛାଚାରୀ ଏବଂ ଯିଏ ଉପାସନା, ଜ୍ଞାନ, ବୈରାଗ୍ୟର ସାଧନ ଜାଣେ ନାହିଁ ତାର ଜୀବନ ବ୍ୟର୍ଥ

ହୋଇଥାଏ । ବିଷୟ ବୈରାଗ୍ୟ, ସମତା, ତ୍ୟାଗ, ପ୍ରଭୁପ୍ରେମ, ପରୋପକାର ଆଦି ସମ୍ପର୍କରେ ଯାହାର ଜ୍ଞାନ ନାହିଁ ଏଭଳି ମନୁଷ୍ୟ ଜୀଇଁ ଥାଉ ଥାଉ ମରିଯାଇଛି କହିଲେ ଚଳେ । ଯିଏ ଯାହା କରେ, ସିଏ ତାର ଫଳ ପାଏ ।

## ପଞ୍ଚମ ସମାସ
## ।। ରଜୋଗୁଣ ଲକ୍ଷଣ ।।

ଏହି ଦେହ ସତ୍ତ୍ୱ, ରଜ ଓ ତମ ଏହି ତିନୋଟି ଗୁଣଯୁକ୍ତ । ସତ୍ତ୍ୱଗୁଣ ହେଉଛି ଶ୍ରେଷ୍ଠ । ପ୍ରାଣୀମାନଙ୍କ ମଧ୍ୟରେ ଯାହାଠାରେ ସତ୍ତ୍ୱଗୁଣ ଅଧିକ ତାହାର ଚିତ୍ତ ହରିଭକ୍ତିରେ ପରିପୂର୍ଣ୍ଣ । ରଜୋଗୁଣରେ ଲାଭ ହୋଇଥାଏ ଜନ୍ମମରଣ ପରମ୍ପରା । ତମୋଗୁଣରେ ଘଟିଥାଏ ଅଧଃପତନ । * ସେଥିରେ ମଧ୍ୟ ଶୁଦ୍ଧ, ସୁକ୍ଷ୍ମ, ସବଳ ପାରମାର୍ଥିକ ଏବଂ ସାଂସାରିକ ଭେଦ ରହିଛି । ଯିଏ ପରମାର୍ଥ ସାଧନ କରେ ସେ ଶୁଦ୍ଧ ଏବଂ ଯିଏ ସଂସାରରେ ଲିପ୍ତ ସେ ସବଳ । ସାଂସାରିକ ଲୋକଙ୍କ ଭିତରେ ମଧ୍ୟ ତିନୋଟି ଗୁଣ ରହିଥାଏ । ସେଥିରୁ ଗୋଟିଏ ପ୍ରବଳ ହୋଇଉଠିଲେ ଅନ୍ୟ ଦୁଇଟି ଆପେ ଆପେ ହଟି ଯାଇଥାନ୍ତି । ତିନି ଗୁଣର ସଂଯୋଗରେ ହିଁ ମନୁଷ୍ୟ ଜୀବନ ପରିଚାଳିତ । ଏହି ସମାସ ବା ଅଧ୍ୟାୟରେ ମୁଁ ରଜୋଗୁଣର ବର୍ଣ୍ଣନା କରୁଛି ।

ଦେହରେ ରଜୋଗୁଣ ପ୍ରାଧାନ୍ୟ ବିସ୍ତାର କଲେ ମନୁଷ୍ୟ କିଭଳି ବ୍ୟବହାର କରେ ତାହା ପ୍ରଥମେ ଦେଖାଯାଉ । ଘର ମୋର, ସବୁକିଛି ମୋର, ଈଶ୍ୱର କେହି ନୁହନ୍ତି, ମୁଁ ହିଁ ବଡ଼, ଏଭଳି ଭାବିବା ଓ କହି ହେବା ହେଉଛି ରଜୋଗୁଣର ଲକ୍ଷଣ । ରଜୋଗୁଣସମ୍ପନ୍ନ ବ୍ୟକ୍ତି କେବଳ ନିଜ ପରିବାର କଥାହିଁ ଚିନ୍ତା କରିଥାଏ । 'ଖାଅ, ପିଅ, ମଉଜ କର'— ଏହି ନୀତିକୁ ଯେଉଁମାନେ ମାନି ଚଳନ୍ତି ଏବଂ ଯେଉଁମାନେ ଧନ ସମ୍ପତ୍ତିର ସଞ୍ଚୟ ବଢ଼େଇବାରେ ଲାଗିଥାନ୍ତି, ଯେଉଁମାନଙ୍କର ଦେହାଭିମାନ ଥାଏ ସେମାନେ ରଜୋଗୁଣସମ୍ପନ୍ନ । ଯେଉଁମାନେ

---

* ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।
ଜଘନ୍ୟ ଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ।
— ଗୀତା (୧୪ ଶ ଅଧ୍ୟାୟ, ୧୮ଶ ଶ୍ଲୋକ)

ବିଷୟାସକ୍ତ, ବିଳାସବ୍ୟସନରେ ମତ୍ତ, ସେମାନେ ରଜୋଗୁଣର ଦାସାନୁଦାସ । ସେମାନେ ଦୈନନ୍ଦିନ ନିୟମ ପାଳନ କରି ନ ଥାନ୍ତି ଏବଂ ବ୍ରତୋପବାସ କରିବାକୁ ଅନିଚ୍ଛୁକ । ମିଷ୍ଟାନ୍ନ ଖାଦ୍ୟ ପ୍ରତି ସେମାନଙ୍କର ତୀବ୍ର ଲାଳସା ରହିଥାଏ । ସେମାନେ ଭକ୍ତି, ଜ୍ଞାନ, ବୈରାଗ୍ୟ ଓ ପରମାତ୍ମା ଦିଗରେ ଉଦାସୀନ, କିନ୍ତୁ ସାଂସାରିକ ଭୋଗସାମଗ୍ରୀ ଲାଭ ଲାଗି ସବୁବେଳେ ବ୍ୟଗ୍ର । ଫଳରେ ସେମାନେ ଜନ୍ମମୃତ୍ୟୁର ଜାଲରୁ ଉଦ୍ଧାର ପାଇ ପାରନ୍ତି ନାହିଁ । ଭଗବତଭକ୍ତି ଦ୍ୱାରାହିଁ ମନୁଷ୍ୟ ସାଂସାରିକ ଇଚ୍ଛା ଓ ବାସନାରୁ ମୁକ୍ତ ହୋଇପାରେ । ସଂସାରକୁ ସଂପୂର୍ଣ୍ଣ ଭାବରେ ତ୍ୟାଗ କରି ବୈରାଗ୍ୟ ଲାଭ ନ କରିପାରିଲେ ମଧ୍ୟ ଭଜନକୀର୍ତ୍ତନ ଦ୍ୱାରା ପ୍ରଭୁଙ୍କ ପ୍ରତି ଅନନ୍ୟ ପ୍ରେମଭାବ ବଢ଼ାଇବା ଉଚିତ । ପ୍ରାରବ୍ଧ ଅନୁସାରେ ସୁଖ ଦୁଃଖ ଭୋଗ କଲେ ମଧ୍ୟ ପରମେଶ୍ୱରଙ୍କ ପ୍ରତି ନିଜର ମନକୁ ଢ଼ାଳି ରଖିବା ଉଚିତ । ଉପଲବ୍ଧି କରିବା ଉଚିତ ଯେ ଆଦି ଓ ଅନ୍ତରେ ଏକ ପରମାତ୍ମା ହିଁ ବିଦ୍ୟମାନ । ମଧ୍ୟଭାଗରେ ସଂସାରର ଆଭାସ ଏବଂ ଏହି ସଂସାରରେ ଯିଏ ରହିଥାଏ ତା'ମନରେ ମମତ୍ୱଭାବ ସୃଷ୍ଟି ହୋଇଥାଏ । ତେଣୁ ଆଦି, ମଧ୍ୟ ଓ ଅନ୍ତରେ ଯେଉଁ ସତତ୍ ପରମାତ୍ମ ତତ୍ତ୍ୱ ରହିଛି ସେଥିପ୍ରତି ପୂର୍ଣ୍ଣ ନିଷ୍ଠା ରହିବା ଉଚିତ ।

ଯିଏ କେବଳ ସାଂସାରିକ ବିଷୟ ଚିନ୍ତା କରିଥାଏ, ସେ ସକଳ ରଜୋଗୁଣ ସମ୍ପନ୍ନ ବ୍ୟକ୍ତି ବୋଲି ଆଗରୁ କୁହାଯାଇଛି । ଅନ୍ୟ ଶୁଦ୍ଧ ରଜୋଗୁଣ ପରମାର୍ଥିକ ହୋଇଥାଏ । ଏହାର ପରିଚୟ ସତ୍ତ୍ୱଗୁଣର ବର୍ଣ୍ଣନା ବେଳେ ଦିଆଯିବ । ଭଗବଦ୍ ଭଜନର ଆଧାର ହେଉଛି ଏହି ଶୁଦ୍ଧ ରଜୋଗୁଣ । ଶାସ୍ତ୍ରରେ କୁହାଯାଇଛି "ରଜଃ କର୍ମାଣି ବର୍ତ୍ତତେ ।" ଅର୍ଥାତ୍ ପ୍ରତ୍ୟେକ କର୍ମ ହେଉଛି ରଜୋଗୁଣର କ୍ରିୟା କିନ୍ତୁ ରଜୋଗୁଣ ଓ ସତ୍ତ୍ୱଗୁଣର ମିଶ୍ରଣରେ ଯେଉଁ କାର୍ଯ୍ୟ ହୁଏ ତାକୁ ଶୁଦ୍ଧ କର୍ମ କୁହାଯାଇଥାଏ ।

## ଷଷ୍ଠ ସମାସ
## ।। ତମୋଗୁଣ ଲକ୍ଷଣ ।।

ପୂର୍ବ ଅଧ୍ୟାୟରେ ରଜୋଗୁଣର ଲକ୍ଷଣ ତଥା କାର୍ଯ୍ୟ କ'ଣ କୁହାଯାଇଛି । ବର୍ତ୍ତମାନ ମୁଁ ତମୋଗୁଣର ଲକ୍ଷଣ କହିବି । ସାଂସାରିକ ଦୁଃଖ ହେତୁ ମନରେ

ନାନା ଉଦ୍‌ବିଗ୍ନତା ସୃଷ୍ଟି ହୋଇଥାଏ । ସେହିଭଳି କେତେକ କାରଣରୁ କ୍ରୋଧ ମଧ୍ୟ ଉତ୍ପନ୍ନ ହୋଇଥାଏ । ଏସବୁ ହେଉଛି ତମୋଗୁଣର ଲକ୍ଷଣ । କ୍ରୋଧ ଯେତେବେଳେ ତୀବ୍ର ଓ ଉଗ୍ର ହୋଇଉଠେ ସେତେବେଳେ ମନୁଷ୍ୟ ବାପା, ମା, ଭାଇ, ଭଉଣୀ, ସ୍ତ୍ରୀ କାହାକୁ ହେଲେ ଚିହ୍ନି ପାରେ ନାହିଁ । ସାମନାରେ ଯିଏ ପଡ଼େ ତାକୁ ମାରିବାକୁ ଇଚ୍ଛା ହୁଏ ଏବଂ ଆତ୍ମହତ୍ୟା କରିବାକୁ ମଧ୍ୟ ସେ ଉଦ୍ୟତ ହୋଇଥାଏ । କ୍ରୋଧବଶତଃ ଯେଉଁସବୁ ଭାବ ପ୍ରକାଶ ପାଇଥାଏ ସେଗୁଡ଼ିକ ତମୋଗୁଣ । ତମୋଗୁଣସମ୍ପନ୍ନ ବ୍ୟକ୍ତିକୁ ପାଗଳ କୁହାଯାଇପାରେ । କାରଣ ସେ କୌଣସି ସିଦ୍ଧାନ୍ତରେ ପହଞ୍ଚିପାରେନା । ମନ ସର୍ବଦା ଅସ୍ଥିର ରହିଥାଏ । ସେ ନିଦ୍ରାକୁ ଭାରି ଭଲପାଏ । ଅନ୍ୟ ଜୀବକୁ ମାରିବା ଓ ଖାଇବାରେ ସେ ଆନନ୍ଦ ଅନୁଭବ କରେ । ତା ହୃଦୟରେ ଦୟାମାୟା ବୋଲି କିଛି ନ ଥାଏ । ମନରେ କପଟଭାବ ରଖି ଅନ୍ୟର ଅମଙ୍ଗଳ କରିବାକୁ ସେ ସବୁବେଳେ ଇଚ୍ଛା କରିଥାଏ ଏବଂ ସବୁବେଳେ ଉନ୍ମତ୍ତ ଅବସ୍ଥାରେ ରହିଥାଏ ।

ଯିଏ ସତ୍‌କର୍ମ କରିବାକୁ ଅନିଚ୍ଛୁକ, ଯିଏ ପାପକର୍ମ କରିବାଲାଗି ତିଳେହେଲେ ଭୟ କରେ ନାହିଁ, ସିଏ ହେଉଛି ତମୋଗୁଣ ସମ୍ପନ୍ନ । ତମୋଗୁଣ-ବିଶିଷ୍ଟ ବ୍ୟକ୍ତି ଅନ୍ୟର ଦୁଃଖ ଦେଖିଲେ ସନ୍ତୋଷ ଲାଭ କରିଥାଏ ଏବଂ ସାଂସାରିକ କାର୍ଯ୍ୟରେ ବୁଡି ରହିଥାଏ । ତାର ଭକ୍ତିଭାବ ବିଲ୍‌କୁଲ୍ ନଥାଏ । ସ୍ନାନ, ପୂଜାପାଠ ଆଦିକୁ ସେ ଆଦୌ ଭଲ ପାଏନା । କିନ୍ତୁ ଅଧର୍ମ କାର୍ଯ୍ୟକୁ ଅତି ଉତ୍ସାହର ସହିତ କରିଥାଏ । କାମନା ସିଦ୍ଧିଲାଗି ସେ ନାନାଦି ବ୍ରତ, ଉପବାସ ଏବଂ ପଞ୍ଚାଗ୍ନିସାଧନା କରିଥାଏ । ସେ ଧୂମ୍ରପାନ କରେ ଏବଂ ତଳେ ଗଡ଼ିବାକୁ ଭଲପାଏ । ନାନା କାମନା ଚରିତାର୍ଥ କରିବାଲାଗି ବିଭିନ୍ନ ବ୍ରତାନୁଷ୍ଠାନ କରିବା, ତଥାକଥିତ ସଂଯମ ଆଦି ଅବଲମ୍ବନ କରି ଦେହକୁ ଦଣ୍ଡ ଦେବା ଏବଂ ଦୁଃଖକୁ ସହି ନ ପାରି କାନ୍ଦବୋବାଳି କରିବା ହେଉଛି ତମୋଗୁଣର ଲକ୍ଷଣ । ତମୋଗୁଣସମ୍ପନ୍ନ ଲୋକେ ପରମାତ୍ମାଙ୍କ ନିନ୍ଦା କରିଥାନ୍ତି । ସତ୍‌ସଙ୍ଗ ନାଁ ପଡ଼ିବା ମାତ୍ରେ ନାକ ଟେକିଥାନ୍ତି । ତମୋଗୁଣର ଅନେକ ଖରାପ ଲକ୍ଷଣ ରହିଛି । ସେକଥା କେତେ ବା ବର୍ଣ୍ଣନା କରାଯାଇ ପାରିବ ? କେବଳ ଯେଉଁଗୁଡ଼ିକୁ ତ୍ୟାଗ କରିବା ସମ୍ଭବ, ତୁମ୍ଭକରେ ସେହି କେତୋଟି ମାତ୍ର ଏଠାରେ କୁହାଗଲା । ସାରକଥା ହେଉଛି, ତମୋଗୁଣ

ଦ୍ୱାରା ମନୁଷ୍ୟର ଅଧୋଗତି ହୋଇଥାଏ । ନିନ୍ଦନୀୟ କାର୍ଯ୍ୟ କଲେ ଭୟଙ୍କର ପରିଣାମ ଭୋଗିବାକୁ ପଡ଼େ ଏବଂ ବାରମ୍ବାର ବହୁ ନୀଚଯୋନିରେ ଜନ୍ମ ହେବାକୁ ପଡ଼େ । ତେଣୁ ତମୋ ଓ ରଜୋଗୁଣକୁ ତ୍ୟାଗକରି ସତ୍ତ୍ୱଗୁଣକୁ ଗ୍ରହଣ କରିବା ଉଚିତ । ସତ୍ତ୍ୱଗୁଣଦ୍ୱାରା ମନୁଷ୍ୟ ଜନ୍ମ-ମରଣ-ଚକ୍ରରୁ ଉଦ୍ଧାର ପାଇ ମୋକ୍ଷ ଲାଭ କରିଥାଏ । ହେ ଶ୍ରୋତାଗଣ ! ଆପଣମାନେ ମନ ଦେଇ ଶୁଣନ୍ତୁ । ମୁଁ ପରବର୍ତ୍ତୀ ଅଧ୍ୟାୟରେ ଏହି ସତ୍ତ୍ୱଗୁଣର ମହିମା ବର୍ଣ୍ଣନା କରିବି ।

## ସପ୍ତମ ସମାସ
## ।। ସତ୍ତ୍ୱଗୁଣ ଲକ୍ଷଣ ।।

ତମୋଗୁଣ କିପରି ଦୁଃଖଦାୟକ ଓ ଭୟଙ୍କର ଆପଣମାନେ ଶୁଣିସାରିଲେଣି । ବର୍ତ୍ତମାନ ମୁଁ ସତ୍ତ୍ୱଗୁଣର ବର୍ଣ୍ଣନା କରୁଛି । ଏହା ବାସ୍ତବରେ ଅତ୍ୟନ୍ତ ଦୁର୍ଲ୍ଲଭ । ସତ୍ତ୍ୱଗୁଣ ଭକ୍ତିଯୋଗର ଆଧାର । ଦୁଃଖମୟ ସଂସାରକୁ ଏହି ଗୁଣ କ୍ରମଶଃ ଲୋପ କରିଥାଏ । ଏହାଦ୍ୱାରା ଜୀବମାତ୍ରେ ଉତ୍ତମଗତି ଲାଭ କରିଥାନ୍ତି । ଏହା ଅତ୍ୟନ୍ତ ସୁଖଦାୟକ । ଏହାକୁ ଯିଏ ଲାଭକରେ ତାର ଚିତ୍ତରେ ଆନନ୍ଦଲହରୀ ଖେଳି ଉଠେ । ଏହା ମନୁଷ୍ୟକୁ ଜନ୍ମମରଣ-ଭୟରୁ ମୁକ୍ତକରେ । ଏହା ହେଉଛି ସର୍ବୋତ୍ତମଗୁଣ । ଏହାଦ୍ୱାରା ଅଜ୍ଞାନ ନାଶ ହୁଏ ଏବଂ ପରମାର୍ଥର ପଥ ପ୍ରଶସ୍ତ ହୋଇଉଠେ । ଏହି ସଦ୍‌ଗୁଣ ଦେହରେ ପ୍ରକଟିତ ହେଲେ କେଉଁ କେଉଁ ଲକ୍ଷଣ ପ୍ରକାଶ ପାଏ, ଏବେ ମୁଁ ସେହି କଥା କହିବି । ସତ୍ତ୍ୱଗୁଣ ସମ୍ପନ୍ନ ବ୍ୟକ୍ତି ସାମାନ୍ୟତମ ସାଧାରଣ ଲୋକଙ୍କ ଭଳି ସାଂସାରିକ କାର୍ଯ୍ୟ କରୁଥିଲେ ମଧ୍ୟ ଈଶ୍ୱରଙ୍କ ପ୍ରତି ତାର ଅସୀମ ଭକ୍ତି ଓ ପ୍ରେମଭାବ ରହିଥାଏ । ତାର ବିଚାରବୁଦ୍ଧି ସଦା ଜାଗ୍ରତ । ସଂସାର ଭିତରେ ରହିଥିଲେ ମଧ୍ୟ ସମସ୍ତ ପ୍ରକାର ଦୁଃଖଯନ୍ତ୍ରଣାକୁ ଭୁଲିଯାଇ ସେ କେବଳ ଭକ୍ତିମାର୍ଗରେ ହିଁ ଅଗ୍ରସର ହୋଇଥାଏ । ପରୋପକାର କାର୍ଯ୍ୟରେ ସେ ସଦା ତତ୍ପର । ତାର ବାହାର ଓ ଭିତର ନିର୍ମଳ ଓ ପବିତ୍ର । ଯଜନ, ଯାଜନ, ଅଧ୍ୟୟନ ଏବଂ ଅଧ୍ୟାପନା ଦିଗରେ ସେ ସବୁବେଳେ ମନୋନିବେଶ କରିଥାଏ ଏବଂ ସେଥିରୁ ସେ ଆନନ୍ଦଲାଭ କରିଥାଏ । ଆଧ୍ୟାତ୍ମ୍ୟ-ନିରୂପଣ ଦିଗରେ ସେ ସର୍ବଦା ଆଗ୍ରହୀ । ଦାନଧର୍ମ କରିବାକୁ ସେ ଭଲ ପାଏ । ଏ ସବ୍ ହେଉଛି ସତ୍ତ୍ୱଗୁଣର ଲକ୍ଷଣ । ସତ୍ତ୍ୱଗୁଣ ବିଶିଷ୍ଟ ବ୍ୟକ୍ତିର ହୃଦୟ ନିର୍ବିକାର । ତା

ହୃଦୟ କେବଳ ପ୍ରଭୁପ୍ରେମରେ ପରିପୂର୍ଣ୍ଣ । ସତ୍ତ୍ୱଗୁଣସମ୍ପନ୍ନ ବ୍ୟକ୍ତିର ମନ ବିଷୟଭୋଗରୁ ଆପେ ଆପେ ହଟିଯାଏ । ନାନାବିଧ ପଦାର୍ଥରୁ ମନ ଚାଲିଯାଏ । ତା'ପକ୍ଷରେ ପରମାତ୍ମା ହିଁ ସବୁଠାରୁ ପ୍ରିୟ ହୋଇ ଉଠନ୍ତି ।

ଏଭଳି ବ୍ୟକ୍ତି ଶରୀରକୁ ସାର୍ଥକ କରିବା ଲାଗି ଉଦ୍ୟମଶୀଳ ହୁଏ । ତାର ହୃଦୟ ଦୟା, କ୍ଷମା, ଶାନ୍ତିଆଦି ସଦ୍‌ଗୁଣରେ ପରିପୂର୍ଣ୍ଣ । ଅନ୍ୟକୁ ସୁଖୀ କରିବା ଦିଗରେ ସେ ନିରନ୍ତର ପ୍ରଯତ୍ନଶୀଳ । ଅତିଥି ଅଭ୍ୟାଗତଙ୍କୁ ପାଇଲେ ସେ ଅତି ଖୁସି ହୋଇଉଠେ । ସେମାନଙ୍କୁ ସେ ଆପ୍ୟାୟିତ ନକରି ଛାଡ଼େ ନାହିଁ । ଯାହା ହେଉନା କାହିଁକି ସବୁ ଈଶ୍ୱରଙ୍କ ଇଚ୍ଛାରେ ହିଁ ହେଉଛି ଏକଥା ଦୃଢ଼ ଭାବରେ ବିଶ୍ୱାସ କରି ସେ ଅତି ଧୈର୍ଯ୍ୟର ସହିତ ସୁଖଦୁଃଖକୁ ସମାନ ଭାବରେ ସହ୍ୟ କରିନିଏ । ତାର ଚିତ୍ତ କେବେହେଲେ ଚଞ୍ଚଳ ହୋଇଉଠେ ନାହିଁ । ମନ ବିଷୟବାସନା ଆଡ଼କୁ ଯାଉଥିବାର ସୂଚନା ପାଇବାମାତ୍ରେ ତାକୁ ସେ ସେଇଠି ଅଟକେଇଦିଏ । ସେ ନିଜର ଆପଦବିପଦ ସହ୍ୟ କରିବା ସଙ୍ଗେ ସଙ୍ଗେ ଅନ୍ୟର କଲ୍ୟାଣ ଚିନ୍ତା କରେ । କରୁଣା ତାର ସ୍ୱଭାବର ଏକ ଅଙ୍ଗ ହୋଇ ଉଠେ । ସତ୍ତ୍ୱଗୁଣ ଯାହାର ଭୂଷଣ ସେ ଧୀରେ ଧୀରେ ଏବଂ ଅତି ନମ୍ରଭାବରେ କଥା କହେ । ତା କଥାଦ୍ୱାରା କାହା ମନରେ ଯେପରି ଖରାପ ପ୍ରତିକ୍ରିୟା ନ ହୁଏ ସେଥିପାଇଁ ସେ ଚେଷ୍ଟା କରେ । ତାର କଥା ଓ କାମରେ ପରୋପକାର, ଉଦାରତା, ସହିଷ୍ଣୁତା, ଇନ୍ଦ୍ରିୟନିଗ୍ରହ, ସତ୍‌କାର୍ଯ୍ୟ, ପ୍ରେମଭାବ ଆଦି ଲକ୍ଷଣ ସହଜରେ ପ୍ରକଟିତ ହୋଇଥାଏ । ସେ ଦୁଷ୍କର୍ମକୁ ସର୍ବଦା ତ୍ୟାଗ କରିଥାଏ । ସାଧୁସନ୍ଥମାନଙ୍କୁ ସ୍ୱାଗତ କରେ । ତା'ମନରେ ପୂଜନ, ଭଜନ ଆଦି ପ୍ରତି ଉତ୍କଣ୍ଠା ଓ ବ୍ୟାକୁଳତା ସୃଷ୍ଟି ହୋଇଥାଏ । ସଦ୍‌ଗୁଣ ସମ୍ପନ୍ନ ସଜ୍ଜନମାନଙ୍କର ମୁଖ୍ୟ କାର୍ଯ୍ୟ ହେଉଛି ଅଜ୍ଞାନକୁ ଜ୍ଞାନଦାନ କରିବା, ବିପଥଗାମୀ ଲୋକଙ୍କୁ ସତ୍‌ମାର୍ଗ ଦେଖାଇବା ଏବଂ ଈଶ୍ୱରଭକ୍ତି ପ୍ରତି ସମସ୍ତଙ୍କୁ ଅନୁପ୍ରାଣିତ କରିବା । ସେମାନେ ଅନ୍ୟର ଦୁଃଖରେ ଦୁଃଖୀ ଏବଂ ଅନ୍ୟର ସୁଖରେ ସୁଖୀ ହୋଇ ଥାଆନ୍ତି । ନିଷ୍କାମଭକ୍ତି ଫଳରେ ପ୍ରଭୁଙ୍କ ପ୍ରତି ସେମାନଙ୍କ ଅଟଳ ଶ୍ରଦ୍ଧାଭାବ ରହିଥାଏ । ଏଭଳି ସଦ୍‌ଗୁଣ ତଥା ସତ୍ତ୍ୱଗୁଣସମ୍ପନ୍ନ ବ୍ୟକ୍ତି ହିଁ ସଂସାରସାଗର ଅତିକ୍ରମ କରି ମୋକ୍ଷଲାଭ କରିଥାଏ । ସେ ପ୍ରକୃତ ଜ୍ଞାନ ଓ ବିବେକ ଦ୍ୱାରା ପରମ ଭକ୍ତି-ସୁଖ ତଥା ପରମାନନ୍ଦ ଲାଭ କରିଥାଏ ।

## ଅଷ୍ଟମ ସମାସ
## ।। ସଦବିଦ୍ୟା ଲକ୍ଷଣ ।।

ପୂର୍ବ ଅଧ୍ୟାୟରେ ମୁଁ କୁବିଦ୍ୟାର ଲକ୍ଷଣ କହିଥିଲି । ବର୍ତ୍ତମାନ ସଦ୍‌ବିଦ୍ୟାର ଲକ୍ଷଣ ବର୍ଣ୍ଣନା କରୁଛି । ଏହି ଲକ୍ଷଣ ଅତ୍ୟନ୍ତ ଶୁଦ୍ଧ । ଏହାର ବିଚାର କରୁ କରୁ ମନୁଷ୍ୟ ନିଜକୁ ଭୁଲି ଯାଇଥାଏ । ସଦ୍‌ବିଦ୍ୟାବିଭୂଷିତ ପୁରୁଷ ସୁନ୍ଦର, ଚତୁର, ବଳବାନ, ଧୈର୍ଯ୍ୟବାନ, ଉଦାର, ଜ୍ଞାନୀ, ଭକ୍ତ, ତ୍ୟାଗୀ, ତପସ୍ୱୀ ଓ ଶାନ୍ତ । ସେ କାମନାରହିତ, ସର୍ବଜ୍ଞ । ସବୁଥିରେ ଶ୍ରେଷ୍ଠ ହୋଇ ମଧ୍ୟ ସେ ନମ୍ର । କ୍ଷମତାଶାଳୀ ହୋଇଥିଲେ ମଧ୍ୟ ଧାର୍ମିକ । ବୀର ହୋଇଥିଲେ ମଧ୍ୟ ବିବେକୀ ।

ଜ୍ଞାନୀ ଓ ଭକ୍ତ ଏହି ଦୁଇଟି ବିଷୟ ସମ୍ପର୍କରେ କେତେକ ସ୍ପଷ୍ଟୀକରଣ ଆବଶ୍ୟକ । ସଂସାରରେ ଜ୍ଞାନ ଓ ଭକ୍ତିର ସମନ୍ୱୟ କ୍ୱଚିତ ଦେଖାଯାଏ । ଯିଏ ଜ୍ଞାନୀ ସେ ଭକ୍ତ ହୋଇ ନଥାଏ । ଜ୍ଞାନୀ ମାତ୍ରେ ଭକ୍ତିକୁ ଏକ ଖେଳ ବୋଲି ଧରି ନେଇଥାଏ । ସେହିଭଳି ଯିଏ ଭକ୍ତ ସେ ଜ୍ଞାନୀକୁ ଜଣେ ଅହଂକାରୀ ବ୍ୟକ୍ତି ମନେକରି ତାର ଜ୍ଞାନକୁ ଉପହାସ କରିଥାଏ । କିନ୍ତୁ ସଦ୍‌ବିଦ୍ୟାସମ୍ପନ୍ନ ମନୁଷ୍ୟ ଜ୍ଞାନ ଓ ଭକ୍ତିର ରହସ୍ୟକୁ ଭଲ ଭାବରେ ଜାଣିଥାଏ । ତେଣୁ ସେ ଏକାବେଳକେ ଜ୍ଞାନୀ ଓ ଭକ୍ତ ଉଭୟର ଭୂମିକା ସୂଚାରୁରୂପେ ସମ୍ପାଦନ କରିଥାଏ । ଏଭଳି ପୁରୁଷ ସମସ୍ତ କର୍ମର କର୍ତ୍ତା ହୋଇ ମଧ୍ୟ ନିରହଙ୍କାର । ଅର୍ଥାତ୍ ସେ ସବୁ କର୍ମ କରେ କିନ୍ତୁ ସ୍ୱକର୍ମ ଲାଗି ତିଳେହେଲେ ଗର୍ବ କରେ ନାହିଁ । ସେ ସର୍ବଜ୍ଞ ହୋଇ ମଧ୍ୟ ନୀତିବାନ । ସେ ପୁଣ୍ୟବାନ । ତାର ଅନ୍ତର ସର୍ବଦା ଶୁଦ୍ଧ । ସେ ସ୍ୱଧର୍ମ-କର୍ମନିରତ, ଶ୍ରୁତି-ସ୍ମୃତିର ଭୋକ୍ତା ଏବଂ ଲୋକ-ପ୍ରଶଂସା ଓ ଲୋକବୃଦ୍ଧିର ପରୀକ୍ଷକ । ସଦ୍‌ବିଦ୍ୟାସମ୍ପନ୍ନ ପୁରୁଷ ଅନ୍ୟକୁ ଆଦର ସମ୍ମାନ ପ୍ରଦର୍ଶନ କରିଥାଏ । ସେ ସମସ୍ତଙ୍କୁ ସ୍ନେହପୂର୍ଣ୍ଣ ଆଚରଣ ପ୍ରଦର୍ଶନ କରିଥାଏ । ସେ ସର୍ବଦା ନିରପେକ୍ଷ । ତାର ଏହି ସଦ୍‌ଗୁଣକୁ ଲକ୍ଷ୍ୟ କରି ଲୋକେ ସ୍ୱତଃ ତା ପ୍ରତି ଆକୃଷ୍ଟ ହୋଇଥାନ୍ତି । ପରିବାର ପରିପୋଷଣ ଲାଗି ଯେତିକି ଧନ ଆବଶ୍ୟକ ସେଥିଲାଗି ସେ କର୍ମ କରିଥାଏ । ତା ସଙ୍ଗେ ସଙ୍ଗେ ତାର ପରମାର୍ଥ କାର୍ଯ୍ୟ ମଧ୍ୟ ଚାଲିଥାଏ । ଏହି ଦୁଇଟିଯାକ କାର୍ଯ୍ୟ କଲେ ମଧ୍ୟ ସେ ସେଥିରେ ଲିପ୍ତ ହୋଇ ନ ପଡ଼ି ନିର୍ଲିପ୍ତ

ରହିଥାଏ । ସେ ସମସ୍ତଙ୍କର ବନ୍ଧୁ, ତେଣୁ ସମସ୍ତଙ୍କର କଲ୍ୟାଣ କରିଥାଏ । ନିଜର ମଧୁର ବଚନ ଦ୍ୱାରା ସେ ଅନ୍ୟର ଦୁଃଖ, ଶୋକ ଦୂର କରେ । ସେ ସମର୍ଥ ଓ ପରାକ୍ରମଶାଳୀ ହୋଇଥିଲେ ମଧ୍ୟ ଅନ୍ୟର କୌଣସି କ୍ଷତି ଘଟାଇ ନ ଥାଏ ବରଂ ଅନ୍ୟ ସମସ୍ତଙ୍କର ଆଦରର ପାତ୍ର ହୋଇଥାଏ । ସେ ସମସ୍ତଙ୍କୁ ସୁଖକର କଥା କହିଥାଏ । ତୁଚ୍ଛାଟାରେ କାହାସହିତ କଳହ କରିନଥାଏ । ତା' ମନରେ କ୍ରୋଧ ଓ ଈର୍ଷାଭାବ ବିଲକୁଲ ନଥାଏ । ସଦ୍‌ଗୁଣସମ୍ପନ୍ନ ବ୍ୟକ୍ତି ହେଉଛି ସୁଖ, ସନ୍ତୋଷ, ହାସ୍ୟ, ସୁଯଶ, ବିଦ୍ୟା, କଳା, ଲକ୍ଷ୍ମୀ, ବୁଦ୍ଧି ଆଦି ସଦ୍‌ଗୁଣର ଏକ ଅପୂର୍ବ ସମାବେଶ । ଶ୍ରୋତାଗଣ ଏହି ସଦ୍‌ଗୁଣଗୁଡ଼ିକୁ ଅଭ୍ୟାସ କରିବେ ବୋଲି ସଂକ୍ଷେପରେ ମୁଁ ଏହି ଲକ୍ଷଣଗୁଡ଼ିକୁ କହିଲି । ସମସ୍ତେ ଏହି ସଦ୍‌ଗୁଣରେ ଭୂଷିତ ହେବା ଉଚିତ । ବୈରାଗ୍ୟବାନ ବ୍ୟକ୍ତି ଓ ସମାଜସେବକ ମାନଙ୍କ ଲାଗି ଏହି ସଦ୍‌ଗୁଣଗୁଡ଼ିକ ନିତାନ୍ତ ଆବଶ୍ୟକ । ପରବର୍ତ୍ତୀ ଅଧ୍ୟାୟରେ ମୁଁ ବୈରାଗ୍ୟର ଲକ୍ଷଣ ବର୍ଣ୍ଣନା କରିବି ।

## ନବମ ସମାସ
## ।। ବୈରାଗ୍ୟ ନିରୂପଣ ।।

ପୂର୍ବ ଅଧ୍ୟାୟରେ ମୁଁ କହିଛି ଯେ ବୈରାଗ୍ୟବାନ ପୁରୁଷମାତ୍ରେ ସଦ୍‌ବିଦ୍ୟାର ଅଭ୍ୟାସ କରିବା ନିତାନ୍ତ ଆବଶ୍ୟକ । ଏବେ ଏହି ଅଧ୍ୟାୟରେ ବୈରାଗ୍ୟର ବର୍ଣ୍ଣନା କରିବି । ଯେଉଁ ବ୍ୟକ୍ତି ସଂସାରପାଶରୁ ମୁକ୍ତ ଏବଂ ନିସ୍ପୃହଭାବରେ ସାଂସାରିକ କାର୍ଯ୍ୟ କରିଥାଏ ସେହି ବ୍ୟକ୍ତି ହିଁ ବିରାଗୀ ପଦବାଚ୍ୟ । ମୁଁ ବର୍ତ୍ତମାନ ଏହି ବିରାଗୀ ବ୍ୟକ୍ତିର ଗୁଣ ବର୍ଣ୍ଣନା କରିବି । ଏହି ସବୁ ଗୁଣ ଯାହାଠାରେ ଥାଏ ସେ ଯୋଗଲାଗି ସମର୍ଥ ଏବଂ ତାହାର ପରମାର୍ଥ ସଫଳ ହୋଇଥାଏ । ତାର ଆନନ୍ଦ ଓ ବୈରାଗ୍ୟ ବୃଦ୍ଧି ହୋଇଥାଏ । ସେ ଯାହା ସଂକଳ୍ପ କରେ ତାହା ପୂର୍ଣ୍ଣ ହୁଏ । ତୁଣ୍ଡରେ ତାର ସରସ୍ୱତୀ ବିଜେ କରିଥାନ୍ତି । ବୈରାଗ୍ୟବାନ ବ୍ୟକ୍ତିମାତ୍ରେ ନିମ୍ନ ସଦ୍‌ଗୁଣରେ ନିଜର ଅନ୍ତରକୁ ଭୂଷିତ କରିବା ଉଚିତ । ତାହାହେଲେ ସେ ଭୂମଣ୍ଡଳରେ ବିଖ୍ୟାତ ହୋଇପାରିବ ।

ସେ ସୁବିବେକୀ, ଆଧ୍ୟାତ୍ମିକଭାବାପନ୍ନ ହେବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟ ଜୟ କରିବା ଉଚିତ । ବୈରାଗ୍ୟବାନ ପୁରୁଷମାତ୍ରେ ସ୍ୱଭାବତଃ ଶାନ୍ତ ଏବଂ ଏହି ଶାନ୍ତ ଅବସ୍ଥାରେହିଁ ତାହାର ବୈରାଗ୍ୟପୂର୍ଣ୍ଣ ଚିନ୍ତାଧାରା ବିସ୍ତାର ଲାଭ କରିଥାଏ । ସେ ସଦାଚାରୀ ଓ ନିବୃତ୍ତିପରାୟଣ । ସେ କ୍ଷମାଭାବ ଦ୍ୱାରା ସମସ୍ତଙ୍କୁ ଆକର୍ଷଣ କରିଥାଏ । ସବୁ କାର୍ଯ୍ୟରେ ସେ ଦକ୍ଷ । ଅନ୍ୟର ହୃଦୟକୁ ଜୟ କରି ସେ ପରମାର୍ଥ ମାର୍ଗରେ ଅଗ୍ରସର ହୋଇଥାଏ । ବୈରାଗ୍ୟବାନ ପୁରୁଷ ଧୀର, ଗମ୍ଭୀର ଓ ଉଦାର । ସେ ଯେହେତୁ ପରୋପକାରୀ, ତେଣୁ ସଂସାରରେ ତାର ଯଶ ବ୍ୟାପିଥାଏ । ଯିଏ ସଂସାରପ୍ରତି ବିରାଗୀ ସେ ସେହିଭଳି ଲୋକକୁ ଖୋଜି ଖୋଜି ସେମାନଙ୍କର ସାଥୀ ହୋଇଥାଏ । ତେଣୁ ସାଧୁସନ୍ଥମାନେ ତାର ପରମ ମିତ୍ର । ସେ ଜପତପ କରେ । ସେଥିଲାଗି ସେ ଅତି ରମଣୀୟ ସ୍ଥାନରେ ନିଜର ଆଶ୍ରମ ତଥା ବିଶ୍ରାମସ୍ଥଳୀ ପ୍ରସ୍ତୁତ କରିଥାଏ । ସବୁ କାମ କରି ମଧ୍ୟ ସେ ନିର୍ଲିପ୍ତ । ସେ କାହାର ଆଶ୍ରିତ କିମ୍ବା ପରାଧୀନ ନୁହେଁ । ସେ ସବୁ ପ୍ରକାର ବିଚାରକୁ ଅଭ୍ୟାସ କରି ଯାହା ଉଚିତ ମନେ କରେ ତାହାକୁ ଗ୍ରହଣ କରିଥାଏ । ତାର ବିଚାରଧାରା ଏକତରଫା ନୁହେଁ । ସେ ପ୍ରତ୍ୟେକ ବ୍ୟକ୍ତିର ସ୍ୱଭାବ ଓ ଧର୍ମ ପ୍ରତି ସହିଷ୍ଣୁ । ସେ ସମସ୍ତଙ୍କୁ ସମାନ ଭାବରେ ବିଚାର କରେ । ସେ ସର୍ବଦା ସୁଗୁଣ ଓ ନିର୍ଗୁଣ ଉପାସନା ପଦ୍ଧତିର ଊର୍ଦ୍ଧ୍ୱରେ । ପିଣ୍ଡ ବ୍ରହ୍ମାଣ୍ଡ ଓ ତତ୍ତ୍ୱଜ୍ଞାନ ସମ୍ପର୍କରେ ତାର ଗଭୀର ଜ୍ଞାନ ରହିଥାଏ ।

ବୈରାଗ୍ୟବାନ ବ୍ୟକ୍ତିମାତ୍ରେ କର୍ମକୁ ଉପାସନା ଭାବେ ଗ୍ରହଣ କରିବା ଉଚିତ । ପ୍ରବୃତ୍ତି, ନିବୃତ୍ତି ଆଦି ସବୁ ବିଷୟ ସମ୍ପର୍କରେ ତାର ଗଭୀର ଜ୍ଞାନ ଓ ଅନୁଭୂତି ରହିବା ଉଚିତ । ପ୍ରେମ, ଯୋଗ, ଧ୍ୟାନ ଏବଂ ସହଜ ଅବସ୍ଥା ସମ୍ପର୍କରେ ମଧ୍ୟ ସେ ଭଲ ଭାବରେ ଅନୁଭୂତିଲାଭ କରିବା ଉଚିତ । ଧ୍ୟାନ, ଲକ୍ଷ୍ୟ, ଆସନ, ମୁଦ୍ରା, ମନ୍ତ୍ର-ତନ୍ତ୍ର ଓ ମତ-ମତାନ୍ତରର ରହସ୍ୟ ଭେଦ କରିବା ଭଳି ତାର ପ୍ରଭୂତ ଜ୍ଞାନ ଆବଶ୍ୟକ ।

ବୈରାଗ୍ୟବାନ ପୁରୁଷ ସମସ୍ତଙ୍କର ମିତ୍ର । ସ୍ୱାଧୀନ, ବହୁଗୁଣସମ୍ପନ୍ନ ଏବଂ ଈଶ୍ୱରଭକ୍ତ ହୋଇଥିଲେ ମଧ୍ୟ କୌଣସି ସଙ୍ଗଦୋଷ ତାକୁ ସ୍ପର୍ଶ କରିନଥାଏ । ସେ ବହୁଶାସ୍ତ୍ର ଅଧ୍ୟୟନ କରି ଅନ୍ୟର ଜ୍ଞାନ-ଅହଂକାରକୁ ଖଣ୍ଡନ କରିଥାଏ ଏବଂ ମୁମୁକ୍ଷୁମାନଙ୍କୁ ନିର୍ମଳ ପରମାର୍ଥ ମାର୍ଗଦର୍ଶନ କରାଇଥାଏ । ସେ ସମସ୍ତଙ୍କର

ସନ୍ଦେହ ଓ ଆଶଙ୍କା ଦୂର କରିଥାଏ ଏବଂ ସମସ୍ତଙ୍କୁ ନିଜର ମନେ କରିଥାଏ । ଏପରିକି ନିଜ ନିନ୍ଦୁକର ମଧ୍ୟ ସେ ବନ୍ଦନା କରିଥାଏ ।

ଯିଏ ପ୍ରକୃତରେ ବିରାଗୀ ସେ ଅନ୍ୟକୁ ମଧ୍ୟ ସଂସାରଜାଲରୁ ମୁକ୍ତ ହେବା ଲାଗି ବାଟ ଦେଖାଇଥାଏ । ସେ ଅନ୍ୟ ମନରେ ମୁକ୍ତିର ପିପାସା ବୃଦ୍ଧି କରାଇଥାଏ । ଯିଏ ସାଧନାମାର୍ଗରେ ପ୍ରବୃତ୍ତ ତାକୁ ସେ ପୂର୍ଣ୍ଣଜ୍ଞାନ ଦାନ କରିଥାଏ । ଅନ୍ୟର ସଦ୍‌ଗୁଣ ଦେଖିବାମାତ୍ରେ ତାକୁ ତ୍ୟାଗ ନ କରି ବରଂ ତାକୁ ଗ୍ରହଣ କରିବା ଲାଗି ସେ ପ୍ରବୃତ୍ତ ହୋଇଥାଏ । ବିରାଗୀ ପୁରୁଷ ଏହି ସବୁ ଲକ୍ଷଣକୁ ଉପେକ୍ଷା ନ କରି ସ୍ୱୀକାର କରିବା ଉଚିତ । ଏହି ଲକ୍ଷଣଗୁଡ଼ିକୁ ସ୍ୱୀକାର ନ କରି ଯିଏ ଏହିସବୁର ବିପରୀତ ଲକ୍ଷଣକୁ ଗ୍ରହଣ କରେ ସେ ହେଉଛି ଶିକ୍ଷିତ-ମୂର୍ଖ । ମୁଁ ଏହା ପରେ ଶିକ୍ଷିତ-ମୂର୍ଖର ଲକ୍ଷଣ କହିବି ।

## ଦଶମ ସମାସ
## ।। ଶିକ୍ଷିତ-ମୂର୍ଖର ଲକ୍ଷଣ ।।

ଏ ପର୍ଯ୍ୟନ୍ତ ମୁଁ ସଦ୍‌ବିଦ୍ୟା ଏବଂ ତ୍ୟାଗୀ ତଥା ବୈରାଗ୍ୟବାନ ପୁରୁଷର ଲକ୍ଷଣ କହିଆସିଛି । ଏ ସବୁ ଶୁଣି ମୂର୍ଖ ମଧ୍ୟ ବୁଦ୍ଧିମାନ ହୋଇପାରେ । ଏବେ ମୁଁ ନିଜକୁ ବୁଦ୍ଧିମାନ କହୁଥିବା ବ୍ୟକ୍ତି କିଭଳି ମୂର୍ଖ ହୋଇଥାଏ ସେହିକଥା କହିବି । ବୁଦ୍ଧି ଥାଉ ଥାଉ ଯିଏ ମୂର୍ଖ ସେମାନଙ୍କୁ ଶିକ୍ଷିତ-ମୂର୍ଖ ବା ପଣ୍ଡିତ-ମୂର୍ଖ କୁହାଯାଏ । ଶିକ୍ଷିତ-ମୂର୍ଖର ଦୁର୍ଗୁଣ ଶୁଣି ଶ୍ରୋତାମାନେ ମୋ ଉପରେ ଅସନ୍ତୁଷ୍ଟ ନ ହୁଅନ୍ତୁ । ସମସ୍ତେ ମନେ ରଖିବା ଉଚିତ ଯେ ଦୁର୍ଗୁଣଗୁଡ଼ିକୁ ତ୍ୟାଗ ନ କରିବା ପର୍ଯ୍ୟନ୍ତ କେହି ସୁଖୀ ହୋଇ ନ ପାରେ । ଯିଏ ବହୁଶାସ୍ତ୍ର ଅଧ୍ୟୟନ କରିଥାଏ ଏବଂ ବ୍ରହ୍ମଜ୍ଞାନ ପ୍ରତିପାଦନ କରିବା ଦିଗରେ ଯିଏ ଧୁରନ୍ଧର, ତାର ଅନ୍ତରରେ ଯଦି ଦୁରାଶା ଓ ଅଭିମାନ ରହିଥାଏ, ସେ ଉଚ୍ଚଶିକ୍ଷିତ ହୋଇଥିଲେ ମଧ୍ୟ ନିପଟ ମୂର୍ଖ । ଯେଉଁମାନେ କାହା ସହିତ କୌଣସି ସମ୍ପର୍କ ରକ୍ଷା ନ କରି ସ୍ୱଚ୍ଛନ୍ଦ ଓ ମୁକ୍ତ ଭାବରେ ଜୀବନଯାପନ କରିବା ଲାଗି ଉପଦେଶ ଦେଇଥାନ୍ତି, ନାନା ଜ୍ଞାନ ସମ୍ପର୍କରେ ଚର୍ଚ୍ଚା କରି ସଗୁଣଭକ୍ତିର ଉପହାସ କରିଥାଆନ୍ତି ତଥା ସ୍ୱଧର୍ମ ଏବଂ ସାଧନମାର୍ଗର ନିନ୍ଦା କରିଥାଆନ୍ତି ସେମାନେ ମଧ୍ୟ ଶିକ୍ଷିତ-ମୂର୍ଖ ।

ନିଜ ଜ୍ଞାନର ଅହଂକାର କରି ଅନ୍ୟ ସମସ୍ତଙ୍କୁ ଯେଉଁମାନେ ତୁଚ୍ଛ ମନେ କରିଥାନ୍ତି ଏବଂ ଅନ୍ୟମାନଙ୍କର ଅମଙ୍ଗଳ କାମନା କରିଥାନ୍ତି, ସେମାନଙ୍କୁ ମଧ୍ୟ ପାଠପଢୁଆ ମୂର୍ଖ କୁହାଯିବ । ଯାହାର ଆଦେଶ ପାଳନ କରିବା ଦ୍ୱାରା ଶିଷ୍ୟ ସଂକଟର ସମ୍ମୁଖୀନ ହୋଇଥାଏ ଏବଂ ନାନା ବିପଦରେ ପଡ଼ିଥାଏ, ସେଭଳି ଲୋକ ଶିକ୍ଷିତ-ମୂର୍ଖ ଶ୍ରେଣୀ ଅନ୍ତର୍ଭୁକ୍ତ । ପୂର୍ବ ଅଧ୍ୟାୟମାନଙ୍କରେ ରଜୋଗୁଣ, ତମୋଗୁଣ ଏବଂ କୁବିଦ୍ୟାର ଯେଉଁ ଦୋଷ ଦର୍ଶାଯାଇଛି ସେହି ଗୁଣଗୁଡ଼ିକ ଯାହାଠାରେ ଥାଏ ସେ ହେଉଛି ଶିକ୍ଷିତ-ମୂର୍ଖ । ଅନ୍ୟର ବୈଭବ ଦେଖି ଯିଏ ତାର ତୋଷାମଦ୍ କରେ; କୌଣସି ଗ୍ରନ୍ଥକୁ ପୂରାପୂରି ପଢ଼ି ନ ସାରି ଯିଏ ତାହାର ନିନ୍ଦା କରେ; ଅନ୍ୟର ଭଲଗୁଣକୁ ନ ଦେଖି କେବଳ ଦୋଷକୁହିଁ ଦେଖେ; ସଦ୍‌ଗୁଣର ତିରସ୍କାର କରେ; ଦୁଷ୍ଟବୁଦ୍ଧିରେ ଭଲଲୋକଙ୍କୁ ଅପମାନିତ କରିବାକୁ ଚେଷ୍ଟା କରେ; ନ୍ୟାୟ ନୀତିର ବିଚାର କରେ ନାହିଁ; ଜ୍ଞାନର ଅହଂକାର ଦ୍ୱାରା ବଶୀଭୂତ ହୋଇ ଅଧିକ ଜ୍ଞାନ ଆହରଣ ଲାଗି ଆଗ୍ରହୀ ହୁଏ ନାହିଁ; କ୍ରୋଧକୁ ରୋକିପାରେ ନାହିଁ; ଯାହାର କଥା ଓ କାମ ଭିତରେ ଆକାଶପାତାଳ ପାର୍ଥକ୍ୟ ରହିଥାଏ; ଅଧିକାର ବିନା ଯିଏ ଯେକୌଣସି ବିଷୟରେ ଭାଷଣ ଦେଇଥାଏ; ବାଚାଳ ଭାବରେ ଅନ୍ୟ ବକ୍ତାକୁ ପରାଜିତ କରିବାକୁ ଚେଷ୍ଟା କରିଥାଏ; କେବଳ ସାଂସାରିକ ବିଷୟପଙ୍କରେ ସର୍ବଦା ଘାଣ୍ଟି ହୋଇଥାଏ; ମହିଳାମାନଙ୍କ ସହିତ ବନ୍ଧୁତା ସ୍ଥାପନ କରି ସେମାନଙ୍କୁ ଉପଦେଶ ଦେଇଥାଏ ଏବଂ ଯିଏ ମଦମାଂସ ଆଦି ସେବନ କରେ; ଯାହା ଦେହାଭିମାନ ରହିଥାଏ; ପରମାତ୍ମାଙ୍କ ସ୍ତୁତି ନ କରି ଯିଏ କେବଳ ମନୁଷ୍ୟର ସ୍ତୁତି କରେ; ଧନ ଅଭିମାନରେ ଅନ୍ୟକୁ ତୁଚ୍ଛ ମନେ କରେ; ନିଜ ମତକୁ ହିଁ ପ୍ରତିପାଦନ କରିବା ଲାଗି ସର୍ବଦା ଉଦ୍ୟମ କରିଥାଏ; ସେ ପାଠୁଆ ହେଲେ କ'ଣ ହେବ ନିପଟ ମୂର୍ଖ ।

ଭକ୍ତି, ଜ୍ଞାନ, ବୈରାଗ୍ୟର କୌଣସି ଆଚରଣ ନ କରି ଯିଏ କେବଳ ବ୍ରହ୍ମଜ୍ଞାନ ସମ୍ପର୍କରେ ବଡ଼ବଡ଼ କଥା ଶୁଣେଇଥାଏ; ଯାହାର ତୀର୍ଥକ୍ଷେତ୍ର ଏବଂ ବେଦଶାସ୍ତ୍ର ପ୍ରତି ଆଦର ନ ଥାଏ; ଯିଏ ପବିତ୍ର କୁଳରେ ଜନ୍ମଲାଭ କରି ମଧ୍ୟ ଅପବିତ୍ର ଜୀବନଯାପନ କରିଥାଏ; ମୋତେ ହିଁ ଲୋକେ ଆଦର କରନ୍ତୁ, ସମ୍ମାନ କରନ୍ତୁ ବୋଲି ଯିଏ ମନରେ ଲାଳସା ରଖିଥାଏ; ମୁହଁ ଆଗରେ ପ୍ରଶଂସା କରି

ଯିଏ ପଛରେ ନିନ୍ଦା କରେ; ଯିଏ ସାଂସାରିକ କାର୍ଯ୍ୟକୁ ଆଦର କରି ପରମାର୍ଥକୁ ଅନାଦର କରେ ଏବଂ ଯିଏ ପରାଧୀନ ରହିଥାଏ ସିଏ ହେଉଛି ଶିକ୍ଷିତ ମୂର୍ଖ ।

ନିଜର ଦୋଷତ୍ରୁଟି ଜାଣି ସୁଦ୍ଧା ତାକୁ ତ୍ୟାଗ ନ କରିବା; ଅନ୍ୟକୁ ବ୍ୟଙ୍ଗବିଦ୍ରୂପ କରି କେବଳ ନିଜର ମଙ୍ଗଳ କାମନା କରିବା; ସଦ୍‌ଗୁରୁଙ୍କୁ ଉପେକ୍ଷା କରିବା; କୃପଣଙ୍କ ଭଳି ସର୍ବଦା ଧନସଞ୍ଚୟ ସମ୍ପର୍କରେ ଚିନ୍ତା କରିବା; ନିଜେ ଅଜ୍ଞାନ ହୋଇ ଅନ୍ୟକୁ ବ୍ରହ୍ମଜ୍ଞାନ ବତେଇବା— ଏସବୁ ହେଉଛି ଶିକ୍ଷିତ ମୂର୍ଖର ଲକ୍ଷଣ ।

ମନୁଷ୍ୟ ମାତ୍ରେ ନିଜର ଦୁର୍ଗୁଣକୁ ତ୍ୟାଗ କରି ସଦ୍‌ଗୁଣସମ୍ପନ୍ନ ହୁଅନ୍ତୁ, ସେଥିଲାଗି ମୁଁ ଶିକ୍ଷିତ-ମୂର୍ଖର ଲକ୍ଷଣ କହିଲି । କହୁ କହୁ ଯଦି ମୋ ମୁହଁରୁ କୌଣସି କଠୋର ଶବ୍ଦ ପ୍ରକାଶ ପାଇଯାଇଥାଏ, ସେଥିଲାଗି ଶ୍ରୋତାମାନଙ୍କଠାରୁ ମୁଁ କ୍ଷମାଭିକ୍ଷା କରୁଛି । ଶିକ୍ଷିତମୂର୍ଖମାନଙ୍କର ଲକ୍ଷଣ ତ କହିଲି, ଆପଣମାନଙ୍କୁ ପରିଶେଷରେ କହିଦେବାକୁ ଚାହେଁ ଯେ ସଂସାରଠୁ ବଳି ଦୁଃଖ ଆଉ କିଛି ନାହିଁ । ତେଣୁ ସଂସାରକୁ ଯିଏ ସୁଖ ମନେ କରିଥାଏ ସିଏ ହେଉଛି ସବୁଠାରୁ ବଡ଼ ମୂର୍ଖ । ଏହି ମୂର୍ଖତା ଯୋଗୁଁ ହିଁ ମନୁଷ୍ୟ ଜନ୍ମମରଣର ଦାରୁଣଦୁଃଖ ଭୋଗ କରିଥାଏ ।



# ତୃତୀୟ ଦଶକ

## ପ୍ରଥମ ସମାସ
## ।। ଜନ୍ମଦୁଃଖ-ବର୍ଣ୍ଣନ ।।

ଜନ୍ମ ହିଁ ଦୁଃଖର ଅଙ୍କୁର, ଶୋକର ସାଗର, ଭୟର ଅଚଳ ପର୍ବତ । ଏହି ଜନ୍ମ ହେଉଛି କର୍ମର କଳେବର, ପାପର ଖଣି ଏବଂ କାଳର ନିତ୍ୟ ନୂତନ ପରିତାପ । ଏହି ଜନ୍ମ ହେଉଛି କୁବିଦ୍ୟା ଅର୍ଥାତ୍ ଅଜ୍ଞାନର ଫଳ ଏବଂ ଭ୍ରାନ୍ତିର ପଟଳ । ଏହା ଜୀବନର ବନ୍ଧନ ଓ ମୃତ୍ୟୁର କାରଣ । ପ୍ରତ୍ୟେକ ଜୀବର ପଛେ ପଛେ ଅକାରଣରେ ଏହି ଉପଦ୍ରବ ଲାଗିରହିଥାଏ । ଏହି ଜନ୍ମହିଁ ଆତ୍ମସୁଖର ବିସ୍ମୃତି ଏବଂ ଚିନ୍ତା-ଚକ୍ରର କାରଣ । ଜନ୍ମ ହେଉଛି ଅସୀମ, ଅନନ୍ତ କାମନା-ବାସନାର ବିସ୍ତାର ତଥା ପରିବ୍ୟାପ୍ତି । ଜୀବର ଚରମ ଦୁର୍ଦ୍ଦଶାର ଅନ୍ୟ ନାମ ହେଉଛି ଜନ୍ମ । ଏହି ଜନ୍ମ ହେଉଛି ମମତା ରୂପିଣୀ ପିଶାଚୀ । ମାୟାର ଭ୍ରମଜାଲ ହେଉଛି ଏହି ଜନ୍ମ । ଏହା ମୋକ୍ଷ-ମାର୍ଗର ପ୍ରତିବନ୍ଧକ । ଏହି ଜନ୍ମଯୋଗୁ ହିଁ ମନୁଷ୍ୟ ପରମାତ୍ମାକୁ ଭୁଲି ଅହଂକାରୀ ହୋଇ ଉଠିଥାଏ । ଏହି ଜନ୍ମ ହିଁ ମନୁଷ୍ୟକୁ ବିଷୟବୁଦ୍ଧି ସମ୍ପନ୍ନ କରିଥାଏ ଏବଂ ନାନା ଦୁର୍ଦ୍ଦଶାର ଗହ୍ୱରକୁ ଠେଲି ଦେଇଥାଏ । ନାନାବିଧ ପାତକ ଯୋଗୁ ହିଁ ଦେହର ଉତ୍ପତ୍ତି । ଏହି ଜନ୍ମ ହିଁ ମନୁଷ୍ୟକୁ ବିଷୟଜାଲରେ ଛନ୍ଦି ଘୃଣିତ ନରକ ଭିତରେ ପକାଇଥାଏ । ମନୁଷ୍ୟ ଜନ୍ମ ହେବା ମାତ୍ରେ ବହୁ ଦୁଃଖକଷ୍ଟ ତାର ପିଛା କରିଥାଆନ୍ତି ।

ଶରୀରଠୁ ବଳି ଅପବିତ୍ର ଆଉ କିଛି ନାହିଁ । ଅତ୍ୟନ୍ତ ଦୂଷିତ ରଜସ୍ୱଳା ସ୍ତ୍ରୀର ରଜରୁ ଜୀବ ଜନ୍ମଲାଭ କରିଥାଏ । ଏହି ରଜଦ୍ୱାରା ପ୍ରସ୍ତୁତ ପିଣ୍ଡ ହିଁ ଏହି ଶରୀର । ଏଭଳି ଅଶୁଦ୍ଧ ରକ୍ତରେ ଗଠିତ ଏହି ଦେହକୁ ଶୁଦ୍ଧ ଓ ପବିତ୍ର କୁହାଯାଇପାରେ କି ? ବସ୍ତ୍ର ଓ ଅଳଙ୍କାରରେ ସଜେଇ ରଖାଗଲେ ମଧ୍ୟ, ଚମଡ଼ାରେ ଢ଼ଙ୍କା ହୋଇଥିବା କୁଣ୍ଡର ଆବରଣ ଭଳି ଏହି ଶରୀରରୂପକ କୁଣ୍ଡରେ ନରକର ଗଣ୍ଠିଲି ବନ୍ଧା ହୋଇ ରହିଛି । କୁଣ୍ଡକୁ ଧୋଇ ଧାଇ ପରିଷ୍କାର କରାଯାଇ ପାରେ, କିନ୍ତୁ ଏ ଦେହ ଏଭଳି ଭାବେ ତିଆରି ହୋଇଚି ଯେ ଏହାକୁ ପ୍ରତିଦିନ

ଧୋଇ ପରିଷ୍କାର କଲେ ମଧ୍ୟ ଏହା ଯେପରି ଦୁର୍ଗନ୍ଧଯୁକ୍ତ ସେହିଭଳି ଦୁର୍ଗନ୍ଧଯୁକ୍ତ ହୋଇ ରହିଥାଏ । ଏ ଶରୀର ହେଉଚି ଅସ୍ଥି, ପଞ୍ଜରା ଓ ନାଡ଼ିର ଏକ ଜାଲ । ମେଦ-ମାଂସ ଓ ରକ୍ତରେ ପ୍ରସ୍ତୁତ ଏ ଶରୀର ନାନାବ୍ୟାଧିର ଘର, ମଳମୂତ୍ରର ଭଣ୍ଡାର । ଏ ଶରୀର ଅଗଣିତ କୃମି, ଜୀବାଣୁ,କୀଟାଣୁର ଆବାସସ୍ଥଳ । ଲାଳ କଫ, ପିତ୍ତ ଯୁକ୍ତ ଏ ଶରୀର ଲାଗି ବଡ଼େଇ କରିବା ମୂର୍ଖତା ନୁହଁକି ?

ଯେଉଁ ଶରୀରରେ ବଢ଼ିଆ ବଢ଼ିଆ ଖାଦ୍ୟ ମଳରେ ପରିଣତ ହୋଇଥାଏ; ନିର୍ମଳ ପବିତ୍ର ଗଙ୍ଗାଜଳ ଦୁର୍ଗନ୍ଧ ମୂତ ପାଲଟିଥାଏ; ଏଭଳି ମଳମୂତ୍ର ବାନ୍ତି ଦ୍ୱାରା ବଢୁଥିବା ଏ ଶରୀରପାଇଁ ଅଭିମାନ କରିବା ବୃଥା ନୁହଁକି ? ଯଦି ଶରୀରରେ ମଳମୂତ୍ର ନ ହୁଅନ୍ତାଏହା ଜୀବିତ ରହି ପାରନ୍ତା ନାହିଁ । ରାଜା ହେଉ ବା ଭିକ୍ଷୁକ ହେଉ କାହାରି ହେଲେ ପେଟ ବିନା ମଳମୂତ୍ରରେ ରହିନପାରେ । ଶରୀର ସୁସ୍ଥ ରହିଥିବା ବେଳେ ତ ଏହି ଦଶା, ଅସୁସ୍ଥ ହୋଇପଡ଼ିଲେ ଏହା ଦଶା କଣ ହୁଏ ତାକୁ ବର୍ଣ୍ଣନା କରିବାକୁ ସାହସ ହେଉନି ।

ଏହି ଦେହକୁ ମାଆର ଗର୍ଭ ରୂପକ କାରାଗୃହରେ ନଅମାସକାଳ ଅନନ୍ତ କଷ୍ଟ ଭୋଗ କରିବାକୁ ପଡ଼ିଥାଏ । ସବୁ ଅର୍ଥାତ୍ ନଅଟିଯାକ ଦ୍ୱାର ବନ୍ଦ ରହିବା ଫଳରେ ଶ୍ୱାସ ନେବାଭଳି ଉପଯୁକ୍ତ ବାୟୁ ମଧ୍ୟ ମିଳେ ନାହିଁ । ମାତୃଗର୍ଭରେ ଚମଡ଼ାର ପିଣ୍ଡ ମଳ ଭିତରେ ଲଟପଟ ହୋଇ ରହିଥାଏ । ଲାଳଦ୍ୱାର ରସର ପୂର୍ତ୍ତି ହୋଇଥାଏ । ମଳମୂତ୍ର, କଫ, ପିତ୍ତ, ରକ୍ତ ଓ କୃମିଆଦି ଜୀବାଣୁ ଦ୍ୱାରା ଗର୍ଭସ୍ଥ ଶିଶୁ ଭୟଭୀତ ହୋଇ ଭଗବାନଙ୍କୁ ପ୍ରାର୍ଥନା କରି କହେ, ''ହେ ଚକ୍ରପାଣି ! ଏହି ନରକରୁ, ଏହି ବନ୍ଦୀଗୃହରୁ ମତେ ଯଥାଶୀଘ୍ର ଉଦ୍ଧାର କର । ହେ ଭଗବାନ ! ମତେ ଏହିଥରକ ଦୁଃଖରୁ ମୁକ୍ତ କରିଦେଲେ ମୁଁ ନିଜର କଲ୍ୟାଣ-ମାର୍ଗ ଧରିବି, ଆଉ କେବେହେଲେ ଏହି ଗର୍ଭରୂପୀ କାରାଗୃହକୁ ଆସିବି ନାହିଁ ।''

ଅତ୍ୟନ୍ତ ଦୁଃଖରେ ପଡ଼ି ଗର୍ଭସ୍ଥ ଶିଶୁ ଏହିଭଳି ପ୍ରତିଜ୍ଞା କରିବାମାତ୍ରେ ତାର ଭୂମିଷ୍ଠ ହେବାର ସମୟ ଆସିଯାଏ । କିନ୍ତୁ ଜନ୍ମ ହେବା ପରେ ସେ ନିଜ ପ୍ରତିଜ୍ଞାକୁ ଭୁଲିଯାଏ । ଗର୍ଭରେ ରହିଥିବା ବେଳେ ସେ ''ସୋଽହଂ, ସୋଽହଂ'' (ସିଏ ଯିଏ ମୁଁ ସିଏ) କହି ହୋଇଥାଏ । କିନ୍ତୁ ଗର୍ଭରୁ ବାହାରି ଆସିବା ମାତ୍ରେ ସେ ''କୋଽହଂ, କୋଽହଂ'' (ମୁଁ କିଏ, ମୁଁ କିଏ ?) ବୋବାଳି ଛାଡ଼ି ନିଜ ନିଜକୁ ଓ ନିଜ ପ୍ରତିଜ୍ଞାକୁ ଭୁଲିଯାଏ ।

ଏହିଭଳି ଭାବେ ସେ ଗର୍ଭବାସର ଘୋର ଦୁଃଖ ଦୁର୍ଦ୍ଦଶାରୁ ମୁକ୍ତ ହୋଇ ବାହାରକୁ ଆସିବା ପରେ ଅଜ୍ଞାନ ଓ ଭ୍ରାନ୍ତିକୁହିଁ ସୁଖକର ମନେ କରିଥାଏ । ବାଲ୍ୟାବସ୍ଥାରୁ ଓ ଯୁବାବସ୍ଥା ଆଦି ବିଭିନ୍ନ ଅବସ୍ଥାକୁ ଉତ୍ତୀର୍ଣ୍ଣ ହେବା ଭିତରେ ସେ ବାରମ୍ବାର ନାନା ଦୁଃଖ ସୁଖ ଅନୁଭବ କରିଥାଏ । ଏହିଭଳି ଭାବେ ଜୀବ ମାୟା-ଜାଲରେ ପଡ଼ିଯାଏ । ପ୍ରତ୍ୟେକ ପ୍ରାଣୀକୁ ଏହି ଗର୍ଭବାସ ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ତେଣୁ ଏହି ସଙ୍କଟରୁ ଉଦ୍ଧାର ପାଇବା ଲାଗି ଭଗବାନଙ୍କ ଶରଣ ନେବା ଉଚିତ । ଭଗବତ୍-ଭକ୍ତିରୁ ହିଁ ସେ ଜନ୍ମରୁ ମୁକ୍ତ ହୋଇଥାଏ । ଆତ୍ମଜ୍ଞାନ ଯୋଗୁଁ ସେ ସଦା ସର୍ବଦା ଉଦାର । ଗର୍ଭବାସର ଦାରୁଣ ଦୁଃଖ ସମ୍ପର୍କରେ ମୁଁ ଯଥାଶକ୍ତି ବର୍ଣ୍ଣନା କଲି । ଏଣିକି ମୁଁ ଜୀବନର ଚରିତ୍ର ନିରୂପଣ କରିବି । ହେ ଶ୍ରୋତାଗଣ ! ଆପଣମାନେ ଜାଗ୍ରତ ଭାବେ ସାବଧାନତାର ସହିତ ଶୁଣିବା ଲାଗି ଉଦ୍ୟମ କରିବାକୁ ଅନୁରୋଧ ।

## ଦ୍ୱିତୀୟ ସମାସ
## ।। ସଗୁଣ ପରୀକ୍ଷା ।। (୧)

ସଂସାର ହିଁ ସବୁ ଦୁଃଖର ମୂଳ । ତେଣୁ ଜୀବ ମାତ୍ରେ ଦୁଃଖାଗ୍ନିରେ ତିଳ ତିଳ ହୋଇ ଜଳିବାରେ ଲାଗିଥାଏ । ପୂର୍ବ ଅଧ୍ୟାୟରେ ମୁଁ ଗର୍ଭବାସର କାହାଣୀ କହିଛି । ଏବେ ଆଗ କଥା ଶୁଣନ୍ତୁ ।

ପିଲାର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାହାର କୋମଳ ଚମଡ଼ାରେ କଷ୍ଟ ହୋଇଥାଏ । କିନ୍ତୁ ସେ ନିଜେ ସେହି କଷ୍ଟକୁ ପ୍ରକାଶ କରିପାରେ ନାହିଁ କିମ୍ବା ମା ମଧ୍ୟ ତା କଷ୍ଟକୁ ବୁଝିପାରେ ନାହିଁ । ମା ପିଲାକୁ ନାନା ଭାବରେ ଗେଲ କରିଥାଏ  ଅଥଚ ତାର ମାନସିକ ବ୍ୟଥାକୁ ବୁଝିପାରେ ନାହିଁ । ଛୋଟ ଶିଶୁ ନିଜ ଶରୀରକୁ ମଧ୍ୟ ରକ୍ଷା କରିପାରେ ନାହିଁ । କେବେକେବେ ନିଆଁରେ ତା'ଦେହ ପୋଡ଼ିଯାଏ । ଦୁର୍ଘଟଣାରେ ତାର କୌଣସି ଅଙ୍ଗ ମଧ୍ୟ ନଷ୍ଟ ହୋଇଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ନିଜ ମାଆକୁ ଚିହ୍ନିବାକୁ ଲାଗେ । ସେ ନିଜ ମାଆକୁ ଏତେ ଭଲ ପାଇ ବସେ ଯେ ତାକୁ ନ ଦେଖିଲେ କାନ୍ଦେ । ସେହି ସମୟରେ ମାଆହିଁ ତାର ସବୁଠାରୁ ପ୍ରିୟଜନ । ମାଆ ବିନା ସେ ବ୍ୟସ୍ତ ହୋଇପଡ଼େ । ସେହି

ସମୟରେ ବ୍ରହ୍ମା ଆସି ତାକୁ ଯେତେ ବୁଝାନ୍ତୁନା କାହିଁକି କିମ୍ବା ଲକ୍ଷ୍ମୀ ଆସି ତା ଉପରେ ଯେତେ କୃପା ଦୃଷ୍ଟି ପକାନ୍ତୁ ନା କାହିଁକି ସେ ମାଆ ବିନା ଚୁପ୍ ହୁଏନା । ସେ କେବଳ ମାଆ ପାଖରେ ରହି ସୁଖ ଅନୁଭବ କରିଥାଏ ଏବଂ ମାଆ ଚାଲିଗଲେ ଦୁଃଖ ଅନୁଭବ କରିଥାଏ । ପିଲା ବଡ଼ ହୋଇଯିବା ପରେ ମାଆକୁ ଭୁଲି ଖେଳରେ ମାତି ରହେ । ସମବୟସ୍କ ପିଲାଙ୍କ ସହିତ ଖେଳୁଥିବା ସମୟରେ ହାରିଗଲେ ଦୁଃଖ ଅନୁଭବ କରେ, ଜିଣିଗଲେ ଆନନ୍ଦ ଅନୁଭବ କରେ । ତା ପରେ ତାକୁ ବାପ ମା'ଙ୍କ ଉପଦେଶ ଆଉ ଭଲ ଲାଗେନି । ଖେଳାଖେଳି କରିବାରେ ସେ ମାଆ ବାପାଙ୍କୁ ଭୁଲିଯାଏ । ଖେଳିବା ଭିତରେ କେତେ ଦୁର୍ଘଟଣା ଘଟିଥାଏ । କେତେବେଳେ ତାର ଦାନ୍ତ ଭାଙ୍ଗେ ତ କେତେବେଳେ ଆଖି ଫୁଟିଯାଏ । କେବେକେବେ ଗୋଡ଼ ଭାଙ୍ଗିଯାଇ ସେ ଛୋଟା ହୋଇଯାଏ । ସମୟେ ସମୟେ ତାକୁ ଜ୍ୱର ହୁଏ । ହଇଜା, ବସନ୍ତ ଆଦି ରୋଗରେ ମଧ୍ୟ ସେ ପୀଡ଼ିତ ହୋଇଥାଏ । କେବେକେବେ ତାକୁ ଭୂତ ଡାହାଣୀ ମଧ୍ୟ ଲାଗିଯାଏ । ଏସବୁ ବାଧାବିଘ୍ନ ଅତିକ୍ରମ କରି ଯଦି ପିଲା ଜୀବିତ ରହେ ଏବଂ ବଡ଼ ହୁଏ ତ ବାପାମାଆ ଖୁବ ଧୁମ୍‌ଧାମ୍‌ରେ ତାର ବିବାହ ଉତ୍ସବ କରାଇଥାଆନ୍ତି । ଅଧିକ ମାନସମ୍ମାନ ଓ ଯୌତୁକ ପାଇଥିବା ଦୃଷ୍ଟିରୁ ସେ ଶ୍ୱଶୁରଘରକୁ ଅଧିକ ଭଲପାଏ । ତା'ର ମା' ବାପା ଦୁଃଖ କଷ୍ଟରେ କାଳାତିପାତ କରୁଥିଲେ ମଧ୍ୟ ସେମାନଙ୍କ ମୁହଁ ସୁଦ୍ଧା ଚାହେଁ ନାହିଁ । ଏଇଠି ମା' ବାପାଙ୍କ କାର୍ଯ୍ୟ ଶେଷ ହୋଇଥାଏ ।

ସ୍ତ୍ରୀ ଆସିବା ପରେ ଗୃହସ୍ଥ ଭାବରେ ସେ ଭୋଗବିଳାସରେ ବୁଡ଼ିରହେ ଏବଂ ନିଜକୁ ସବୁଠାରୁ ବଡ଼ ଭାଗ୍ୟବାନ ମନେକରେ । ସେ ଭାବେ ପତ୍ନୀ ହିଁ ତାର ସର୍ବସ୍ୱ । ସ୍ତ୍ରୀ ସାମନାରେ ବାପା, ମା, ଭାଇ, ଭଉଣୀ ସମସ୍ତେ ତୁଚ୍ଛ । ସ୍ତ୍ରୀ ବିନା ସେ ଅସ୍ଥିର ହୋଇପଡ଼େ । ସ୍ତ୍ରୀର ସୁମଧୁର କୋମଳ ସ୍ୱର ଶୁଣି, ସୁନ୍ଦର ଆକର୍ଷଣୀୟ ମୁଖକମଳକୁ ଦେଖି ତାର ପାଶବିକ ଲାଳସା ପ୍ରବଳ ହୋଇଉଠେ । ଫଳରେ ତା' ଶରୀର ଦିନକୁ ଦିନ ଦୁର୍ବଳ ହୋଇ ପଡ଼େ । ଅତ୍ୟନ୍ତ କାମପ୍ରବଣତା ହେତୁ କୌଣସି କାମରେ ତା'ମନ ଲାଗେ ନାହିଁ । ଏହି ଅବସ୍ଥାରେ ପତ୍ନୀର ବିଚ୍ଛେଦ ତା'ପକ୍ଷରେ ଅସହ୍ୟ ହୋଇ ଉଠେ । କେବଳ ପତ୍ନୀ କଥା ଭାବି ଭାବି ସେ ବ୍ୟଥିତ ହୋଇପଡ଼େ । କୌଣସି କାର୍ଯ୍ୟ ଲାଗି ବାପ ମାଆ ବୋହୂକୁ ଡିଆରିଲେ କିମ୍ବା ତାର କୌଣସି ଦୋଷ ଧରିଲେ ସେ କ୍ରୋଧାନ୍ଧ ହୋଇଉଠେ ଏବଂ ସ୍ତ୍ରୀର ପଟ

ନେଇ ବାପମାଆଙ୍କୁ ଅପମାନିତ କଥା କହେ । କାଳକ୍ରମେ ସେମାନଙ୍କଠାରୁ ଅଲଗା ହୋଇଯାଏ । ପତ୍ନୀପ୍ରତି ନିଜର ମୋହବଶତଃ ସେ ବାପ ମାଆଙ୍କ ସ୍ନେହ ମମତା ଓ ଲୋକଲଜ୍ଜାକୁ ଛାଡ଼ି ଆତ୍ମୀୟ ସ୍ୱଜନଙ୍କୁ ନିଜର ଶତ୍ରୁ କରିପକାଏ । କାମାନ୍ଧ ସ୍ତ୍ରୀକୁ ସେ ନିଜର ଦେହ ବିକି ତାର ଚାକର ହୋଇଯାଏ । ସ୍ୱଧର୍ମ, ତୀର୍ଥ, ଯାତ୍ରା, ପରମାର୍ଥ, ଆତ୍ମକଲ୍ୟାଣ, ଶୁଭାଶୁଭ ପ୍ରତି ଧ୍ୟାନ ନ ଦେଇ ସେ ତନ-ମନ-ଧନ ସବୁ ପତ୍ନୀର ପାଦତଳେ ସମର୍ପଣ କରିଦିଏ । ସ୍ତ୍ରୀପ୍ରତି ନିଜର ଆସକ୍ତି ଯୋଗୁଁ ସେ ପରମାତ୍ମାଙ୍କୁ ମଧ୍ୟ ଭୁଲିଯାଏ । ସେଥିଯୋଗୁଁ ସେ ବୈରାଗ୍ୟ, ଭକ୍ତି, ମୋକ୍ଷ ଆଦିକୁ ଉପେକ୍ଷା କରେ ।

ଏହିଭଳି ଭାବେ ସ୍ତ୍ରୀ ପ୍ରତି ଅତିରିକ୍ତ ଆସକ୍ତି ଫଳରେ ସେ ନିଜତ୍ୱ ହରେଇ ବସେ । ସ୍ତ୍ରୀକୁ ଏଭଳି ଭଲ ପାଇବା ଭିତରେ ଅଚାନକ ସ୍ତ୍ରୀ ମରିଯାଏ । ତାପରେ ସେ ଶୋକସଂତପ୍ତ ହୋଇ ଏକରକମ ପାଗଳ ହୋଇପଡ଼େ । ସ୍ତ୍ରୀର ଦେହାବସାନ ପରେ ମଧ୍ୟ ସେ ଲୋକଲଜ୍ଜାକୁ ଖାତିର ନ କରି କେବଳ ସ୍ତ୍ରୀର ଗୁଣକୀର୍ତ୍ତନ କରିବାରେ ଲାଗେ । କ୍ରମଶଃ ମନରେ ବୈରାଗ୍ୟ ଜାତ ହେବାଭଳି ଛଳନା କରି କହେ, ''ଆଉ ଘର ସଂସାର ଫାନ୍ଦରେ ପଡ଼ିବି ନାହିଁ ।'' ଏକଥା କହି କହି ସେ ବିଳାପ କରିବାରେ ଲାଗେ । ସ୍ତ୍ରୀ ବିରହ ଯୋଗୁଁ ସେ ସଂସାର ଛାଡ଼ି ସନ୍ନ୍ୟାସୀ ହୁଏ କିମ୍ବା ପୁଣି ବିବାହ ବନ୍ଧନରେ ବାନ୍ଧି ହୋଇ ପୁନର୍ବାର ଘରସଂସାର କରିବସେ । ଦ୍ୱିତୀୟ ବିବାହ ପରେ ଦଶା କ'ଣ ହୁଏ ମୁଁ ପରବର୍ତ୍ତୀ ଅଧ୍ୟାୟରେ ସବିଶେଷ ଭାବେ କହିବି ।

## ତୃତୀୟ ସମାସ
## ।। ସଗୁଣ ପରୀକ୍ଷା ।। (୨)

ପ୍ରଥମ ସ୍ତ୍ରୀର ମୃତ୍ୟୁ ପରେ ଏହି ପୁରୁଷ ଦ୍ୱିତୀୟ ବିବାହ କରେ । ପ୍ରଥମ ପତ୍ନୀର ବିୟୋଗ-ଦୁଃଖକୁ ସେ ଭୁଲିଯାଏ । ନୂଆ ସଂସାର କରେ । ଗୃହସ୍ଥ ଭାବରେ ସୁଖରେ ମଗ୍ନ ରହେ । ଆଗେ ସେ ପଇସା ପତ୍ର ମନଇଚ୍ଛା ଉଡ଼ାଉ ଥିଲେ ମଧ୍ୟ ଏବେ ସେ କୃପଣ ହୋଇପଡ଼େ । ପଇସାକୁ ଗଣି ଗଣି ଖର୍ଚ୍ଚ କରିବା ଆରମ୍ଭ କରେ । ତାର ଧନସଂଚୟର ତୃଷ୍ଣା ଓ ଲାଳସା ବଢ଼େ । ଧର୍ମ ବାସନା

ସମାପ୍ତ ହୋଇଯାଏ । ଦାନଧର୍ମ ବା ପୁଣ୍ୟ କାର୍ଯ୍ୟ ପ୍ରତି ବିମୁଖ ହୋଇପଡ଼େ । ଅନ୍ୟର ପୁଣ୍ୟ କାର୍ଯ୍ୟକୁ ନିନ୍ଦାକରେ । ଈଶ୍ୱରଭକ୍ତଙ୍କୁ ଦେଖିବା ମାତ୍ରେ ସେ ବିକ୍ଷୁବ୍ଧ ହୋଇ କଠୋର ଶବ୍ଦ ପ୍ରୟୋଗ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଉପହାସ କରେ । ଦିନରାତି ବିଷୟ ଭୋଗରେ ଲିପ୍ତ ରହିବା ଫଳରେ ସେ କ୍ରମଶଃ ଗୋଟିକ ପରେ ଗୋଟିଏ ଅନେକ ରୋଗର ଶିକାର ହୁଏ । ତାକୁ କ୍ଷୟରୋଗର କଷ୍ଟ ଭୋଗ କରିବାକୁ ପଡ଼େ । ମୃତ୍ୟୁର ଡାକରା ଆସିବା ମାତ୍ରେ ଦିନରାତି ସେ ଆଖିରୁ ଲୁହ ଗଡ଼ାଏ । 'ମରିଗଲି' 'ମରିଗଲି' ବୋଲି କାନ୍ଦବୋବାଳି କରେ । ଏହି କଷ୍ଟ ଅନୁଭବ କରୁଥିବା ବେଳେ ରାତିରେ ଚୋରମାନେ ଘରେ ପଶି ତାର ସମସ୍ତ ସଞ୍ଚିତ ଧନ ଅପହରଣ କରି ନେଇଯାଆନ୍ତି ।

ଏହିଭଳି ଭାବରେ ତାର ସବୁ ନଷ୍ଟହୋଇଯାଏ । ଧନସମ୍ପତ୍ତିକୁ ସେ ଭୋଗ କରିପାରେ ନାହିଁ କିମ୍ବା ପରମାର୍ଥ କାର୍ଯ୍ୟରେ ନିଜକୁ ଲଗେଇ ପାରେ ନାହିଁ । ପାପ ଯୋଗୁଁ କଷ୍ଟ ଭୋଗିବା ପରେ ଯଦି ଭାଗ୍ୟବଶତଃ ପୁଣି ସୁସ୍ଥ ହୋଇଉଠେ, ତାହାହେଲେ ପୁଣି ଧନସଂଗ୍ରହରେ ଲାଗିପଡ଼େ । ସନ୍ତାନସନ୍ତତି ନଥିଲେ ''ଏସବୁ ଧନ ସଞ୍ଚୟ କଲି ସିନା, ଭବିଷ୍ୟତରେ କିଏ ଭୋଗ କରିବ'' ବୋଲି ଭାବି ମନେ ମନେ ଦୁଃଖ ଅନୁଭବ କରେ । ପୁତ୍ରଲାଭ ଲାଗି ବହୁ ବ୍ରତଉପବାସ ଓ ମାନସିକ କରେ । ଭଗବାନଙ୍କ କୃପାରୁ ଯଦି ପୁତ୍ରଲାଭ ହୁଏ ତାହାହେଲେ ତାକୁ ସେ ଅତ୍ୟନ୍ତ ସ୍ନେହ କରେ । ତାକୁ ସବୁବେଳେ ଆଖି ଆଗରେ ରଖେ, ମୁହୂର୍ତ୍ତେ ସୁଦ୍ଧା ଛାଡ଼ିବାକୁ ଚାହେଁନା । ଅକସ୍ମାତ୍ ପିଲାର ଯଦି ମୃତ୍ୟୁ ଘଟେ ପୁଣି ଶୋକାକୂଳ ହୋଇ ପରମେଶ୍ୱରଙ୍କୁ ପ୍ରାର୍ଥନା କରି କହେ, — 'ହେ ପ୍ରଭୁ ! ମୋତେ ନିଃସନ୍ତାନ ରଖନାହିଁ । ସନ୍ତାନ ଲାଗି ମୁଁ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ । ଗୋଟିଏ ଦେଇଥିଲ, ନେଇଗଲ । ଆଉଥରେ ପୁତ୍ରମୁଖ ଦେଖିବାର ସୁଯୋଗ ଦେଲେ ମୁଁ କୃତଜ୍ଞ ହେବି ।' ଏହିଭଳି ଦିନରାତି ସେ ପୁତ୍ରଲାଭ ଲାଗି ପ୍ରାର୍ଥନା କରିବାରେ ଲାଗେ । ପୁଣି ଦେବଦେବୀଙ୍କଠାରେ ମାନସିକ କରେ । ବ୍ରତ ଆଦି ଉପବାସ କରେ । ତଥାପି ପୁତ୍ରଲାଭ ନ ହେଲେ ନାନା ତନ୍ତ୍ରମନ୍ତ୍ରର ଆଶ୍ରୟ ନିଏ ସେ । ପୁତ୍ରଲାଭ ନ ହେବା ପର୍ଯ୍ୟନ୍ତ ତାକୁ ଅନ୍ନଜଳ ବି ସୁଖ ଲାଗେ ନାହିଁ । ସବୁବେଳେ ମୁହଁମାଡ଼ି ପଡ଼ିରହେ । ପୂର୍ବଜନ୍ମର ପୁଣ୍ୟବଶତଃ ଯଦି ପୁଣି ମନୋରଥ ପୂର୍ଣ୍ଣହୁଏ ଏବଂ ସନ୍ତାନ ଲାଭ ହୁଏ ତେବେ ପତିପତ୍ନୀ ଦୁହେଁ ଆନନ୍ଦରେ ଜୀବନଯାପନ କରନ୍ତି ।

## ଚତୁର୍ଥ ସମାସ
## ।। ସଗୁଣ ପରୀକ୍ଷା ।। (୩)

ଏହି ଗୃହସ୍ଥର ଦଶା ଭବିଷ୍ୟତରେ କ'ଣ ହୁଏ ମୁଁ ଆପଣମାନଙ୍କୁ କହିବାକୁ ଯାଉଛି । ଭଗବାନଙ୍କୁ ଗୋଟିଏ ସନ୍ତାନ ମାଗୁମାଗୁ ଯଦି ଗୁଡ଼ିଏ ସନ୍ତାନ ଜାତ ହୁଅନ୍ତି ତାହାହେଲେ ଗୃହସ୍ଥର ଆର୍ଥିକ ପରିସ୍ଥିତି ଶୋଚନୀୟ ହୋଇଉଠେ । ସେ ଦାଣ୍ଡର ଭିକାରୀ ହୋଇପଡ଼େ । ପେଟପୂରା ଖାଇବାକୁ ମିଳେନାହିଁ । ଆୟ ଅପେକ୍ଷା ବ୍ୟୟ ଅଧିକ ହୋଇଉଠେ । ଝିଅମାନଙ୍କର ବିବାହଯୋଗ୍ୟ ବୟସ ହୋଇ ଆସେ । ସେମାନଙ୍କୁ ବିବାହ ଦେବାଲାଗି ଧନର ଘୋର ଅଭାବ ଦେଖାଦିଏ । ଘରସଂସାର ଚଳେଇବା ଲାଗି ସେ ତ ଆଗରୁ ବହୁ ଧାର କରଜ କରିସାରିଥାଏ, ଝିଅର ବିବାହ ଲାଗି ଆଉ ଅଧିକ ଋଣ ମିଳିବ କେଉଁଠୁ ? ଘରର ଜିନିଷପତ୍ର, ଗାଈ ବଳଦ ଆଦି ବିକି ଝିଅମାନଙ୍କର ବିବାହ ଦିଏ । ଇଆଡ଼େ ଋଣର ବୋଝ ସୁଧମୂଳମିଶି ବଢ଼ିବାରେ ଲାଗେ । ସାହୁକାର ଠେଙ୍ଗା ଧରି ଦୁଆର ପାଖରେ ସବୁବେଳେ ଠିଆହୁଏ । ତା ଉପଦ୍ରବରୁ ରକ୍ଷା ପାଇବା ପାଇଁ ଗୃହସ୍ଥ ଘର ଛାଡ଼ି ବିଦେଶକୁ ଚାଲିଯାଏ । ସେଠାରେ ମୂଲିଆ କାମ କରି କିମ୍ବା ଅନ୍ୟ ନୌକରୀ କରି ବହୁବର୍ଷ ଧରି ଗୁଜରାଣ ମେଣ୍ଟାଏ । କଠୋର ପରିଶ୍ରମ କରିବାକୁ ପଡ଼େ ତାକୁ । ହାତରେ କିଛି ପଇସା ହୋଇଗଲେ ତାର ଘରକଥା ମନେପଡ଼େ । ସେ ଫେରିଆସେ ନିଜ ଘରକୁ । ବାପା କେବେ ଫେରିବେ ବୋଲି ପିଲାମାନେ ତାର ବାଟ ଚାହିଁ ରହିଥାନ୍ତି । ସମସ୍ତଙ୍କ ମଲାଗଲା ଅବସ୍ଥା ହୋଇଯାଇଥାଏ ।

ଗୃହସ୍ଥ ଘରକୁ ଫେରିଆସି ଦେଖେ ସ୍ତ୍ରୀ ଓ ପିଲାମାନେ ସମସ୍ତେ ଦୁଃଖରେ ସଢ଼ୁଛନ୍ତି । ଭାବେ ଯାହାହେଉ ସମସ୍ତେ ବଞ୍ଚିଛନ୍ତି । ତା ବାପା ଘରୁ ଚାଲିଗଲେ ବୋଲି ସେମାନେ ଜାଣି ପାରିଥିବାରୁ ନିଜ ଗୋଡ଼ରେ ନିଜେ ଠିଆ ହେବା ପାଇଁ ଚେଷ୍ଟା କରିଥାନ୍ତି । କାରଣ ସମସ୍ତେ ନିଜ ନିଜର ସୁଖକଥା ଚିନ୍ତା କରିଥାନ୍ତି । ବାପା ବାହାରେ ଯାଇ କିଭଳି ଦୁଃଖରେ ଥିବ ସେ ଚିନ୍ତା ସେମାନଙ୍କର ନ ଥାଏ । ନିଜ ଦୁଃଖ ତ ବଳି ପଡୁଛି, ବାପାଙ୍କ ଦୁଃଖ କଥା ଭାବୁଚି କିଏ ? ଶରୀର ଦୁର୍ବଳ ହୋଇପଡ଼ିଲେ କିଏ କାହାକୁ ସାହାଯ୍ୟ କରିବାକୁ ଆସିନଥାନ୍ତି ।

ସେ ଯାହାହେଉ ସ୍ୱାମୀ ବିଦେଶରୁ ଘରକୁ ବହୁଦିନ ପରେ ଫେରି ଆସିବାରୁ ସ୍ତ୍ରୀ ଭାରି ଖୁସି ହୋଇ ଉଠେ । ବାପା ପିଲାମାନଙ୍କ ପାଇଁ ନୂଆ ନୂଆ ଲୁଗାପଟା ଧରି ଆସିଥିବାରୁ ପିଲାମାନେ ମଧ୍ୟ ଆନନ୍ଦରେ ନାଚିଉଠନ୍ତି । ଚାରିପାଞ୍ଚ ଦିନ ବେଶ୍ ଆନନ୍ଦରେ କଟେ । ପୁଣି ଖିଆପିଆରେ ଯେଉଁ ହଇରାଣକୁ ସେଇ ହଇରାଣ । ସ୍ତ୍ରୀ ଓ ପରିବାରର ଅନ୍ୟ ସମସ୍ତଙ୍କର ଇଚ୍ଛା ଥାଏ, ବାପା ଆସିଲେ ତ ଭଲ କଲେ, ଯାହା ଆଣିଛନ୍ତି ସେତକ ଘରେ ରଖିଦେଇ ପୁଣି ଧନସଂଗ୍ରହ ଲାଗି ବିଦେଶକୁ ଚାଲିଯାଆନ୍ତୁ । କିନ୍ତୁ ଏହି ଇଚ୍ଛା ପୂରଣ ନ ହେବା ଫଳରେ ସେମାନେ ଦୁଃଖିତ ହୋଇ ପଡ଼ନ୍ତି । ସମସ୍ତେ ନିଜନିଜର ସ୍ୱାର୍ଥକଥା ହିଁ ଭାବିଥାନ୍ତି । ଏହାଠୁ ବଳି ନିରାଟ ସତ୍ୟକଥା ଆଉ କିଛିନାହିଁ । ଏତେଦିନ ଧରି କଷ୍ଟ ସହିବା ପରେ ଗୃହସ୍ଥ ଘରକୁ ଫେରିଆସିଥାଏ କିଛିଦିନ ଆରାମ କରିବାକୁ । କିନ୍ତୁ ଘରର ସମସ୍ତେ ତାକୁ ବାଧ୍ୟ କରନ୍ତି ପୁଣି ବିଦେଶକୁ ଯାଇ ରୋଜଗାର କରିବାପାଇଁ ।

ବାପା ପୁଣି ଯାଏ ବିଦେଶକୁ । କାରଣ ତା' ମନରେ ଥାଏ ଘର ଓ ପରିବାର ପ୍ରତି ପ୍ରଗାଢ଼ ମୋହ । ବିଚରା ବାପ ନାଚାର ହୋଇ ବିଦେଶକୁ ଯାଏ । ସ୍ତ୍ରୀ ଓ ପରିବାରକୁ ଛାଡ଼ି ବିଦେଶକୁ ଯିବା ଦୁଃଖଦାୟକ ହେଲେ ମଧ୍ୟ ତାକୁ ଯିବାକୁ ହିଁ ପଡ଼େ । ସାଂସାରିକ ସନ୍ତାପରେ ତା' ମନ ଉଦ୍‌ବିଗ୍ନ ହୋଇପଡ଼େ । ତାର ନିଜ ମା' କଥା ମନେ ପଡ଼େ । ସେ ମନେ ମନେ କହିହୁଏ, ''ମୋ ମା' ଭାରି ଭଲ ଥିଲା । ସେ ମୋ ଲାଗି କେତେ କଷ୍ଟ ନ ସହିଛି ! କିନ୍ତୁ ମୁଁ ମୂର୍ଖ ତା'ପାଇଁ କରିଛି କ'ଣ ? ତାକୁ ଦିନେ ବି ସୁଖ ଦେଇପାରିନାହିଁ । ସେ ଯଦି ଆଜି ଜୀବନରେ ଥାଆନ୍ତା ମୋତେ କେବେହେଲେ ଦୂରକୁ ଛାଡ଼ିନଥାନ୍ତା । ମୁଁ ବିଦେଶକୁ ଯାଉଛି ଶୁଣିବା ମାତ୍ରେ ମୋତେ ଛାଡ଼ି ରହିବ କିପରି ଭାବି ଭାବି ସେ କାନ୍ଦି କାନ୍ଦି ତଳେ ଲୋଟିଯା'ନ୍ତା ।''

ପୁଅ ପ୍ରତି ମାଆର ସ୍ନେହ ଅନ୍ୟତ୍ର ବିରଳ । ପୁଅ ଭିକାରୀ ଓ ଦରିଦ୍ର ହେଉ ପଛକେ ମା ଦୃଷ୍ଟିରେ ସେ ସବୁଠାରୁ ପ୍ରିୟ । ପିଲାର କଷ୍ଟକୁ ଦେଖିଲେ ମା' ଭୀଷଣ କଷ୍ଟ ଅନୁଭବ କରିଥାଏ । ଏ ସଂସାରରେ ଉଦ୍ୟମ କଲେ ସବୁଜିନିଷ

ମିଳିପାରେ, କିନ୍ତୁ ମା'ଙ୍କୁ ଆଉଥରେ କେହି ପାଇନପାରେ । ମାତୃସ୍ନେହଠାରୁ ଦୁର୍ଲ୍ଲଭ ଆଉ କିଛି ନାହିଁ । ମାଆ ଯାହା କହୁନା କାହିଁକି ମାଆ ହେଉଛି ମାଆ । ତୁମର ହଜାରେ ସ୍ତ୍ରୀ ଥିଲେ ଲାଭ କ'ଣ ? ତେଣୁ ସେ ଭାବେ, ''ବିଷୟ ପଙ୍କରେ ଲଟପଟ ହୋଇ ନିଜ ଜୀବନକୁ ବୃଥାରେ ନଷ୍ଟ କରିଦେଲି । ବିଷୟଭୋଗ ଲାଗି ମୁଁ କ'ଣ ନ କରିଛି ? ଆତ୍ମୀୟ ସ୍ୱଜନଙ୍କ ସହିତ ଲଢ଼େଇ କରିଛି । ପ୍ରକୃତ ବନ୍ଧୁମାନଙ୍କ ସହିତ ଶତ୍ରୁତା କରିଛି । ବାସ୍ତବରେ ସେହି ପୁରୁଷ ହିଁ ଧନ୍ୟ, ଯିଏ ପିତାମାତାଙ୍କ ସେବା କରିଥାଏ, ସେମାନଙ୍କୁ ଆଦର କରିଥାଏ ଏବଂ ଆତ୍ମୀୟ ସ୍ୱଜନଙ୍କ ପ୍ରତି ପ୍ରେମପୂର୍ବକ ବ୍ୟବହାର କରିଥାଏ । ସ୍ତ୍ରୀ ଏବଂ ପୁତ୍ରପୌତ୍ରାଦିଙ୍କ ସଙ୍ଗସୁଖ ତ ଆଜୀବନ ମିଳିବ । କିନ୍ତୁ ମା' ବାପାଙ୍କୁ କେହି କେବେ ପୁଣି ପାଇ ନପାରେ । ମୁଁ ପିଲାଟି ଦିନୁଁ ଏକଥା ଶୁଣି ଆସିଛି, କିନ୍ତୁ ସେଥିପ୍ରତି ଆଦୌ ଧ୍ୟାନ ଦେଇନାହିଁ । ମୁଁ ସ୍ତ୍ରୀ ସହିତ ରତିରେ ମାତିଲି, ସ୍ତ୍ରୀ ସୁଖରେ ନିମଗ୍ନ ରହି ଅନ୍ଧ ପାଲଟିଗଲି । ପୁତ୍ର କଳତ୍ର ଆଦି ନିଜର ପ୍ରିୟ ମନେ ହୁଅନ୍ତି, କିନ୍ତୁ ସେମାନେ ପୂରାପୂରି ଠକ । କେବଳ ଧନ ଲାଗି ସେମାନେ ଏକତ୍ର ହୋଇଥାଆନ୍ତି । ଏବେ ବିଦେଶକୁ ଆସିଛି, ଯଦି କାମଦାମ କରି ଧନ ରୋଜଗାର କରିସାରି ଘରକୁ ଫେରେ ତ ଭଲ, ନଚେତ୍ ସମସ୍ତେ ମୋର ନିନ୍ଦା କରିବେ । ଏହି ନିନ୍ଦା ହିଁ ହେବ ମୋ ପକ୍ଷରେ ସବୁଠାରୁ ଦୁଖଦାୟକ ।''

ଏକଥା ଭାବିବା ମାତ୍ରେ ସେ ଅତ୍ୟନ୍ତ ବ୍ୟଥିତ ହୋଇପଡ଼େ । ଚିନ୍ତାଗ୍ରସ୍ତ ହୋଇପଡ଼େ ସେ । ଦୈହିକ କାମନାର ବଶବର୍ତ୍ତୀ ହୋଇ କେବଳ ସେ ଈଶ୍ୱରଙ୍କ ପ୍ରତି ବିମୁଖ ହୋଇପଡ଼େ ତାହା ନୁହେଁ, ନିଜ ପରିବାରର ଗୋଲାମ ହୋଇପଡ଼େ ସେ । ଏହିଭଳି ଭାବରେ କେବଳ ବିଷୟଭୋଗ ଯୋଗୁଁ ଏହାର ଜୀବନ କଷ୍ଟମୟ ହୋଇପଡ଼େ । ଆୟୁ ସରିଯିବା ପରେ ଜୀବନ ପରିଶେଷରେ ସବୁ ଛାଡ଼ି ସଂସାରରୁ ବିଦାୟ ନେବାକୁ ପଡ଼େ । ଏହି କଥା ଭାବିଭାବି ଗୃହସ୍ଥ କିଛି ସମୟପାଇଁ ଉଦାସୀନ ରହେ । କିନ୍ତୁ ପୁଣି ସେ ସାଂସାରିକ ମାୟାଜାଲରେ ଜାଣିଶୁଣି ପଡ଼ିଯାଏ । ପୁଣି ତାର ମନେ ପଡ଼ିଯାଏ ସ୍ତ୍ରୀ ଓ ପିଲାପିଲିଙ୍କ କଥା । ସେ ମନେ ମନେ କାନ୍ଦେ, ଶେଷରେ ଏହି ଦୁଃଖୀ ଗୃହସ୍ଥର ଦଶା ବିଦେଶରେ କ'ଣ ହୋଇଥାଏ ତାହା ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରିବି ।

## ପଞ୍ଚମ ସମାସ
## ।। ସଗୁଣ ପରୀକ୍ଷା ।। (୪)

ପୁଣି ବିଦେଶକୁ ଯାଏ ସେ । ଚାକିରୀ କରେ । ମୂଲ ଲାଗେ । ନାନା ପ୍ରକାର କଷ୍ଟ ସହି ଦୁଇ ଚାରି ବର୍ଷ ପରେ କିଛି ଧନ ଉପାର୍ଜନ କରି ପୁଣି ଘରକୁ ଫେରିଆସେ ସେ । ଘରକୁ ଆସି ଦେଖେ ଭୀଷଣ ଦୁର୍ଭିକ୍ଷ ହେତୁ ନିଜ ପରିବାରର ଦୁର୍ଦ୍ଦଶା କହିଲେ ନ ସରେ । ସ୍ତ୍ରୀ ତାର ସଂସାର ଛାଡ଼ି ଚାଲିଯାଇଛି । ସେ ଦେଖେ ପିଲାମାନଙ୍କ ଗାଲ ପଶିଯାଇଛି । ଦେହରେ କଣ୍ଠା ଝୁଲୁଛି । ଆଖି କୋରଡ଼ ପାଲଟି ଯାଇଛି । କାହାର ଗୋଡ଼ ଥରୁଛି ତ କିଏ ରୋଗରେ ସଢ଼ୁଛି । ଖାଲି ସେତିକି ନୁହେଁ, ଗୋଟିଏ ପିଲା ବି ପ୍ରାଣ ହରେଇଛି । ପରିବାରର ଏହି ଶୋଚନୀୟ ଅବସ୍ଥା ଦେଖି ଗୃହସ୍ଥ ଥକ୍କା ମାରି ବସିପଡ଼େ । ତା'ପାଟିରୁ କଥା ବାହାରେନି । ସେ କାନ୍ଦିବାରେ ଲାଗେ । ବାପାଙ୍କୁ ଦେଖି ପିଲାମାନେ 'ବାପା, ରୁଟି, ରୁଟି' କହି ବୋବାଳି ଛାଡ଼ନ୍ତି । ସେମାନଙ୍କ ପେଟରେ ଭୀଷଣ ଭୋକ । ସଙ୍ଗେ ସଙ୍ଗେ ବାପାଙ୍କର ଗଣ୍ଠିଲି ଖୋଲି ଯାହା ପାଆନ୍ତି ବିକଳରେ ଖାଇଯାଆନ୍ତି । ଯେତିକି ଖାଇବା କଥା ପ୍ରାଣ ବିକଳରେ ତାହାଠୁ ଅଧିକ ଖାଇବା ଫଳରେ ପିଲାଙ୍କର ନାନା ରୋଗ ହୁଏ । ସେଥିମଧ୍ୟରୁ ଆଉ କିଛି ମରିଯା'ନ୍ତି । ଯେଉଁ ଗୋଟିଏ ଯୋଡ଼ିଏ ରହନ୍ତି ସେମାନେ ମା' ନଥିବାରୁ ଅନାଥ ହୋଇପଡ଼ନ୍ତି । ଏହି ଭଳି ଭାବେ ଦୁର୍ଭିକ୍ଷ ଯୋଗୁ ପରିବାରର ସର୍ବନାଶ ଘଟେ ।

ଏହାର ପରବର୍ତ୍ତୀ ବର୍ଷ ଭଲ ବର୍ଷା ହେବାରୁ ଚାଷବାସ ଭଲହୁଏ । ସମସ୍ତେ ସୁଖୀ ହୁଅନ୍ତି । କିନ୍ତୁ ଏହି ଗୃହସ୍ଥର ଅବସ୍ଥା କ'ଣ ହୁଏ ଦେଖାଯାଉ । ପିଲାଙ୍କୁ ପୋଷିବା ଲାଗି ବାପା ଛଡ଼ା ଆଉ କେହି ନାହିଁ । ବାପା ନିଜ ହାତରେ ରୋଷେଇ କରେ । ଏଥିରେ ତା ମନ ବିରକ୍ତ ହୋଇପଡ଼େ । ସାହିପଡ଼ିଶା ଆସି କହନ୍ତି ''ତୋର ବଳବୟସ ତ ଚାଲିଯାଇନି । ବିବାହ କର ।'' ଶେଷକୁ ତୃତୀୟ ବିବାହ କରେ ସେ । ଯାହା କିଛି ଧନ ଥାଏ ଏହି ବିବାହ କାର୍ଯ୍ୟରେ ଖର୍ଚ୍ଚ କରିଦିଏ । ପୁଣି ଯେଉଁ ଦୁରବସ୍ଥାକୁ ସେହି ଦୁରବସ୍ଥା । ପୁଣି ଧନ ଉପାର୍ଜନ କରିବା ପାଇଁ ସେ ବିଦେଶକୁ ଯାଏ । କେତେବର୍ଷ ପରେ ଘରକୁ ଫେରିଆସେ । ଦେଖେ ସାବତ ମା' ସହିତ ବଡ଼ପୁଅର ଝଗଡ଼ା ଲାଗିଚି । ଯୁବତୀ ସ୍ତ୍ରୀ ସହିତ ଯୁବକ ପୁଅର ରାତିଦିନ ଝଗଡ଼ା ।

କିନ୍ତୁ ଗୃହସ୍ଥ ସେତେବେଳକୁ ବୁଢ଼ା । ପୂର୍ବପରି ତା' ଦେହରେ ବଳ ନାହିଁ କି ମନରେ ବଳ ନାହିଁ । ସେ ମନେ ମନେ ଚିନ୍ତା କରେ ସମସ୍ତେ ଏକାଠି ରହିବା ଅସମ୍ଭବ । ଯାହା ବା ଜମିବାଡ଼ି, ଧନସମ୍ପତ୍ତି ଥାଏ ଚାରିପାଞ୍ଚଜଣ ପଡ଼ୋଶୀଙ୍କୁ ଡାକି ପିଲାଙ୍କ ଭିତରେ ସେ ସବୁ ବାଣ୍ଟିଦିଏ । କିନ୍ତୁ ପିଲାମାନେ ସେଥିରେ ସନ୍ତୁଷ୍ଟ ହୋଇ ପାରନ୍ତି ନାହିଁ । ସମସ୍ତେ ମିଶି ବାପାଙ୍କୁ ବାଡ଼େଇବା ଆରମ୍ଭ କରିଦିଅନ୍ତି । ତରୁଣୀ ଭାର୍ଯ୍ୟା ଭୀଷଣ ପାଟିତୁଣ୍ଡ କରେ । ଗାଁ ଲୋକ ଆସି ରୁଣ୍ଡ ହୁଅନ୍ତି । ତାମସା ଦେଖନ୍ତି । କେହି କେହି କହନ୍ତି, ବାଃ ! ବାଃ ! ବୁଢ଼ାବାପାକୁ ସାହାଯ୍ୟ କରିବେ କ'ଣ, ପିଲାଗୁଡ଼ାକ ବେଶ ମାଡ଼ ଚଢ଼େଇଲେଣି ତ !

ଯେଉଁ ପିଲାଙ୍କ ଲାଗି ବାପା ଠାକୁରଙ୍କ ନିକଟରେ କେତେ କଣ ମାନସିକ କରିଥାଏ, ଜୀବନଯାକ କଷ୍ଟ ସହିଥାଏ, ତାର ଏହି ଦଶା ହୁଏ ।

ବାପା ପିଲାମାନଙ୍କଠାରୁ ଅଲଗା ହୋଇ ଗୋଟିଏ କୁଡ଼ିଆଘର କରି ରହେ । ସବୁ ଦୁଃଖକୁ ଭୁଲିଯାଇ ସେ ତରୁଣୀଭାର୍ଯ୍ୟାସହିତ ଜୀବନ ଅତିବାହିତ କରେ । ଦିନେ ଡକାୟତମାନେ ତା' ଘରେ ପଶି ସବୁ ଲୁଟିନିଅନ୍ତି । ସାଙ୍ଗରେ ସ୍ତ୍ରୀଟିକୁ ମଧ୍ୟ ନେଇ ପଳାନ୍ତି । କି ଦୁର୍ବିସହ ଅବସ୍ଥା କହିଲ ଦେଖି ! ବୟସରେ ବୁଢ଼ା ହେଲେ କ'ଣ ହେବ ପତ୍ନୀ ଲାଗି ସେ ଶୋକସନ୍ତପ୍ତ ହୋଇପଡ଼େ । ବିଦେଶରୁ ଯେଉଁ ପଇସା ରୋଜଗାର କରି ଆଣିଥିଲା ସବୁ ଖର୍ଚ୍ଚ କରିଦେଇଛି ଏହି ସ୍ତ୍ରୀ ଲାଗି । ଏବେ ପଇସା ଗଲା, ସ୍ତ୍ରୀ ବି ଗଲା । ପିଲାମାନେ ବାପଠାରୁ ଅଲଗା । କେହି ପଚାରନ୍ତିନି ତାକୁ । ଅତି ଦୀନହୀନ ଭାବରେ ସେ ପରମାତ୍ମାଙ୍କୁ ପ୍ରାର୍ଥନା କରି କହେ– "ହେ ପ୍ରଭୁ ! ଏବେ ତୁମ ବିନା ମୋର କେହି ନାହିଁ । ଯୁବାବସ୍ଥାରେ ଐଶ୍ୱର୍ଯ୍ୟରେ ମଦମତ୍ତ ହୋଇ ଭଗବାନଙ୍କର ଭଜନପୂଜନ କଲିନାହିଁ । ଏବେ ବୁଢ଼ା ବୟସରେ ଅନୁତାପ କରୁଛି ।"

ବାର୍ଦ୍ଧକ୍ୟର ଯାତନା ଭାଷାରେ କହିହେବ ନାହିଁ । ଏବେ ଗୃହସ୍ଥ ଶରୀର ଅତି ଦୁର୍ବଳ । ବାତ ଓ ପିତ୍ତ ବଢ଼ିଯାଇଥିବାରୁ ଦିନରାତି ଖୁଁ ଖୁଁ କାଶିବାରେ ଲାଗିଛି ସେ । ମୁଣ୍ଡ ଉଠେଇ ପାରୁନାହିଁ ଉପରକୁ । ଅଣ୍ଟା ନଇଁ ଗଲାଣି । ଦାନ୍ତସବୁ ପଡ଼ିଯିବାରୁ ପାଟି ପାକୁଆ ହୋଇପଡ଼ିଚି । ଆଖିକୁ ଭଲ ଦେଖାଯାଉ ନାହିଁ । କାନକୁ ମଧ୍ୟ ଭଲ ଶୁଣାଯାଉ ନାହିଁ । ଚାଲିବାକୁ ବଳ ନାହିଁ । ବସିବାକୁ ମଧ୍ୟ ବଳ ନାହିଁ ।

କେହି ପାଖକୁ ସୁଦ୍ଧା ଆସୁନାହାନ୍ତି । ଦୂରରୁ ଦେଖି ସମସ୍ତେ ଘୃଣା କରୁଛନ୍ତି ତାକୁ । ବହୁ ଦୁଃଖରେ ସଢ଼ି ସଢ଼ି ସେ ପାଗଳ କହିଲେ ଚଳେ । ଆହୁରି ଦୁଃଖ ଭୋଗ କରିବାକୁ ପଡ଼ିବ ତାକୁ । 'ମରିଯାଆନ୍ତି କି' ବୋଲି ସେ କେବଳ କହିହେଉଛି, କିନ୍ତୁ ମରୁଛି କେତେବେ ? ଆୟୁଷ ସରିଲେ ସିନା ମରିବ । କଙ୍କାଳସାର ଦେହ । ଏକାବେଳେକେ ପରାଧୀନ ସେ । ବନ୍ଧୁ ବୋଲି କେହି ହେଲେ ଜଣେ ନାହିଁ । ସମସ୍ତେ ଚାହୁଁଛନ୍ତି, ବୁଢ଼ାଟା ଶୀଘ୍ର ମରିଯାଆନ୍ତା କି ! ଯାହାକୁ ଜନ୍ମରୁ ସେ ପାଳନ ପୋଷଣ କରିଆସଛି, ସିଏ ବି ତାର ଶତ୍ରୁ । ଶରୀର, ସମ୍ପତ୍ତି, ପରିବାର ସବୁ ନଷ୍ଟଭ୍ରଷ୍ଟ । 'ମୋର, ମୋର' କହି ଯାହାକୁ ସେ ଜାବୋଡ଼ି ଧରିଥିଲା ସମସ୍ତେ ଦୂର୍ ଦୂର୍ କରି ଦୂରରେ । ସୁଖଲାଗି ଆଜୀବନ ଏତେ କଷ୍ଟ କରି ମଧ୍ୟ ଶେଷଜୀବନରେ ଏତେ ଦୁଃଖ ଦୁର୍ଦ୍ଦଶା ଓ ଦରିଦ୍ର ଅବସ୍ଥା ଭୋଗ କରିବାକୁ ପଡୁଛି ତାକୁ ।

ତଥାପି ଗୃହସ୍ଥ ବୁଝିପାରୁନି ଯେ ଏହି ଜନ୍ମହିଁ ତାର ସମସ୍ତ ଦୁଃଖର ମୂଳ । ଜନ୍ମଠାରୁ ହିଁ ଜୀବନକୁ ଦୁଃଖାଗ୍ନିରେ ଜଳିବାକୁ ପଡ଼େ । ଏକଥା ଚିନ୍ତାକରି ମନୁଷ୍ୟ ନିଜର ହିତଲାଗି ଆତ୍ମକଲ୍ୟାଣ ମାର୍ଗରେ ଅଗ୍ରସର ହେବା ଉଚିତ । ଅତି କଷ୍ଟଦାୟକ ବାର୍ଦ୍ଧକ୍ୟରୁ ମଧ୍ୟ କେହି ରକ୍ଷା ପାଇନପାରେ । ତେଣୁ ଭଗବାନଙ୍କ ଶରଣ ନେବା ଶ୍ରେୟସ୍କର । ଏହି ବୃଦ୍ଧ ଗର୍ଭାବସ୍ଥାରେ ଥିଲାବେଳେ ଯେପରି ପଶ୍ଚାତ୍ତାପ କରିଥିଲା ପୁଣି ଅନ୍ତିମ ସମୟରେ ଠିକ୍ ସେହିଭଳି ଅନୁତାପ କଲା ।

ଭଗବତଭକ୍ତି ବ୍ୟତୀତ ଜନ୍ମମରଣ ବ୍ୟାଧିରୁ କେହି ମୁକ୍ତ ହୋଇ ନ ପାରେ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ଅସରନ୍ତି କ୍ଳେଶ ଭୋଗ କରିବାକୁ ପଡ଼ିଥାଏ, ସେହି ବିବିଧ ତାପସନ୍ତାପ ବିଷୟରେ ମୁଁ ଏହାପରେ ବର୍ଣ୍ଣନା କରିବି ।

## ଷଷ୍ଠ ସମାସ
## ।। ଆଧ୍ୟାତ୍ମିକ ତାପ ।।

ସାଂସାରିକ ଜୀବନରେ ତିନି ପ୍ରକାରର ସନ୍ତାପ ଦେଖାଦିଏ । ଶାସ୍ତ୍ରରେ ଏହାକୁ ''ତାପତ୍ରୟ'' କୁହାଯାଏ । କୌଣସି ଆର୍ତ୍ତ ପୁରୁଷ ନିଜର ମନ ମୁତାବକ ବସ୍ତୁ ପାଇଗଲେ ଯେପରି ସନ୍ତୋଷ ଲାଭ କରିଥାଏ, ସେହିପରି ତାପତ୍ରୟ ଦ୍ୱାରା ପୀଡ଼ିତ ବ୍ୟକ୍ତି ସତ୍‌ସଙ୍ଗ ଲାଭ କଲେ ଶାନ୍ତିଲାଭ କରିଥାଏ । କ୍ଷୁଧିତ ଅନ୍ନ ପାଇଲେ

ଏବଂ ତୃଷିତ ଜଳ ପାଇଲେ; ପରାଧୀନ ବ୍ୟକ୍ତି ସ୍ୱାଧୀନତା ଲାଭ କଲେ; ନଈ ବା ପୋଖରୀରେ ବୁଡ଼ି ଯାଇଥିବା ବ୍ୟକ୍ତି କୂଳ ପାଇଗଲେ; ଯାହାର ମରଣ ଆସନ୍ନ ସେ ଜୀବନ ଲାଭକଲେ; ସଙ୍କଟାପନ୍ନ ବ୍ୟକ୍ତି ସଂକଟରୁ ଉଦ୍ଧାର ପାଇଲେ ଏବଂ ରୋଗୀ ଉପଯୁକ୍ତ ଔଷଧ ଲାଭକଲେ ଯେପରି ଆନନ୍ଦ ପାଇଥାଏ, ସେହିଭଳି ତାପତ୍ରୟରେ ସନ୍ତପ୍ତ ବ୍ୟକ୍ତି ସତ୍‌ସଙ୍ଗରୁ ପରମାନନ୍ଦ ଲାଭ କରିଥାଏ । ଯିଏ ସାଂସାରିକ ଦୁଃଖ ଏବଂ ତାପତ୍ରୟ ଦ୍ୱାରା ପୀଡ଼ିତ ହୋଇଥାଏ ସେହି ବ୍ୟକ୍ତି ପରମାର୍ଥର ଅଧିକାରୀ ହୋଇପାରେ ।

ଶାସ୍ତ୍ର, ଗ୍ରନ୍ଥାଦିକୁ ଭିତ୍ତି କରି ଏବେ ତାପତ୍ରୟର ଲକ୍ଷଣ କ'ଣ କହୁଛି । ତାପ ତିନି ପ୍ରକାରର । ଯଥା :- ଆଧ୍ୟାତ୍ମିକ, ଆଧିଭୌତିକ ଏବଂ ଆଧିଦୈବିକ । ଏହି ଲକ୍ଷଣଗୁଡ଼ିକୁ ଅଲଗା ଅଧ୍ୟାୟରେ ବୁଝାଇ ଦିଆଯିବ ।

ଶ୍ଳୋକ :-
ଦେହେନ୍ଦ୍ରିୟମନଃ ପ୍ରାଣୈଃ ସୁଖଂ ଦୁଃଖଂ ଯଦାପ୍ୟତେ ॥
ଇମମାଧ୍ୟାତ୍ମିକଂ ତାପଂ ବିଜାନୀୟାଦ୍ଦିଦେହିନାମ୍ ॥ ୧ ॥
ସର୍ବଭୂତୈର୍ଦେହଯୋଗାଦ୍ ସୁଖଂ ଦୁଃଖଂ ଯଦାପ୍ୟତେ ।
ଦ୍ୱିତୀୟଂ ତଂ ବିଜାନୀୟାଦ୍ ସତାପମ୍ ଚାଧିଭୌତିକମ୍ ॥ ୨ ॥
ଶୁଭାଶୁଭୈଃ କର୍ମଭିଶ୍ଚ ଦେହାନ୍ତେ ଯମଯାତନା ।
ସ୍ୱର୍ଗନରକାଦି ଭୋକ୍ତବ୍ୟମିଦଂ ବିଦ୍ଧୟାଧିଦୈବିକମ୍ ॥ ୩ ॥

ଅର୍ଥାତ୍— ଦେହ, ଇନ୍ଦ୍ରିୟ ମନ ଓ ପ୍ରାଣ ଦ୍ୱାରା ଯେଉଁ ସୁଖ, ଦୁଃଖ, ଭୟ, ଯନ୍ତ୍ରଣା ଆଦି ସହିବାକୁ ପଡ଼ିଥାଏ, ସେଗୁଡ଼ିକୁ 'ଆଧ୍ୟାତ୍ମିକ ତାପ' କୁହାଯାଏ । ପଞ୍ଚମହାଭୂତର ସଂଯୋଗରେ ଜୀବ ସୁଖ ଦୁଃଖ ଲାଭ କରିବା ଫଳରେ ମନରେ ଯେଉଁ ତାପ ସୃଷ୍ଟି ହୋଇଥାଏ ତାକୁ 'ଆଧିଭୌତିକ ତାପ' କୁହାଯାଏ । ପୁଣ୍ୟ ଓ ପାପକର୍ମ ଅନୁସାରେ ଦେହାନ୍ତ ପରେ ଯେଉଁ ସ୍ୱର୍ଗ ଓ ନରକଯାତନା ଭୋଗ କରିବାକୁ ପଡ଼ିଥାଏ ତାକୁ କୁହାଯାଏ 'ଆଧିଦୈବିକ ତାପ' । ଏବେ ମୁଁ ସଂକ୍ଷେପରେ ଆଧ୍ୟାତ୍ମିକ ତାପର ଲକ୍ଷଣ କହୁଛି । ଏହି ତାପ ଫଳରେ ଜୀବକୁ ନାନା ଶାରୀରିକ ଆଧିବ୍ୟାଧି ଭୋଗିବାକୁ ପଡ଼ିଥାଏ ।

କାଛୁ, କୁଣ୍ଡିଆ, ବଥ, ବ୍ରଣ, ବସନ୍ତ, ମିଳିମିଳା, କାଖଗୋଲି, ବାଳମୂଳିଆ, ମେହ, ପଚା ଘା, ଦାନ୍ତ ଓ ଦାନ୍ତମାଢ଼ିରେ କଷ୍ଟ, ଫୋଟକା, ଗଣ୍ଠି

ଓ ଅଣ୍ଟାବଥା, ଜାଦୁ, ପେଟବଥା, ମୁଣ୍ଡବଥା, କାନପଚା, ଶ୍ୱେତ ଓ ଗଳିତ କୁଷ୍ଠ, କାମଳ ରୋଗ, ଅତି କଷ୍ଟଦାୟକ ଯକ୍ଷ୍ମାରୋଗ ଅର୍ଥାତ୍ କ୍ଷୟରୋଗ, ଦୁଧ ପିଇବାରେ ପିଲାମାନଙ୍କ ଅଜୀର୍ଣ୍ଣ ରୋଗ, ପେଟରେ ବାୟୁରୋଗ, ହାତଗୋଡ଼ ଘୋଳେଇ ହେବା, ମୁଣ୍ଡ ବୁଲେଇବା, ଅଧକପାଳୀ, ଗଳା ଦରଜ, ତଣ୍ଟି, ମୁହଁ ଏବଂ ଗଣ୍ଠି ପୀଡ଼ା, ଝାଡ଼ା, ବାନ୍ତି, ମୁହଁବ୍ରଣ, ଜଳୋଦର, କମ୍ପଜ୍ୱର, ଅନ୍ଧାରକଣା, ଶର୍ଦ୍ଦି, ଜ୍ୱର, ଅଗ୍ନିମାନ୍ଦ୍ୟ, ଅନିଦ୍ରା, ଗ୍ରହଣୀଆଦି ହେଉଛି ଆଧ୍ୟାତ୍ମିକ ତାପ । ଆଳସ୍ୟ, ମନରେ ଭୟଭାବ, ବିସ୍ମରଣ, ଦୁଶ୍ଚିନ୍ତା, ପରିସ୍ରାରେ କଷ୍ଟ, ପ୍ରମେହ, ପେଟରେ କୃମିହେବା, ବଦହଜମି, ଆମ୍ବିଳି ହାକୁଟି, କାଶ, ଶ୍ୱାସଆଦି କଫବିକାର ହେଉଛି ଆଧ୍ୟାତ୍ମିକ ତାପ । ଗଳାଫୁଲିବା, ଦାନ୍ତରେ ପୋକ ଲାଗିବା, ପେଟରେ ପଥର ହେବା, କାନ ଆଖିରେ ପୀଡ଼ା, ନପୁଂସକତା, ଆଖିରେ ମୋତିଆବିନ୍ଦୁ ହେବା ଏବଂ ରାତିରେ ବିଳିବିଳେଇବା ହେଉଛି ଆଧ୍ୟାତ୍ମିକ ତାପର ଲକ୍ଷଣ । ମୂକ, ବଧିର, ପଙ୍ଗୁ, ବିକଳାଙ୍ଗ, କଣା, ଦାନ୍ତୁରା, ଶୀର୍ଣ୍ଣକାୟ ବା ପୃଥୁଳକାୟ, ଖନା, ଅତି କୁଟୀଳ ବା ଅତି ଚାଲାକ, ଈର୍ଷାଳୁ, କ୍ରୋଧୀ ଓ କାମୁକ ହେବା ହେଉଛି ଆଧ୍ୟାତ୍ମିକ ତାପ । ଗର୍ଭରୋଧ, ଗର୍ଭପାତ, ସ୍ତନରୋଗ, ସନ୍ନିପାତ, ଅକାଳମୃତ୍ୟୁ ଶରୀରରେ କଳା କିମ୍ବା ନୀଳ ଗାର ପଡ଼ିଯିବା, ଅଧିକ ତିଳ ଚିହ୍ନ ହେବା, ଶରୀରରୁ ଦୁର୍ଗନ୍ଧ ବାହାରିବା, ପାଟିରୁ ଲାଳ ବହିବା ଆଦି ଆଧ୍ୟାତ୍ମିକ ତାପ ଶ୍ରେଣୀଭୁକ୍ତ । ଅନେକ ପ୍ରକାରର ଚିନ୍ତା ରୋଗ ନ ଥିଲେ ମଧ୍ୟ ବ୍ୟତିବ୍ୟସ୍ତ ହୋଇପଡ଼ିବା, ବୃଦ୍ଧାବସ୍ଥା, ସର୍ବଦା ଦୁର୍ବଳ ରହିବା ଆଦି ବ୍ୟାଧିକୁ ଆଧ୍ୟାତ୍ମିକ ତାପ କୁହାଯାଇଥାଏ ।

ପୂର୍ବଜନ୍ମର ପାପୁରୁ ଏହି ଫଳ ଭୋଗ କରିବାକୁ ପଡ଼ିଥାଏ । ଏହି ସଂସାର ଅପାର ଦୁଃଖର ସାଗର । ଏହି ଦୁଃଖ ଗୋଟି ଗୋଟି ସବୁ ବର୍ଣ୍ଣନା କରିବା ଅସମ୍ଭବ । କେବଳ କେତେକ ସୂଚନା ଦେଇ ଦେଉଛି । ଶ୍ରୋତାମାନେ ସବୁ ବୁଝିପାରିବେ ବୋଲି ମୋର ଆଶା ।

## ସପ୍ତମ ସମାସ
## ।। ଆଧିଭୌତିକ ତାପ ।।

ସର୍ବଭୂତୈର୍ଦେହେଯୋଗାଦ୍ ସୁଖଂ ଦୁଃଖଂ ଯଦାପ୍ୟତେ ।
ଦ୍ୱିତୀୟଂ ତଂ ବିଜାନୀୟା ସନ୍ତାପଂ ଚାଧିଭୌତିକମ୍ ।

ପଞ୍ଚ ମହାଭୂତର ସଂଯୋଗରେ ଜୀବ ଯେଉଁ ସୁଖଦୁଃଖ ଭୋଗ କରିଥାଏ ଏବଂ ନାନା ଉପସର୍ଗରୁ ଯେଉଁ କଷ୍ଟ ଭୋଗିଥାଏ ତାହାକୁ ଆଧିଭୌତିକ ତାପ କୁହାଯାଏ । ଏହି ଆଧିଭୌତିକର ଲକ୍ଷଣ ମୁଁ ସଂକ୍ଷେପରେ କହୁଛି ।

ଝୁଣ୍ଟିବା, କଣ୍ଟା ପଶିବା, ଦେହରେ କୌଣସି ଜାଗା କଟିଯିବା, ଦଉଡ଼ିଦେବା, କାଚ ପଶିବା, ବିଷାକ୍ତ ପତ୍ର ବା କୀଟ ବା ପତଙ୍ଗ ଦେହରେ ଲାଗିବା, ମଶା, ଡାଆଁଶ, ମାଛି, ମହୁମାଛି, ପିମ୍ପୁଡ଼ି, ଓଡ଼ଶ ଆଦି କାମୁଡ଼ିବା, ଜୋକ ଲାଗିବା, ତେନ୍ତୁଳିଆବିଛା, କଙ୍କଡ଼ାବିଛା, ବିରୁଡ଼ି, ସାପ, ଚିତାବାଘ, ଘୁଷୁରୀ, ହେଟାବାଘ, ସମ୍ବର, ଭାଲୁ, ଜଙ୍ଗଲୀ ହାତୀ ଆଦିର ଆଘାତରେ କଷ୍ଟ ପାଇବା; ପାଣିରେ କୁମ୍ଭୀର ହାବୁଡ଼ରେ ପଡ଼ିବା; ଘୋଡ଼ା, ବଳଦ ଗଧ କୁକୁର, ବିରାଡ଼ି ଆଦି ଦ୍ୱାରା ଦେହରେ ଆଘାତ ଲାଗିବା ଫଳରେ କଷ୍ଟ ହେବା— ଏ ସବୁ ହେଉଛି ଆଧିଭୌତିକ ତାପ ।

ଏହିଭଳି ଭାବରେ ଅନ୍ୟ ଭୟଙ୍କର ହିଂସ୍ରଜନ୍ତୁର ଆଘାତରେ ଯେଉଁ କଷ୍ଟ ଭୋଗିବାକୁ ପଡ଼ିଥାଏ ସେ ସବୁ ମଧ୍ୟ ଆଧିଭୌତିକ ତାପ । କାନ୍ଥ ଉପରୁ କିମ୍ବା ଛାତ ଉପରୁ ପଡ଼ିଯିବା, ଚଟାଣରେ ଗୋଡ଼ ଖସିଯିବା, ଗଛ ଉପରୁ ପଡ଼ିବା, ପାଗଳ ହୋଇଯିବା, ଅନ୍ୟ କାହାଦ୍ୱାରା କଷ୍ଟ ଭୋଗକରିବା, କଳଙ୍କିତ ହେବା ଆଦି ହେଉଛି ଆଧିଭୌତିକ ତାପ ।

ଥଣ୍ଡାରେ ଗୋଡ଼, ଓଠ ଆଦି ଫାଟିବା, ବେଶୀ ସମୟ ପାଣିରେ ଚଳପ୍ରଚଳ ହେବା ଫଳରେ କନ୍ଦା ମାରିବା, ପିଲାଦିନେ ବାପାମାଆଙ୍କଠୁ ଗାଳି ଶୁଣିବା, ମାଡ଼ ଖାଇବା, ଅନ୍ନବସ୍ତ୍ର ଅଭାବରୁ ହଇରାଣ ହେବା, ସ୍ତ୍ରୀଲୋକମାନେ ଶାଶୁଘରେ ଗାଳିମନ୍ଦ ଶୁଣିବାଆଦି ଆଧିଭୌତିକ ତାପର ଲକ୍ଷଣ । ରୋଗ ଯୋଗୁ ଅନେକ ପ୍ରକାରର କଡ଼ା ଔଷଧ ଖାଇବା, ଶରୀରରୁ ରକ୍ତସ୍ରାବ ହେବା, ଚୋର ବା ଡାକୁମାନଙ୍କ ଦ୍ୱାରା ଯନ୍ତ୍ରଣା ଭୋଗ କରିବା, ଘରପୋଡ଼ି ଫଳରେ ଲୋକସାନ ହେବା, ବହୁ ମୂଲ୍ୟବାନ ଜିନିଷ ହଜେଇବା ବା ଭାଙ୍ଗିବା, ପିଲାମାନଙ୍କୁ ହରେଇବା, ଫସଲ ପୋଡ଼ିଯିବା ଓ ଲୁଟି ହୋଇଯିବା, ପକେଟମାର ହେବା, ବଜ୍ରପାତ ହେବା ଅତି ବର୍ଷା ଓ ବନ୍ୟା ଫଳରେ ପ୍ରଭୂତ କ୍ଷତି ଘଟିବା, ଅସୁନ୍ଦରୀ, ମୁଖରା ସ୍ତ୍ରୀ ଲାଭ କରିବା, କନ୍ୟା ବିଧବା ହୋଇଯିବା, ପୁଅ ବାପକୁ ନମାନିବା ହେଉଛି ଆଧିଭୌତିକ ତାପ ।

ଭୂତପ୍ରେତ ଆଦି ଲାଗିବା, ବେଶୀ ଡେଙ୍ଗା ହେବା, ଅଶୁଭ ଏବଂ ଅନିଷ୍ଟକାରୀ ଗ୍ରହଯୋଗ, ଅଶୁଭ ଚିନ୍ତା, କୌଣସି ଜ୍ୟୋତିଷୀଦ୍ୱାରା ଅନୁପ୍ରାଣିତ ହୋଇ ଅଶୁଭ ଭବିଷ୍ୟତର ଚିନ୍ତାକରି ମନରେ ଭୟ ସୃଷ୍ଟି ହେବା, ରାଜାଙ୍କଠାରୁ ଦଣ୍ଡ ପାଇବା, ଜେଲଦଣ୍ଡ ଭୋଗିବା, ଦୁଷ୍ଟ ଲୋକଙ୍କ ଦ୍ୱାରା ଶାରୀରିକ କଷ୍ଟ ଭୋଗ କରିବାଆଦିକୁ ଆଧିଭୌତିକ ତାପ ଭାବରେ ଗଣାଯାଇଥାଏ ।

ଧନସମ୍ପତ୍ତି, ପ୍ରତିଷ୍ଠା, ପାଳିତ ପଶୁ ଓ ଅନ୍ୟବସ୍ତୁକୁ ହରେଇ ବସିବା ଆଦିକୁ ଆଧିଭୌତିକ ତାପ କୁହାଯାଏ । ପିଲାଟି ଦିନୁଁ ବାପା ମା'ଙ୍କୁ ହରେଇବା, ଯୁବକ ବୟସରେ ପତ୍ନୀବିୟୋଗ ଏବଂ ବୃଦ୍ଧାବସ୍ଥାରେ ସନ୍ତାନର ମୃତ୍ୟୁ ହେଉଛି ଆଧିଭୌତିକ ତାପ । ଦୁଃଖ, ଦାରିଦ୍ର୍ୟ ଏବଂ ଋଣଗ୍ରସ୍ତ ହେବା, ବିରକ୍ତରେ ଘର ଛାଡ଼ି ଅନ୍ୟତ୍ର ଚାଲିଯିବା, ସବୁ ଜିନିଷ ଲୁଟି ହୋଇଯିବା, ନାନା ବିପଦ ଭିତରେ ପଡ଼ି ରହିବା, ପେଟ ପୂରା ଖାଇବାକୁ ନ ପାଇବା କିମ୍ବା ଖରାପ ଖାଦ୍ୟ ଖାଇବା, ଯୁଦ୍ଧରେ ପରାଜିତ ହେବା ଏବଂ ଆତ୍ମୀୟସ୍ୱଜନଙ୍କ ବିୟୋଗରେ ବ୍ୟଥିତ ହୋଇ ପଡ଼ିବା ଆଧିଭୌତିକ ତାପର ଲକ୍ଷଣ । କଠିନ ସମୟ କିମ୍ବା ଦୁର୍ଭିକ୍ଷରେ ପୀଡ଼ିତ ହୋଇ ପଡ଼ିବା, ସବୁବେଳେ ଶଙ୍କିତ ରହିବା, ଉଦ୍‌ବିଗ୍ନ ହୋଇ ପଡ଼ିବା, ବିଭିନ୍ନ ଯନ୍ତ୍ରର ଆଘାତରେ ଶାରୀରିକ ପୀଡ଼ା ଭୋଗିବା, ନିଆଁରେ ପୋଡ଼ିଯିବା, ଶସ୍ତ୍ରଦ୍ୱାରା ପ୍ରହାର, ଅଙ୍ଗଭଙ୍ଗ ହେବା, ବିଭିନ୍ନ ବିଷାକ୍ତ ଜନ୍ତୁ ଓ ହିଂସ୍ର ବଣ୍ୟ ପଶୁଙ୍କ ଦ୍ୱାରା ଆହତ ହେବା, କାରାବାସ ଭୋଗିବା ବା ବନ୍ଧନରେ ପଡ଼ିବା, ଖରାପସ୍ଥାନରେ ରହିବା ଫଳରେ ଶାରୀରିକ ଓ ମାନସିକ ସନ୍ତାପ ଭୋଗିବା, ଅନ୍ୟମାନଙ୍କ ଦ୍ୱାରା ଅପମାନିତ ହେବା ଫଳରେ ଲଜ୍ଜିତ ହୋଇ ପଡ଼ିବା ଏବଂ ନାନା ପ୍ରକାରର ଶୋକ ସନ୍ତାପ ଭୋଗ କରିବା ଆଧିଭୌତିକ ତାପ ପର୍ଯ୍ୟାୟଭୁକ୍ତ ।

ଏହିଭଳି ଭାବରେ ଆଧିଭୌତିକ ତାପର ଲକ୍ଷଣ ପର୍ବତପ୍ରମାଣ । ସମ୍ପୂର୍ଣ୍ଣ ଭାବରେ ସେଗୁଡ଼ିକର ବର୍ଣ୍ଣନା କରିହେବ ନାହିଁ । ଯେତିକି କହିଲି ସେତିକିକୁ ଭିତ୍ତି କରି ଶ୍ରୋତାମାନେ ଅନ୍ୟ ଲକ୍ଷଣ ଗୁଡ଼ିକ କ'ଣ ହୋଇପାରେ ସେ କଥା ଅନୁମାନ କରିପାରିବେ । ମୁଁ ପରବର୍ତ୍ତୀ ଅଧ୍ୟାୟରେ ଆଧିଦୈବିକ ତାପର ଲକ୍ଷଣ ବର୍ଣ୍ଣନା କରିବି ।

## ଅଷ୍ଟମ ସମାସ
## ।। ଆଧିଦୈବିକ ତାପ ।।

ଏବେ ଆଧିଦୈବିକ ତାପର ଲକ୍ଷଣ ଶୁଣନ୍ତୁ । ପ୍ରାଣୀମାନେ ପୁଣ୍ୟ ଓ ପାପ କର୍ମ ଅନୁସାରେ ଦେହାନ୍ତ ପରେ ଯେଉଁ ସ୍ୱର୍ଗ ଓ ନର୍କଯାତନା ଭୋଗ କରିଥାଆନ୍ତି ତାକୁ ଆଧିଦୈବିକ ତାପ କୁହାଯାଇଥାଏ । ମନୁଷ୍ୟ ନାନା କାମନା ଦ୍ୱାରା ମଦମତ୍ତ ହୋଇ ଅବିବେକୀଭାବେ ବହୁ ପାପକର୍ମ କରିଥାଏ । ଏହିସବୁ ଅଧର୍ମ କର୍ମ ହିଁ ତାକୁ ଯମଯାତନା ଭୋଗ କରିବାକୁ ବାଧ କରିଥାଏ । ଦୈହିକ ବଳ, କ୍ଷମତା, ଦ୍ରବ୍ୟଲାଭ, ଶାସନକ୍ଷମତା ଆଦି ବହୁପ୍ରକାରର ସାମର୍ଥ୍ୟମଦରେ ମତ୍ତାନ୍ଧ ହୋଇ ମନୁଷ୍ୟ ବହୁ ଖରାପ କାର୍ଯ୍ୟ କରିଥାଏ । ନୀତି ଓ ଆଦର୍ଶଆଦିକୁ ତ୍ୟାଗ କରି ସେ ସ୍ୱାଧୀନ ସ୍ୱଚ୍ଛନ୍ଦ ହୋଇପଡ଼ିଥାଏ ଏବଂ ଯମଯାତନା ଭୋଗ କରିବା ଅବସ୍ଥାରେ ଅତ୍ୟନ୍ତ ଦୁଃଖୀ ହୋଇ ଭଗବାନଙ୍କୁ ଗାଳିଗୁଲଜ କରିବାରେ ଲାଗିଥାଏ । ଆଖି ଥାଉ ସେ ଅନ୍ଧ ହୋଇପଡ଼େ । ତା ମନରେ ନାନା ଦୁର୍ବୁଦ୍ଧି ପ୍ରବେଶ କରେ । ସ୍ୱାର୍ଥାନ୍ଧ ଭାବେ ସେ ଅନ୍ୟର ପରମ୍ପରାଗତ ବ୍ୟବସାୟ ଓ ଭୂମି ଆଦିକୁ ଅପହରଣ କରେ । ଏହି ଅପହୃତ ସମ୍ପତ୍ତି ଓ ପଦାର୍ଥକୁ ସେ ନିଜେ ଉପଭୋଗ କରେ । ଏଭଳି ଲୋକ ନିଜ ସ୍ୱାର୍ଥ ହାସଲ କରିବା ଲାଗି ଅନ୍ୟର ପ୍ରାଣନାଶ ତଥା ଅନ୍ୟ ପରିବାରର ସର୍ବନାଶ କରିବାକୁ କୁଣ୍ଠାବୋଧ କରି ନ ଥାଏ । ତାହାର ଅମାନୁଷିକ ବ୍ୟବହାର ଫଳରେ ପରିଶେଷରେ ଯମଯାତନା ଭୋଗ କରିବାକୁ ପଡ଼ିଥାଏ । କୌଣସି ଗ୍ରାମର ଅଧିକାରୀ ନିୟମ କାନୁନ ଲଙ୍ଘନ କଲେ ଗାଁର ପଟେଲକୁ; କୌଣସି ପ୍ରଦେଶରେ ଅରାଜକତା ଦେଖାଦେଲେ ପ୍ରଦେଶର ଶାସକକୁ ଦାୟୀ କରାଯାଇ ଦଣ୍ଡ ଦିଆଯାଇଥାଏ, ସେହିଭଳି ନ୍ୟାୟନୀତି ତ୍ୟାଗକରି ସ୍ୱେଚ୍ଛାଚାରୀ ଭାବେ କାମ କଲେ ରାଜାକୁ ମଧ ଯମଯାତନା ଭୋଗ କରିବାକୁ ପଡ଼େ । ରାଜା ଲାଗି ଏହା ହିଁ ଦଣ୍ଡ । ରାଜା ଅନ୍ୟାୟ କଲେ ଯମ ଯେପରି ତାଙ୍କୁ ଦଣ୍ଡ ଦେଇଥାଆନ୍ତି, ସେହିଭଳି ଯମ ନିଜେ ଅନ୍ୟାୟ କଲେ ତାଙ୍କୁ ଦଣ୍ଡ ଦେବାକୁ ଅନ୍ୟଦେବତାମାନେ ଅଛନ୍ତି । ଭଗବାନ ଏସବୁ ବ୍ୟବସ୍ଥା କରି ରଖିଛନ୍ତି । ଭଗବାନ ନିଜେ ଯମକୁ ଦଣ୍ଡନୀତି ପ୍ରଦାନ କରିଛନ୍ତି । ଯମ-ଯାତନା ଭୋଗ ସଂପର୍କରେ ଶାସ୍ତ୍ରମାନଙ୍କରେ ବିସ୍ତୃତ ଭାବେ ବର୍ଣ୍ଣନା

କରାଯାଇଛି । ଏହି ଦଣ୍ଡନୀତି ଭଗବାନଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିବାରୁ ଏହାକୁ "ଆଧିଦୈବିକ ତାପ" କୁହାଯାଉଛି । ଏହା ଉପରେ ପୂରା ଆସ୍ଥା ସ୍ଥାପନ କରାଯିବା ଉଚିତ । ଯେଉଁ ଲୋକ ଈଶ୍ୱର ଭକ୍ତି ପ୍ରତି ବିମୁଖ ତାକୁ ଯମ ଯାତନା ଭୋଗିବାକୁ ପଡ଼ିବ । ଏହି ଯାତନାଗୁଡ଼ିକ ମଧ୍ୟରୁ କେତୋଟିର ବର୍ଣ୍ଣନା କରାଯାଉଛି ।

ଅକ୍ଷୋଭ ନରକରେ ଅନେକ ପ୍ରକାରର ଜନ୍ତୁ ବଦ୍ଧପ୍ରାଣୀଙ୍କୁ ଭୟଙ୍କର ପୀଡ଼ା ଦେଇଥାଆନ୍ତି । ମୁହଁ ଛୋଟ କିନ୍ତୁ ଭିତର ବଡ଼ ହୋଇ ଥିବାରୁ ଏହି ପ୍ରକାରର କୁଣ୍ଡକୁ କୁମ୍ଭୀପାକ ନର୍କ କୁହାଯାଇଥାଏ । ଏହି କୁଣ୍ଡରେ ଅତି ଦୁର୍ଗନ୍ଧ ମଳମୂତ୍ର ଭର୍ତ୍ତି ହୋଇ ରହିଥାଏ । ପ୍ରାଣୀମାନଙ୍କୁ ସେହିଥିରେ ଭର୍ତ୍ତି କରାଯାଏ । ନରକଲୋକରେ କେବେ କେବେ ପ୍ରାଣୀମାନଙ୍କୁ ତପ୍ତଭୂମିରେ ଶୁଆଇ ଦିଆଯାଏ ତ କେବେ କେବେ ଜ୍ୱଳନ୍ତ ଅଗ୍ନିରେ ପକେଇ ଦିଆଯାଏ । ଦେହରେ ଚଡ଼ୁକାଠି ଲାଛି ଦିଆଯାଏ । ଫଳରେ ଦେହରେ ଫୋଟକା ହୋଇ ଘା ହୁଏ । ପାପୀଜୀବଙ୍କୁ ଏହିଭଳି ଭାବେ ନାନା ଯମଯାତନା ସହିବାକୁ ପଡ଼େ । ଏହିସବୁ ଶାରୀରିକ ଦଣ୍ଡ ଅପେକ୍ଷା ଯମଲୋକର ଦଣ୍ଡ ଆହୁରି ଭୟାନକ ଓ କଠୋର । ଏଠାରେ ଚାରିଆଡୁ ଯମଦୂତମାନେ ପ୍ରାଣୀକୁ ଆକ୍ରମଣ କରିଥାଆନ୍ତି । ଫଳରେ ସେ ଉଠିପାରେ ନାହିଁ କି ବସି ପାରେ ନାହିଁ କି ଶୋଇପାରେ ନାହିଁ କି କାନ୍ଦି ପାରେ ନାହିଁ । ନିର୍ଯ୍ୟାତନା ପରେ ନିର୍ଯ୍ୟାତନା ଲାଗି ରହିଥାଏ । ଏଥିରେ ଜୀବ ବି କଳ ହୋଇପଡ଼େ । ଦେହରେ କେବଳ ଅସ୍ଥିପଞ୍ଜରାହିଁ ଲାଖି ରହେ ।

ପୂର୍ବରୁ କୁହାଯାଇଥିବା ଆଧ୍ୟାତ୍ମିକ ଓ ଆଧିଭୌତିକ ତାପ ତୁଳନାରେ ଏହି ଆଧିଦୈବିକ ତାପ ଅଧିକ ଉଗ୍ର । ଏସବୁ ସଂକ୍ଷେପରେ ସାଙ୍କେତିକ ଭାବେ ଅଳ୍ପ ଅଳ୍ପ କୁହାଗଲା ।

## ନବମ ସମାସ
## ।। ମୃତ୍ୟୁ ବିବେଚନ ।।

ସଂସାରରେ ପ୍ରାଣୀର ଜନ୍ମମାତ୍ରକେ ଯେଉଁ ଦୂତ ପିଛା କରିଥାଏ, ତାର ନାମ ମୃତ୍ୟୁ । ମୃତ୍ୟୁର ବିଶ୍ରାମ ନାହିଁ । ପ୍ରତ୍ୟେକ ମୁହୂର୍ତ୍ତରେ ଏହା ପ୍ରାଣୀର ଶରୀରକୁ

ଭକ୍ଷଣ କରିବାରେ ଲାଗିଥାଏ । ଶରୀରକୁ କାଳ ବା ସମୟ ନିରନ୍ତର ଘେରି ରହିଥାଏ । ଦେହର କେଉଁ ମୁହୂର୍ତ୍ତରେ ଯେ କ'ଣ ହେବ କହିହେବ ନାହିଁ । କର୍ମ ଅନୁସାରେ ପ୍ରାଣୀର ସ୍ୱଦେଶ କିମ୍ବା ବିଦେଶରେ ମୃତ୍ୟୁ ହୋଇଥାଏ । ସଞ୍ଚିତକର୍ମ ସରିଯିବା ମାତ୍ରେ କାଳ ଅଚାନକ ଭାବେ ଆକ୍ରମଣ କରେ । ମୁହୂର୍ତ୍ତେ ସୁଦ୍ଧା ଅପେକ୍ଷା କରିବାକୁ ଫୁରୁସତ ଦିଏନା । ସମସ୍ତଙ୍କୁ ମୃତ୍ୟୁର ଆଘାତ ସହିବାକୁ ପଡ଼େ । ତା ନିକଟରେ ମହାପରାକ୍ରମୀ, ଶୂର, ବୀର, ଲଢୁଆ, କ୍ରୋଧୀ, ପ୍ରତାପୀ, ବଳବାନ, ଉଗ୍ର, ଧନବାନ୍, ଗୁଣବାନ୍, ଭୂପତି, ଚକ୍ରବର୍ତ୍ତୀ, କଳାକାର, ରାଜନୀତିଜ୍ଞ, ରାଜା, ପ୍ରଜା, ସେବକ ସମସ୍ତେ ସମାନ । ସମ୍ପତ୍ତିସମ୍ପନ୍ନ, ପଣ୍ଡିତ, ମୂର୍ଖ, ଧୂର୍ତ୍ତ, ବିଖ୍ୟାତ, ପୁରାଣବେତ୍ତା, ବୈଦିକ, ଯାଜ୍ଞିକ, ତତ୍ତ୍ୱଜ୍ଞାନୀ, ଯୋଗାଭ୍ୟାସୀ, ସନ୍ନ୍ୟାସୀ, ବୈଦ୍ୟ, ପଞ୍ଚାକ୍ଷରୀ, ତପସ୍ୱୀ, ସିଦ୍ଧ, କବୀଶ୍ୱର, ହଠଯୋଗୀ, ରାଜଯୋଗୀ, ବିତରାଗୀ, ବ୍ରହ୍ମଚାରୀ, ସନ୍ଥ ଓ ମହନ୍ତ କେହିହେଲେ ମୃତ୍ୟୁ କବଳରୁ ରକ୍ଷା ପାଇ ନ ପାରେ ।

ମୃତ୍ୟୁ ବ୍ରହ୍ମହତ୍ୟାକୁ ମଧ୍ୟ ଭୟ କରେନା । ଗୋହତ୍ୟାକୁ ଏହାର ଡର ନ ଥାଏ । ଅବଳା, ଶିଶୁ, ବାଳକ କାହାପ୍ରତି ଏହାର ଦୟାମାୟା ନାହିଁ । ଏହା ନିକଟରେ ସ୍ୱତନ୍ତ୍ର ଓ ପରତଂତ୍ରର ଭେଦଭାବ ନ ଥାଏ । ମୃତ୍ୟୁ ସବୁ ଜୀବକୁ ସଂହାର କରିଥାଏ । କେହି କେହି ମୃତ୍ୟୁ ପଥକୁ ଅତିକ୍ରମ କରିଗଲେଣି ତ କେହି କେହି ରହିଛନ୍ତି ଅଧାବାଟରେ । ଆଉ କେହି କେହି ବାଟ ଚାଲିବା ଆରମ୍ଭ କରିଛନ୍ତି । ବାଳକ, ତରୁଣ ଓ ବୃଦ୍ଧ କାହାପ୍ରତି ମୃତ୍ୟୁର କୌଣସି ଭେଦଭାବ ନାହିଁ । କିଏ ଉଦାର, କିଏ ସୁନ୍ଦର, କିଏ ହରିଭକ୍ତ ତ କିଏ ପୁଣ୍ୟଶୀଳ—ଏଭଳି ବିଚାର ତାର ନ ଥାଏ । କାହାକୁ ଆଗେ ନିଏ ତ କାହାକୁ ପଛେନିଏ—କିନ୍ତୁ ସମସ୍ତଙ୍କୁ ସାଙ୍ଗରେ ଧରି ଚାଲେ ସେ । ପ୍ରାଣୀମାତ୍ରେ ମରଣଧର୍ମୀ, ମୃତ୍ୟୁଶୀଳ । ମୃତ୍ୟୁକୁ ଭୟ କରି କିଏ କେଉଁଠିକି ଖସି ପଳାଇଯାଇ ନ ପାରେ । ଏହାର ଆଖିରେ ଧୂଳି ଦେବା ଅସମ୍ଭବ । ଏହା ସମ୍ପର୍କରେ ଆଉ କହିବି କ'ଣ ? ପ୍ରତ୍ୟକ୍ଷ ଭାବେ ସ୍ୱୟଂ ହରିହର ତଥା ଭଗବାନ ଅବତାର ଗ୍ରହଣ କରି ମଧ୍ୟ ଏହା କବଳରୁ ରକ୍ଷା ପାଇ ନଥାଆନ୍ତି । ତେଣୁ ଏ ଲୋକଙ୍କୁ "ମୃତ୍ୟୁଲୋକ" କୁହାଯାଇଥାଏ ।

ଯିଏ ଜନ୍ମ ନେବ, ସିଏ ମରିବା ନିଶ୍ଚିତ—ଏକଥାକୁ ଉପଲବ୍‌ଧି କରି ପ୍ରତ୍ୟେକ ମନୁଷ୍ୟ ନିଜ ଜୀବନକୁ ସଫଳ ଓ ସାର୍ଥକ କରିବା ଲାଗି ଉଦ୍ୟମ କରିବା

ଉଚିତ । ତାହାହେଲେ ମଲେ ମଧ୍ୟ ଲୋକେ ତାର ଯଶଗାନ କରିବେ । ଏ ସଂସାରକୁ ଯିଏ ଆସିଚି, ସିଏ ଯାଇଛି । କୁବେର ଭଳି ସମ୍ପତ୍ତିବାନ ବ୍ୟକ୍ତି ମଧ୍ୟ ଯାଇଚନ୍ତି । ବଡ଼ ବଡ଼ ମହାପୁରୁଷ, ଯୋଗୀ, ମହାଯୋଗୀ, ମହାପରାକ୍ରମୀ, ମହା ପଣ୍ଡିତ, ବୁଦ୍ଧିମାନ ବ୍ୟକ୍ତି ସମସ୍ତେ ଯାଇଛନ୍ତି । ପୁରୁଷାର୍ଥୀ, ପରୋପକାରୀ, ନୀତିବାନ୍, ପ୍ରତାପୀ ସମସ୍ତେ ମରଣାଧୀନ । ନାନା ଛନ୍ଦ କପଟ କରିବାବାଲା, ଅତି ଅହଙ୍କାରୀ, ମହାବିଦ୍ୱାନ, ବଡ଼ ବଡ଼ ଆଚାର୍ଯ୍ୟ, ଧର୍ମାବତାର ସମସ୍ତେ କାଳର କବଳରେ ଲୋପ ପାଇଛନ୍ତି । ଏହି ପ୍ରକ୍ରିୟା ସର୍ବଦା ଲାଗି ରହିଛି । ଏହି ''ମୃତ୍ୟୁଲୋକ''ରେ କେହି ଅମର ନୁହେଁ । ତେଣୁ ଦେହବଳ, ଧନବଳ କିମ୍ବା ଅନ୍ୟ କୌଣସି ଅହମିକା ନ ଦେଖାଇ ଜୀବନକୁ ଭଗବଦ୍‌ଭକ୍ତି ଏବଂ ସମସ୍ତଙ୍କ ସହିତ ଆତ୍ମୀୟତା ଓ ପ୍ରେମଭାବରେ ବିତେଇବା ଉଚିତ । ଅବଶ୍ୟ ଶରୀର ଧାରଣ କରି କେହି ଅମର ହୋଇ ନ ପାରେ ତଥାପି ଯିଏ ପ୍ରଭୁଙ୍କ ପ୍ରତି ଭକ୍ତି ରଖି ଈଶ୍ୱରଙ୍କ ସହିତ ଏକାକାର ହୋଇଯାଏ, ସେଭଳି ଆତ୍ମଜ୍ଞାନୀ ମୃତ୍ୟୁକୁ ଜୟ କରି ଅମରତ୍ୱ ଲାଭ କରିପାରେ, ଅର୍ଥାତ୍ ତାର ମୋକ୍ଷପ୍ରାପ୍ତି ଘଟେ । ସେ ଜନ୍ମ ଓ ମରଣ ଚକ୍ରରୁ ମୁକ୍ତ ହୁଏ ।

## ଦଶମ ସମାସ
## ।। ବୈରାଗ୍ୟର ଲକ୍ଷଣ ।।

ଏହି ସଂସାର ହେଉଚି ଏକ ମହାସାଗର । ଏଥିରେ ବିକାର-ରୂପୀ ବହୁ ଜଳଚର ବାସ କରିଥାଆନ୍ତି । ବିଷଧର କାଳସର୍ପ ଦଂଶନ କରିବା ଲାଗି ସବୁବେଳେ ଚାହିଁ ରହିଛି । ଏହି ଦେହରେ ରହିଥିବା ନାନା ବାସନା ଓ ମମତାରୂପୀ ମଗରମାଛ ତାର ପ୍ରିୟ ପଦାର୍ଥ ହସ୍ତଗତ ନହେବା ଦ୍ୱାରା ମନରେ ଯେଉଁ ଦୁଃଖ ଜାତ ହୋଇଥାଏ, ତାକୁ ଭୋଗିବାଲାଗି ବାଧ୍ୟ କରିଥାଏ । ଅହଂକାରରୂପକ ମଗର ଜୀବ ଉପରେ ଚଢ଼ି ତାକୁ ସଙ୍ଗେ ସଙ୍ଗେ ରସାତଳଗାମୀ କରିଥାଏ । ତଥାପି କାମଲାଳସା ଏତେ ସୁଦୃଢ଼ ଯେ ଜୀବ ତାକୁ ଛାଡ଼ି ନଥାଏ । ତା ମନରୁ ଦ୍ୱେଷଭାବ ହଟେ ନାହିଁ । ଜୀବ ଧନ ବଶତଃ ମଦ-ମତ୍ସର ଆଦି ଛାଡ଼ି ପାରେ ନାହିଁ । ବାସନାରୂପିଣୀ ନାଗୁଣୀ ତା ଗଳାରେ ଗୁଡ଼େଇ ହୋଇ ନିଜର ଭୟାନକ ଜିହ୍ୱାରୁ

ବିଷବାନ୍ତି କରିଥାଏ । ଏହି ଅବସ୍ଥାରେ ଗୃହସ୍ଥ ସବୁ 'ମୋର', 'ମୋର' କହି ନାନାବିଷୟ-ବୋଝ ମୁଣ୍ଡ ଉପରେ ଲଦି ଉବୁଟୁବୁ ଅବସ୍ଥାରେ ମଧ୍ୟ ନିଜ ଅଭିମାନକୁ ଛାଡ଼ିବାପାଇଁ ପ୍ରସ୍ତୁତ ନୁହଁ । ତା ଚାରିପଟେ ଭ୍ରମରୂପକ ଘୋର ଅନ୍ଧକାର । ସେହି ଅନ୍ଧକାର ଭିତରେ ଅହଂକାରରୂପକ ଚୋର ତାର ସର୍ବସ୍ୱ ଲୁଟି ନେଇଗଲେ ମଧ୍ୟ 'ମୁଁ' ରୂପକ ଭୂତର ଆକ୍ରମଣରେ ପୀଡ଼ିତ ହୋଇ ସେ ସେହି ଭ୍ରମରେ ବୁଡ଼ି ରହିଥାଏ । ବହୁପ୍ରାଣୀ ଭ୍ରମ-ଭଉଁରୀ ଭିତରେ ପଡ଼ି ନିମ୍ନଗାମୀ ହେବାପରେ ପୁଣି ଉପରକୁ ଉଠି କାଳସ୍ରୋତରେ ଭାସି ଭାସି ଚାଲିଥାଆନ୍ତି । କୂଳକିନାରା ପାଆନ୍ତି ନାହିଁ । ଅଳ୍ପକେତେଜଣ ଭାଗ୍ୟବାନ ମନୁଷ୍ୟ ଭକ୍ତିଭାବରେ ଭଗବାନଙ୍କୁ ସକରୁଣ ପ୍ରାର୍ଥନା କରିବାରେ ଭଗବାନ ନିଜେ ଆସି ସେମାନଙ୍କୁ ଭବସାଗରରୁ ପାର କରିଥାଆନ୍ତି । ଅନ୍ୟ ଅଭକ୍ତମାନେ ଜନ୍ମମୃତ୍ୟୁ ସ୍ରୋତରେ ଭାସିବାରେ ଲାଗିଥାଆନ୍ତି । ଈଶ୍ୱର ଭକ୍ତିଭାବନାପାଇଁ ସର୍ବଦା ବ୍ୟାକୁଳ । ଭଗବାନଙ୍କୁ ବଶ କରିବା ଲାଗି ଏକମାତ୍ର ଆୟୁଧ ହେଉଚି ଭକ୍ତି । ଭକ୍ତପାଇଁ ସେ ସବୁକିଛି କରିବାକୁ ପ୍ରସ୍ତୁତ । କଠିନ ସମୟରେ ସେ ଭକ୍ତକୁ ରକ୍ଷା କରିଥାଆନ୍ତି । ଭଗବାନଙ୍କ ପ୍ରତି ଯାହାର ପ୍ରେମଭାବ ରହିଥାଏ, ଭଗବାନ ତାର ସମସ୍ତ ଭାର ବହନ କରିଥାଆନ୍ତି । ସଂସାର ଦୁଃଖସନ୍ତାପରୁ ତାକୁ ଉଦ୍ଧାର କରିଥାଆନ୍ତି । ଯିଏ ପରମେଶ୍ୱରଙ୍କ ଶରଣାଗତ, ତାକୁ ସ୍ୱାନନ୍ଦସୁଖ ଉପଭୋଗର ସୁଯୋଗ ମିଳିଥାଏ ।

ଯାହାର ଯେଉଁ ଭଳି ଭାବନା, ପରମାତ୍ମା ତା ଲାଗି ଠିକ୍ ସେହିଭଳି କାରବାର କରିଥାଆନ୍ତି । ସେ ଅନ୍ତର୍ଯ୍ୟାମୀ । କାହାର କିଭଳି ଭାବ ସେ ଜାଣନ୍ତି । ଯଦି ଭାବନା କଳୁଷିତ ହୁଏ, ଭଗବାନ ତାକୁ ସିମିତି ଠକିଥାଆନ୍ତି । ତମେ ଠକ ହେଲେ ସେ ମହାଠକ । ଯେପରି ଭଜନ, ସେହିଭଳି ସମାଧାନ । ଭକ୍ତିଭାବ ଯଦି କମ, ଭଗବାନ ସେହିଭଳି ତୁମଠାରୁ ବହୁଦୂରରେ । ବିମ୍ବ ଅନୁଯାୟୀ ପ୍ରତିବିମ୍ବ । ଅତ୍ୟନ୍ତ କ୍ରୋଧଭାବାପନ୍ନ ହୋଇ ଯଦି ଦର୍ପଣରେ ମୁହଁକୁ ଦେଖିବ, ପ୍ରତିବିମ୍ବ ମଧ୍ୟ ସେହିଭଳି ବିକୃତ ଦେଖାଯିବ । ମୁହଁ ଯଦି ହସ ହସ ରହିଥାଏ ପ୍ରତିବିମ୍ବ ମଧ୍ୟ ହସ ହସ ଦେଖାଯିବ ।

ସେହିଭଳି ନିଜ ଭାବନାର ପ୍ରତିବିମ୍ବହିଁ ପରମାତ୍ମାରୂପରେ ପ୍ରତ୍ୟକ୍ଷ ଦେଖାଯାଏ । ପରମାର୍ଥ ଭାବହିଁ ପ୍ରଧାନ । ଭାବ — ଭକ୍ତି ସହିତ ଯଦି ପରମାର୍ଥ

ମାର୍ଗରେ ଚାଲିବ ତାହାହେଲେ ଈଶ୍ୱରଙ୍କ ଦରବାରରେ ପହଞ୍ଚିପାରିବ । ସନ୍ଥସମାଗମ ଦ୍ୱାରା ମଧ୍ୟ ମୋକ୍ଷ ସ୍ଥଳରେ ପହଞ୍ଚିହେବ । ଏଭଳି ଲୋକ ନିଜେ ପବିତ୍ର ହୋଇ ନିଜ ଭାବନାଶକ୍ତି ଦ୍ୱାରା ନିଜ ପୂର୍ବପୁରୁଷମାନଙ୍କର ଉଦ୍ଧାର କରିପାରେ । ଏହାଙ୍କ କୀର୍ତ୍ତିଗାଥା ଶୁଣି ଅଭକ୍ତ ମଧ୍ୟ ଭକ୍ତ ହୋଇଯାଇପାରେ । ଯିଏ ହରିଭଜନରେ ମଗ୍ନ ତାର ମାତାପିତା ଧନ୍ୟ । ତାର ଜୀବନ ସାର୍ଥକ ।

ତେଣୁ ଜୀବନରୂପକ ରତ୍ନମଞ୍ଜୁଷାରେ ଦିବ୍ୟ ଭଜନ-ରତ୍ନକୁ ସଂଗ୍ରହ କରି ଏହି ମଞ୍ଜୁଷାକୁ ଭଗବାନଙ୍କଠାରେ ଅର୍ପଣ କରିବାରେ ଯେଉଁ ସ୍ୱାନନ୍ଦ ମିଳିଥାଏ, ସେହି ସୁଯୋଗକୁ କେହି ହରାନ୍ତୁ ନାହିଁ । ଯିଏ ଭଗବାନଙ୍କୁ ଆପଣାର କରିନେଇ ସଂସାରବିରାଗୀ, ସେଭଳି ଭକ୍ତକୁ ଭଗବାନ ଅନ୍ତର ଓ ବାହ୍ୟ ପରିତାପରୁ ରକ୍ଷା କରିଥାଆନ୍ତି । ତାହାର ବିବେକବୁଦ୍ଧି ଜାଗ୍ରତ ହେବା ଫଳରେ ସାଂସାରିକ ଦୁଃଖ ମଧ୍ୟ ତାକୁ ସୁଖମୟ ପ୍ରତୀତ ହୁଏ । ପ୍ରଭୁଙ୍କ ପ୍ରତି ଯାହାର ଆନ୍ତରିକ ପ୍ରେମଭାବ ରହିଥାଏ ସେ ଯେଉଁ ସ୍ୱାନନ୍ଦସୁଖ ଅନୁଭବ କରେ, ସାଧାରଣ ସାମାନ୍ୟ ଲୋକକୁ ତାହା ମିଳିବ କେଉଁଠୁ ? ଅଭକ୍ତମାତ୍ରେ ସାମାନ୍ୟ ମନୁଷ୍ୟ । ସେ ଦୁର୍ଲ୍ଲଭ ନରଦେହକୁ ବ୍ୟର୍ଥ କରିଥାଏ । ଯୁଗ ଯୁଗ ଧରି ଏପରି ଅନେକ ପୁରୁଷ ଏହି ନରଦେହ ଦ୍ୱାରା ନିଜକୁ ଉଦ୍ଧାର କରିପାରିଛନ୍ତି । ଅଥଚ ଅନେକ ମନୁଷ୍ୟ ଜନ୍ମମୃତ୍ୟୁ ଚକ୍ରରେ ଘୂରିବାରେ ଲାଗିଛନ୍ତି । ତେଣୁ ସତ୍‌ସଙ୍ଗଦ୍ୱାରା ଜୀବନକୁ ସାର୍ଥକ କରିବା ଉଚିତ ।

ପୂର୍ବ ଜନ୍ମରେ କେତେ ନା କେତେ ଦୁଃଖ ଭୋଗ କରିବାପରେ ଏହି ମନୁଷ୍ୟ ଜନ୍ମ ଲାଭ କରିପାରିଚି । ତେଣୁ ସାବଧାନ ରହିବା ଆବଶ୍ୟକ । ଦେଖୁଚ ତ ଅଗଣାରେ ବସିଥିବା ପକ୍ଷୀଗୁଡ଼ିକ ଅଳ୍ପ କେତେ ସମୟ ପରେ କିଏ କୁଆଡ଼େ ଉଡ଼ି ଚାଲିଗଲେ । ସଂସାର ହେଉଚି ଗୋଟିଏ ଅଗଣା । ଧନ ବୈଭବ, ପୁତ୍ର ପରିବାର, ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନମାନେ ହେଉଛନ୍ତି ଗୁଡ଼ିଏ ପକ୍ଷୀ । ଏମାନେ କେତେବେଳେ ଯେ ଉଡ଼ିଯିବେ କହିହେବନି । ଯେଉଁ ସମୟ ବିତିଗଲାଣି, ସେ ଗଲାଣି । ଯିଏ ଗଲା ସିଏ ଗଲା । ଯାହାବା ଅଳ୍ପ ସମୟ ରହିଛି, ମୁହୂର୍ତ୍ତେ ହେଉନା କାହିଁକି ତାର ସଦୁପଯୋଗ କରିବା ଆବଶ୍ୟକ । ପୂର୍ବ ଜନ୍ମରେ ମଧ୍ୟ ତମର ବହୁତ କିଛି ଥିଲା, ସେସବୁ ଛାଡ଼ି ଏ ଜନ୍ମ ଗ୍ରହଣ କରିବାକୁ ପଡ଼ିଲା । ଏ ଜନ୍ମରେ ଯାହା

ପାଇଚ ତାକୁ ମଧ୍ୟ ଛାଡ଼ିବାକୁ ପଡ଼ିବ । ସଂସାରରେ କେହି କାହାର ନୁହନ୍ତି । ମା' ବାପ, ଭାଇଭଉଣୀ, ଇଷ୍ଟ, ମିତ୍ର, ପୁତ୍ର ପରିବାର ସମେସ୍ତେ ସୁଖର ସାଥୀ । କେହି ଦୁଃଖର ଭାଗୀଦାର ନୁହଁନ୍ତି । ଧନ ସମ୍ପତ୍ତି, ଐଶ୍ୱର୍ଯ୍ୟ, ଯଶ ସବୁ ବିନାଶଶୀଳ । 'ମୋ ଘର', 'ମୋ ପରିବାର' ବୋଲି ବ୍ୟର୍ଥ ଅଭିମାନ କାହିଁକି ? ଯାହାଲାଗି ତୁମେ ଜୀବନସାରା ଚିନ୍ତା କରି ଆସିଚ, ଶେଷରେ ତାକୁ ଛାଡ଼ି ଯିବାକୁହିଁ ପଡ଼ିବ । ଯୌବନ, ବୈଭବ, ବିଳାସ ସବୁ ହେଉଚି ମାୟା । ଏବେ ବି ସମୟ ଅଛି, ସାବଧାନ ହୁଅ । ଭଗବଦ୍‌ଚିନ୍ତାରେ ମନକୁ ବୁଡ଼େଇ ରଖ । ସେଥିରେ ତୁମର ଭଲ ହେବ ।

ଉଦରପୋଷଣ ଲାଗି ନୀଚଲୋକର ଖୋଷାମତ କରୁଚ, ତାର ସେବା କରୁଚ, ଗୁଣଗାନ କରୁଚ, କିନ୍ତୁ ଯିଏ ତମକୁ ଏହି ପରମ ଦୁର୍ଲ୍ଲଭ ନରଦେହ ଦାନ କରିଚି ତାକୁ ଭୁଲିଯାଉଚ ! ଏହାଠୁ ବଳି ଆଶ୍ଚର୍ଯ୍ୟ କ'ଣ ଅଛି ? ଯେଉଁ ପରମାତ୍ମା ଦିନରାତି ସମଗ୍ର ଜୀବଜଗତର ଭଲପାଇଁ ଚିନ୍ତା କରିବାରେ ଲାଗିଚି, ଯାହାର ଇଙ୍ଗିତରେ ମେଘ ବର୍ଷା କରୁଚି; ସମୁଦ୍ର ନିଜ ସୀମା ଅତିକ୍ରମ କରୁନାହିଁ; ସୂର୍ଯ୍ୟ ନିୟମିତ ଆଲୋକ ପ୍ରଦାନ କରୁଚି; ଯାହାର ଇଙ୍ଗିତରେ ସମଗ୍ର ବ୍ରହ୍ମାଣ୍ଡ ପରିଚାଳିତ; ଯାହାର ଚାତୁର୍ଯ୍ୟ ଓ କୁଶଳତାକୁ କଳ୍ପନା ସୁଦ୍ଧା କରାଯାଇ ନପାରେ; ସେହି ସର୍ବାତ୍ମା ଶ୍ରୀରାମ ପ୍ରଭୁଙ୍କୁ ଭୁଲି ଯେଉଁ ପ୍ରାଣୀ ଦିନରାତି କେବଳ ବିଷୟଚିନ୍ତା କରିବାରେ ଲାଗିଚି, ତାଠୁ ବଳି ଦୁରାତ୍ମା ଏବଂ ନିକୃଷ୍ଟ କିଏ ଅଛି ?

ଯିଏ 'ମୋର', 'ମୋର' କହିବାରେ ଲାଗି ରହିଥାଏ, ସେ ଶେଷରେ ଦୁଃଖହିଁ ଭୋଗ କରିଥାଏ । ଆନନ୍ଦଧନ ଶ୍ରୀରାମଙ୍କୁ ଛାଡ଼ି ଯାହାର ମନ ବିଷୟଚିନ୍ତାରେ ନିମଗ୍ନ ରହେ ସେପରି ଲମ୍ପଟ ପୁରୁଷକୁ ମୁକ୍ତି ମିଳିବ କିପରି ? ଯିଏ କେବଳ ସୁଖକାମନା କରିଥାଏ, ତାକୁ ଦୁଃଖହିଁ ଭୋଗ କରିବାକୁ ପଡ଼ିଥାଏ । ସ୍ୱଜନ ସଙ୍ଗତି ଛାଡ଼ି ପ୍ରଭୁ ଶ୍ରୀରାମଙ୍କ ଭଜନ କଲେ, ବାସନା କ୍ରମଶଃ ଲୋପପାଏ, ଦୁଃଖ ଦୂରହୁଏ ଏବଂ ପ୍ରକୃତ ସୁଖ ଲାଭ ହୋଇଥାଏ । ବିଷୟ ସଙ୍ଗରୁ ଯେଉଁ ସୁଖ ମିଳେ ତାହାହିଁ ଶେଷରେ ଦୁଃଖର କାରଣ ହୋଇଥାଏ । ଭୋଗ କରୁଥିବା ବେଳେ ଯେଉଁ ସୁଖ ମିଳିଥାଏ ତାହାହିଁ ପରିଶେଷରେ ଦୁଃଖ ଦିଏ—ଏହା ହେଉଚି ବିଷୟ-ସୁଖର ନିଶ୍ଚିତ ସ୍ୱଭାବ । ବନ୍‌ସୀ କଣ୍ଟାରେ ଗୁନ୍ଥା ଯାଇଥିବା ଜିଆକୁ

ଖାଇବା ବେଳେ ମାଛ ବେଶ ଆନନ୍ଦ ପାଇଥାଏ, କିନ୍ତୁ ବନ୍‌ସୀକୁ ଉପରକୁ ଉଠାଇ ଛାଟିଦିଆଯିବା ମାତ୍ରେ ଗଳାରେ କଣ୍ଟାପଶି ମାଛର ମୃତ୍ୟୁ ହୁଏ । ବିଷୟ-ସୁଖ ହେଉଚି ଠିକ ସେହିଭଳି । ତେଣୁ ଏଥିରୁ ରକ୍ଷା ପାଇବା ପାଇଁ ରାମଭଜନହିଁ ଏକମାତ୍ର ପନ୍ଥା ।

ଏସବୁ କଥା ଶୁଣିବା ପରେ ଜଣେ ଭାବୁକଶ୍ରୋତା ପ୍ରଶ୍ନ କଲେ, ''ମହାରାଜ ! ଯାହା କହୁଚନ୍ତି ଠିକ୍ କଥା, କିନ୍ତୁ ଈଶ୍ୱର କେଉଁଠି ? ସେ ମିଳିବେ କିପରି ? ଏହି ଦୁଃଖମୟ ସଂସାର ଏବଂ ଯମଯାତନାରୁ ରକ୍ଷା ପାଇବା ପାଇଁ ଜନ୍ମକୁ ସଫଳ କରାଯିବ କିଭଳି ? ଏସବୁ ବିଷୟ ବିସ୍ତାରିତ ଭାବେ ଆମକୁ ବୁଝାଇ ଦିଅନ୍ତୁ ।''

ବକ୍ତା କହିଲେ, ''ନିଷ୍ଠାପୂର୍ବକ ଭଗବାନଙ୍କୁ ଭଜନ କଲେ ସବୁ ପ୍ରଶ୍ନର ଉତ୍ତର ମିଳିପାରିବ, ସବୁ ସମସ୍ୟାର ସମାଧାନ ହୋଇ ପାରିବ ।''

ପୁଣି ସମସ୍ତ ଶ୍ରୋତା ସମସ୍ୱରରେ ପ୍ରଶ୍ନକଲେ, ''ମହାରାଜ ! ଭଗବାନଙ୍କ ଭଜନ କିପରିଭାବେ କରାଯିବ, ମନକୁ କେଉଁଥିରେ ନିଯୁକ୍ତ କରାଯିବ, ଭଜନର ଲକ୍ଷଣ କ'ଣ– ଏସବୁ କଥା ଆମକୁ ସ୍ପଷ୍ଟଭାବେ ବୁଝେଇ ଦିଅନ୍ତୁ ।''

ଶ୍ରୋତାମାନେ ଅତ୍ୟନ୍ତ ଦୀନ ଭାବରେ ଗୁରୁଚରଣରେ ସାଷ୍ଟାଙ୍ଗ ପ୍ରଣିପାତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ବାକ୍‌ରୁଦ୍ଧ ହୋଇ ଆସିଲା । ସେମାନଙ୍କ ଆଖିରୁ ଲୁହ ଝରିବାରେ ଲାଗିଲା ।

ଶିଷ୍ୟମାନଙ୍କର ଏଭଳି ଅନନ୍ୟଭାବ ଦେଖି କୈବଲ୍ୟଦାତା ଶ୍ରୀଗୁରୁଦେବ ପ୍ରସନ୍ନ ଚିତ୍ତରେ ନବଧା ଭକ୍ତି ସମ୍ପର୍କରେ କହିବାକୁ ଲାଗିଲେ । ମୁଁ ଆର ଅଧ୍ୟାୟରେ ଭକ୍ତି କେତେ ପ୍ରକାରର ସେ ସବୁକଥା ବର୍ଣ୍ଣନା କରିବି । ହେ ଶ୍ରୋତାଗଣ ! ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।



# ଚତୁର୍ଥ ଦଶକ

## ପ୍ରଥମ ସମାସ
## ।। ଶ୍ରବଣ-ଭକ୍ତି ।।

ହେ ମହାପ୍ରଭୁ ଶ୍ରୀ ଗଣେଶ ! ତୁମେହିଁ ସକଳ ବିଦ୍ୟାବୈଭବସମ୍ପନ୍ନ, ଏଣିକି ମୋ ମୁହଁ ଦେଇ ଅଧ୍ୟାତ୍ମବିଦ୍ୟାରହସ୍ୟ ପ୍ରକଟ କରନ୍ତୁ । ହେ ବେଦମାତା ଶାରଦା ! ତୁମରି ପ୍ରସାଦରୁହିଁ ମନୁଷ୍ୟ ସକଳ ସିଦ୍ଧିଲାଭ କରିପାରେ । ଦୟାକରି ମୋ ମନରେ ଅବସ୍ଥାନ କରି ମତେ ପ୍ରେରଣାଦାନ କରନ୍ତୁ । ତୁମ ଦୁହିଁଙ୍କୁ ମୋର ନମସ୍କାର । ଏବେ ସଦ୍‌ଗୁରୁଙ୍କୁ ମୋର ପ୍ରାର୍ଥନା । ସିଏ ହିଁ ଜ୍ଞାନବିଚାରର ପ୍ରେରଣାଦାତା ।

ଶ୍ରୋତାମାନେ ପ୍ରଶ୍ନ କରିଛନ୍ତି ଭଗବଦ୍‌ଭଜନ କିପରି କରାଯିବ ? ଏ ସମ୍ପର୍କରେ ଗ୍ରନ୍ଥମାନଙ୍କରେ ଯାହାସବୁ ବର୍ଣ୍ଣନା କରାଯାଇଛି ମୁଁ ତାହାହିଁ କହିବି । ଶ୍ରୀମଦ୍‌ଭାଗବତ୍ ହେଉଛି ଏକ ସତ୍‌ଶାସ୍ତ୍ର । ଏଥିରେ ପ୍ରହ୍ଲାଦଙ୍କଦ୍ୱାରା ଭକ୍ତି କେତେ ପ୍ରକାରର କୁହାଯାଇଛି । ଆପଣମାନେ ଏକାଗ୍ର ଚିତ୍ତରେ ଶ୍ରବଣ କରନ୍ତୁ ।

ଶ୍ଳୋକ —
ଶ୍ରବଣ କୀର୍ତ୍ତନ ବିଷ୍ଣୋଃସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟଂ ଆତ୍ମନିବେଦନମ୍ ।।

ଶ୍ରବଣ, କୀର୍ତ୍ତନ, ବିଷ୍ଣୁସ୍ମରଣ, ପାଦସେବା, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ—ଏହିଭଳି ନଅ ପ୍ରକାରର ଭକ୍ତି । ଏହାକୁ ନବଧା ଭକ୍ତି କୁହାଯାଏ ।

ପ୍ରଥମ ଶ୍ରବଣ ଭକ୍ତି । ହରିକଥା, ପୁରାଣଶ୍ରବଣ କିମ୍ବା ଅଧ୍ୟାତ୍ମନିରୂପଣ ହେଉଚି ଶ୍ରବଣ-ଭକ୍ତି । ପରମାତ୍ମା ସଗୁଣ, ନିର୍ଗୁଣ, ଅଭୟରୂପ । ତେଣୁ ତାଙ୍କର ସଗୁଣ ଲୀଳା ଶ୍ରବଣ କରିବା ଏବଂ ଅଧ୍ୟାତ୍ମ-ନିରୂପଣ ମଧ୍ୟ ଶୁଣିବା ଉଚିତ ।

ସଗୁଣ ଚରିତ ଶ୍ରବଣ କରିବାଦ୍ୱାରା ମନୁଷ୍ୟ ମନରେ ଭକ୍ତି ଭାବନା ଉତ୍ପନ୍ନ ହୋଇଥାଏ । ଅଧ୍ୟାତ୍ମ-ବିଷୟ୍ ଶ୍ରବଣ ଫଳରେ ଜ୍ଞାନବୋଧ ମଧ୍ୟ ହୋଇଥାଏ । ଜ୍ଞାନ ଓ ଭକ୍ତିର ସୁଖଲାଭ ମଧ୍ୟ ହୋଇଥାଏ । ତେଣୁ ଏହାକୁ ଶ୍ରବଣଭକ୍ତି କୁହାଯାଏ ।

କର୍ମମାର୍ଗ, ଉପାସନାମାର୍ଗ, ଜ୍ଞାନମାର୍ଗ, ଗୁରୁଭକ୍ତିମାର୍ଗ, ଯୋଗମାର୍ଗ, ବୈରାଗ୍ୟମାର୍ଗ ଆଦି ସବୁମାର୍ଗ ସମ୍ପର୍କରେ ଶ୍ରବଣ କରାଯିବା ଉଚିତ । ଅନେକ ବ୍ରତତୀର୍ଥର ମହିମା, ଅନେକ ସାଧୁସନ୍ଥଙ୍କ କଥା, ସେମାନଙ୍କ ସାଧନା, ତପସ୍ୟା, ପୁରଶ୍ଚରଣ ଆଦିର ମହାତ୍ମ୍ୟ ଶ୍ରବଣ କରିବା ମଧ୍ୟ ଉଚିତ । ମନୁଷ୍ୟ କିପରି ଦୁଗ୍ଧାହାରୀ, ନିରାହାରୀ, ଫଳାହାରୀ, ପର୍ଣ୍ଣାହାରୀ, ତୃଣହାରୀ ହୋଇଥାନ୍ତି, ସେସବୁ ବିଷୟ ଶୁଣିବା ଲାଗି କାନ ଡେରିବା ଆବଶ୍ୟକ । ସାଧକମାନେ କିପରି ଉଷ୍ଣବାସ, ଜଳବାସ, ଶୀତବାସ, ଅରଣ୍ୟବାସ, ଆକାଶବାସ, ଭୂଗର୍ଭବାସ କରି ତପସ୍ୟା କରିଥାଆନ୍ତି ସେ କଥା ଶୁଣିବା ଉଚିତ । ଜପ, ତପ, ହଠଯୋଗୀ, ତତ୍ତ୍ୱଜ୍ଞାନ, ଭୁଗୋଳରଚନା, ସୃଷ୍ଟି ରଚନା, ଚନ୍ଦ୍ରସୂର୍ଯ୍ୟ, ତାରାମଣ୍ଡଳ, ଗ୍ରହମଣ୍ଡଳ, ମେଘମଣ୍ଡଳର ବର୍ଣ୍ଣନା କରାଯାଇଥିବା ବହୁଗ୍ରନ୍ଥ ରହିଛି । ଏଥିରେ ନବଖଣ୍ଡ ଓ ଚଉଦଭୁବନ ଆଦିର ବର୍ଣ୍ଣନା କରାଯାଇଛି । ଯେଉଁଠି ଏସବୁ ପଠିତ ହେଉଛି, ସେଠି ଉପସ୍ଥିତ ହୋଇ ମନକର୍ଣ୍ଣ ଦେଇ ଶୁଣିବା ଉଚିତ ।

ସଙ୍ଗୀତ, ରାଗରାଗିଣୀର ଜ୍ଞାନ, ତାଳଜ୍ଞାନ, ନୃତ୍ୟଜ୍ଞାନ, ବାଦ୍ୟଜ୍ଞାନ, ଶୁଭାଶୁଭ ସମୟଜ୍ଞାନ, ନାନା ପ୍ରସଙ୍ଗ ଜ୍ଞାନ, ସାମୁଦ୍ରିକ ଲକ୍ଷଣ, ଜ୍ୟୋତିଷ, ମନ୍ତ୍ରୌଷଧି, ନାନା ରୋଗର ଚିକିତ୍ସା, ନାଡ଼ିପରୀକ୍ଷା ପ୍ରଭୃତି ଚଉଦବିଦ୍ୟା ଓ ଚଉଷଠି କଳାକୁ ଶୁଣି ହୃଦୟଙ୍ଗମ କରିବା ଉଚିତ । ନବଧା ଭକ୍ତି, ଚତୁର୍ବିଧା ମୁକ୍ତି, ଉତ୍ତମଗତି ପ୍ରଭୃତି ସମ୍ପର୍କରେ ଜ୍ଞାନାର୍ଜନ ଲାଗି ଶ୍ରବଣ ହେଉଚି ଉତ୍କୃଷ୍ଟ ମାଧ୍ୟମ । ପିଣ୍ଡବ୍ରହ୍ମାଣ୍ଡ ରଚନା, ନାନାତତ୍ତ୍ୱର ବିଚାର, ବ୍ରହ୍ମମାୟା ନିରୂପଣ, ମୋକ୍ଷପ୍ରାପ୍ତିର ସାଧନା ଆଦି ସମ୍ପର୍କରେ ମଧ୍ୟ ଜ୍ଞାନ ଲାଭ ଆବଶ୍ୟକ । ଅହର୍ନିଶ ଶ୍ରବଣଦ୍ୱାରା ଏହି ଜ୍ଞାନାର୍ଜନ ହୋଇପାରେ । ବେଦ, ଶାସ୍ତ୍ର, ପୁରାଣ, ମହାବାକ୍ୟର ବିବରଣୀ ଶୁଣିବା ଉଚିତ । ସାର ବସ୍ତୁ ଗ୍ରହଣ କରି ଅସାରବସ୍ତୁ ତ୍ୟାଗ କରିବା ଆବଶ୍ୟକ । ସଗୁଣ ଚରିତ୍ର ଶ୍ରବଣ କରି ନିର୍ଗୁଣ ଅଧ୍ୟାତ୍ମଭାବକୁ ମନନ କରିବା ହେଉଚି ଶ୍ରବଣଭକ୍ତି । ଏ

ଦ୍‌ଇଟିଯାକ କ୍ରିୟା ପବିତ୍ର । ବିଭିନ୍ନ ଅବତାରଙ୍କ ଜୟନ୍ତୀ ପାଳନ, ଜନ୍ମାଷ୍ଟମୀ, ରାମନବମୀ ପ୍ରଭୃତି ଉପବାସ; ଜପ, ଧ୍ୟାନ, ଭଜନ, ସ୍ତବନ ସଙ୍ଗେ ସଙ୍ଗେ ସେ ସବୁ ସମ୍ପର୍କରେ ଶ୍ରବଣ କରିବା ଦ୍ୱାରା ଚିତ୍ତବୃତ୍ତି ନିର୍ମଳ ହୋଇଥାଏ ।

## ଦ୍ୱିତୀୟ ସମାସ
## ।। କୀର୍ତ୍ତନ-ଭକ୍ତି ।।

ପୂର୍ବଅଧ୍ୟାୟରେ ଶ୍ରବଣ-ଭକ୍ତିର ନିରୂପଣ କରାଯାଇଛି । ଏବେ କୀର୍ତ୍ତନ-ଭକ୍ତି କ'ଣ ଶୁଣ । ସଗୁଣ ହରିକଥା ବର୍ଣ୍ଣନ, ଭଗବାନଙ୍କ ଗୁଣାନୁବାଦ, ବାଣୀଦ୍ୱାରାସର୍ବଦା ହରିନାମ ସ୍ମରଣକୁ କୀର୍ତ୍ତନ-ଭକ୍ତି କୁହାଯାଏ । ଅନେକ ସଦ୍‌ଗ୍ରନ୍ଥ ପଠନ, ନିତ୍ୟ ହରିକଥା ବର୍ଣ୍ଣନ, ନିତ୍ୟ ନୂତନ ନୂତନ ପାଠାନ୍ତର ଏବଂ ଅଧିକରୁ ଅଧିକ କୀର୍ତ୍ତନ-ଭଜନ ଦ୍ୱାରା ବ୍ରହ୍ମାଣ୍ଡକୁ ପ୍ରଭାବିତ କରିବା ଉଚିତ । କୀର୍ତ୍ତନ ଲାଗି ମନରେ ଆତୁରତା ଓ ଲାଳସା ବୃଦ୍ଧି କରାଯିବା ଆବଶ୍ୟକ । କୀର୍ତ୍ତନଦ୍ୱାରା ପ୍ରଭୁ ସନ୍ତୁଷ୍ଟ ହୋଇଥାଆନ୍ତି । ଲୋକଙ୍କ ବହୁସମସ୍ୟାର ସମାଧାନ ହୋଇଥାଏ । ଯିଏ ହରିକୀର୍ତ୍ତନ ଶୁଣେ ସେ ଉଦ୍ଧାରମାର୍ଗକୁ ଉପଲବ୍‌ଧି କରିପାରେ । ଏହି କଳିଯୁଗରେ କୀର୍ତ୍ତନଦ୍ୱାରା ଏହି ତିନୋଟି ଲାଭ ମିଳିଥାଏ ।

କୀର୍ତ୍ତନରେ ପ୍ରଭୁଙ୍କର ଅନେକ ରୂପ, ଗୁଣ ଓ ଭୂଷଣ (ଅଳଙ୍କାର) ଆଦିର ବର୍ଣ୍ଣନା ଭାବପୂର୍ଣ୍ଣ ଭାବେ କରାଯିବା ଉଚିତ ଯାହାକୁ ଶୁଣିବାମାତ୍ରେ ଭକ୍ତର ହୃଦୟ ସୁଖରେ ଆନ୍ଦୋଳିତ ହୋଇ ଉଠିବ । ଭକ୍ତିକଥାର ବିବେଚନା କରିବା ବେଳେ ଭକ୍ତିଭାବ ସମ୍ପର୍କରେ ଏଭଳି କେତେକ ବାସ୍ତବ ତଥ୍ୟର ଉଦ୍‌ଘାଟନ କରାଯିବା ଆବଶ୍ୟକ, ଯାହାଦ୍ୱାରା ଅନ୍ୟ ଲୋକଙ୍କର ଭକ୍ତିଭାବ ଜାଗ୍ରତ ହୋଇ ପାରିବ ।

କୀର୍ତ୍ତନରେ ଉପଯୁକ୍ତ ସଙ୍ଗୀତର ସମାବେଶ ଆବଶ୍ୟକ । କୀର୍ତ୍ତନ ଓ ସଙ୍ଗୀତର ପ୍ରବାହ ଏପରି ହେବା ଆବଶ୍ୟକ ଯାହାକୁ ଶୁଣିବାମାତ୍ରେ ଶ୍ରୋତାମାନେ ତନ୍ମୟ ହୋଇ ପଡ଼ିବେ । କୀର୍ତ୍ତନବେଳେ ଭକ୍ତମାନେ ଭଜନ, ପଦ, ଚୌପଦୀ, ଶ୍ଳୋକ ଗାନ କରିବା ସଙ୍ଗେ ସଙ୍ଗେ ମଝି ମଝିରେ ପ୍ରସଙ୍ଗ ଅନୁସାରେ ଶ୍ରୋତା-

ମାନଙ୍କର ଚିତ୍ତବିନୋଦନ କରିବା ମଧ୍ୟ ଉଚିତ । କୀର୍ତ୍ତନରେ ଭକ୍ତି-ଜ୍ଞାନ, ବୈରାଗ୍ୟର ଲକ୍ଷଣ, ନ୍ୟାୟନୀତି, ସ୍ୱଧର୍ମନିଷ୍ଠା ଓ ସାଧନ ମାର୍ଗର ବର୍ଣ୍ଣନା କରାଯିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମ ନିରୂପଣ କରାଯିବା ମଧ୍ୟ ଆବଶ୍ୟକ । ଏସବୁ ନିରୂପଣ ସରଳ, ସ୍ପଷ୍ଟ ଏବଂ ସନ୍ଦେହଶୂନ୍ୟ ହେବା ଉଚିତ । ଯେ କୌଣସି ବିଚାର ସିଦ୍ଧାନ୍ତକୁ ନେଇ ହେବା ଉଚିତ । ସଗୁଣ, ନିର୍ଗୁଣ ଓ ଅଧ୍ୟାତ୍ମ ନିରୂପଣ ଯୁଗୋପଯୋଗୀ ତଥା ସମୟାନୁସାରେ କରାଯିବା ଉଚିତ । ବିନା ସିଦ୍ଧାନ୍ତରେ ଅବ୍ୟବସ୍ଥିତ ଭାବେ କୌଣସି କାର୍ଯ୍ୟ କରନାହିଁ । ବେଦାଧ୍ୟୟନ କର ଏବଂ ମାୟା-ବ୍ରହ୍ମ ସ୍ୱରୂପକୁ ଉପଲବ୍ଧି କରି ଆଦରପୂର୍ବକ ବ୍ରାହ୍ମଣ-ଧର୍ମକୁ ରକ୍ଷାକର । ଉପାସନା-ମାର୍ଗ ଦ୍ୱାରା ଗୁରୁପରଂପରା ନିର୍ବାହ କର । ଜ୍ଞାନର ଲକ୍ଷଣ ଆଚରଣ କର ।

ପ୍ରଭୁଙ୍କ ସଗୁଣ ଚରିତ୍ର ବର୍ଣ୍ଣନାର ନାମ ହେଉଚି 'କୀର୍ତ୍ତନ' ଏବଂ ଅଦ୍ୱୈତର ପ୍ରତିପାଦନର ନାମ ହେଉଚି 'ନିରୂପଣ' । ଯିଏ ଅଦ୍ୱୈତର ନିରୂପଣ କରିଥାଏ ସେ ସଗୁଣ-ଉପାସନା ମାର୍ଗର ଖଣ୍ଡନ କରିବା ଅନୁଚିତ ।

ଯିଏ ବକ୍ତା ସେ ଉପଯୁକ୍ତ ଜ୍ଞାନର ଅଧିକାରୀ ହେବା ଆବଶ୍ୟକ । ଜ୍ଞାନ ଚର୍ଚ୍ଚା କରିବା ବେଳେ ବେଦାଜ୍ଞା ଭଙ୍ଗ ନକରି ଅର୍ଥାତ୍ ବେଦର ପ୍ରତ୍ୟେକ ନିର୍ଦ୍ଦେଶକୁ ମାନି ଅନ୍ୟମାନଙ୍କୁ ପ୍ରକୃତ ସତ୍‌ମାର୍ଗ ପ୍ରଦର୍ଶନ କରିବା ଉଚିତ । ଏହି କାର୍ଯ୍ୟ ଯାହାଦ୍ୱାରା ସମ୍ଭବ ନୁହଁ ସେ କେବଳ ଭଗବାନଙ୍କର ସପ୍ରେମ ଗୁଣକୀର୍ତ୍ତନ କରିବା ଉଚିତ । କାରଣ ଏହା ହେଉଚି କୀର୍ତ୍ତନ-ଭକ୍ତି । କୀର୍ତ୍ତନଦ୍ୱାରା ମହାପାତକ ନଷ୍ଟ ହୋଇ ମନୁଷ୍ୟକୁ ଉତ୍ତମ ଗତି ମିଳିଥାଏ । ପରିଶେଷରେ ସେ ଭଗବାନଙ୍କୁ ପାଇପାରେ । କୀର୍ତ୍ତନଦ୍ୱାରା ବାଣୀ ପବିତ୍ର ହୁଏ । ମନୁଷ୍ୟ ସୁଯୋଗ୍ୟ ହୋଇ ଉଠେ । ପ୍ରାଣୀମାତ୍ରେ ସୁଶୀଳ ହୁଅନ୍ତି । କୀର୍ତ୍ତନଦ୍ୱାରା ବ୍ୟଗ୍ରତା ଓ ଅଶାନ୍ତି ଦୂରହୁଏ, ମନ ଏକାଗ୍ର ଓ ଶାନ୍ତ ହୋଇ ଉଠେ । କୀର୍ତ୍ତନଦ୍ୱାରା ଆତ୍ମ-ବୁଦ୍ଧି ସ୍ଥିର ହୁଏ । ଶ୍ରୋତା-ବକ୍ତା ଉଭୟଙ୍କ ସନ୍ଦେହ ଦୂର ହୁଏ ।

ଦେବର୍ଷି ନାରଦ ସଦାସର୍ବଦା କୀର୍ତ୍ତନରେ ନିମଗ୍ନ । ତେଣୁ ତାଙ୍କୁ ନାରାୟଣସ୍ୱରୂପ କୁହାଯାଏ । ତେଣୁ କୀର୍ତ୍ତନର ମହିମା ଅପାର । କୀର୍ତ୍ତନରେ ପରମାତ୍ମା ଶୀଘ୍ର ସନ୍ତୁଷ୍ଟ ହୋଇଥାଆନ୍ତି । କୀର୍ତ୍ତନରେ ସବୁ ତୀର୍ଥ, ଧାମ, ଦେବଦେବୀ ବିରାଜମାନ ହୋଇଥାଆନ୍ତି । ତେଣୁ ଆମ୍ଭେମାନେ ସର୍ବଦା କୀର୍ତ୍ତନର ଅଭ୍ୟାସ ରଖିବା ଉଚିତ ।

## ତୃତୀୟ ସମାସ
## ।। ନାମ-ସ୍ମରଣ-ଭକ୍ତି ।।

କୀର୍ତ୍ତନ-ଭକ୍ତି ପରେ ନାମସ୍ମରଣ ଭକ୍ତି ସମ୍ପର୍କରେ କହୁଚି, ଶୁଣନ୍ତୁ । ଭଗବାନଙ୍କର ଅନେକ ନାମ । ଏହି ନାମ ମଧ୍ୟରୁ ଯାହାକୁ ଯେଉଁ ନାମ ଭଲ ଲାଗେ, ସେହି ନାମର ଅଖଣ୍ଡ ସ୍ମରଣ ତଥା ଜପ କରି କରି ସିଦ୍ଧିଲାଭ କରିବା ହେଉଚି ସ୍ମରଣ-ଭକ୍ତି । ପ୍ରତ୍ୟହ ପ୍ରାତଃକାଳରେ ଆନନ୍ଦପୂର୍ବକ ନାମସ୍ମରଣ କରିବା ଉଚିତ । ଏହା ନିୟମିତ ଭାବେ ଚାଲିବା ଆବଶ୍ୟକ । ସୁଖ, ଦୁଃଖ, କର୍ମରତ ଥିବା ସମୟରେ, ନିଦ୍ରା ଓ ବିଶ୍ରାନ୍ତି ସମୟରେ ମଧ୍ୟ ଯେପରି ନାମସ୍ମରଣ ଅବିରତଭାବେ ଚାଲିବ ସେଥିଲାଗି ସାଧନା କରିବା ଉଚିତ । ଆପଦବିପଦ ବେଳେ, ସାଂସାରିକ ଜଞ୍ଜାଳରେ ଲାଗି ରହିଥିବା ସମୟରେ, ଏପରିକି ହତାଶ ଅବସ୍ଥାରେ ମଧ୍ୟ ନାମସ୍ମରଣକୁ ଭୁଲନାହିଁ । ଯେ କୌଣସି କାମ କରନା କାହିଁକି, ଏପରିକି ଭୋଗ ବିଳାସ ସମୟରେ ମଧ୍ୟ ନାମସ୍ମରଣକୁ ଛାଡ଼ନାହିଁ । ସମ୍ପଦ-ବିପଦର ଚକ୍ର ତ ଲାଗି ରହିଥିବ, ତେବେ ପ୍ରଭୁଙ୍କ ନାମସ୍ମରଣକୁ ଛାଡ଼ ନାହିଁ । ଯେତେ ଉଚ୍ଚ କ୍ଷମତାରେ ବସ ନା କାହିଁକି, ଭାଗ୍ୟବଶତଃ ପ୍ରଚୁର ଲାଭ କରନା କାହିଁକି, ନାମ ସ୍ମରଣକୁ ଭୁଲନାହିଁ । ନାମ-ସ୍ମରଣରେ ନାନା ବାଧାବିଘ୍ନ ଆପେ ଆପେ ଦୂର ହୋଇଥାଏ ଏବଂ ପରମ-ପଦ ପ୍ରାପ୍ତି ଘଟିଥାଏ । ଭୂତ-ପିଶାଚର ବାଧା, ମନ୍ତ୍ର ପ୍ରୟୋଗର ତ୍ରୁଟି ହେତୁ ମସ୍ତିଷ୍କବିକୃତି କିମ୍ବା ଅନ୍ୟପ୍ରକାରର ଉଦ୍‌ବିଗ୍ନତାଆଦି ନାମ-ନିଷ୍ଠା ଦ୍ୱାରା ଦୂର ହୋଇଥାଏ । ନାମ-ସ୍ମରଣରେ ବିଷୟବାଧା ଏବଂ ସବୁପ୍ରକାରର ରୋଗନଷ୍ଟ ହୋଇ ପରିଶେଷରେ ଉତ୍ତମଗତି ଲାଭ ହୋଇଥାଏ । ବାଳକ, ଯୌବନ ଓ ବୃଦ୍ଧାବସ୍ଥା ସବୁ ସମୟରେ ସର୍ବଦା ନାମସ୍ମରର କରିବାରେ ଲାଗି ରହିଥାଅ । ରାମ ନାମ ନନେଇ "ମରା ମରା" ଓଲଟା ଜପ କରୁ କରୁ ବାଲ୍ମୀକି ମହର୍ଷି ପାଲଟିଗଲେ ଏବଂ ସେ ରାମାବତାର ପୂର୍ବରୁ ରାମାୟଣ ଲେଖି ସାରିଥିଲେ । ହରିନାମ ନେଇ ନେଇ ପ୍ରହ୍ଲାଦ ଅନେକ ସଙ୍କଟରୁ ରକ୍ଷା ପାଇ ତରିଗଲେ । ନାରାୟଣଙ୍କ ନାମ ନେଇ ଅଜାମିଳ ଭଳି ପାପୀ ପବିତ୍ର ହୋଇ ପାରିଲା । ରାମନାମର ପ୍ରତାପରେ ସେତୁବନ୍ଧ ସମୟରେ ପାଷାଣ ମଧ୍ୟ ସମୁଦ୍ରରେ ଭାସିଲା । ନାମର ପ୍ରଭାବରେ ଅସଂଖ୍ୟ ଭକ୍ତ ଉଦ୍ଧାର ପାଇଲେ । ମହାପାପୀ ମଧ୍ୟ ନାମସ୍ମରଣ ଦ୍ୱାରା ପୁଣ୍ୟବାନ ହୋଇଥାଏ ।

ଭଗବାନଙ୍କର ଅନନ୍ତ ନାମ । ତାଙ୍କର ହଜାର ହଜାର ନାମ ମଧ୍ୟରୁ ଯାହାର ଯେଉଁ ନାମ ପ୍ରିୟ ସେହି ନାମ ଜପ କରିବାରେ ଜୀବନ ସାର୍ଥକ ହୋଇଥାଏ । ଯିଏ ପୁଣ୍ୟଶ୍ଳୋକଙ୍କ ନାମ ଜପ କରେ ସେ ନିଜେ ପୁଣ୍ୟଶ୍ଳୋକ ହୋଇଯାଏ । ଅନ୍ୟ କୌଣସି ସାଧନା ନକରି କେବଳ ନାମସ୍ମରଣ ଦ୍ୱାରା ପରମାତ୍ମାଙ୍କୁ ସନ୍ତୁଷ୍ଟ କରାଯାଇପାରେ । ପ୍ରଭୁ ଚକ୍ରପାଣି ନିଜ ଭକ୍ତମାନଙ୍କୁ ରକ୍ଷା କରିବା ଲାଗି ସଦା ତତ୍ପର । ପର୍ବତ ପ୍ରମାଣର ଦୋଷ ନାମର ପ୍ରତାପରେ ଭସ୍ମ ହୋଇଥାଏ । ନାମର ମହିମା ଅଗାଧ । ଏହାକୁ ବର୍ଣ୍ଣନା କରାଯାଇନପାରେ । ପ୍ରତ୍ୟକ୍ଷ ଶଙ୍କର ରାମନାମର ପ୍ରତାପରେ ହଳାହଳ ବିଷରୁ ମୁକ୍ତ ହୋଇଥିଲେ ।

ଚାରିଶ୍ରେଣୀର ଲୋକଙ୍କର ନାମସ୍ମରଣରେ ଅଧିକାର ରହିଛି । ନାମସ୍ମରଣ ଲାଗି ଛୋଟ ବଡ଼, ଉଚ୍ଚନୀଚର ଭେଦଭାବ ନାହିଁ । ଜଡ଼, ମୁଢ଼ ପ୍ରାଣୀ ମଧ୍ୟ ନାମସ୍ମରଣ ଦ୍ୱାରା ଭବସାଗରରୁ ପାର ହୋଇଥାଏ । ତେଣୁ ନିରନ୍ତର ପ୍ରଭୁଙ୍କ ରୂପକୁ ମନ ଭିତରେ ସ୍ଥାପନକରି ଅଖଣ୍ଡ ନାମସ୍ମରଣରେ ରତ ରହିବା ଉଚିତ ।

## ଚତୁର୍ଥ ସମାସ
## ।। ପାଦ-ସେବନ-ଭକ୍ତି ।।

ମୋକ୍ଷପ୍ରାପ୍ତି ଲାଗି କାୟା, ବଚନ ଓ ମନଦ୍ୱାରା ସେବା କରିବା ହେଉଚି "ପାଦ-ସେବନ" ଭକ୍ତି । ଜନ୍ମ ମୃତ୍ୟୁ ଯାତନାର ମୁକ୍ତ ହେବା ଲାଗି ଅନନ୍ୟଭାବରେ ସଦ୍‌ଗୁରୁଙ୍କ ଶରଣ ପଶିବା ଉଚିତ । ସଦ୍‌ଗୁରୁଙ୍କ କୃପା ବ୍ୟତୀତ ସଂସାର ସାଗରରୁ ପାର ହେବା ଲାଗି ଅନ୍ୟ କୌଣସି ଉପାୟ ନାହିଁ । ତେଣୁ ସର୍ବଦା ସଦ୍‌ଗୁରୁଙ୍କ ଚରଣସେବା କରିବା ଉଚିତ । ସଦ୍‌ଗୁରୁଙ୍କ ଦ୍ୱାରାହିଁ ବ୍ରହ୍ମସ୍ୱରୂପର ପରିଚୟ ହୋଇପାରେ । ତାଙ୍କ କୃପାବଳରେ ସାର-ଅସାରର ବିଚାରଦ୍ୱାରା ପରବ୍ରହ୍ମ ବସ୍ତୁର ଲାଭ ହୋଇଥାଏ । ଏହି ବସ୍ତୁକୁ ଚର୍ମଚକ୍ଷୁଦ୍ୱାରା ଦେଖି ହୁଏନା , ଏହି ବସ୍ତୁକୁ ମନରେ କଳନା କରାଯାଇ ନପାରେ । ସଙ୍ଗଦୋଷ ଥିଲେ ତାକୁ ଉପଲବ୍ଧି କରାଯାଇନପାରେ । ସଙ୍ଗ-ତ୍ୟାଗ ଅର୍ଥାତ୍ ନିଷ୍କାମତା, ଆତ୍ମନିବେଦନ, ବିଦେହସ୍ଥିତି (ଦେହଭାବରୁ ମୁକ୍ତହେବା), ନିର୍ଲିପ୍ତତା, ସହଜାବସ୍ଥା, ଉନ୍ମନାବସ୍ଥା, ବିଜ୍ଞାନାବସ୍ଥା—ଏହି ସାତଟିଯାକର ଗୋଟିଏ ରୂପ ।

ଯିଏ ସମାଧି-ସୁଖ ଲାଭ କରିଥାଏ ଅର୍ଥାତ୍ ଯିଏ ସ୍ୱରୂପ-ସ୍ଥିତିର ଦର୍ଶନ ଲାଭ କରିଥାଏ ତାର ସାଂକେତିକଚିହ୍ନ ହେଉଚି ଏଗୁଡ଼ିକ । ଅବସ୍ଥାଗୁଡ଼ିକ ହେଉଚି ସମାଧି ସୁଖ ବା ସମାଧାନର ସାତଟି ନାମ ।

ପାଦ-ସେବନ ଭକ୍ତିଦ୍ୱାରା ଅଙ୍ଗପ୍ରତ୍ୟଙ୍ଗରେ ଏହି ଅବସ୍ଥାଗୁଡ଼ିକ ପ୍ରକଟିତ ହୋଇଥାଏ ଏବଂ ଗୁହ୍ୟଜ୍ଞାନର ପରିଚୟ ମିଳିଥାଏ । ତେଣୁ ଏହାକୁ ଗୁହ୍ୟ-ଜ୍ଞାନ-ମାର୍ଗ କୁହାଯାଏ । ଏହା ମୁକ୍ତ ରହିଥିଲେ ମଧ୍ୟ ଦେଖି ହୁଏନା । ଏହା ପ୍ରକଟ ଅଥଚ ଅପ୍ରକଟ ତଥା ଗୁପ୍ତ । ତେଣୁ ଏହାକୁ ଅନ୍ତରୀକ୍ଷମାର୍ଗ ଏବଂ ଗୁରୁଗମ୍ୟ ମାର୍ଗ କୁହାଯାଏ । ଯେଉଁ ମାର୍ଗ ସ୍ଥୂଳରୁ ସୂକ୍ଷ୍ମ, ସୂକ୍ଷ୍ମରୁ କାରଣ, କାରଣରୁ ଜ୍ଞାନ, ଜ୍ଞାନରୁ ଦ୍ରଷ୍ଟାକୁ ସଦ୍‌ବସ୍ତୁର ପରିଚୟ କରାଇଦେଇଥାଏ, ତାକୁ ଅନ୍ତରୀକ୍ଷମାର୍ଗ ଅର୍ଥାତ୍ ଆକାଶପନ୍ଥୀ ଗୁପ୍ତମାର୍ଗ କୁହାଯାଇଥାଏ । ମାୟାଥିବା ପର୍ଯ୍ୟନ୍ତ ସତ୍ୟର ଦର୍ଶନ ସମ୍ଭବ ନୁହେଁ । ସତ୍ୟ ଅର୍ଥାତ୍ ବ୍ରହ୍ମଦର୍ଶନ ହେବାପରେ ଅସତ୍ୟ ଅର୍ଥାତ୍ ମାୟା ଲୋପ ପାଇଥାଏ । ସତ୍ୟ କିମ୍ବା ଅସତ୍ୟର ସମ୍ପର୍କ ଦର୍ଶକର ଦୃଷ୍ଟି ଉପରେ ନିର୍ଭର କରେ । ଯିଏ ଦେଖେ ସେ ଦ୍ରଷ୍ଟା ଏବଂ ଦେଖିବା କର୍ମକୁ ଦର୍ଶନ କୁହାଯାଏ । ଦର୍ଶନ ଯେତେବେଳେ ଦ୍ରଷ୍ଟାରେ ବିଲୀନ ହୋଇଯାଏ, ସେତେବେଳେ ସମାଧାନ ହୋଇଯାଏ । ସମସ୍ତ ପ୍ରକାରର ସାଧନା ସଦ୍‌ଗୁରୁଙ୍କ ସତ୍‌ସଙ୍ଗଦ୍ୱାରାହିଁ ସଫଳ ହୋଇପାରେ । ସଦ୍‌ଗୁରୁବିନା ସଦ୍‌ମାର୍ଗ କିଛି ନାହିଁ । ଯେତେ ପ୍ରୟୋଗ, ସାଧନ ଏବଂ ସର୍ବଦା କଠୋର ପରିଶ୍ରମଦ୍ୱାରା ଯେତେ ବିଦ୍ୟାଧ୍ୟୟନ କରନା କାହିଁକି, ସଦ୍‌ଗୁରୁବିନା ଗୁରୁଗମ୍ୟଜ୍ଞାନ ଲାଭ ହୋଇ ନପାରେ । ଯେଉଁ ସାଧନା ଓ ଅଭ୍ୟାସ ଅସାଧ୍ୟ, ତାହା ଗୁରୁକୃପାଦ୍ୱାରା ସହଜସାଧ୍ୟ ହୋଇଥାଏ । ତେଣୁ ସଦ୍‌ମାର୍ଗ ଲାଗି ଇଚ୍ଛୁକବ୍ୟକ୍ତି ସତ୍‌ସଙ୍ଗ କରିବା ଆବଶ୍ୟକ । ଦେବ, ବ୍ରାହ୍ମଣ ଏବଂ ସନ୍ଥ ସଜ୍ଜନଙ୍କ ସମାଗମ ଦ୍ୱାରା ହରିଭଜନମାର୍ଗ ଉପଲବ୍‌ଧ ହୋଇଥାଏ । ତେଣୁ ଏମାନଙ୍କପ୍ରତି ପ୍ରୀତିପୂର୍ଣ୍ଣ ସଦ୍‌ଭାବ ରଖିବା ଉଚିତ ।

ଏହି କଥନ ଲୋକାଚାର ମାତ୍ର । ପ୍ରକୃତ ମୁମୁକ୍ଷୁ ମନୁଷ୍ୟକୁ ସଦ୍‌ଗୁରୁଙ୍କ ଚରଣରେ ଦୃଢ଼ ଆଶ୍ରୟ ନେବା ଆବଶ୍ୟକ । ଏହାହିଁ ପାଦସେବନଭକ୍ତି । ନବଧା ଭକ୍ତି ମଧ୍ୟରୁ ଏହା ଚତୁର୍ଥ । ଏହି ଭକ୍ତିଦ୍ୱାରା ତ୍ରିଲୋକ ପବିତ୍ର ହୋଇଥାଏ । ଏହି ଭକ୍ତି ମନୁଷ୍ୟକୁ ସାଯୁଜ୍ୟ ମୁକ୍ତି ନିକଟରେ ପହଞ୍ଚାଇଥାଏ । ତେଣୁ ଏହାକୁ ଶ୍ରେଷ୍ଠ

ଭକ୍ତି କୁହାଯାଏ । ଏହି ପାଦସେବନ ଭକ୍ତିଦ୍ୱାରା ଅଗଣିତ ପ୍ରାଣୀ ଭବସାଗରରୁ ଉଦ୍ଧାର ପାଇଥାଆନ୍ତି ।

## ପଞ୍ଚମ ସମାସ
## ।। ଅର୍ଚ୍ଚନ-ଭକ୍ତି ।।

ଚତୁର୍ଥ ଭକ୍ତି ପାଦସେବନର ନିରୂପଣ କରାଗଲା । ଏବେ ପଞ୍ଚମ "ଅର୍ଚ୍ଚନ-ଭକ୍ତି" ସମ୍ପର୍କରେ ଶୁଣନ୍ତୁ । ଅର୍ଚ୍ଚନ—ଅର୍ଥାତ୍ ଦେବତାମାନଙ୍କ ପୂଜା ଅର୍ଚ୍ଚନା । ପୂଜା ଶାସ୍ତ୍ରବିଧି ଅନୁସାରେ କରାଯିବା ଉଚିତ । ଅନେକ ପ୍ରକାରର ଆସନ, ଉପକରଣ, ବସ୍ତ୍ରାଲଙ୍କାର, ଆଭୂଷଣ, ମାନସପୂଜା, ମୂର୍ତ୍ତିଧ୍ୟାନଆଦି ବିଧିବିଧାନପୂର୍ବକ ପବିତ୍ରଭାବରେ କରାଯିବା ଉଚିତ । ଦେବ, ବ୍ରାହ୍ମଣ, ସାଧୁସନ୍ଥ, ଅତିଥି, ସନ୍ନ୍ୟାସୀ, ଗାୟତ୍ରୀ (ଗୋମାତା)ଙ୍କର ଯଥୋଚିତ ପୂଜା ଓ ସତ୍କାର କରିବା ବିଧେୟ । ଧାତୁ, ପାଷାଣନିର୍ମିତ ଦେବଦେବୀଙ୍କ ମୂର୍ତ୍ତି, ପ୍ରତିକୃତି ଆଦିକୁ ମଧ୍ୟ ଆଦର ପୂର୍ବକ ପୂଜା କରାଯିବା ଉଚିତ । ଶାଳଗ୍ରାମ, ଚକ୍ର, ଶିବଲିଙ୍ଗ, ବାଣ, ଭୈରବ, ଭଗବତୀ ପ୍ରଭୃତି ପରିବାରରେ ଯେଉଁ ସବୁ ଦେବଦେବୀଙ୍କର ଯଜନ ପୂଜନ କରାଯାଇଥାଏ, ସେମାନଙ୍କ ପ୍ରତି ଭକ୍ତିଭାବ ରହିବା ଆବଶ୍ୟକ । ଗଣେଶ, ଶାରଦା, ବିଷ୍ଣୁ, ଶଙ୍କର, ହନୁମାନ, କେଶବ, ନାରାୟଣ, ସୂର୍ଯ୍ୟ, ଲକ୍ଷ୍ମୀ ଓ ହରିହର ପ୍ରଭୃତିଙ୍କର ମୂର୍ତ୍ତିସଂଖ୍ୟା ଅଗଣିତ । ସେମାନଙ୍କର ପୂଜା କରାଯିବା ଉଚିତ । ଏହାବ୍ୟତୀତ କୁଳଧର୍ମ ଅନୁସାରେ ପରିବାରରେ ଯେଉଁ ଦେବଦେବୀଙ୍କ ପୂଜା କରାଯାଇଥାଏ, ସେମାନଙ୍କ ପୂଜା ଅବ୍ୟାହତ ରଖାଯିବା ଆବଶ୍ୟକ । ବହୁ-ତୀର୍ଥାଟନ କରି ବିଭିନ୍ନ ତୀର୍ଥରେ ଅଧିଷ୍ଠିତ ଦେବଦେବୀଙ୍କର ମଧ୍ୟ ପୂଜା କରିବା ଉଚିତ ।

ପୂଜାରେ ପଞ୍ଚାମୃତ, ଗନ୍ଧ, ଅକ୍ଷତ, ପୁଷ୍ପ, ସୁଗନ୍ଧଦ୍ରବ୍ୟ, ଧୂପ, ଦୀପ, କର୍ପୂର, ଆରତୀ, ଫଳ, ନୈବେଦ୍ୟ, ତାମ୍ବୁଳ, ଦକ୍ଷିଣା, ବସ୍ତ୍ର, ଅଳଙ୍କାର ଆଦି ଯଥାନୁକୂଳ ଉପଚାର କରାଯିବା ଆବଶ୍ୟକ । ଭକ୍ତଭାବୁକପ୍ରମୁଖ ମିତ୍ରଜନଙ୍କୁ ଆମନ୍ତ୍ରଣ କରି ସାମୂହିକ ଭାବେ ମହୋତ୍ସବର ଆୟୋଜନ କରାଯିବା ଉଚିତ । ମନ୍ଦିର ନିକଟବର୍ତ୍ତୀ କୂପ, ସରୋବର, ମଠ, ମଣ୍ଡପ, ବାଗବଗିଚା ଆଦି ନିର୍ମାଣ

କରିବା ହେଉଚି ଧର୍ମକାର୍ଯ୍ୟ । ମନ୍ଦିରମାନଙ୍କ ପାଇଁ ନାନାପ୍ରକାରର ବସ୍ତ୍ରଭୂଷଣ, ପରଦା, ଛତ୍ର, ଚାମର, ଚାନ୍ଦୁଆ, ଆରତିଦାନି ଆଦି ଉପକରଣ ଅର୍ପଣ କରିବା ଉଚିତ । ଶୁକ, ସାରୀ, ମୟୂର, ଚକୋର, କୋକିଳ ଏବଂ ଗାଇ, ପଶୁ, ପକ୍ଷୀ ଦେବାଳୟମାନଙ୍କ ପାଇଁ ସମର୍ପଣ କରାଯିବା ଆବଶ୍ୟକ ।

ସାରାଂଶ ହେଉଚି—କାୟ, ମନ, ବାକ୍ୟ ତଥା ଚିତ୍ତ-ବିତ୍ତ-ମନ-ପ୍ରାଣ ଦ୍ୱାରା ଯେଉଁସବୁ ଜିନିଷ ମୁଦ୍ରାପୂର୍ବକ ଭଗବାନଙ୍କୁ ଅର୍ପଣ କରାଯାଇଥାଏ, ସେସବୁ ଜିନିଷ ଦେବଦେବୀଙ୍କୁ ଅର୍ପଣ କରାଯିବା ଆବଶ୍ୟକ । ଏସବୁ ହେଉଚି ଅର୍ଚ୍ଚନଭକ୍ତି । ଦେବତାଙ୍କୁ ଭକ୍ତି କରିବାଭଳି ଗୁରୁଙ୍କପ୍ରତି ଅନନ୍ୟଭକ୍ତିଭାବ ରହିବା ଉଚିତ । ମାନସପୂଜା ହେଉଚି ଭଗବାନଙ୍କର ଅତି ପ୍ରିୟ । ତେଣୁ ମନପୂର୍ବକ ପୂଜା କରାଯିବା ଆବଶ୍ୟକ । ଯିଏ ଯେଉଁ ଜିନିଷକୁ ଭଲପାଏ, ସେ ସେହି ଜିନିଷ ଭଗବାନଙ୍କୁ ଅର୍ପଣ କରିବା ଉଚିତ । ଏହାକୁ ମାନସ ପୂଜା କୁହାଯାଏ । ଅନୁଭବ ସହିତ ମାନସ ପୂଜା କରିବାଦ୍ୱାରା ମନୁଷ୍ୟ ପରମଶାନ୍ତି ଓ ସମାଧାନ ଲାଭ କରିଥାଏ ।

## ଷଷ୍ଠ ସମାସ
## ।। ବନ୍ଦନ-ଭକ୍ତି ।।

ଏବେ ବନ୍ଦନଭକ୍ତି କ'ଣ ଶୁଣନ୍ତୁ । ଦେବତା, ସାଧୁସନ୍ଥ, ସଜ୍ଜନମାନଙ୍କ ବନ୍ଦନା କରିବା ହେଉଚି ବନ୍ଦନ-ଭକ୍ତି । ଭଗବାନଙ୍କୁ ଓ ସଦ୍‌ଗୁରୁଙ୍କୁ ସାଷ୍ଟାଙ୍ଗ ନମସ୍କାର କରିବା ସଙ୍ଗେ ସଙ୍ଗେ ଗୁରୁଜନମାନଙ୍କୁ ଯଥୋଚିତ ନମସ୍କାର କରିବା ଉଚିତ । ଦେବତାରୂପରେ ପରମାତ୍ମାଙ୍କର ଯେଉଁ ଅନନ୍ତ ମୂର୍ତ୍ତି ରହିଛି ସେଗୁଡ଼ିକୁ ଶ୍ରଦ୍ଧାର ସହିତ ସାଷ୍ଟାଙ୍ଗ ନମସ୍କାର କରିବା ଉଚିତ । ଶିବ, ବିଷ୍ଣୁବନ୍ଦନ ଓ ସୂର୍ଯ୍ୟ ଦର୍ଶନ ଦ୍ୱାରା ବହୁଦୋଷରୁ ମନୁଷ୍ୟ ନିବୃତ୍ତ ହୋଇଥାଏ ଏବଂ ବହୁ ପୁଣ୍ୟ ଲାଭ ହୋଇଥାଏ । ତେଣୁ ସେମାନଙ୍କୁ ନିତ୍ୟ ପୂଜା ଦର୍ଶନ କରି ଦଣ୍ଡବତ୍ ପ୍ରଣାମ କରିବା ଉଚିତ । ତେଣୁ କୁହାଯାଇଚି—

ଶଙ୍କରଃ ଶେଷଶାୟୀ ଚ ମାର୍ତଣ୍ଡୋମାରୁତିସ୍ତଥା ।
ଏତେଷାଂ ଦର୍ଶନଂ ପୁଣ୍ୟଂ ନିତ୍ୟନେମ ବିଶେଷତଃ ।।

ଭକ୍ତ, ଜ୍ଞାନୀ, ବୈରାଗ୍ୟବାନ ପୁରୁଷ, ମହାତ୍ମାଗଣ, ତପସ୍ୱୀ, ଯୋଗୀ, ବେଦଶାସ୍ତ୍ରଜ୍ଞ, ପଣ୍ଡିତ, ବିଦ୍ୱାନ୍‌ପ୍ରମୁଖ ଯେଉଁମାନଙ୍କଠାରେ ମହାନୁଭବ ଗୁଣ ଦେଖୁ, ସେମାନେ ଜଣେ ଜଣେ ସଦ୍‌ଗୁରୁଙ୍କ ଅଧିଷ୍ଠାନ ମନେକରି, ସମସ୍ତଙ୍କୁ ସାଷ୍ଟାଙ୍ଗ ନମସ୍କାର କରିବା ଉଚିତ । ଗଣେଶ, ଶାରଦା, ବିଷ୍ଣୁ, ଶଙ୍କର ତଥା ସବୁ ଦେବଦେବୀଙ୍କୁ ଭକ୍ତିଭାବରେ ନମସ୍କାର କରିବା ଉଚିତ । ଯଥା—

ଅକାଶାତ୍ପତୀତଂ ତୋୟଂ ଯଥା ଗଚ୍ଛତି ସାଗରଂ ।
ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି ॥

ଆକାଶରୁ ପଡୁଥିବା ବର୍ଷାଜଳ ଯେପରି ସମୁଦ୍ରରେ ଯାଇ ପଡ଼େ, ସେହିଭଳି ସର୍ବଦେବୀଙ୍କୁ କରାଯିବା ନମସ୍କାର ଏକ ପରବ୍ରହ୍ମ ପରାତ୍ପର ପରମାତ୍ମାହିଁ ଲାଭ କରିଥାଆନ୍ତି । ନମସ୍କାର କରିବାଦ୍ୱାରା ମନରେ ବି ନମ୍ରଭାବ ଜାଗ୍ରତ ହୋଇଥାଏ । ବିକଳ୍ପଭାବ ନାଶ ହୋଇ ସମସ୍ତ ସମସ୍ୟାର ସମାଧାନ ହୋଇଥାଏ । ନମସ୍କାର କରିବା ଫଳରେ ମନୁଷ୍ୟ ମନରୁ ଅହଂଭାବ ଲୋପପାଇଥାଏ । ଦୋଷ ଦୁର୍ଗୁଣଗୁଡ଼ିକ ଭସ୍ମିଭୂତ ହୁଏ ଏବଂ ମନୁଷ୍ୟ ଭଗବାନଙ୍କ କୃପାଲାଗି ଯୋଗ୍ୟହୁଏ । ନମସ୍କାର କରିବାଦ୍ୱାରା ପତିତ ପବିତ୍ର ହୋଇଉଠେ । ସନ୍ଥଜନ କେବଳ ନମସ୍କାର-ସାଧନାଦ୍ୱାରା ଅନ୍ୟତା ଲାଭ କରି ଜନ୍ମ-ମରଣ ବନ୍ଧନରୁ ମୁକ୍ତ ହୋଇଥାଆନ୍ତି । ହୃଦୟବାନ ସମର୍ଥବ୍ୟକ୍ତି ଅପରାଧୀକୁ ନମସ୍କାର କରିବାମାତ୍ରେ ତାର ସମସ୍ତ ଦୋଷକୁ କ୍ଷମା କରିଥାଆନ୍ତି । ତେଣୁ ଶରଣାଗତ ପକ୍ଷରେ ନମସ୍କାର ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ ।

ନମସ୍କାରଦ୍ୱାରା ସଦ୍‌ବୁଦ୍ଧି ବିକଶିତ ହୋଇଥାଏ । ନମସ୍କାର ଲାଗି କୌଣସି ଅର୍ଥବ୍ୟୟ କରିବାକୁ ପଡ଼େନାହିଁ କିମ୍ବା କୌଣସି ପରିଶ୍ରମ କରିବାକୁ ପଡ଼େନାହିଁ, କୌଣସି ସାମଗ୍ରୀ ମଧ୍ୟ ଆବଶ୍ୟକ ହୋଇ ନଥାଏ । ଏହା ବ୍ୟତୀତ ସରଳ ସହଜ ମାର୍ଗ ଅନ୍ୟ କିଛି ନାହିଁ । କିନ୍ତୁ ଅନନ୍ୟ ଓ ନିଷ୍କପଟ ଭାବରେ ନମସ୍କାରପୂର୍ବକ ଶରଣାଗତ ହେବାମାତ୍ରେ ସାଧୁ ସଦ୍‌ଗୁରୁ ତୁମର ସମସ୍ତ ଚିନ୍ତାର ଭାର ନିଜେ ଗ୍ରହଣ କରି ନେଇଥାଆନ୍ତି ।

## ସପ୍ତମ ସମାସ
## ।। ଦାସ୍ୟ-ଭକ୍ତି ।।

ଦାସ୍ୟଭକ୍ତି ହେଉଚି ଭକ୍ତିମାର୍ଗର ସପ୍ତମଗୁଣ । ସର୍ବଦା ମନ୍ଦିରରେ ଦେବଦେବୀମାନଙ୍କ ସେବା ଲାଗି ଉପସ୍ଥିତ ରହିବା ଆବଶ୍ୟକ । ସେଠାରେ ଆବଶ୍ୟକତାନୁସାରେ ଯେ କୌଣସି କାମ ଦିଆଗଲେ ତତ୍‌ପରତା ଓ ଉତ୍ସାହ ପୂର୍ବକ ସମ୍ପନ୍ନ କରିବା ଉଚିତ । ଦେବମନ୍ଦିରର ଜୀର୍ଣ୍ଣୋଦ୍ଧାର କରିବା; ସର୍ବସାଧାରଣ ପୁଷ୍କରିଣୀର ମରାମତି ଓ ପଙ୍କୋଦ୍ଧାର କାର୍ଯ୍ୟ କରିବା; ଧର୍ମଶାଳା ନିର୍ମାଣ କରିବା କିମ୍ବା ସେଗୁଡ଼ିକର ଜୀର୍ଣ୍ଣୋଦ୍ଧାର କରିବା ଆଦି ହେଉଚି ଦାସ୍ୟ-ଭକ୍ତି । ମନ୍ଦିର ଲାଗି ନାନାପ୍ରକାରର ପୂଜାଦ୍ରବ୍ୟ ଏବଂ ଶୃଂଗାର ସାମଗ୍ରୀ ପ୍ରଦାନ କରିବା, ଯଥା ବଡ଼ ବଡ଼ ବାସନକୁସନ, ହଣ୍ଡା, ସୁନାରୂପାଆଦି ବାସନକୁସନ ଭେଟି ଦେବା ହେଉଚି ଦାସ୍ୟ-ଭକ୍ତିର ଗୁଣ । ମନ୍ଦିର ଚାରିପଟେ ପୁଷ୍ପଉଦ୍ୟାନ ନିର୍ମାଣ କରିବା, କୂଅପୋଖରୀ ଖୋଳିବା, ପାଳିତ ପଶୁପକ୍ଷୀଙ୍କ ରହିବା ଲାଗି ଘର ନିର୍ମାଣ କରିବା, ନାଟ୍ୟଶାଳା ଓ ବିଭିନ୍ନ ପ୍ରକାର ବାଦ୍ୟର ବ୍ୟବସ୍ଥା କରିବା ଏବଂ ସେଠାରେ ଭଗବାନଙ୍କ ଗୁଣକୀର୍ତ୍ତନ କରୁଥିବା ସଙ୍ଗୀତଜ୍ଞମାନଙ୍କୁ ଆଶ୍ରୟ ଦେବା, ରୋଷେଇଘର, ଭୋଜନାଳୟ ନିର୍ମାଣ କରିବାଆଦି ଅନେକ ସାଧନଦ୍ୱାରା ଦେବତାଙ୍କ ବୈଭବ ବୃଦ୍ଧି କରିବା ହେଉଚି ଦାସ୍ୟ-ଭକ୍ତିର ଲକ୍ଷଣ ।

ସଂକ୍ଷେପରେ ଦାସ୍ୟଭକ୍ତି କ'ଣ କୁହାଗଲା । ଯଦି ବିସ୍ତୃତଭାବେ କୁହାଯିବ ତ କେତେ କୁହାଯିବ ? ଏତିକିମାତ୍ର କୁହାଯାଇ ପାରେ ଯେ ଭଗବାନଙ୍କର ସମସ୍ତ ପ୍ରକାରର ସେବା ଲାଗି ସର୍ବଦା ତତ୍‌ପର ରହିବା ଉଚିତ । ମନରୁ ଅହଙ୍କାର ତୁଟେଇ ନିଜକୁ ଛୋଟରୁ ଛୋଟ ମନେକରି ଯେ କୌଣସି ସେବାକାର୍ଯ୍ୟରେ ଆନନ୍ଦ ଅନୁଭବ କରିବା ଉଚିତ । ଜୟନ୍ତୀ, ପର୍ବ, ମହୋତ୍ସବଆଦି ସାଜସଜ୍ଜା ବଡ଼ଆକାରରେ ଆଡ଼ମ୍ବର କରାଯିବା ଆବଶ୍ୟକ । ଏସବୁ ଏପରି ସୁନ୍ଦରଭାବେ କରିବ, ଯାହାକୁ ଦେବତାମାନେ ଦେଖି ଉଲ୍ଲସିତ ଓ ଚକିତ ହୋଇ ଉଠିବେ । ଦେବତାମାନଙ୍କ ଐଶ୍ୱର୍ଯ୍ୟ ବୃଦ୍ଧି ଉଦ୍ଦେଶ୍ୟରେ ଅତି କ୍ଷୁଦ୍ରକାର୍ଯ୍ୟ ମଧ୍ୟ ପ୍ରେମ ଓ ଭକ୍ତି ଭାବରେ ଉତ୍ସାହପୂର୍ବକ କରିବା ଉଚିତ । ପୂଜନ, ସ୍ନାନ, ଆଚମନ, ଗନ୍ଧ, ଅକ୍ଷତ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ ଆଦିର ସମ୍ପୂର୍ଣ୍ଣ

ବ୍ୟବସ୍ଥା କରିବା ଉଚିତ । ମନ୍ଦିର ଓ ମନ୍ଦିର ପ୍ରାଙ୍ଗଣ ତଥା ପରିସରକୁ ପରିଷ୍କାର କରିବା, କୁଣ୍ଡମାନଙ୍କରେ ପାଣି ଭର୍ତ୍ତିକରିବା, ଦେବ-ଦେବୀମାନେ ପରିଧାନ କରୁଥିବା ବସ୍ତ୍ରସବୁ ପରିଷ୍କାର କରିବା, ବାସନକୁସନଆଦି ମାଜିବା, ଦର୍ଶନଲାଗି ଆସୁଥିବା ଭକ୍ତମାନଙ୍କୁ ପାଛୋଟି ଆଣିବା, ସେମାନଙ୍କ ରହିବାର ବନ୍ଦୋବସ୍ତ କରାଇ ଦେବା, ସେମାନପ୍ରତି ଆତିଥ୍ୟ-ସମ୍ମାନ ପ୍ରଦର୍ଶନ କରିବା ଆଦି ହେଉଚି ଦାସ୍ୟ-ଭକ୍ତି । ମନ୍ଦିରରେ ଭଗବାନଙ୍କ ସମ୍ମୁଖରେ ବସି ଭକ୍ତି-ଭାବ ପୂର୍ବକ ପ୍ରାର୍ଥନା କରିବା, ଭଗବାନଙ୍କ କରୁଣା ବର୍ଣ୍ଣିତ ସ୍ତୋତ୍ର, ଜଣାଣ ଆଦି ଗାନକରି ଲୋକଙ୍କ ଅନ୍ତରକୁ ଭାବବିଭୋର ଏବଂ ପ୍ରସନ୍ନ କରିବାଆଦି ହେଉଚି ଦାସ୍ୟ-ପୂଜାଭକ୍ତିର ଲକ୍ଷଣ । ଯଦି ଏସବୁ ସମ୍ଭବ ନହୁଏ ତ ମନରେ ପ୍ରଭୁଙ୍କ ତଥା ସଦ୍‌ଗୁରୁଙ୍କ ଚିନ୍ତା କରିବା ଉଚିତ । ତାହା ମଧ୍ୟ ଦାସ୍ୟ-ଭକ୍ତି ।

## ଅଷ୍ଟମ ସମାସ
## ।। ସଖ୍ୟ-ଭକ୍ତି ।।

ବର୍ତ୍ତମାନ ଅଷ୍ଟମ ସଖ୍ୟ-ଭକ୍ତିର ଲକ୍ଷଣ କୁହାଯାଉଚି । ଈଶ୍ୱର ତଥା ଦେବତାମାନଙ୍କୁ ସଖାଭାବରେ ସେବା-ଭକ୍ତି କରିବା ହେଉଚି ସଖ୍ୟ-ଭକ୍ତି । ପ୍ରଭୁଙ୍କର ଯାହାସବୁ ପ୍ରିୟ ଆମେ ସେ ସବୁ ଶ୍ରଦ୍ଧାର ସହିତ ଗ୍ରହଣ କରିବା ସଙ୍ଗେ ସଙ୍ଗେ ତଦନୁସାରେ ବ୍ୟବହାର କରିବା ଉଚିତ । ଭଗବାନଙ୍କର ପ୍ରିୟ କ'ଣ ? ଭକ୍ତିଭାବ, ଭଜନ, ନିରୂପଣ ଏବଂ ପ୍ରେମପୂର୍ବକ ନାମସଂକୀର୍ତ୍ତନ ହେଉଚି ଭଗବାନଙ୍କ ପ୍ରିୟ । ତେଣୁ ଆମ୍ଭେମାନେ ନିଜ ଜୀବନରେ ଏସବୁ ନିତ୍ୟ ପ୍ରୟୋଗ କରିବା ଆବଶ୍ୟକ । ପବିତ୍ର ଇଚ୍ଛାନୁସାରେ କାର୍ଯ୍ୟକରିବା ଦ୍ୱାରା ସଖ୍ୟ-ଭାବନା ବଢ଼ିଥାଏ । ଭଗବାନଙ୍କ ପ୍ରତି ସଖ୍ୟଭାବ ରଖିବାକୁ ହେଲେ ନିଜ ସ୍ୱାର୍ଥ ଏବଂ ସୁଖପ୍ରତି ଧ୍ୟାନ ଦେବା ଅନୁଚିତ । ଅନନ୍ୟ-ଭାବ ଏବଂ ତନୁ-ମନ-ଧନ ସହିତ ପ୍ରଭୁଙ୍କ ଇଚ୍ଛାକୁହିଁ ନିଜ ଇଚ୍ଛା ଭାବରେ ବରଣ କରିନେବା ଉଚିତ । ସାଂସାରିକ ବିଷୟ ସମ୍ପର୍କରେ କୌଣସି ଚିନ୍ତା ନକରି ସର୍ବଦା ପ୍ରଭୁଙ୍କର ଚିନ୍ତାରେ ମଗ୍ନ ରହିବା ଆବଶ୍ୟକ । କେବଳ ପ୍ରଭୁଙ୍କ କଥା କହିବ, ଯିଏ ପ୍ରଭୁଙ୍କ କଥା କହୁଥିବ ତାଙ୍କରି କଥା ଶୁଣିବ । ପ୍ରଭୁଙ୍କ ସହିତ ସଖା-ଭାବ ସ୍ଥାପନ କରିବାଲାଗି ଆପ୍ତଜନମାନଙ୍କ ବିରୋଧକୁ ମଧ୍ୟ ସହ୍ୟ କରିବା ଉଚିତ । ଏଥିଲାଗି ସବୁକିଛି ତ୍ୟାଗ କରିବା ଏବଂ

ଆବଶ୍ୟକ ହେଲେ ନିଜ ପ୍ରାଣକୁ ମଧ୍ୟ ଅର୍ପଣ କରିବା ଲାଗି ତତ୍‌ପର ରହିବା ଉଚିତ୍ର ।

ପ୍ରଭୁଙ୍କ ସର୍ବସ୍ୱ ମନେ କରି ତାଙ୍କଠାରୁ ମୁହୂର୍ତ୍ତେ ସୁଦ୍ଧା ବିଚ୍ଛିନ୍ନ ହୁଅ ନାହିଁ । ଯଦି ଆମେ ଅନନ୍ୟଭାବରେ ପ୍ରଭୁଙ୍କ ସହିତ ସଖ୍ୟ-ଭାବ ସ୍ଥାପନ କରିପାରିବା ତ ପ୍ରଭୁ ଅତି ଖୁସିରେ ଆମମାନଙ୍କର ସମସ୍ତ ଭାର ବହନ କରିବେ । ଭଗବାନ କିପରି ପାଣ୍ଡବମାନଙ୍କୁ ଜତୁଗୃହ ଭିତରୁ ବାହାରକୁ ନେଇ ଆସି ସେମାନଙ୍କ ପ୍ରାଣ ରକ୍ଷା କରିଥିଲେ, ଆପଣମାନେ କ'ଣ ଜାଣନ୍ତି ନାହିଁ ? ପ୍ରଭୁଙ୍କୁ ସଖା-ଭାବ ଦ୍ୱାରା ନିଜର କରି ନେବାର ଚାବିକାଠି ଆମମାନଙ୍କ ହାତରେ ରହିଛି । ଧ୍ୱନି ଅନୁଯାୟୀ ପ୍ରତିଧ୍ୱନି ହୋଇଥାଏ । ତେଣୁ ଯଦି ଆମେ ପ୍ରଭୁଙ୍କୁ ନିଜର ସଖା କରିନେବା ସେ ସଙ୍ଗେ ସଙ୍ଗେ ଆମର ବଶ ହେବେ । "ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍" ଯାହାର ଯେପରି ଭାବନା, ପ୍ରଭୁଙ୍କୁ ସେ ସେହିଭଳି ପାଇଥାଏ । ତେଣୁ ପ୍ରଭୁଙ୍କୁ ବଶ କରିବାର ସୂତ୍ର ଆମରି ହାତରେ ହିଁ ରହିଛି । ଇଚ୍ଛାନୁକୂଳ କାର୍ଯ୍ୟ ନ ହେବାରେ ଯଦି ଈଶ୍ୱରନିଷ୍ଠା ହୋଇ ପାରୁ ନାହିଁ, ତାହା ନିଜରହିଁ ଦୋଷ । ପ୍ରଭୁଙ୍କ ପ୍ରତି ଅନନ୍ୟ ଦୃଢ଼ ନିଷ୍ଠା ରହିବା ଆବଶ୍ୟକ । କେବଳ ପ୍ରଭୁଙ୍କୁହିଁ ନିଜର ମାତାପିତା, ବନ୍ଧୁସଖା, ଆତ୍ମୀୟସ୍ୱଜନ, କୁଟୁମ୍ବ ପରିବାର, ଧନସମ୍ପତ୍ତି ବୋଲି ଭାବି ନେବା ଉଚିତ । ନିଜର କାମନା ପୂର୍ଣ୍ଣ ହୋଇ ନ ପାରିଲେ ଭଗବାନଙ୍କ ପ୍ରତି କ୍ରୋଧ ବା ବିରକ୍ତ ପ୍ରକାଶ କରିବା ସଖା-ଭକ୍ତି ନୁହଁ । ବରଂ ଯେତେଦିନ ହେଉନା କାହିଁକି ନିଜର ଇଚ୍ଛା ପୂର୍ଣ୍ଣହେବାଲାଗି ଭଗବାନଙ୍କୁ ସଖା ଭାବେ ଗ୍ରହଣ କରିବା ଉଚିତ, ତାଙ୍କୁ ଛାଡ଼ିବା ଠିକ୍ ନୁହଁ । ଏପରି କଲେ ତୁମର ଇଚ୍ଛା ଓ ଭଗବାନଙ୍କ ଇଚ୍ଛା ଏକାକାର ହୋଇଯିବ ।

ନିଜର ସ୍ୱତନ୍ତ୍ର ଇଚ୍ଛାକୁ ତ୍ୟାଗ କରି ଭଗବଦ୍ ଇଚ୍ଛାକୁ ଶିରୋଧାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ତାଙ୍କର ଇଚ୍ଛାନୁଯାୟୀ ଜୀବନ ଅତିବାହିତ କରିବାକୁ ସଂକଳ୍ପ କଲେ ଅନନ୍ୟ ଭକ୍ତି ଫଳରେ ସେ ସହଜରେ ଆମର ପ୍ରକୃତ ସଖା ହୋଇପାରିବେ ।

ପ୍ରଭୁଙ୍କ କୃପା ଆଗରେ ମାତାର ସ୍ନେହ ମଧ୍ୟ ନଗଣ୍ୟ । ମହା ମହା ଆପଦ ବିପଦ କାଳରେ ମାଆ ମଧ୍ୟ ନିଜର ସ୍ୱାର୍ଥ ତଥା ପ୍ରାଣ ରକ୍ଷା ଲାଗି ନିଜ ସନ୍ତାନର ପ୍ରାଣନାଶ କରିଦେଇପାରେ । କିନ୍ତୁ ପ୍ରଭୁ କେବେ କୌଣସି ଭକ୍ତର

ପ୍ରାଣନାଶ କରିବା କଥା ଶୁଣିଚ କି ? ଭଗବାନ ସର୍ବଦା ଭକ୍ତର ପଛେ ପଛେ ରହିଥାଆନ୍ତି । ତାକୁ ସଂକଟରୁ ଉଦ୍ଧାର କରିବା ଦିଗରେ ସେ ନିରନ୍ତର ତତ୍ପର । ପରିଶେଷରେ ସେ ତାକୁ ଜନ୍ମମୃତ୍ୟୁ ଚକ୍ରରୁ ମଧ୍ୟ ଉଦ୍ଧାର କରିଥାଆନ୍ତି । ପ୍ରଭୁ ଅନାଥ ଓ ପତିତର ଉଦ୍ଧାରକର୍ତ୍ତା । ସେ କୃପାର ସାଗର ତଥା କରୁଣାର ନିଧି । ସେ କେବେହେଲେ ଭକ୍ତକୁ ଉପେକ୍ଷା କରନ୍ତି ନାହିଁ । ତେଣୁ ଅନନ୍ୟ ପ୍ରେମଭାବ ଦ୍ୱାରା ତାଙ୍କ ପ୍ରତି ସଖା-ଭାବ ବୃଦ୍ଧି କରିବା ଆବଶ୍ୟକ । ଭଗବାନଙ୍କର ଅନ୍ତରଙ୍ଗ ବନ୍ଧୁ ତଥା ସଖା ହୋଇପଡ଼ିବା ହେଉଚି ସଖା-ଭକ୍ତିର ଲକ୍ଷଣ । ପ୍ରଭୁଙ୍କ ଭଳି ଗୁରୁଙ୍କ ପ୍ରତି ମଧ୍ୟ ସଖାଭାବ ରହିବା ଆବଶ୍ୟକ ।

## ନବମ ସମାସ
## ॥ ଆତ୍ମ-ଭକ୍ତି ସମର୍ପଣ ॥

ଏବେ ଅନ୍ତିମ ଅର୍ଥାତ୍ ନବମ ଭକ୍ତି ଯାହାକୁ 'ଆତ୍ମ-ଭକ୍ତି' ବା 'ଆତ୍ମ ନିବେଦନ' କୁହାଯାଏ ତାର ଲକ୍ଷଣସବୁ ବର୍ଣ୍ଣନା କରାଯାଉଚି । ଆତ୍ମ-ନିବେଦନହିଁ ଆତ୍ମସମର୍ପଣ । ଅର୍ଥାତ୍ ଭଗବାନଙ୍କଠାରୁ ବିଭକ୍ତ ହେବା, ଭକ୍ତ ହୋଇ ଭଗବାନଙ୍କଠାରୁ ବିଭକ୍ତ ରହିବା କଥାଟି ବଡ଼ ବିଚିତ୍ର ମନେ ହେବା ସ୍ୱାଭାବିକ । କିନ୍ତୁ କଥାଟିକୁ ବୁଝିବା ପାଇଁ ଗଭୀରକୁ ଯିବାକୁ ପଡ଼ିବ । ଈଶ୍ୱରଙ୍କ ସହିତ ପରିଚିତ ହେବାଲାଗି ଏବଂ ପ୍ରଣତି ଲାଗି ଅନ୍ତରର ପରିଶୋଧନ ଆବଶ୍ୟକ ଅର୍ଥାତ୍ ଅନ୍ତର-ମନ୍ଦିରକୁ ପରିଷ୍କାର, ନିର୍ମଳ, ସୁବିମଳ ରଖିବାକୁ ପଡ଼ିବ । ''ମୁଁ କିଏ''— ଏହାକୁ ଜାଣିବା ଲାଗି ଯେଉଁ ତତ୍ତ୍ୱଦ୍ୱାରା ପିଣ୍ଡ-ବ୍ରହ୍ମାଣ୍ଡର ବିସ୍ତାର, ସେହି ତତ୍ତ୍ୱର ବିଚାର କରିବାକୁ ପଡ଼ିବ । ଯେଉଁ ଯେଉଁ ତତ୍ତ୍ୱଦ୍ୱାରା ପିଣ୍ଡ (ଶରୀର) ପ୍ରସ୍ତୁତ ହୋଇଚି, ସେହି ସେହି ତତ୍ତ୍ୱକୁ ଆତ୍ମତତ୍ତ୍ୱ ସହିତ ମିଳେଇ ଦେବା ପରେ ସ୍ପଷ୍ଟ ଦେଖାଯିବ ଯେ ''ମୁଁ'' ବୋଲିବା ଜିନିଷଟି ଏସବୁ ତତ୍ତ୍ୱଠାରୁ ଅଲିପ୍ତ । ଏହିପରି ଭାବେ ମନନ କଲେ ଆତ୍ମ-ତତ୍ତ୍ୱ ସହଜବୋଧ ହୋଇଥାଏ । ଏହି ସହଜବୋଧହିଁ ଆତ୍ମ-ନିବେଦନ ।

ଏହି ଦୃଶ୍ୟଜଗତ ପାଞ୍ଚମହାଭୂତର ସମ୍ମିଶ୍ରଣରେ ନିର୍ମିତ । ଏହା ଯେ ପ୍ରଭୃତିର ଖେଳମାତ୍ର—ଏହି ଜ୍ଞାନ ହେବପରେ ''ଏକମେବା ଦ୍ୱିତୀୟ'' ଆତ୍ମାହିଁ

ଶେଷରେ ରହେ । ଆତ୍ମବୋଧ ହେବା ପରେ ''ମୁଁ'' ଲୋପ ପାଇଥାଏ । ପିଣ୍ଡ-ବ୍ରହ୍ମାଣ୍ଡର ରଚନା ଏବଂ ତତ୍ତ୍ୱ-ବିଚାରର ପରିଶୋଧନ ପରେ ଏକଥା ସିଦ୍ଧ ହୋଇଥାଏ ଯେ ଏକ ତତ୍ତ୍ୱଦ୍ୱାରାହିଁ ବ୍ୟକ୍ତିର ନିର୍ମାଣ ହୋଇଚି । ''ମୁଁ'' ଏସବୁ ତତ୍ତ୍ୱର କେବଳ ''ସାକ୍ଷୀ'' ମାତ୍ର । ଅର୍ଥାତ ତତ୍ତ୍ୱଠାରୁ ପୃଥକ । ଏହି ପାର୍ଥକ୍ୟ (ସାକ୍ଷୀତ୍ୱ) ମଧ୍ୟ ତତ୍ତ୍ୱରୂପ ହୋଇ ଯିବାରେ ଆତ୍ମ-ପ୍ରଣତିରେ ଏହା ମଧ୍ୟ ଶେଷ ହୋଇଯାଏ । ତାତ୍‌ପର୍ଯ୍ୟ ହେଉଚି, ଆଦି ଓ ଅନ୍ତରେ କେବଳ ଆତ୍ମ ହିଁ ଶେଷ ରହେ । ''ମୁଁ''ପଣର କୌଣସି ଅସ୍ତିତ୍ୱ ରହେନା । ଆତ୍ମା ନିର୍ଗୁଣ ଏବଂ ଅଦ୍ୱୈତ । ଆତ୍ମା ଗୁଣାତୀତ । ତେଣୁ ''ମୁଁ''ର ଅହଙ୍କାର ଆସିବ କୁଆଡୁ ? 'ମୁଁ' ପଣ ବା ମମତ୍ୱ ମିଥ୍ୟା । ପରମାତ୍ମାହିଁ ସତ୍ୟ । ଆତ୍ମା ଓ ପରମାତ୍ମାଙ୍କର ସମ୍ବନ୍ଧ ଯେ ଅଭେଦ ତାର ରହସ୍ୟ ଅନୁଭବୀ ଜ୍ଞାନୀହିଁ ଜାଣିପାରେ । ଏହି ଜ୍ଞାନୀହିଁ ''ଆତ୍ମ-ନିବେଦନ''ର ସଂଜ୍ଞା ବାହାର କରିଛି ।

ଯେପରି ପଞ୍ଚମହାଭୂତ ମଧ୍ୟରେ ଆକାଶ ଏବଂ ସବୁଦେବତାଙ୍କ ମଧ୍ୟରେ ପରମେଶ୍ୱର ପ୍ରଧାନ, ସେହିଭଳି ନବବିଦ୍ୟାଭକ୍ତି ବା ନବଧାଭକ୍ତି ମଧ୍ୟରେ ଆତ୍ମ-ନିବେଦନ-ଭକ୍ତିହିଁ ମୁଖ୍ୟ । ଆତ୍ମ-ନିବେଦନବୋଧ ନ ହେବାଯାଏଁ କେହି ହେଲେ ଜନ୍ମ-ମରଣ ଚକ୍ରରୁ ମୁକ୍ତି ପାଇନପାରେ । ଏହି ମୁଖ୍ୟ-ଭକ୍ତି ଦ୍ୱାରା ସାଯୁଜ୍ୟ ମୁକ୍ତି ଲାଭ ହୋଇଥାଏ । କାଳାନ୍ତରେ ମଧ୍ୟ ସାଯୁଜ୍ୟ-ମୁକ୍ତିର ବିନାଶ ନାହିଁ । ଆଉ ତିନିପ୍ରକାରର ମୁକ୍ତି ରହିଚି ଯଥା ସମୀପଣ, ସ୍ୱରୂପଣ ଓ ସଲୋକତା (ସାଲୋକ୍ୟ, ସାମୀପ୍ୟ ଓ ସାରୂପ୍ୟ) । କିନ୍ତୁ ଏଗୁଡ଼ିକ ଚଞ୍ଚଳ ଓ ବିନାଶଶୀଳ । ଏହି ତିନିଲୋକ ବା ତିନିପ୍ରକାରର ମୁକ୍ତି ଲୋପପାଇଲେ ମଧ୍ୟ ସାଯୁଜ୍ୟ-ମୁକ୍ତିର ବିନାଶ ଘଟିନପାରେ ।

## ଦଶମ ସମାସ
## ।। ଚାରି ପ୍ରକାରର ମୁକ୍ତି ।।

ନବଧା ଭକ୍ତି ସମ୍ପର୍କରେ କୁହାଯିବା ପରେ ବର୍ତ୍ତମାନ ସୃଷ୍ଟିର ଉତ୍ପତ୍ତି ଏବଂ ଚାରିପ୍ରକାରର ମୁକ୍ତିର ବିବେଚନ କରାଯାଉଛି । 'ବ୍ରହ୍ମ'- ଏହା ମୂଳତଃ ନିରାକାର । ''ଏକୋହଂ ବହୁସ୍ୟାମ୍‌''ର ସ୍ଫୁରଣମାତ୍ରେ ''ଅହଂକାର''ର ଉଦ୍‌ଭବ

ହେଲା ଏବଂ ଏଥିରୁ ଉତ୍ପନ୍ନ ହେଲେ ପଞ୍ଚମହାଭୂତ । ଏହି ଏହି ପଞ୍ଚମଭୂତ ପ୍ରଥମେ ସୂକ୍ଷ୍ମ ଏବଂ ପରେ ସ୍ଥୂଳ ରୂପରେ ପ୍ରକଟିତ ହେଲେ । ଏ ସମ୍ପର୍କରେ ମୁଁ "ଅଷ୍ଟମ ଦଶକ"ରେ ବର୍ଣ୍ଣନା କରିବି ।

ଏହି ଅହଙ୍କାର ପ୍ରଥମେ ବାୟୁ ରୂପରେ, ପରେ ତେଜ ରୂପରେ ଏବଂ ତାପରେ ଜଳରୂପରେ ପ୍ରକଟିତ ହେଲା । ଏହି ଜଳ ଆବରଣର ଅଧାରରେ ରହି "ଶେଷଶାୟୀ" ଏହି ପୃଥିବୀକୁ ଧାରଣ କଲେ ଏବଂ ଏହି ପୃଥିବୀ ଉପରେ ଛପନକୋଟି ଜୀବର ବିସ୍ତାର ହେଲା । ପୃଥିବୀକୁ ଘେରି ରହିଲେ ସପ୍ତସାଗର । ମଝିରେ ରହିଲା ସୁମେରୁ ପର୍ବତ । ଏହାର ଆଠଦିଗରେ ରହିଲେ ଅଷ୍ଟ ଦିଗପାଳି । ଯେଉଁ ବିଶାଳ ସୁମେରୁ ପର୍ବତ ପୃଥିବୀର ଆଧାରତତ୍ତ୍ୱ, ସେହି ପର୍ବତର ବିସ୍ତୃତି ୮୪ ହଜାର ଯୋଜନ ଏବଂ ଗଭୀରତା ୧୬ ହଜାର ଯୋଜନ । ଏହାର ଉଚ୍ଚତାର ସୀମା ନାହିଁ । ଏହା ଚାରିପଟେ ଘେରି ରହିଛି ବହୁତ ପର୍ବତ । ଗୋଟିଏ ପଟରେ ହିମାଳୟ ପର୍ବତ—ଯେଉଁଠି ପାଣ୍ଡବମାନେ ଦେହତ୍ୟାଗ କରିଥିଲେ । କେବଳ ଧର୍ମରାଜ ଯୁଧିଷ୍ଠିର ଏବଂ ଭଗବାନ ଶ୍ରୀକୃଷ୍ଣହିଁ ଏହାକୁ ଅତିକ୍ରମ କରି ପାରିଥିଲେ । ଏହି ହିମାଳୟରେ ବହୁ ଭୟାନକ ସର୍ପ ବିଚରଣ କରିଥାନ୍ତି । ହିମାଳୟର ଗୋଟିଏ ପାଖରେ ବଦ୍ରିକାଶ୍ରମ । ଦେହତ୍ୟାଗ କରିବାଲାଗି ବହୁ ବଡ଼ ବଡ଼ ତପସ୍ୱୀ ଏଠାକୁ ଯାଇଥାଆନ୍ତି । ଏହି ଆଶ୍ରମଠାରୁ ଅଳ୍ପ କେତେଦୂର ଗଲେ ପଡ଼ିବ ବଦ୍ରୀ-କେଦାର । ଏପର୍ଯ୍ୟନ୍ତ ଲୋକେ ଯାଇ ପାରିଥାଆନ୍ତି । ଏସବୁ ସୁମେରୁ ପର୍ବତର ବିସ୍ତାର ।

ସୁମେରୁର ସମତଳ ପ୍ରଦେଶରେ ତିନୋଟି ବିଶାଳ ଶିଖର ରହିଚି । ଏଠାରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସପରିବାର ବିରାଜିତ । ବ୍ରହ୍ମ-ଶିଖରକୁ ସତ୍ୟଲୋକ, ବିଷ୍ଣୁ-ଶିଖରକୁ ବୈକୁଣ୍ଠ ଏବଂ ଶିବ ବା ମହେଶ୍ୱର-ଶିଖରକୁ କୈଳାସ କୁହାଯାଏ । ସତ୍ୟଲୋକର ତଳଦେଶରେ ରହିଛି ଅମରାବତୀ (ଇନ୍ଦ୍ରପୁରୀ) । ଏଠାରେ ଦେବଗଣ, ଗନ୍ଧର୍ବ, ଅଷ୍ଟଲୋକପାଳ ଓ ତେତିଶ ଜାତିର ଦେବତା ବାସ କରିଥାଆନ୍ତି । ଏମାନଙ୍କ ମଧ୍ୟରୁ ଆଠ ବସୁ, ବାର ଆଦିତ୍ୟ, ଏଗାର ରୁଦ୍ର, ପ୍ରଜାପତି ଓ ବଷଟ୍‌କାରଙ୍କ ନାମ ଉଲ୍ଲେଖଯୋଗ୍ୟ । ସପ୍ତସ୍ୱର୍ଗ ଓ

ସପ୍ତ ପାତାଳ ଘେରି ରହିଛନ୍ତି ସୁମେରୁ ପର୍ବତକୁ । ଏଠାରେ ରହିଛି କଳ୍ପବୃକ୍ଷର ବନ, କାମଧେନୁର କୁଣ୍ଡ, ଅମୃତର ସରୋବର ଏବଂ ଚିନ୍ତାମଣି ଓ ହୀରା-ସ୍ପର୍ଶପଥରର ଖଣି । ଏହାର ସମସ୍ତ ଅଞ୍ଚଳ ସୁବର୍ଣ୍ଣମୟ । ସମସ୍ତ ପ୍ରାଣୀ ଆନନ୍ଦରେ ମଗ୍ନ । ଏହି ସ୍ୱର୍ଗପୁରୀ ଅମରାବତୀରେ ଅମୃତମୟ ଭୋଜନ, ଦିବ୍ୟ ସୁଗନ୍ଧଯୁକ୍ତ ସୁମନ, ଅଷ୍ଟନାୟିକାଙ୍କ ସୁଲଳିତ ସଙ୍ଗୀତରେ ପରିପୂର୍ଣ୍ଣ । ଏଠାରେ ଯୌବନର କ୍ଷୟ ନାହିଁ, ଆଧି-ବ୍ୟାଧିର ନାମଗନ୍ଧ ନାହିଁ, ବୃଦ୍ଧାବସ୍ଥା କିମ୍ବା ମୃତ୍ୟୁର ଭୟ ନାହିଁ । ଏଠାରେ ଏକଠୁ ଏକ ବଳି ବୀର, ଚତୁର, ଧୀର, ଉଦାର ଏବଂ ସୁନ୍ଦର ଶରୀରଧାରୀ ଦେବତୁଲ୍ୟ ନରରତ୍ନ ରହିଥାଆନ୍ତି ଏବଂ ସବୁ ଦେବତାଙ୍କ ନିବାସସ୍ଥଳୀ ଏହି ଅମରାବତୀ । ଏହି ସ୍ୱର୍ଗଲୋକର ସୌନ୍ଦର୍ଯ୍ୟର ବର୍ଣ୍ଣନା କିଏ କେତେ କରିବ ?

ଯିଏ ଯେଉଁ ଦେବତାଙ୍କ ଭଜନପୂଜନ କରିଥାଏ, ସେହି ଦେବତାଙ୍କ ସ୍ଥାନରେ ନିଜକୁ ଅଧିଷ୍ଠିତ କରିବା ହେଉଚି ସଲୋକତା ବା ସାଲୌକ୍ୟ ମୁକ୍ତି । ଇଷ୍ଟଦେବତାଙ୍କ ନିକଟତର ହେବା ବା ତାଙ୍କ ସାମୀପ୍ୟ ଲାଭ କରିବା ହେଉଚି ସମୀପତା-ମୁକ୍ତି ବା ସାମୀପ୍ୟ-ମୁକ୍ତି । ନିଜର ପ୍ରିୟଦେବତାଙ୍କ ସମାନରୂପ ପ୍ରାପ୍ତ ହେବା ହେଉଚି ସରୂପତାମୁକ୍ତି ବା ସାରୂପ୍ୟ-ମୁକ୍ତି । ସ୍ୱର୍ଗଲୋକରେ ପୁଣ୍ୟ ଶେଷ ହୋଇଗଲେ ପ୍ରାଣୀକୁ ପୁଣି ମୃତ୍ୟୁଲୋକକୁ ଠେଲି ଦିଆଯାଏ । ତେଣୁ ଏହି ତିନି ପ୍ରକାରର ମୁକ୍ତି ବିନାଶଶୀଳ । କେବଳ ସାଯୁଯ୍ୟ-ମୁକ୍ତି ଅବିନାଶୀ ଏବଂ ଶାଶ୍ୱତ ।

ମହାପ୍ରଳୟରେ ବ୍ରହ୍ମାଣ୍ଡ ବୁଡିଯାଏ । ସେତେବେଳେ ଏହି ପୃଥିବୀ, ସୁମେରୁ ପର୍ବତ, ଦେବତା ଏବଂ ଅନେକ ଲୋକ ନଷ୍ଟ ହୋଇ ଯାଆନ୍ତି । ତେଣୁ ଏସବୁ ଚଞ୍ଚଳ । ନିଶ୍ଚଳ ପରବ୍ରହ୍ମ ହିଁ ଶାଶ୍ୱତ । ତାଙ୍କ ସହିତ ତନ୍ମୟତା ଅର୍ଥାତ୍ ସାଯୁଜ୍ୟ ବା ସଂଯୁକ୍ତତା ହିଁ ଶାଶ୍ୱତ । ସଗୁଣ ଭକ୍ତି ଚଞ୍ଚଳ ଏବଂ ନିର୍ଗୁଣ ଭକ୍ତି ନିଶ୍ଚଳ ।



# ପଞ୍ଚମ ଦଶକ

## ପ୍ରଥମ ସମାସ
## ।। ଗୁରୁ ନିରୂପଣ ।।

ହେ ପୂର୍ଣ୍ଣକାମ, ପରମପୁରୁଷ, ଆତ୍ମାରାମ ସଦ୍‌ଗୁରୁ । ଆପଣଙ୍କୁ ମୋର ନମସ୍କାର । ଆପଣଙ୍କ ମହିମା ଅବର୍ଣ୍ଣନୀୟ । ଯୋଗୀଜନଙ୍କ ବିଶ୍ରାମ, ଶିବଙ୍କ ବିଶ୍ରାମସ୍ଥଳ ଏବଂ ବେଦଶାସ୍ତ୍ରର ଅଗମ୍ୟ ଯେଉଁ ବ୍ରହ୍ମ, ତାହା ଆପଣଙ୍କ କୃପାରେ ଶିଷ୍ୟ ପକ୍ଷରେ ସହଜ ଉପଲବ୍‌ଧ ହୋଇଥାଏ ଏବଂ ସେ ସାଂସାରିକ ଜଞ୍ଜାଳରୁ ମୁକ୍ତ ହୋଇଥାଏ । ଏବେ ମୁଁ ଗୁରୁ-ଶିଷ୍ୟଙ୍କ ଲକ୍ଷଣ ବର୍ଣ୍ଣନା କରିବି । ଏହି ବର୍ଣ୍ଣନାକୁ କର୍ଣ୍ଣପାତ ଓ ମନନ କରିବା ଆବଶ୍ୟକ । ମୁମୁକ୍ଷୁ ମାତ୍ରେ ଶିଷ୍ୟର ଗୁଣକୁ ଅଙ୍ଗୀକାର କରି ସଦ୍‌ଗୁରୁଙ୍କ ଶରଣ ନେବା ଉଚିତ ।

ଗୁରୁମାତ୍ରେ ବ୍ରାହ୍ମଣ ହେବା ଆବଶ୍ୟକ । ବ୍ରାହ୍ମଣଙ୍କ ଲାଗି ହିଁ ବିଷ୍ଣୁ ଭଗବାନ ଅବତାର ଗ୍ରହଣ କରିଥିଲେ । ଭୃଗୁଋଷିଙ୍କ ପାଦ ପ୍ରହାରକୁ ଆନନ୍ଦରେ ଶ୍ରୀବତ୍ସ ରୂପରେ ହୃଦୟରେ ଧାରଣ କରିଥିଲେ ସେ । ବ୍ରାହ୍ମଣ ମୁଖନିଃସୃତ ମନ୍ତ୍ରଦ୍ୱାରା ଶୁଦ୍ର ମଧ ବ୍ରାହ୍ମଣ ହୋଇଯାଇ ପାରେ ଏବଂ ଧାତୁ ଓ ପାଷାଣ ମୂର୍ତ୍ତିରେ ଦେବତାଙ୍କ ପ୍ରାଣ-ପ୍ରତିଷ୍ଠା ହୋଇପାରେ । ଯୋଗଯାଗ, ବ୍ରତ, ଦାନ, ତୀର୍ଥ ଆଦି କୌଣସି ବିଧାନ ବ୍ରାହ୍ମଣ ବିନା ସଫଳ ହୋଇ ନ ଥାଏ । ପ୍ରକୃତ ବ୍ରାହ୍ମଣ ହେଉଚନ୍ତି ସାକ୍ଷାତ ବେଦ-ନାରାୟଣ । ଏପରି ବ୍ରାହ୍ମଣଙ୍କ ଆଶୀର୍ବାଦରେ ଅନ୍ୟର ମନୋରଥ ପୂର୍ଣ୍ଣ ହୋଇଥାଏ ଏବଂ ତାଙ୍କ ପୂଜାଦ୍ୱାରା ଚିତ୍ତ ନିର୍ମଳ ହୋଇ ଭଗବାନଙ୍କ ପ୍ରତି ଆକୃଷ୍ଟ ହୋଇଥାଏ ।

ଯଦି କେହି ପ୍ରଶ୍ନ କରେ ଯେ କେବଳ ବ୍ରାହ୍ମଣଙ୍କୁ ପୂଜା କରିବାଦ୍ୱାରା ଭଗବାନଙ୍କୁ ପାଇବା ସହଜ, ତାହାହେଲେ ସଦ୍‌ଗୁରୁଙ୍କ ଆବଶ୍ୟକତା କ'ଣ ? ଏହାର ଉତ୍ତର ହେଉଚି—ସବୁ ମିଳିପାରେ କିନ୍ତୁ ବିନା ସଦ୍‌ଗୁରୁରେ ବ୍ରହ୍ମଜ୍ଞାନ ମିଳି ନ ପାରେ । ଧର୍ମ-କର୍ମରେ ବ୍ରାହ୍ମଣଙ୍କ ସାହାଯ୍ୟ ନେବା ଲାଗି ଶାସ୍ତ୍ରମାନଙ୍କରେ

କୁହାଯାଇଛି କିନ୍ତୁ ବ୍ରହ୍ମଜ୍ଞାନ ଲାଗି ସଦ୍‌ଗୁରୁ ନିତାନ୍ତ ଆବଶ୍ୟକ । ବିନା ସଦ୍‌ଗୁରୁରେ ସଦ୍‌ଜ୍ଞାନ ତଥା ପ୍ରକୃତ ଜ୍ଞାନ ମିଳି ନପାରେ । ସେହିଭଳି ବିନାଜ୍ଞାନରେ ଜନ୍ମ-ମରଣ ଚକ୍ରରୁ କେହି ମୁକୁଳି ନପାରେ । ବ୍ରହ୍ମଜ୍ଞାନ ବିନା ସବୁ କର୍ମ ପୁନଃ ପୁନଃ ଜନ୍ମର କାରଣ ହୋଇଥାଏ । ତେଣୁ ସେଥିରୁ ରକ୍ଷା ପାଇବା ପାଇଁ ସଦ୍‌ଗୁରୁଙ୍କ ଶରଣ ନେବା ଆବଶ୍ୟକ ।

ଅନେକ ବ୍ରତ ନିୟମ, ଜପତପ, ଯାଗ-ଯଜ୍ଞ, କଥା, ପୁରାଣ ଶ୍ରବଣ ଆଦି ସତ୍‌କର୍ମର ଫଳ ଅବଶ୍ୟ ମିଳିଥାଏ । କିନ୍ତୁ ତା ସହିତ ଜନ୍ମ-ମରଣ ଲାଗି ରହିଥାଏ । ଯେତେ ସାଧନା କର ନା କାହିଁକି ସଦ୍‌ଗୁରୁବିନା ମୋକ୍ଷ ଲାଭ ହୋଇ ନ ପାରେ । ଯେଉଁ ବ୍ରହ୍ମଜ୍ଞାନବିନା ମୋକ୍ଷପ୍ରାପ୍ତି ଅସମ୍ଭବ, ସେହି ବ୍ରହ୍ମଜ୍ଞାନ ସଦ୍‌ଗୁରୁଙ୍କ କୃପା ବ୍ୟତୀତ ସମ୍ଭବ ନୁହଁ । ସିଧାସଳଖ ବାଟ ଛାଡ଼ି ଅବାଟରେ ଗଲେ ଯେପରି ଅନ୍ଧବ୍ୟକ୍ତି ଖାଲରେ ପଡ଼ିଥାଏ; ସେହିଭଳି ସଦ୍‌ଗୁରୁଙ୍କ ଶରଣ ନ ନେଇ ଲୋକେ ନାନା ସାଧନାରେ ବୃଥା ସମୟ ନଷ୍ଟ କରିଥାଆନ୍ତି । ଯେପରି ଆଖିରେ ଅଞ୍ଜନ ଲଗେଇଲେ ଜମିରେ ପୋତା ହୋଇଥିବା ଧନ ଦେଖାଯାଏ, ସେହିଭଳି ସଦ୍‌ଗୁରୁଙ୍କ ଉପଦେଶଦ୍ୱାରା ଶିଷ୍ୟର ଅନ୍ତର ଆଲୋକିତ ହୋଇଉଠେ । ସଦ୍‌ଗୁରୁଙ୍କ କୃପା ନ ହେଲେ ଜନ୍ମ ନିରର୍ଥକ ହୋଇପଡ଼େ ଏବଂ ଚିତ୍ତଚାଞ୍ଚଲ୍ୟ ଦୂର ହୁଏ ନାହିଁ । ସଦ୍‌ଗୁରୁଙ୍କ ବରଦହସ୍ତ ଶିଷ୍ୟର ମସ୍ତକ ଉପରେ ପଡ଼ିବାମାତ୍ରେ ଈଶ୍ୱରଙ୍କ ସାକ୍ଷାତ୍‌କାର ହୋଇଯାଏ ଏବଂ ସବୁ ଦୁଃଖ ସନ୍ତାପ ମେଣ୍ଟିଯାଏ । ଏ ପର୍ଯ୍ୟନ୍ତ ଯେତେ ମହାନ୍ ସାଧୁ ସନ୍ଥ ହୋଇଛନ୍ତି, ସମସ୍ତେ ସଦ୍‌ଗୁରୁଙ୍କ ଦ୍ୱାରା ହିଁ ଜ୍ଞାନବିଜ୍ଞାନ ଲାଭ କରିଛନ୍ତି । ଶ୍ରୀରାମ, କୃଷ୍ଣ ଆଦି ଈଶ୍ୱରଙ୍କ ଅବତାରମାନେ ମଧ୍ୟ ଗୁରୁସେବାରେ ତତ୍ପର ଥିଲେ । ଅଖିଳ ସୃଷ୍ଟିର ସଞ୍ଚାଳକ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସଦ୍‌ଗୁରୁଙ୍କ ସେବା କରିବାଦ୍ୱାରା ହିଁ ମହାନ୍ ପଦ ଲାଭ କରି ପାରିଛନ୍ତି ।

ସାରାଂଶ ହେଉଛି ମୁମୁକ୍ଷୁ ବା ମୋକ୍ଷ ଲାଭ ଲାଗି ଯିଏ ଇଚ୍ଛୁକ ତାକୁ ସଦ୍‌ଗୁରୁଙ୍କ ଶରଣ ନେବାକୁ ହିଁ ପଡ଼ିବ । ସଦ୍‌ଗୁରୁବିନା କଳ୍ପାନ୍ତ ପର୍ଯ୍ୟନ୍ତ ମଧ୍ୟ ମୋକ୍ଷ ଲାଭ ସମ୍ଭବ ନୁହଁ । କିନ୍ତୁ ଏକଥା ବୁଝିବା ଉଚିତ ଯେ ସଦ୍‌ଗୁରୁ ସାମାନ୍ୟ ଗୁରୁଭଳି ନୁହଁନ୍ତି । ଯାହାର କୃପା-କଟାକ୍ଷରେ ଅବର୍ଣ୍ଣନୀୟ ବ୍ରହ୍ମଜ୍ଞାନ ଲାଭ ହୋଇଥାଏ, ସେହି ସଦ୍‌ଗୁରୁଙ୍କ ଲକ୍ଷଣ ମୁଁ ଆଗାମୀ ଅଧ୍ୟାୟରେ ବୁଝାଇବି ।

## ଦ୍ୱିତୀୟ ସମାସ
## ।। ଗୁରୁଙ୍କ ପରିଚୟ ।।

ଯିଏ ନାନା କରାମତି ଦେଖାଇଥାଏ ତାକୁ ମଧ୍ୟ ଗୁରୁ କୁହାଯାଏ, କିନ୍ତୁ ସେ ମୋକ୍ଷଦାତା ସଦ୍‌ଗୁରୁ ହୋଇ ନ ପାରେ । କରାମତି ଦ୍ୱାରା ମନୋରଞ୍ଜନ କରାଇବା, ନଜରବନ୍ଦୀ ଓ ଯାଦୁଖେଳ ଦେଖାଇବା, ଅନେକ ଚମତ୍କାର କଥା କହିବା, ଔଷଧ-ପ୍ରୟୋଗ ଏବଂ ଗୋଡ଼ି ମାଟିକୁ ସୁନା କରିବା ପ୍ରକ୍ରିୟା ବତେଇବା, ଆଖିପିଛୁଳାକେ ଇଷ୍ଟବସ୍ତୁର ପ୍ରାପ୍ତିର ପ୍ରଲୋଭନ ଦେଖାଇବା, ସାହିତ୍ୟ ସଙ୍ଗୀତ ଆଦି ଶିଖେଇବା, ପଞ୍ଚାକ୍ଷରୀ ବିଦ୍ୟା କିମ୍ବା ମନ୍ତ୍ର ତନ୍ତ୍ରଦ୍ୱାରା ନାନା ସିଦ୍ଧିର ମାର୍ଗ ଦେଖାଇବା, ଏବଂ ଉଦର ପୋଷଣ ଲାଗି ନାନା ବାଟ ଦେଖେଇବା ଭଳି ଗୁରୁ ଅନେକ ମିଳିବେ । କିନ୍ତୁ ମୋକ୍ଷଦାତା ସଦ୍‌ଗୁରୁ ଏମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ସାଧାରଣ ଗୁରୁକଥା ଯଦି କୁହାଯାଏ ତ ପିତାମାତା ମଧ୍ୟ ଆମମାନଙ୍କ ଗୁରୁ । କିନ୍ତୁ ଭବସାଗରରୁ ପାରି କରେଇବା ସଦ୍‌ଗୁରୁ ଏମାନଙ୍କଠାରୁ ବହୁ ଉଚ୍ଚରେ । ଯଜ୍ଞୋପବିତ ସଂସ୍କାର ସମୟରେ ଗାୟତ୍ରୀ ମନ୍ତ୍ର ଦେଉଥିବା କୁଳଗୁରୁଙ୍କୁ ମଧ୍ୟ ଗୁରୁ କୁହାଯାଇ ପାରେ, କିନ୍ତୁ ସେ ସଦ୍‌ଗୁରୁ ନୁହନ୍ତି ।

ସଦ୍‌ଗୁରୁଙ୍କ ଲକ୍ଷଣ କ'ଣ ଶୁଣନ୍ତୁ । ଯିଏ ବ୍ରହ୍ମଜ୍ଞାନର ଉପଦେଶ ଦେଇ ଶିଷ୍ୟର ଅଜ୍ଞାନ ଦୂର କରିଥାଆନ୍ତି, ଆତ୍ମା ଓ ପରମାତ୍ମାଙ୍କ ମିଳନ ଘଟେଇ ଥାଆନ୍ତି, ସେ ହେଉଛନ୍ତି ସଦ୍‌ଗୁରୁ । ଯିଏ ଜୀବ ଆଉ ଶିବ ଭକ୍ତ ଓ ଈଶ୍ୱରଙ୍କ ଭେଦଭାବ ଦୂର କରି ଭକ୍ତକୁ ପରମେଶ୍ୱରଙ୍କ ସହିତ ସଂଯୁକ୍ତ କରାଇଥାଆନ୍ତି ସେ ହେଉଛନ୍ତି ସଦ୍‌ଗୁରୁ ।

ସଂସାର ହେଉଚି ବାଘ । ଜୀବ ହେଉଛି ବାଛୁରୀ । ପରମାତ୍ମା ହେଉଛନ୍ତି ଗାଈ । ଏହି ବାଘ ଗାଈଠାରୁ ତା ବାଛୁରୀକୁ ଛଡ଼େଇ ନେଇଛି । ଗାଈ ସହିତ ବାଛୁରୀକୁ ଯିଏ ମିଳେଇ ଦିଏ ସିଏ ହେଉଛନ୍ତି ସଦ୍‌ଗୁରୁ । ଅର୍ଥାତ୍ ଯିଏ ଜୀବକୁ ନେଇ ପରମାତ୍ମାଙ୍କ ସହିତ ଏକାକାର କରି ଦେଇପାରେ ସିଏ ସଦ୍‌ଗୁରୁ ପଦବାଚ୍ୟ । ସଦ୍‌ଗୁରୁ ହିଁ ମାୟାଜାଲରେ ପଡ଼ି ଦୁଃଖକ୍ଳେଶରେ ଘାଣ୍ଟି ହେଉଥିବା ଜୀବକୁ ଶାନ୍ତି ପ୍ରଦାନ କରି ପାରନ୍ତି । କାମନା, ବାସନାରୂପୀ ମହାନଦୀର ବନ୍ୟାରେ ବୁଡିଯାଉଥିବା ଦୀନହୀନ ଜନକୁ ସଦ୍‌ଗୁରୁ ହିଁ ରକ୍ଷା କରି ଥାଆନ୍ତି ।

ଗର୍ଭବାସର ଦାରୁଣ ଦୁଃଖ ତଥା ନାନା ବିଷୟବାସନାର ଶିକାର ହୋଇ ଭୀତଭ୍ରଷ୍ଟ ଜୀବକୁ ଜ୍ଞାନଦାନ କରି ସଦ୍‌ଗୁରୁ ହିଁ ସତ୍‌ମାର୍ଗ ପ୍ରଦର୍ଶନ କରିଥାଆନ୍ତି । ଶବ୍ଦାର୍ଥର ସଠିକ ବିଶ୍ଳେଷଣ କରି ଏହାର ସାରଭୂତ ଯେଉଁ ପରମାତ୍ମ ବସ୍ତୁ ତାକୁ ଦର୍ଶନ କରାଇବା ବ୍ୟକ୍ତି ହେଉଛନ୍ତି ଅନାଥର ନାଥ ସଦ୍‌ଗୁରୁ । ଜୀବମାତ୍ରେ ଏକଦିଗଦର୍ଶୀ । ସେ ନାନା କଳ୍ପନା-ବିଳାସରେ ମାତି ଦୀନହୀନ । ଯିଏ ଏହି ଜୀବକୁ "ତତ୍ୱମସି"- ଏହି ମହାବାକ୍ୟର ରହସ୍ୟ ବୁଝେଇ ବ୍ରହ୍ମସ୍ୱରୂପତା ପ୍ରଦାନ କରିଥାଆନ୍ତି, ସେ ହେଉଛନ୍ତି ସଦ୍‌ଗୁରୁ । ବେଦର ଅନ୍ତର୍ନିହିତ ଗୂଢ଼ ପରମାମୃତ ଜ୍ଞାନକୁ ବଚନ ମାଧ୍ୟମରେ ଶିଷ୍ୟକୁ ପାନ କରାଇବା ଶକ୍ତି କେବଳ ସଦ୍‌ଗୁରୁଙ୍କଠାରେ ହିଁ ରହିଥାଏ । ବେଦଶାସ୍ତ୍ର ଯାହା, ସଜ୍ଜନଙ୍କ ଅନୁଭବ ତାହା । ଏହି ଅନୁଭବକୁ ଏକରୂପ କରାଇବା କେବଳ ସଦ୍‌ଗୁରୁଙ୍କ ଦ୍ୱାରା ହିଁ ସମ୍ଭବ । ସଦ୍‌ଗୁରୁ ମାତ୍ରେ ସକଳ ସନ୍ଦେହକୁ ନଷ୍ଟ କରି ସ୍ୱୟଂ ସ୍ୱଧର୍ମାଚରଣ କରିଥାଆନ୍ତି । ଯିଏ ଶାସ୍ତ୍ର ବଚନକୁ ଛାଡ଼ି ବଡ଼ିମା ଦେଖାଇ ଥାଆନ୍ତି, ସେ ଗୁରୁ ନୁହଁ, ବିଷୟ-ଲାଳସାର ଭିକାରୀ । ଯେଉଁ ଗୁରୁ ଶିଷ୍ୟକୁ ସାଧନମାର୍ଗରେ ଅନୁପ୍ରାଣିତ କରିପାରେ ନାହିଁ ଏବଂ ନିଜେ ଇନ୍ଦ୍ରିୟ ଦମନ ନ କରି ଅନ୍ୟକୁ ଇନ୍ଦ୍ରିୟ ଦମନର ଉପଦେଶ ଦେଇଥାଏ, ସେଭଳି ଗୁରୁ ଅଗ୍ରାହ୍ୟ । ଯିଏ ଜ୍ଞାନବୋଧଦ୍ୱାରା ଅବିଦ୍ୟାକୁ ଉଚ୍ଛେଦ କରି ଇନ୍ଦ୍ରିୟ ଜୟ କରାଇଥାଆନ୍ତି ତାଙ୍କୁ ହିଁ ସଦଗୁରୁ କୁହାଯିବ । ଶିଷ୍ୟଠାରୁ ଧନରତ୍ନ ଆଦାୟ କରିବା ଲାଗି ତାକୁ ସୁହାଇବା ଭଳି ଯିଏ ଖୋଷାମତିଆ କଥା କହିଥାଏ, ସେ ଆଶା ଆକାଙ୍କ୍ଷାର ଗୋଲାମ ହୋଇ ପଡ଼ିଥାଏ । ଏ ଧରଣର ଗୁରୁ ଅତ୍ୟନ୍ତ ଅଧମ, ଚୋର, ଠକ ।

ଯାହାର ପରିସ୍ରା, ମଳ ମଧ୍ୟ ବ୍ରହ୍ମଜ୍ଞାନ, ଯାହାର ବାହ୍ୟ ଆଚରଣ ମଧ୍ୟ ପବିତ୍ର, ଏଭଳି ସଦ୍‌ଗୁରୁ ହିଁ ଶିଷ୍ୟକୁ ସ୍ୱସୁଖନିଧାନ ବ୍ରହ୍ମଜ୍ଞାନ ଦେବାଲାଗି ସମର୍ଥ ହୋଇଥାନ୍ତି । ଉପରେ ନିଜ ଜ୍ଞାନଗରିମା ଦେଖାଇ କାନରେ ମନ୍ତ୍ର ଫୁଙ୍କିବା ବ୍ୟତୀତ ଯାହାର ଆଉ କୌଣସି ଜ୍ଞାନ ନ ଥାଏ, ଏପରି ପାମର ଗୁରୁ ନିଜେ ତ ଈଶ୍ୱରଙ୍କଠାରୁ ବହୁ ଦୂରରେ, ସେ ଶିଷ୍ୟକୁ ଦେବ କ'ଣ ? ଗୁରୁ ପ୍ରତୀତି, ଶାସ୍ତ୍ର-ପ୍ରତୀତି ଓ ଆତ୍ମ-ପ୍ରତୀତି — ଏହି ତିନୋଟିଯାଗ ଗୁଣ ସଦ୍‌ଗୁରୁଙ୍କ ନିକଟରେ ସମ୍ମିଳିତ ହୋଇଥାଏ । ଏହିଭଳି ଗୁରୁଙ୍କର ହିଁ ଶରଣ ନେବା ଉଚିତ । ଅଦ୍ୱୈତ ମାର୍ଗକୁ ଭଲଭାବରେ ନିରୂପଣ କଲେ ମଧ୍ୟ ଯାହାର ଚିତ୍ତ ବିଷୟାସକ୍ତ, ସେଭଳି

ଗୁରୁ ସାର୍ଥକ-ମାର୍ଗ ଉପଲବ୍ଧି କରିବା ଲାଗି ସମ୍ପୂର୍ଣ୍ଣ ଅସମର୍ଥ । ଶାସ୍ତ୍ର-ନିରୂପଣ ସାମର୍ଥ୍ୟ ଓ ବାଗ୍ମିତା ଥିଲେ ମଧ ଯିଏ ସିଦ୍ଧପୁରୁଷଙ୍କ ଭଳି ନାନା ଚମତ୍କାରିତା ପ୍ରଦର୍ଶନ କରିବାରେ ଲାଗିରହିଥାଏ; ସେଭଳି ବ୍ୟକ୍ତି ପକ୍ଷରେ ପରମାତ୍ମ-ଲାଭ ସମ୍ଭବ ନୁହଁ । ଯାହା ମନରେ କୌଣସି ପ୍ରକାରର ଦୁରାଶା କିମ୍ବା କାମନା ନଥାଏ, ସେଭଳି ବ୍ୟକ୍ତିହିଁ ଭଗବାନଙ୍କୁ ଲାଭ କରିପାରେ । ଅନେକ ଜ୍ଞାତା କାମନାରେ ପୀଡ଼ିତ ହୋଇ ପାଗଳ ହୋଇଯାଆନ୍ତି, ଅନେକ କେବଳ କାମନା-ଚିନ୍ତାରେ ବୁଡ଼ି ରହିଥିବା ଅବସ୍ଥାରେ ହିଁ ମରିଯାଆନ୍ତି ।

ନିଷ୍କାମ ସନ୍ତ-ମହାତ୍ମାଙ୍କ ସଂଖ୍ୟା ବହୁତ କମ । ଆତ୍ମ-ସ୍ୱରୂପ ଧନ ସମସ୍ତଙ୍କର ରହିଛି । କିନ୍ତୁ ଦେହ-ବୁଦ୍ଧି ହେତୁ ମନୁଷ୍ୟ ଆତ୍ମ ତତ୍ତ୍ୱକୁ ଭୁଲି ଯାଉଛି । ସିଦ୍ଧି-ସାମର୍ଥ୍ୟ ଦ୍ୱାରା କେବଳ ଦେହାଭିମାନ ବଢ଼େ । ଖାଲି ବଢ଼େନି ଦେହ-ବୋଧ ବା ଦେହ-ବୁଦ୍ଧି ଅଧିକ ଦୃଢ଼ ହୁଏ । ଶାଶ୍ୱତ ସ୍ୱାନନ୍ଦ (ନିଜର ଆନନ୍ଦ) କୁ ଛାଡ଼ି ସିଦ୍ଧି ସାମର୍ଥ୍ୟ ପଛରେ ଦୌଡ଼ିବା ଲୋକ ହେଉଛି ନିପଟ ମୂର୍ଖ । କାମନା ଦୁଃଖର ଭଣ୍ଡାର । କାମନାଠାରୁ ବଳି ଅଧିକ ଦୁଃଖ କିଛି ନାହିଁ । କାମନା କେବଳ ପରମେଶ୍ୱରଙ୍କୁ ପାଇବା ଲାଗି କରାଯିବା ଉଚିତ । ଅନ୍ୟସବୁ କାମନା କେବଳ ଦୁଃଖର କାରଣ ହୋଇଥାଏ । ବହୁ ପ୍ରଯତ୍ନ କରିବା ପରେ ସାମର୍ଥ୍ୟ ଲାଭ କଲେ ମଧ ଦେହନାଶ ପରେ ସମସ୍ତ ସାମର୍ଥ୍ୟର ପରିସମାପ୍ତି ଘଟେ, ସେ ମନୁଷ୍ୟତାର ପ୍ରକୃତ ଲକ୍ଷ୍ୟ ଈଶ୍ୱରପ୍ରାପ୍ତି ଅର୍ଥାତ୍ ମୋକ୍ଷ ଲାଭରୁ ବଞ୍ଚିତ ହୋଇପଡ଼େ ।

ସାରାଂଶ : ନିଷ୍କାମ ଏବଂ ଦୃଢ଼ ଆତ୍ମ-ବୁଦ୍ଧି ସମ୍ପନ୍ନ ପୁରୁଷ ହିଁ ସଦ୍‌ଗୁରୁ । ସେହି ସଦ୍‌ଗୁରୁ ହିଁ ଶରଣାଗତକୁ ଭବସାଗରରୁ ପାରି କରିପାରନ୍ତି । ସଦ୍‌ଗୁରୁଙ୍କ ମୁଖ୍ୟଲକ୍ଷଣ ହେଉଛି—ସେ ବିମଳ ବ୍ରହ୍ମଜ୍ଞାନରେ ପରିପୂର୍ଣ୍ଣ, ଆତ୍ମନିଶ୍ଚୟୀ, ସମାଧନୀ ଏବଂ ଅଖଣ୍ଡ ସ୍ୱରୂପକାର । ଏହାଙ୍କର ବୈରାଗ୍ୟ ବୃତ୍ତି ଅତି ତୀବ୍ର । ସେ ସଂପୂର୍ଣ୍ଣ କାମନାରୁ ଏବଂ ହିତ ନିର୍ମଳ ସ୍ୱଧର୍ମଚାରୀ । ସେ ନବଧା ଭକ୍ତି ସାଧନ ମାର୍ଗର ପ୍ରଦର୍ଶକ । ଭିତରେ ବ୍ରହ୍ମଜ୍ଞାନ ଏବଂ ବାହାରେ ନିଷ୍ଠାପୂର୍ବକ କ୍ରିୟାସାଧନ—ଯାହାଠି ଏହି ଦୁଇଟି ଯାକର ସମନ୍ୱୟ ଘଟିଥାଏ ସେହି ସଦ୍‌ଗୁରୁ ଭକ୍ତକୁ ଶାନ୍ତି ପ୍ରଦାନ କରିବା ଲାଗି ସମର୍ଥ । ଯେଉଁଠି ଉପାସନାର ଆଧାର ନାହିଁ, ସେଭଳ ପରମାର୍ଥ ନିରାଧାର ସତ୍‌କର୍ମର ଆଚରଣ କରା ନ ଗଲେ ଅନାଚାର ବ୍ୟାପୀଯାଇ ଜୀବଜଗତ ଭ୍ରଷ୍ଟ ହୋଇଯାଏ । ବ୍ରହ୍ମଜ୍ଞାନ, ବୈରାଗ୍ୟ, ଭଜନ, ସ୍ୱଧର୍ମାଚରଣ,

ସାଧନ, ଶାସ୍ତ୍ରନିରୂପଣ, ଶ୍ରବଣ-ମନନ ଓ ନୀତି-ନ୍ୟାୟର ଅଭାବ ହେଉଛି ନ୍ୟୂନତାର ଲକ୍ଷଣ । ସଦ୍‌ଗୁରୁଙ୍କଠାରେ ଏସବୁ ପରିପୂର୍ଣ୍ଣ ମାତ୍ରାରେ ରହିଥାଏ । ସଦ୍‌ଗୁରୁ ବହୁ ଶିଷ୍ୟଙ୍କ ଉଦ୍ଧାରକର୍ତ୍ତା ହୋଇଥିବାରୁ, ସେ ସମସ୍ତଙ୍କର ଭଲ କିପରି ହେବ, ସେହି ଚିନ୍ତା କରିଥାଆନ୍ତି । ଶିଷ୍ୟର ଅଧିକାର ଅନୁସାରେ ତାକୁ ମାର୍ଗଦର୍ଶନ କରାଇବା ଲାଗି ସମସ୍ତ ପ୍ରକାର ସାଧନ ସଦ୍‌ଗୁରୁଙ୍କଠାରୁ ଠୁଳ ହୋଇ ରହିଥାଏ । ସଦାଚାର ଓ ଉପାସନାକୁ ଛାଡ଼ି ପରମାର୍ଥର ଡିଣ୍ଡିମ ପିଟୁଥିବା ଲୋକ ଭ୍ରଷ୍ଟ ଓ ଅଭକ୍ତ । ତା'ଠାରେ ସନ୍ଥ ମହନ୍ତଙ୍କର କୌଣସି ମୂଲ୍ୟ ନ ଥାଏ । କର୍ମ ଓ ଉପାସନା ମାର୍ଗକୁ ଯିଏ ତ୍ୟାଗ କରେ ସେ ସ୍ୱେଚ୍ଛାଚାରୀ ହୋଇପଡ଼େ ।

ସର୍ବଶ୍ରେଷ୍ଠ ସୁଗୁଣ-ସାଗର ହେଉଛନ୍ତି ସଦ୍‌ଗୁରୁ । ବାକୀ ସମସ୍ତେ ସାଧାରଣ ଗୁରୁ । ଅକ୍ଷର ପରିଚୟ କରାଇବା ଗୁରୁ, ମନ୍ତ୍ରଦାତା ଗୁରୁ, ଯନ୍ତ୍ରବିଦ୍ୟା ଶିଖେଇବା ଗୁରୁ, ମଲ୍ଲଯୁଦ୍ଧ ତଥା ବ୍ୟାୟାମ ଶିଖେଇବା ଗୁରୁ ଓ ତନ୍ତ୍ର ଗୁରୁ ନାମାଧେୟ ବହୁଗୁରୁଙ୍କ କଥା ଉଲ୍ଲେଖ କରାଯାଇପାରେ । ଏମାନଙ୍କ ବ୍ୟତୀତ ରାଜଗୁରୁ, କୁଳଗୁରୁ, ମାନ୍ୟଗୁରୁ (ଯଥା-ଏକଲବ୍ୟ ଦ୍ରୋଣାଚାର୍ଯ୍ୟଙ୍କୁ ଗୁରୁଭାବେ ମାନିଥିଲେ), ବିଦ୍ୟାଗୁରୁ, ଅଧମ ଗୁରୁ (ଯିଏ ପାପକର୍ମ କରିବା ଲାଗି ପ୍ରବର୍ତ୍ତାଏ) ଜାତିଗୁରୁ (ସରପଞ୍ଚ), ମାତା ଗୁରୁ, ପିତା ଗୁରୁ, ଦେବ ଗୁରୁ, ଜଗଦ୍‌ଗୁରୁ (ଶ୍ରୀ ଶ୍ରୀ ଶଙ୍କରାଚାର୍ଯ୍ୟ) ପ୍ରମୁଖଙ୍କୁ ମଧ୍ୟ ଗୁରୁ କୁହାଯାଏ । କିନ୍ତୁ ମୋକ୍ଷଦାତା ଗୁରୁ ଏମାନଙ୍କଠାରୁ ସଂପୂର୍ଣ୍ଣ ପୃଥକ୍ । ଯାହାଠାରେ ସଦ୍‌ବିଦ୍ୟାର ଅନନ୍ତଗୁଣ ରହିଥାଏ, ଶିଷ୍ୟ ପ୍ରତି ଯିଏ ଅତି ଆତ୍ମୀୟଭାବାପନ୍ନ—ସେ ପ୍ରକୃତ ସଦ୍‌ଗୁରୁ । ଯେଉଁ ଶିଷ୍ୟ ଏଭଳି ସଦ୍‌ଗୁରୁ ଲାଭ କରେ ତା ଜୀବନ ସାର୍ଥକ ହୁଏ, ସେ ସଂସାରରେ ଧନ୍ୟ ହୋଇ ଉଠେ । ପ୍ରତ୍ୟେକ ମୁମୁକ୍ଷୁ ତଥା ଭକ୍ତ ଏଭଳି ସଦାଚାରୀ, ପୂର୍ଣ୍ଣଜ୍ଞାନୀ, ପରୋପକାରୀ, ସର୍ବଦା ଲୋକମଙ୍ଗଳ କାର୍ଯ୍ୟରେ ସେବାରତ ସଦ୍‌ଗୁରୁଙ୍କ ଆଶ୍ରୟ ଗ୍ରହଣ କରିବା ଉଚିତ ।

## ତୃତୀୟ ସମାସ
## ।। ଆଦର୍ଶ ଶିଷ୍ୟ ନିରୂପଣ ।।

ଏହା ପୂର୍ବରୁ ସଦ୍‌ଗୁରୁଙ୍କ ଲକ୍ଷଣ ବିଶଦଭାବେ ବର୍ଣ୍ଣନା କରାଯାଇଛି । ଏବେ ସୁଶିଷ୍ୟର ଲକ୍ଷଣ କହୁଛି । ସଦ୍‌ଗୁରୁ ନ ପାଇଲେ ସଦ୍‌ଶିଷ୍ୟର ଜୀବନ

ଯେପରି ବ୍ୟର୍ଥ ହୋଇପଡ଼େ ସେହିଭଳି ସଦ୍‌ଗୁରୁ ସଦ୍‌ଶିଷ୍ୟ ନ ପାଇଲେ ନିରାଶ ହୋଇ ପଡ଼ନ୍ତି । ଉର୍ବରା ଭୂମିରେ ଖରାପ ମଞ୍ଜି ବୁଣାଗଲେ ଏବଂ ପଥୁରିଆ ଭୂମିରେ ଭଲ ମଞ୍ଜି ବୁଣାଗଲେ ଭଲ ଫଳ ମିଳିନଥାଏ । ସେହିଭଳି ଶିଷ୍ୟ ସୁଯୋଗ୍ୟ ହେଲେ ମଧ୍ୟ ଯଦି ଗୁରୁ କେବଳ ତନ୍ତ୍ରମନ୍ତ୍ର ବଖାଣିବାବାଲା ହୋଇଥାଏ ଏବଂ ଗୁରୁ ପୂର୍ଣ୍ଣଜ୍ଞାନ ପ୍ରଦାନ ଲାଗି ସମର୍ଥ ଥିଲେ ମଧ୍ୟ ଶିଷ୍ୟ ଯଦି ଅନଧିକାରୀ, ଅବୋଧ ତଥା ଅନୁପଯୁକ୍ତ ହୋଇଥାଏ ତାହାହେଲେ ସବୁ ଉଦ୍ୟମ, ସବୁ ସାଧନା ବ୍ୟର୍ଥ । ସଦ୍‌ଗୁରୁ ଓ ସଦ୍‌ଶିଷ୍ୟଙ୍କ ସଂଯୋଗ ନ ଘଟିଲେ ପରମାର୍ଥର ଆନନ୍ଦ ମିଳି ନ ପାରେ । ଭୂମି ଉତ୍ତମ, ବିହନ ମଧ୍ୟ ଭଲ, ତଥାପି ବର୍ଷା ଆବଶ୍ୟକ ହୋଇଥାଏ । ସେହଭଳି ଗୁରୁ-ଶିଷ୍ୟ ଉଭୟ ସୁଯୋଗ୍ୟ ହେଲେ ମଧ୍ୟ ଦୁହେ ଯଦି ଅଧ୍ୟାତ୍ମ ନିରୂପଣରେ ବ୍ରତୀ ନ ହୁଅନ୍ତି, ତାହାହେଲେ ସବୁ ବୃଥା ।

ଉତ୍ତମ ଭୂମି, ଉତ୍ତମ ବୀଜ ଏବଂ ଆବଶ୍ୟକ ବର୍ଷାର ସଂଯୋଗରେ ଶସ୍ୟ ଉତ୍ପନ୍ନ କରାଗଲେ ମଧ୍ୟ ଅମଳପରେ ଏହାକୁ ଯଦି ଭକ୍ଷଣ କରାନଯାଏ, ତାହାହେଲେ କି ଲାଭ ? ସେହିଭଳି ସଦ୍‌ଗୁରୁ, ସଦ୍‌ଶିଷ୍ୟ ଏବଂ ଅଧ୍ୟାତ୍ମ ଶ୍ରବଣର ସଂଯୋଗ ଘଟିଲେ ମଧ୍ୟ ସିଦ୍ଧବସ୍ତୁ ପାଇବା ପର୍ଯ୍ୟନ୍ତ ସାଧନାରତ ରହିବା ଉଚିତ । ସାଧ୍ୟ-ପ୍ରାପ୍ତି ହେବା ପରେ ଅର୍ଥାତ୍ ଆତ୍ମ-ଜ୍ଞାନ ହେବାପରେ ମଧ୍ୟ ସାଧନା ତ୍ୟାଗ କରିବା ଅନୁଚିତ । ଥରେ ଭୋଜନ କରିବା ପରେ ଚିରଦିନ ଲାଗି କେହି କେବେ ଅନ୍ନଭୋଜନକୁ ତ୍ୟାଗ କରେ କି ? ସଦ୍‌ଶିଷ୍ୟ, ସଦ୍‌ଗୁରୁ, ସତ୍‌ଶାସ୍ତ୍ର ବିଚାର ଏବଂ ସାଧନାଭ୍ୟାସ—ଏସବୁର ସମନ୍ୱୟ ଘଟିଲେ ଯାଇ ଭବସାଗର ପାର ହେବାର ଉପାୟ ମିଳେ । ପ୍ରରବ୍ରହ୍ମ ପରମାତ୍ମାଙ୍କ ଉପାସନା, ସ୍ୱଧର୍ମାଚରଣ, ସଦାଚାର, ସତ୍‌କର୍ମ, ସତ୍‌ସଙ୍ଗ ଏବଂ ନିତ୍ୟଉପାସନା— ଏସବୁର ସମ୍ମିଳିତ ସାଧନାଦ୍ୱାରା ହିଁ ଶୁଦ୍ଧଜ୍ଞାନର ଉଦୟ ହୋଇଥାଏ । ନଚେତ ସମାଜରେ ପାଷାଣ୍ଡତା ଖେଳିଯାଏ । ତେଣୁ ଶିଷ୍ୟ ଅପେକ୍ଷା ଗୁରୁଙ୍କ ଦାୟିତ୍ୱ ଅଧିକ । ସଦ୍‌ଗୁରୁ ଶିଷ୍ୟକୁ ଅନେକ ସମୟୋଚିତ ଉପଦେଶଦ୍ୱାରା ସୁଯୋଗ୍ୟ କରିଥାଆନ୍ତି । ବର୍ତ୍ତମାନ ସଦ୍‌ଶିଷ୍ୟ କିପରି ହେବା ଆବଶ୍ୟକ, ଶିଷ୍ୟଠାରେ କି କି ଗୁଣ ରହିବା ଉଚିତ ସେ ସବୁ କଥା କହୁଚି, ଶୁଣ ।

ସଦ୍‌ଶିଷ୍ୟର ଲକ୍ଷଣ : ସେ ଅନନ୍ୟ ସାଧାରଣ ହେବା ଉଚିତ । ଅର୍ଥାତ୍, ସଦ୍‌ଗୁରୁଙ୍କ ବାଣୀ ବା ବଚନ ଉପରେ ଶିଷ୍ୟର ସମ୍ପୂର୍ଣ୍ଣ ଶ୍ରଦ୍ଧା ଓ ଭକ୍ତି ରହିବା

ଆବଶ୍ୟକ । ସଦ୍‌ବିଦ୍ୟାର ସମସ୍ତ ଗୁଣ ତା'ଠାରେ ରହିବା ଆବଶ୍ୟକ । ତାର ଶରୀର, କଥା ଓ ମନ ନିର୍ମଳ ରହିବା ଉଚିତ । ତା ମନରେ କୌଣସି ଆସକ୍ତି ରହିବା ଅନୁଚିତ ଏବଂ ଭୁଲବଶତଃ କୌଣସି ଖରାପ କାର୍ଯ୍ୟ କରିଦେଲେ ସେ ଅନୁତାପ କରିବା ଉଚିତ । ସେ ମର୍ଯ୍ୟାଦାଶୀଳ, ସାଧନାଭ୍ୟାସୀ, ଦକ୍ଷ ହେବା ଆବଶ୍ୟକ । ମନରେ ପରମବ୍ରହ୍ମଙ୍କ ଲାଗି ପରମ ଆକାଂକ୍ଷା ଜାଗ୍ରତ ନ ହେଲେ ଶିଷ୍ୟ ହେବାପାଇଁ କେହି ଯୋଗ୍ୟ ହୋଇନପାରେ । ପ୍ରଜ୍ଞାବାନ, ପ୍ରେମୀ, ବିବେକୀ, ଦୃଢ଼ ଆସ୍ଥାବାନ, ତପୋନିଷ୍ଠ ଏବଂ ଶାରୀରିକ କଷ୍ଟକୁ ତୁଚ୍ଛ ମନେ କରୁଥିବା ବ୍ୟକ୍ତିହିଁ ସଦ୍‌ଶିଷ୍ୟ ପଦବାଚ୍ୟ । ସେ ବିଳାସୀ ହୋଇ ନଥିବ କିନ୍ତୁ ସାଂସାରିକ ତାପରେ ବିଦଗ୍ଧ ହୋଇଥିବ । ଯିଏ ସାଂସାରିକ ଦୁଃଖର ତ୍ରିବିଧ ତାପରେ ପୀଡ଼ିତ ରହିଥାଏ, ସେ ପରମାର୍ଥର ଅଧିକାରୀ ହୋଇଥାଏ କାରଣ ଏହି ସନ୍ତାପରେ ସେ ବିଦଗ୍ଧ ହେବା ଫଳରେ କ୍ରମଶଃ ତା ମନରେ ସାଂସାରିକ ବସ୍ତୁପ୍ରତି ବୈରାଗ୍ୟଭାବ ଜାତ ହୋଇଥାଏ । ବୈରାଗ୍ୟ ବ୍ୟତିରେକ ଶରଣାଗତ-ଭାବ ଓ ଜ୍ଞାନ ଦୃଢ଼ ହୋଇନଥାଏ । ସଂସାରପ୍ରତି ଅବିଶ୍ୱାସ ଓ ସନ୍ଦେହ ବୈରାଗ୍ୟ ନୁହଁ । ସଂସାର ପ୍ରତି ଅବିଶ୍ୱାସୀ ଓ ସନ୍ଦେହୀ ହୋଇ ଗୁରୁଙ୍କୁ ପରିତ୍ୟାଗ କରିବାଭଳି ଅନେକ ଲୋକ ଦେଖିବାକୁ ମିଳନ୍ତି ।

ଅତଏବ ସଦ୍‌ଗୁରୁଙ୍କ ପ୍ରତି ପୂର୍ଣ୍ଣ ବିଶ୍ୱାସ ହେଉଚି ସଦ୍‌ଶିଷ୍ୟର ପ୍ରଥମ ଓ ପ୍ରଧାନ ଲକ୍ଷଣ । ସଦ୍‌ଗୁରୁ ଓ ତାଙ୍କ କଥାପ୍ରତି ପୂର୍ଣ୍ଣବିଶ୍ୱାସ ରହିଲେ ଯାଇ ଶିଷ୍ୟ ସାଯୁଜ୍ୟ ମୁକ୍ତି ଅର୍ଥାତ୍ ମୋକ୍ଷର ଅଧିକାରୀ ହୋଇ ସାଂସାରିକ ଦୁଃଖରୁ ରକ୍ଷା ପାଇପାରେ । ଯେଉଁ ଶିଷ୍ୟ ସଦ୍‌ଗୁରୁ ତଥା ପରବ୍ରହ୍ମ ପରମାତ୍ମାଙ୍କ ଅପେକ୍ଷା ଅନ୍ୟ ଦେବଦେବୀମାନଙ୍କୁ ଶ୍ରେଷ୍ଠ ମନେ କରିଥାଏ, ସେ ଶିଷ୍ୟ ଅଭାଗା । କାରଣ ସେ ଗୁରୁଙ୍କ ସେବା ଛାଡ଼ି ଅନ୍ୟ ଦେବତାଙ୍କ ସାମର୍ଥ୍ୟ ଉପରେ ଭରସା କରିଥାଏ । ବସ୍ତୁତଃ ସଦ୍‌ଗୁରୁଙ୍କ ସ୍ୱରୂପ ଓ ସାମର୍ଥ୍ୟହିଁ ଶାଶ୍ୱତ । ଅନ୍ୟସବୁ ଦେବତା କଳ୍ପାନ୍ତରରେ, ମାୟାରେ ବିଲୀନ ହୋଇ ଯାଇଥାଆନ୍ତି । ତେଣୁ ଦେବତାମାନଙ୍କ ସାମର୍ଥ୍ୟ ଅଶାଶ୍ୱତ । ସବୁ ଦେବତାଙ୍କ ଅପେକ୍ଷା ସଦ୍‌ଗୁରୁଙ୍କ ସାମର୍ଥ୍ୟ ଅଧିକ । ଅନ୍ୟ ସବୁ ଦେବଦେବୀ ମନୁଷ୍ୟର କଳ୍ପନା-ପ୍ରସୂତ । ମନ୍ତ୍ରଦ୍ୱାରା ଏମାନେ ପ୍ରତିଷ୍ଠିତ । କିନ୍ତୁ ସଦ୍‌ଗୁରୁଙ୍କ ସ୍ୱରୂପ ନିର୍ବିକଳ୍ପ । ତେଣୁ ସଦ୍‌ଗୁରୁ ଦେବତାଙ୍କ

ଅପେକ୍ଷା କୋଟି କୋଟି ଗୁଣରେ ଶ୍ରେଷ୍ଠ । ସଦ୍‌ଗୁରୁଙ୍କ ସ୍ୱରୂପକୁ ବେଦ ମଧ୍ୟ ବର୍ଣ୍ଣନା କରିପାରି ନାହିଁ । ଯାହାପ୍ରତି ସଦ୍‌ଗୁରୁଙ୍କ କୃପା ରହିଥାଏ ତା ଉପରେ ଆଉ କାହାରି ମଧ୍ୟ ଜୋର ଖାଟି ନପାରେ । ସଦ୍‌ଶିଷ୍ୟ ନିଜର ସ୍ୱରୂପ ଜ୍ଞାନର ଆଲୋକରେ ସଂସାରର ସମସ୍ତ ବୈଭବ ଓ ଐଶ୍ୱର୍ଯ୍ୟକୁ ତୁଚ୍ଛ ମଣିଥାଏ । ସଦ୍‌ଗୁରୁଙ୍କ କୃପା-ସାମର୍ଥ୍ୟ ଓ ସ୍ୱାନୁଭବର ଉଲ୍ଲାସରେ ସଦ୍‌ଶିଷ୍ୟର ଐଶ୍ୱର୍ଯ୍ୟ ବୃଦ୍ଧି ପାଇଥାଏ । ଏପରିକି ସେ ସଦ୍‌ଗୁରୁ-ସ୍ୱରୂପ ହୋଇପଡ଼େ । ଅନୁତାପଦ୍ୱାରା ଚିତ୍ତ ଶୁଦ୍ଧିପରେ ସଦ୍‌ଗୁରୁଙ୍କ ପ୍ରତି ଅନନ୍ୟ ଓ ଅଖଣ୍ଡ ଶ୍ରଦ୍ଧାଭାବ ଫଳରେ ସଦ୍‌ଶିଷ୍ୟ ସାଯୁଜ୍ୟମୁକ୍ତି ଲାଭ କରିଥାଏ । ଏପରି ସଦ୍‌ଶିଷ୍ୟ କ୍ୱଚିତ ଦୁର୍ଲ୍ଲଭ କହିଲେ ଚଳେ । ଉପରର ରଙ୍ଗଢଙ୍ଗ ଦେଖି ଲୋକାଚାର ଲାଗି ଶିଷ୍ୟ ହେବା ଭଳି ଲୋକ ଲକ୍ଷ ଲକ୍ଷ ସଂଖ୍ୟାରେ ଦେଖିବାକୁ ମିଳିଥାଆନ୍ତି । ଏଭଳି ସାଧାରଣ ଶିଷ୍ୟମାନଙ୍କର ବିଷୟ ପ୍ରତି ଆସକ୍ତି ପ୍ରବଳ । ଏହି ବିଷୟାସକ୍ତି ହିଁ ସେମାନଙ୍କ ପରମାର୍ଥଇଚ୍ଛାକୁ ଶୀଘ୍ର ଦବେଇ ଦିଏ । ଫଳରେ ଏପରି ଲୋକ ସାଂସାରିକ କାର୍ଯ୍ୟରେ ମଗ୍ନ ରହି ଦିନେ ହଠାତ୍ ଅସାର ସଂସାରରୁ ବିଦାୟ ନିଏ । ଯାହାର ମନ ଅନେକ ବିଷୟ-ବାସନାରେ ପୂରି ରହିଥାଏ, ତାକୁ ପରମାର୍ଥ-ଚର୍ଚ୍ଚା କେବଳ କୌତୂହଳ ଆଉ ବିନୋଦପୂର୍ଣ୍ଣ ପ୍ରତୀତ ହୋଇଥାଏ । ଘୁଷୁରୀ ଦେହରେ ସୁଗନ୍ଧ ଲେପିବା, ମଇଁଷି ଦେହରେ ଚନ୍ଦନ ବୋଳିବା କିମ୍ବା ଶୁଖୁଆବିକାଳିର ଘରେ ସୁବାସିତ ଜଳ ସିଞ୍ଚନ କରିବା ଯେପରି ନିରର୍ଥକ, ବିଷୟାସକ୍ତ ବ୍ୟକ୍ତି ପକ୍ଷରେ ବ୍ରହ୍ମଜ୍ଞାନବୋଧ ସେହିଭଳି ଅନୁପଯୋଗୀ । ଯିଏ ସର୍ବଦା ବିଷୟଚିନ୍ତା କରିଥାଏ, ଯିଏ ବିଷୟଲୋଲୁପୀ, ତାକୁ ପରମାର୍ଥ, ସତ୍‌ସଙ୍ଗ, ଈଶ୍ୱର ଆଦି କଥା ଆଦୌ ଭଲ ଲାଗେନାହିଁ । ଯେପରି କୁକୁରର କ୍ଷୀର ହଜମ ହୁଏ ନାହିଁ, ସେହିଭଳି ବିଷୟାସକ୍ତ ପୁରୁଷକୁ ସଦ୍‌ଜ୍ଞାନ ମିଳି ନପାରେ ।

ଯେପରି କୁଟିଳ କୁଆ ହଂସଙ୍କ ଭିତରେ ବସି ନିଜକୁ ହଂସ ବୋଲି ମନେ କରିଥାଏ, ସେହିଭଳି ବିଷୟୀ ପୁରୁଷ ସଜ୍ଜନଙ୍କ ସତ୍‌ସଙ୍ଗରେ ବସି ସଜ୍ଜନ ହେବାର ସୁଆଙ୍ଗ କରିଥାଏ, କିନ୍ତୁ ତା ମନ ବିଷୟରୂପୀ ମଳରେ ହିଁ ଲାଖି ରହିଥାଏ । ଯେପରି ସ୍ତ୍ରୀକୁ ମୁହୂର୍ତ୍ତେ ସୁଦ୍ଧା ଛାଡ଼ିପାରୁ ନ ଥିବା ବ୍ୟକ୍ତି ସନ୍ନ୍ୟାସୀ ହେବା ପାଇଁ ଅନ୍ୟକୁ ଉପଦେଶ ଦେଇଥାଏ, ସେହିଭଳି ଅନେକ ଲୋକ ମନରେ ବିଷୟ

ବାସନା ରଖି ବ୍ରହ୍ମଜ୍ଞାନ ବଖାଣିବାରେ ଲାଗିଥାଆନ୍ତି । କିନ୍ତୁ ଏଥିରେ ଲାଭ କ'ଣ ? ଯେଉଁ କୀଟ ମଳମୂତ୍ରରୁ ଜାତ ହୋଇ ମଳମୂତ୍ର ଭିତରେ ହିଁ ରହିଥାଏ, ଯିଏ ନରକଭୋଗୀ ଶିକ୍ଷିତ ମୂର୍ଖ, ତା ପକ୍ଷରେ ଅଦ୍ୱୈତ-ଆନନ୍ଦର କଳ୍ପନା ବୃଥା । ବିଷୟର ଦାସ କେବେହେଲେ ପରମାତ୍ମାଙ୍କ ଭକ୍ତ ହୋଇ ନପାରେ । ବେଦାନ୍ତର ଶାବ୍ଦିକ ବ୍ୟାଖ୍ୟାକାରୀ ତଥା ଅଧ୍ୟାତ୍ମ ସମ୍ପର୍କରେ ପ୍ରଳାପ କରୁଥିବା ବ୍ୟକ୍ତି କେବେହେଲେ ପ୍ରକୃତ ଜ୍ଞାନଲାଭ କରି ନ ପାରେ । ଗୁରୁଙ୍କ ଉପଦେଶ ଗ୍ରହଣ ପରେ ମଧ୍ୟ ଶିଷ୍ୟ ଯଦି ବିଷୟ-ଲମ୍ପଟ, କୁମାର୍ଗଗାମୀ, ଦୁଷ୍ଟ ଓ ପାପୀ ହୋଇ ପଡ଼େ, ତାହାହେଲେ ତାର ପାପ ଜମାଟ ବାନ୍ଧିଯାଏ । କିନ୍ତୁ ସମ୍ପୂର୍ଣ୍ଣଭାବେ ପଶ୍ଚାତ୍ତାପ କରି ସେ ଯଦି ପୁନର୍ବାର ସଦ୍‌ଗୁରୁଙ୍କ ଶରଣ ନିଏ, ଗୁରୁଙ୍କ କୃପା ହେଲେ ସେ ଉଦ୍ଧାର ପାଇପାରେ ! ଯିଏ ସଦ୍‌ଗୁରୁଙ୍କ ପ୍ରତି ଦ୍ରୋହ କରେ, ସୂର୍ଯ୍ୟଚନ୍ଦ୍ର ଥିବାଯାଏ ତାକୁ ନରକଦଶା ହିଁ ଭୋଗ କରିବାକୁ ପଡ଼େ ।

ଯାହାର କ୍ଷଣିକ ପାଇଁ ବୈରାଗ୍ୟଭାବ ଆସେ, ସେଭଳି ବ୍ୟକ୍ତି ସଦ୍‌ଗୁରୁଙ୍କ ଶରଣ ନେଲେ ମଧ୍ୟ ଜ୍ଞାନରପାତ୍ର ହୋଇ ନପାରେ, କାରଣ ଜ୍ଞାନ ତା ପାଖରେ ବେଶି ସମୟ ରହେନାହିଁ । ମନରେ ଶ୍ରଦ୍ଧା ନଥାଇ କେବଳ ଦେଖେଇ ହେବାପାଇଁ ଯିଏ ଗୁରୁମନ୍ତ୍ର ନିଏ; ତାଠୁ ବଳି ପାଷାଣ୍ଡ କେହି ନାହିଁ । ସେଭଳି ବ୍ୟକ୍ତି କୌଣସି ଜଣେ ଗୁରୁରେ ତୃପ୍ତ ନହୋଇ ବହୁଗୁରୁ କରିଥାଏ, ଏବଂ ଗୁଡ଼ିଏ ଖରାପ କଥା ହିଁ ଶିଖିଥାଏ । ସେ କେବେକେବେ ଭାବ-ବିହ୍ୱଳ ହୋଇ କାନ୍ଦିବା, ତଳେ ଛେଚି ହୋଇ ପଡ଼ିବା, ନାଚିବା ଆଦିର ଅଭିନୟ କରିଥାଏ; କେବେ କେବେ ବୈରାଗ୍ୟ ସମ୍ପର୍କରେ ଲମ୍ବା ଚୌଡ଼ା କଥା କହିଥାଏ ତ କେବେ କେବେ ନିଜକୁ ସବ୍‌ଜାନ୍ତା କହି ଗର୍ବରେ ଫୁଲି ଉଠେ । ପାଗଳଙ୍କ ଭଳି ସେ ନାନା ସୁଆଙ୍ଗ ତଥା ତାମସା ଦେଖାଇଥାଏ । ଏହିଭଳି ଲୋକର ମନରେ ସର୍ବଦା କାମ, କ୍ରୋଧ, ମତ୍ସର, ଲୋଭ, ମୋହ, ଅଭିମାନ, କପଟତା, ଘୃଣା ଆଦି ବିକାର ଭରି ରହିଥାଏ । ସେ ଶରୀରପ୍ରତି ଅତ୍ୟନ୍ତ ଆସକ୍ତ । ଅନାଚାର, ବିଷୟଲୋଲୁପତା ତଥା ସାଂସାରିକ ପ୍ରପଞ୍ଚରେ ତା ମନ ଦିନରାତି ବୁଡ଼ି ରହିଥାଏ । ସେ ଦୀର୍ଘସୂତ୍ରୀ, ଅକୃତଜ୍ଞ, କୁକର୍ମୀ, କୁତର୍କୀ, କ୍ରୋଧୀ, ନିଷ୍ଠୁର, ଆଳସ୍ୟପରାୟଣ, ଅବିବେକୀ, ଅଧୀର ଏବଂ ଅବିଶ୍ୱାସୀ । ତା ହୃଦୟରେ ଆଶା, ମମତା, ତୃଷ୍ଣା, କଳ୍ପନା, କୁବୁଦ୍ଧି,

ଦୁର୍ବାସନା, ମୂର୍ଖତା ଆଦି ଦୁର୍ଗୁଣ ଡେରା ବାନ୍ଧି ରହିଥାଆନ୍ତି । ସେ ସର୍ବଦା ଅନ୍ୟମାନଙ୍କର ନିନ୍ଦା ଓ ତିରସ୍କାର କରିଥାଏ । ତାଠାରେ ତିତୀକ୍ଷାର ଚିହ୍ନ ସୁଦ୍ଧା ନଥାଏ । ଭକ୍ତି, ବୈରାଗ୍ୟ ଓ ଶାନ୍ତି ତ ଦୂରର କଥା; ସଦ୍‌ଭାବ, ନମ୍ରତା, ଇନ୍ଦ୍ରିୟଦମନ, କୃପା, ଦୟା, ତୃପ୍ତି ଆଦି ସଦ୍‌ଗୁଣ ତାକୁ ସ୍ପର୍ଶ କରି ନ ଥାଆନ୍ତି । ଶରୀର ସ୍ୱାର୍ଥ ହାସଲ ଲାଗି କଠୋର ପରିଶ୍ରମ କଲେ ମଧ୍ୟ ଦାନ ଧର୍ମ ଦିଗରେ ଭୀଷଣ କୃପଣ । ଏଭଳି ବ୍ୟକ୍ତି ଅନ୍ୟର ଦୋଷ ହିଁ ଦେଖିଥାଏ; ମିଛ କହିଥାଏ, ଛନ୍ଦକପଟ କରି ଅନ୍ୟକୁ ଫସେଇ ଥାଏ । ତାର ଆଚାର ବିଚାରରେ ସମତା ନଥାଏ । ଏଭଳି ବ୍ୟକ୍ତି ଅନ୍ୟର ଦୁଃଖକୁ ବୁଝିପାରେନା ବରଂ ଅନ୍ୟର ଦୁଃଖ ଦେଖିଲେ ସୁଖ ଅନୁଭବ କରିଥାଏ । ଯାହାଠି ଏତେ ଦୁର୍ଗୁଣ ସେ ଈଶ୍ୱରଙ୍କୁ ପ୍ରସନ୍ନ କରିବ କିପରି ? ବୁଢ଼ା ହୋଇଯିବା ପରେ ସେ ଯେତେବେଳେ ଅସହାୟ, ଦୁର୍ବଳ ହୋଇପଡ଼େ ଏବଂ ଆତ୍ମୀୟ ସ୍ୱଜନଙ୍କ ଦ୍ୱାରା ଉପେକ୍ଷିତ ଓ ଅପମାନିତ ହୁଏ, ସେତେବେଳେ ଯାଇ ତାର ଆଖି ଖୋଲେ ।

ଯାହାଠାରେ ଏସବୁ ଦୋଷ ଦୁର୍ଗୁଣ ନଥାଏ, ତାକୁ ହିଁ ସଦ୍‌ଶିଷ୍ୟ କୁହାଯାଇପାରେ । ବାସ୍ତବିକ ସଂସାରରେ ସୁଖ ବୋଲି କିଛି ନାହିଁ । ଯେଉଁ ଶିକ୍ଷିତ ମୂର୍ଖ ସାଂସାରିକ ସୁଖରେ ଲିପ୍ତ ରହେ, ତାଠୁ ବଳି ଦୁର୍ଭାଗା କେହି ନାହିଁ । ଘରେ ରହି ସାଂସାରିକ ଗୃହସ୍ଥ କାର୍ଯ୍ୟ ନିର୍ଲିପ୍ତଭାବେ କରିବା ଖରାପ ନୁହଁ କିନ୍ତୁ ତା ସଙ୍ଗେ ସଙ୍ଗେ ପରମାର୍ଥ ପ୍ରତି ମଧ୍ୟ ଧ୍ୟାନ ରଖିବା ଉଚିତ । ପରମାର୍ଥ ପ୍ରତି ବିମୁଖ ରହିବା ଅନୁଚିତ ।

## ଚତୁର୍ଥ ସମାସ
## ।। ମନ୍ତ୍ର-ବିବେଚନ ।।

ଏବେ ଉପଦେଶ ତଥା ମନ୍ତ୍ରର ଲକ୍ଷଣ ଶୁଣନ୍ତୁ । ନାନା ମନ୍ତ୍ରୋପଦେଶ ଦେବା ଭଳି ଗୁରୁ ଅନେକ ମିଳିଥାଆନ୍ତି । କେହି କେହି ପ୍ରଣବମନ୍ତ୍ର ଓଁକାର ଜପ କରିବା ପାଇଁ କହିଥାଆନ୍ତି । କେହି କେହି ଶିବ, ଭବାନୀ, ବିଷ୍ଣୁ, ଗଣେଶ, ସୂର୍ଯ୍ୟ ଆଦି ଦେବତାମାନଙ୍କ ମନ୍ତ୍ରଦାନ କରିଥାଆନ୍ତି । ଯେତେ ଦେବତା ସେତିକି ଅଲଗା

ଅଲଗା ମନ୍ତ୍ର । କୌଣସି କୌଣସି ମନ୍ତ୍ର ସରଳ ତ କୌଣସି ମନ୍ତ୍ର କଠିନ । କୌଣସି କୌଣସି ମନ୍ତ୍ର ବେଦମନ୍ତ୍ର ଭଳି ଦୁରୂହ । କୌଣସି କୌଣସି ମନ୍ତ୍ର ଦ୍ୱାରା ଭୂତ ପ୍ରେତ ବାଧା ଦୂର ହୋଇଥାଏ ଏବଂ ଭୂତପ୍ରେତ ହଟାଯାଏ । କେତେକ ମନ୍ତ୍ର ରୋଗବ୍ୟାଧି ନିବାରକ । ମନ୍ତ୍ର ଦ୍ୱାରା ଝଡ଼ା ଫୁଙ୍କା କରି ସାପ, ବିଛାଆଦିର ବିଷ ମଧ୍ୟ ନଷ୍ଟ କରାଯାଇଥାଏ । ଏସବୁକୁ କର୍ଣ୍ଣମନ୍ତ୍ର କୁହାଯାଏ । କାରଣ ଏହା କାନରେ କୁହାଯାଇଥାଏ । ଏହି ମନ୍ତ୍ର ସିଦ୍ଧି ଲାଗି ଜପ, ଧ୍ୟାନ, ପୂଜା ଆଦି ବିଧିବିଧାନ କରିବାକୁ ପଡ଼ିଥାଏ । କୌଣସି କୌଣସି ଗୁରୁ ଖେଚରୀ, ଭୂଚରୀ, ଚାଚରୀ ତଥା ଅଗୋଚରୀ ମୁଦ୍ରାର ସାଧନା ଶିକ୍ଷା ଦେଇଥାଆନ୍ତି । କେହି କେହି ଅନେକ ପ୍ରକାରର ଆସନ ଓ ପ୍ରଣାୟାମର ପ୍ରୟୋଗ ବିଦ୍ୟା ଶିଖେଇ ଥାଆନ୍ତି । କେହି କେହି ବିଲକ୍ଷଣ ଦୃଶ୍ୟ ଦେଖାଇ ଥାଆନ୍ତି ତ କେହି କେହି ଅନହଦନାଦ ଶୁଣିବା ଲାଗି ବାଟ ବତେଇ ଥାଆନ୍ତି । କେହି ଶରୀର-ଜ୍ଞାନ କଥା କହିଥାଏ ତ କେହି କର୍ମମାର୍ଗ, ଉପାସନା ମାର୍ଗକୁ ଶ୍ରେଷ୍ଠ ବୋଲି କହିଥାଏ । କେହି କେହି ଅଷ୍ଟାଙ୍ଗ ଯୋଗ, କେହି ତପ-ସାଧାନା, କେହି ଅଜପା-ଜପ, କେହି ସଗୁଣ-ଉପାସନା ଏବଂ ନିର୍ଗୁଣଧ୍ୟାନ କରିବା ପାଇଁ ଉପଦେଶ ଦେଇଥାଆନ୍ତି । ବଶୀକରଣ, ଜାରଣମାରଣର ମନ୍ତ୍ର ମଧ୍ୟ କେହି କେହି ଶିକ୍ଷା ଦେଇଥାଆନ୍ତି । ଏହିଭଳି ଭାବେ ଉପଦେଶ, ମନ୍ତ୍ର ଓ ସାଧନା ଅନେକ ପ୍ରକାରର । ଯାହା କର ପଛେ ଶୁଦ୍ଧଜ୍ଞାନ ବିନା ସବୁ ନିରର୍ଥକ ।

ସ୍ୱୟଂ ଭଗବାନ କହିଛନ୍ତି—

ନାନା ଶାସ୍ତ୍ରଂ ପଠେଲ୍ଲୋକୋ ନାନା ଦୈବତ ପୂଜନମ୍
ଆତ୍ମ-ଜ୍ଞାନଂ ବିନା ପାର୍ଥ ସର୍ବକର୍ମ ନିରର୍ଥକମ୍
ଶୈବ ଶାକ୍ତୋଗମାଦ୍ୟାୟେ ଅନ୍ୟେ ଚ ବହବୋ ମତାଃ ।
ଅପଭ୍ରଂଶ ସମାସ୍ତେଽପି ଜୀବାନଂ ଭ୍ରାନ୍ତ ଚେତସାମ୍ ॥
ନ ହି ଜ୍ଞାନେନ ସଦୃଶଂ ପବିତ୍ର ମିଦମୁତ୍ତମମ୍ ॥

ଜ୍ଞାନ ଅର୍ଥାତ୍ ଆତ୍ମଜ୍ଞାନ ସମାନ ପବିତ୍ର ବସ୍ତୁ ଅନ୍ୟ କିଛି ନାହିଁ । ତେଣୁ ସର୍ବପ୍ରଥମେ ଆତ୍ମ-ଜ୍ଞାନର ଉପଦେଶ ହିଁ ପ୍ରଧାନ । ଆତ୍ମଜ୍ଞାନର ମହିମା ଯାହା ତାହା ଚତୁର୍ମୁଖ ବ୍ରହ୍ମଦେବଙ୍କ ପକ୍ଷରେ ମଧ୍ୟ ଅଗମ୍ୟ । ସାମାନ୍ୟ ଜୀବାତ୍ମାପ୍ରାଣୀ

ପକ୍ଷରେ ଏହା ବୋଧଗମ୍ୟ ହେବ କିପରି ? ସମସ୍ତ ତୀର୍ଥରେ ସ୍ନାନ ଓ ଦାନ ଆଦି ଦ୍ୱାରା ଯେଉଁ ଫଳ ମିଳେ ଜ୍ଞାନଲାଭର ଫଳ ତା'ଠାରୁ କୋଟିଏ ଗୁଣରେ ଅଧିକ । ତେଣୁ କୁହାଯାଇଛି—

ପୃଥିବ୍ୟାଂ ୟାନି ତୀର୍ଥାନି ସ୍ନାନ ଦୋନେଷୁ ଯଦ୍‌ଫଳମ୍
ତଦ୍‌ଫଳଂ କୋଟିଗୁଣିତଂ ବ୍ରହ୍ମଜ୍ଞାନ ସମୋପମମ୍ ॥

## ପଞ୍ଚମ ସମାସ
## ॥ ବହୁବିଧ ଜ୍ଞାନ ନିରୂପଣ ॥

ଏବେ ବହୁବିଧ ଜ୍ଞାନର ଲକ୍ଷଣ କହିବି । ଯେ ପର୍ଯ୍ୟନ୍ତ ବିଶୁଦ୍ଧ ଆତ୍ମଜ୍ଞାନ ପ୍ରାପ୍ତି ନ ହୋଇଚି ସେ ପର୍ଯ୍ୟନ୍ତ ଅନ୍ୟସବୁ ଜ୍ଞାନ ବ୍ୟର୍ଥ । ବିନା ଆତ୍ମ-ଜ୍ଞାନରେ ଆନ୍ତରାତ୍ମାର ଅଶାନ୍ତି ଶାନ୍ତ ହୋଇ ନପାରେ । ତେଣୁ ଯାହାସବୁ ବାସ୍ତବିକ ଜ୍ଞାନ ନୁହଁ, ମୁଁ ସେହି ସବୁ ସାଧାରଣ ଜ୍ଞାନ କଥା କହିବି ।

ଭୂତ, ଭବିଷ୍ୟତ ଓ ବର୍ତ୍ତମାନର କଥା କୁହାଯିବାକୁ ମଧ୍ୟ ଜ୍ଞାନ କୁହାଯାଇଥାଏ, କିନ୍ତୁ ତାହା ଜ୍ଞାନ ନୁହଁ । ବହୁପ୍ରକାରର ବିଦ୍ୟା ଯଥା ସଙ୍ଗୀତ, ସାହିତ୍ୟ, ବେଦ-ଶାସ୍ତ୍ରର ଅଧ୍ୟୟନ, ବୈଦିକ-କର୍ମ ସମ୍ପର୍କୀୟ ପାଣ୍ଡିତ୍ୟକୁ ଜ୍ଞାନ କୁହାଯାଇ ପାରେ । ନାନା ପ୍ରକାରର ଉଦ୍ୟୋଗ ତଥା ବ୍ୟବସାୟ ସମ୍ପର୍କୀୟ ଜ୍ଞାନ, ଦୀକ୍ଷା-ଜ୍ଞାନ, ସ୍ତ୍ରୀ କିମ୍ବା ପୁରୁଷ ପରୀକ୍ଷା, ଅଶ୍ୱ-ଗଜ ପରୀକ୍ଷା, ପଶୁ-ପକ୍ଷୀ ପରୀକ୍ଷା, ଅସ୍ତ୍ରଶସ୍ତ୍ର ପରୀକ୍ଷା, ଭୂତ-ପରୀକ୍ଷା, ବାହନ-ପରୀକ୍ଷା, ଧାତୁ, ରତ୍ନ, ପାଷାଣ, କାଠ, ଭୂମି, ଜଳ, ରସ, ମଞ୍ଜି, ଫଳ ପୁଷ୍ପ ଆଦିର ପରୀକ୍ଷା ସମ୍ପର୍କୀୟ ଜ୍ଞାନ ମଧ୍ୟ ପ୍ରକୃତ ଜ୍ଞାନ ନୁହଁ । ଦୁଃଖ, ରୋଗ, ରୋଗର ଲକ୍ଷଣ, ମନ୍ତ୍ର, ଯନ୍ତ୍ର, କ୍ଷେତ୍ର, ଗୃହ, ପାତ୍ର ଆଦିର ପରୀକ୍ଷା ମଧ୍ୟ ଜ୍ଞାନ ପଦବାଚ୍ୟ ନୁହଁ । ଜ୍ୟୋତିଷ, ସମୟ ଜ୍ଞାନ, ତର୍କଶାସ୍ତ୍ର, କଳା କୌଶଳ ଶବ୍ଦବୋଧ, ନଜରବନ୍ଦୀ, ଯାଦୁଗରୀ, ନାନା ଭାଷାରେ ଜ୍ଞାନ ମଧ୍ୟ ଜ୍ଞାନ ନୁହଁ ।

ସ୍ୱର ପରୀକ୍ଷା, ବର୍ଣ୍ଣ ପରୀକ୍ଷା, ଲେଖନ—ପରୀକ୍ଷା, ନାନାମତ ପରୀକ୍ଷା, ଶାସ୍ତ୍ର-ଜ୍ଞାନ ପରୀକ୍ଷା, ବୃତ୍ତି-ପରୀକ୍ଷା, ଆଶୁ-କବିତ୍ୱ, ରୂପ-ରସ-ଗନ୍ଧ ପରୀକ୍ଷା,

ଚତୁର୍ବିଧ ସୃଷ୍ଟିର ପରୀକ୍ଷା, ନାନା ପଦାର୍ଥର ପରୀକ୍ଷା ପ୍ରଭୃତି ମଧ୍ୟ ସଦ୍‌ଜ୍ଞାନ ନୁହଁ । ନୃତ୍ୟ ଗୀତ ଆଦି କଳା, ବାଗ୍‌-ବିଳାସ, ମୋହିନୀ-ଶକ୍ତି, ହାସ୍ୟ-ବିନୋଦ କଳା, ଚିତ୍ର କଳା, ପ୍ରଭୃତି ଚଉଦ ପ୍ରକାରର ବିଦ୍ୟା ଓ ଚଉଷଠି କଳା ଜ୍ଞାନର ଲକ୍ଷଣ ନୁହଁ । ସଫଳ କଳା-ପ୍ରବୀଣ ହେବା କିମ୍ବା ସକଳ ବିଦ୍ୟାରେ ପାରଙ୍ଗମ ହେବା କଳା-କୁଶଳତାର ଲକ୍ଷଣ ହୋଇପାରେ କିନ୍ତୁ ତାକୁ ଜ୍ଞାନ କୁହାଯାଇ ନପରେ । ଏଥିରେ ଜ୍ଞାନର ଭ୍ରାନ୍ତି ଘଟିଥାଏ, କିନ୍ତୁ ତାହା ଯଥାର୍ଥ ଜ୍ଞାନ ନୁହଁ । ଯଦ୍ୱାରା ପ୍ରକୃତି ଏବଂ ଏହାର ସମସ୍ତ କାର୍ଯ୍ୟ ଲୋପ ପାଇଥାଏ ତାହାହିଁ ଯଥାର୍ଥ ଜ୍ଞାନ । ଅନ୍ୟର ମନକଥା ଜାଣି ପାରିବା ମଧ୍ୟ ଆତ୍ମ-ଜ୍ଞାନର ଲକ୍ଷଣ ନୁହଁ । ସଂସାରରେ ଅନେକ ପ୍ରକାରର ଅସାଧାରଣ ବିଦ୍ୟାର ଉପଲବ୍ଧ ହୋଇପାରେ କିନ୍ତୁ ସାଯୁଜ୍ୟ ପ୍ରଦାନ କରିପାରୁଥିବା ମୋକ୍ଷଦାତାଙ୍କ ଜ୍ଞାନ ଏ ସବୁଠାରୁ ପୃଥକ ଏବଂ ସର୍ବୋଚ୍ଚକୋଟିର । ଅଖଣ୍ଡ ଆନନ୍ଦ ଓ ସମାଧାନ ପ୍ରଦାନକାରୀ ଜ୍ଞାନର ଲକ୍ଷଣ ମୁଁ ଆସନ୍ତା ଅଧ୍ୟାୟରେ ବର୍ଣ୍ଣନା କରିବି ।

## ଷଷ୍ଠ ସମାସ
## ।। ଜ୍ଞାନର ଲକ୍ଷଣ ।।

ଏବେ ଶୁଦ୍ଧ-ଜ୍ଞାନର ଲକ୍ଷଣ ଶୁଣନ୍ତୁ । ଶୁଦ୍ଧଜ୍ଞାନର ଅର୍ଥ ହେଉଚି ଆତ୍ମ-ଜ୍ଞାନ । ନିଜେ ନିଜକୁ ଜାଣିବା ହେଉଚି ଶୁଦ୍ଧଜ୍ଞାନ । ଘଟ ଓ ଘଟ ବାସୀ ପରବ୍ରହ୍ମ ପରମାତ୍ମାକୁ ଅନୁଭବ କରିବା ଅର୍ଥାତ୍ ନିତ୍ୟ, ଅନିତ୍ୟର ବିଚାରଦ୍ୱାରା ଅନିତ୍ୟକୁ ତ୍ୟାଗ କରି ନିତ୍ୟ ଶାଶ୍ୱତ ସ୍ୱରୂପକୁ ଚିହ୍ନିବା ହେଉଛି ପ୍ରକୃତ ଜ୍ଞାନ ବା ଶୁଦ୍ଧଜ୍ଞାନ । ଯଦ୍ୱାରା ଦୃଶ୍ୟମାନ ପ୍ରକୃତିର ବିଲୋପ ଘଟେ, ପଞ୍ଚଭୌତିକ ବସ୍ତୁଗୁଡ଼ିକର ସତ୍ତା ରହେନାହିଁ, ଦ୍ୱୈତର ସମ୍ପୂର୍ଣ୍ଣ ବିନାଶ ଘଟେ, ତାହା ହିଁ ପ୍ରକୃତ ଜ୍ଞାନ । ଯେଉଁଠି ମନ ବୁଦ୍ଧିର ପ୍ରବେଶ ନାହିଁ, ଯେଉଠି ତର୍କ କୁଣ୍ଠିତ ହୋଇପଡ଼େ, ଯାହା ପରାବାଣୀର ସୀମାଲଙ୍ଘନ କରିଥାଏ, ତାକୁ ହିଁ କୁହାଯାଏ ଜ୍ଞାନ । ଯେଉଁଠି ଦୃଶ୍ୟବସ୍ତୁର କୌଣସି ମୂଲ୍ୟ ନଥାଏ, ଯେଉଁଠି 'ମୁଁ ବ୍ରହ୍ମସ୍ୱରୂପ' ଏହି ଭାବନାକୁ ମଧ୍ୟ ଅଜ୍ଞାନର ଲକ୍ଷଣ ବୋଲି ଧରାଯାଏ, ସେହି ଶୁଦ୍ଧ ସ୍ୱରୂପ ହିଁ 'ଜ୍ଞାନ' ପଦବାଚ୍ୟ । କେହି କେହି ସର୍ବସାକ୍ଷୀ ଭାବରେ ପରିଗଣିତ ତୁରୀୟ ଅବସ୍ଥାକୁ

ଜ୍ଞାନ କହିଥା'ନ୍ତି । ଦୃଶ୍ୟ ପଦାର୍ଥ ଗୁଡ଼ିକର ଜ୍ଞାନ ହେଉଛି ପଦାର୍ଥ-ବିଜ୍ଞାନ କିନ୍ତୁ ଶୁଦ୍ଧ ସ୍ୱରୂପର ଜ୍ଞାନ ହେଉଛି ପ୍ରକୃତ ଜ୍ଞାନ । ଯେଉଁଠି କୌଣସି ଜିନିଷର ଅସ୍ତିତ୍ୱ ସୁଦ୍ଧା ନାହିଁ ସେଠାରେ 'ସର୍ବ' ଏବଂ 'ସାକ୍ଷୀତ୍ୱ'ର ପ୍ରଶ୍ନ ଉଠିବ କିପରି ? ତେଣୁ ତୁରୀୟା ବସ୍ଥାକୁ ମଧ୍ୟ ଶୁଦ୍ଧଜ୍ଞାନ କୁହାଯାଇ ନପାରେ । ଅର୍ଥାତ୍, ଶୁଦ୍ଧଜ୍ଞାନ 'ସାକ୍ଷୀତ୍ୱ' ଠାରୁ ଭିନ୍ନ । ଶୁଦ୍ଧଜ୍ଞାନ ହେଉଛି ସ୍ୱରୂପର ଜ୍ଞାନ । 'ତତ୍ତ୍ୱମସି' ଏହି ମହାବାକ୍ୟର ଉପଦେଶ ଯଥାର୍ଥ କିନ୍ତୁ ସାଧକ ମଧ୍ୟ ସେ ସମ୍ପର୍କରେ ବିଚାର କରିବା ଉଚିତ । ଏହାକୁ ଜପ କରିବା ଲାଗି କେଉଁଠି ହେଲେ କୁହାଯାଇନାହିଁ । ଏହି ମହାବାକ୍ୟର ଅର୍ଥ ମନେ ରଖିବାଦ୍ୱାରା ଆମେ ନିଜେ ଏକ ପଦାର୍ଥରେ ପରିଣତ ହୋଇପଡୁ । ଅତଏବ ଏହାକୁ ଜପ କରିବା ବୃଥା । ମହାବାକ୍ୟର ବିବରଣ ହିଁ ଜ୍ଞାନ ମୁଖ୍ୟ ଲକ୍ଷଣ । କିନ୍ତୁ ତାହାର ଲକ୍ଷ୍ୟାଂଶକୁ ନିରୀକ୍ଷଣ କଲେ ଆମେ ନିଜେ ପରବ୍ରହ୍ମ ହୋଇଯାଉ । ସ୍ୱରୂପ ଜ୍ଞାନଠାରୁ ଆଉ ଅଧିକ ଶୁଦ୍ଧଜ୍ଞାନ କ'ଣ ଥାଇପାରେ ? ଯେଉଁ ପରବ୍ରହ୍ମ ଅନାଦି ଓ ସ୍ୱୟଂସିଦ୍ଧ ତାହା ଆମେ ନିଜେ । ଏହି ଜ୍ଞାନ ଦୁର୍ଲ୍ଲଭ ।

ଯେଉଁଠାରୁ ଏହି ସମଗ୍ର ସଂସାରର ଉତ୍ପତ୍ତି ଓ ବିଲୟ, ସେହି ଜ୍ଞାନ ହେବା ମାତ୍ରେ ସବୁ ବନ୍ଧନ ତୁଟିଯାଏ । ସବୁ ମତମତାନ୍ତର ହଟିଯାଇ ମନ ନିର୍ବିକାର ହୋଇଉଠେ । ସୂକ୍ଷ୍ମ ଭାବରେ ବିଚାର କଲେ ଜାଣି ପାରିବ ଯେ ସବୁ ମତମତାନ୍ତରରେ ସିଦ୍ଧାନ୍ତଗତ ଐକ୍ୟ ରହିଛି । ଏହି ଚରାଚର ସୃଷ୍ଟିର ମୂଳ ହେଉଛି ବିମଳବ୍ରହ୍ମ । ବେଦାନ୍ତରେ ଏହାକୁ କୁହାଯାଇଛି ଜ୍ଞାନ । ନିଜର ମୂଳସ୍ଥିତିକୁ ଜାଣିବା ମାତ୍ରେ ଅଜ୍ଞାନ ସହଜରେ ଲୋପପାଏ । ଏବଂ ସ୍ୱ-ସ୍ୱରୂପ ବ୍ରହ୍ମଜ୍ଞାନର ଅନୁଭୂତି ହୁଏ । ନିଜେ ନିଜକୁ ସମ୍ପୂର୍ଣ୍ଣ ଭାବରେ ଜାଣିପାରିଲେ ଜଣେ ସହଜରେ ସର୍ବଜ୍ଞ ହୋଇପାରେ । ଏକଦିଗଦର୍ଶିତାର ଭାବ ନଷ୍ଟ ହୋଇଯାଏ । 'ମୁଁ କିଏ'—ଏକଥା ବିଚାର କରୁକରୁ ଏହା ଜଣା ପଡ଼େ ଯେ 'ମୁଁ ହେଉଛି ଦେହାତୀତ ଶୁଦ୍ଧାତ୍ମା ।' ପ୍ରାଚୀନ କାଳରେ ବ୍ୟାସ, ବଶିଷ୍ଠ, ନାରଦ, ଜନକ, ବାମଦେବ, ବାଲ୍ମୀକି, ଅତ୍ରି, ଶୁକ୍ର, ଶୌନକ, ସନକାଦିକ ଆଦିନାଥ, ମଛିନ୍ଦ୍ରନାଥ, ଗୋରକ୍ଷନାଥ ଆଦି ବଡ଼ବଡ଼ ସିଦ୍ଧ ମୁନିଋଷି ଜ୍ଞାନ ଲାଭକରି ଧନ୍ୟ ହୋଇଛନ୍ତି । ବେଦ, ଶାସ୍ତ୍ର, ଗୁରୁବଚନ ଏବଂ ଆତ୍ମାନୁଭବ—ଏସବୁର ମୂଳକଥା ଏହି ଗୋଟିଏ । ସବୁ ସାଧନାର ଫଳ ଏବଂ ଜ୍ଞାନର ଅନ୍ତିମ ସ୍ୱରୂପ ହେଉଛି ଏହି ଆତ୍ମଜ୍ଞାନ । ଏହାକୁ ଲାଭ କରିବା ପରେ ସମସ୍ତ ସନ୍ଦେହର ନିବୃତ୍ତି ଘଟିଥାଏ ।

ମୁଁ ମୋ ଗୁରୁଙ୍କଠାରୁ ଯାହା ଶୁଣିଛି ସେହିକଥା କହିବି । ତାଙ୍କର ସେହିକଥାଗୁଡ଼ିକ ମୋ ମନରେ ଅତ୍ୟନ୍ତ ଶାନ୍ତି ଦେଇଆସିଛି । ମୁଁ ଯେତେବେଳେ ଗୁରୁଦେବଙ୍କ ପାଦପଦ୍ମରେ ନତମସ୍ତକ ହୋଇ ବ୍ରହ୍ମଜ୍ଞାନ ଉପଦେଶ ଦେବାକୁ କହିଥିଲି, ସେତେବେଳେ ସେ ମୋତେ କହିଥିଲେ—ତୁ ନିଜେ ଯେ ବ୍ରହ୍ମସ୍ୱରୂପ ସେଥିରେ ତୋର ତିଳେହେଲେ ସନ୍ଦେହ ନ ରହୁ । ନବଧା ଭକ୍ତି ମଧ୍ୟରୁ ମୁଖ୍ୟ ଭକ୍ତି ହେଉଛି ଆତ୍ମନିବେଦନ । ପଞ୍ଚମହାଭୂତ କଳ୍ପାନ୍ତରେ ନଷ୍ଟ ହୋଇଯାଇଥାଏ । ଏହା ଯାହାଠାରୁ ଉଦ୍ଭବ ସେହି ପ୍ରକୃତି ପୁରୁଷ ମଧ୍ୟ ବ୍ରହ୍ମରେ ଲୀନ ହୋଇଯାଏ । ବିବେକଦ୍ୱାରା ସମଗ୍ର ଦୃଶ୍ୟଜଗତ ଲୋପ ପାଇଯିବା ପରେ 'ଅହଂ' ମଧ୍ୟ ଲୋପ ପାଇଯାଏ । କାରଣ ଅହଂ ମଧ୍ୟ ବ୍ରହ୍ମଠାରୁ ଭିନ୍ନ ନୁହେଁ । ସୃଷ୍ଟି ଅର୍ଥାତ୍ ଦୃଶ୍ୟ ଜଗତ ମିଥ୍ୟା ବୋଲି ସିଦ୍ଧ ହୋଇଯିବା ପରେ ବ୍ରହ୍ମର ଏକରୂପତା ସ୍ୱୟଂସିଦ୍ଧ ପ୍ରତିପାଦିତ ହୁଏ । ପୁଣି ପିଣ୍ଡ ଓ ବ୍ରାହ୍ମଣର ଅସ୍ତିତ୍ୱ ଆଉ ରହିବ କେଉଁଠି ? ଜ୍ଞାନାଗ୍ନିର ଜ୍ୱଳନରେ ଦୃଶ୍ୟବସ୍ତୁ ପୋଡ଼ିଜଳି ଭସ୍ମ ହୋଇଯାଏ । ସେହିଭଳି ବ୍ରହ୍ମ ଓ ପ୍ରକୃତି ମଧ୍ୟରେ କୌଣସି ଭିନ୍ନତା ରହେ ନାହିଁ ।

ଶୁଦ୍ଧ-ସ୍ୱରୂପ ହେଉଛି ଗୁରୁପଦ । ସେଥିରେ ନିଜକୁ ମିଶେଇଦେଇ ନିଜର ପୃଥକ ଅସ୍ତିତ୍ୱକୁ ଭୁଲିଯିବା ଆବଶ୍ୟକ । ସଦ୍‌ଗୁରୁଙ୍କ ଭଜନ ଦ୍ୱାରା ଏହି ଭାବକୁ ଦୃଢ଼ୀଭୂତ କରିବା ହିଁ ଆତ୍ମଜ୍ଞାନ । ତାପରେ ସଂସାର ଓ ସାଂସାରିକ ବନ୍ଧନ ବୋଲି କିଛି ରହେନାହିଁ । ଏହାହିଁ ''ଅହଂ ବ୍ରହ୍ମାସ୍ମି''ର ପ୍ରକୃତ ଉପଲବ୍ଧି ଓ ଅର୍ଥ ।

ସଦ୍‌ଗୁରୁ ମତେ କହିଲେ, 'ମୁଁ ବ୍ରହ୍ମ'— ଏହିକଥା ଅନୁଭବ କରିବା ମାତ୍ରେ ଜୀବନ ସଫଳ ହୋଇଉଠେ ଏବଂ 'ମୁଁ ଦେହ' ଏହି ଭାବ ରହିଥିବା ଯାଏ ମନୁଷ୍ୟର ପତନ ଘଟିବାରେ ଲାଗିଥାଏ । ଯାହାର ଦେହାଭିମାନ ରହିଥାଏ ସେ ଆତ୍ମଘାତୀ । ତାକୁ ବାରମ୍ବାର ଜନ୍ମମରଣ ଭୋଗ କରିବାକୁ ପଡ଼ିଥାଏ । ହେ ଶିଷ୍ୟ ! ତୁମେ ସ୍ଥୂଳ, ସୂକ୍ଷ୍ମ, କାରଣ ଏବଂ ମହାକାରଣ—ଏହି ଚାରି ପ୍ରକାରର ଦେହଠାରୁ ନିଜକୁ ପୃଥକ କରିନିଅ । ଜନ୍ମ କର୍ମଠାରୁ ମଧ୍ୟ ତୁମେ ନିଜକୁ ଅଲିପ୍ତ ରଖ । ମନେରଖ, ତୁମ ଭିତରେ ସ୍ଥିର ଓ ଅସ୍ଥିର ସୃଷ୍ଟିର ଅନ୍ତର୍ବହ୍ନି ଘେରି ରହିଛି, ତେଣୁ କୌଣସି ବନ୍ଧନରେ ପଡ଼ନାହିଁ । କେବଳ ଭ୍ରାନ୍ତି ଯୋଗୁ ଜୀବ ନିଜକୁ ଆବଦ୍ଧ

କରି ରଖିଥାଏ । ତୁମେ ଏକାନ୍ତ ଭାବରେ ବସି ସ୍ୱ-ସ୍ୱରୂପକୁ ଧ୍ୟାନ କର, ତାହାହେଲେ ତୁମର ପରମାର୍ଥମାର୍ଗ ସୁଦୃଢ଼ ହେବ । ଅଖଣ୍ଡ ଶ୍ରବଣ ଓ ମନନ ଦ୍ୱାରା ମନର ସମସ୍ତ ପ୍ରଶ୍ନର ସମାଧାନ ହୋଇଥାଏ । ପୂର୍ଣ୍ଣ ବ୍ରହ୍ମଜ୍ଞାନ ପ୍ରାପ୍ତି ଘଟିବା ପରେ ତୁମେ ନ ଚାହିଁଲେ ମଧ୍ୟ ବୈରାଗ୍ୟ ଆପେ ଆପେ ଚାଲିଆସେ । "ମୁଁ ତ ବର୍ତ୍ତମାନ ମୁକ୍ତ"– ଏକଥାକୁ ମାନିନେଇ ଯଦି ଇନ୍ଦ୍ରିୟଗୁଡ଼ିକୁ ସ୍ୱଚ୍ଛନ୍ଦ ଓ ସ୍ୱାଧୀନ ଭାବରେ କାର୍ଯ୍ୟ କରିବା ଲାଗି ଛାଡ଼ିଦିଅ ତେବେ ତୁମେ ଛଟପଟ ହେବା ହିଁ ସାର ହେବ । ସାମାନ୍ୟ ବିଷୟରେ ଜଡ଼ିତ ରହିଲେ ଆତ୍ମସମାଧାନ ହେବନାହିଁ । ତୁମେ ଯେଉଁ ବସ୍ତୁକୁ ଧ୍ୟାନ କରିବ ତାହା ନିଶ୍ଚୟ ମିଳିବ—ଏହା ହେଉଛି ଅଟଳ ନିୟମ । ତେଣୁ ଅବିଦ୍ୟାକୁ ଛାଡ଼ି ବ୍ରହ୍ମବିଦ୍ୟାକୁ ଧରିବ ନାହିଁ କାହିଁକି ? ସନ୍ନିପାତ ଜ୍ୱରରେ ପୀଡ଼ିତ ହୋଇ ମନୁଷ୍ୟ ଅନେକ ଭୟାନକ ଦୃଶ୍ୟ ଦେଖେ । ସେଥିରେ ସେ ବିଚଳିତ ହୋଇପଡ଼େ କିନ୍ତୁ ଔଷଧ ସେବନ କରିବାପରେ ତାକୁ ଶାନ୍ତି ମିଳେ । ସେହିଭଳି ଅଜ୍ଞାନଜ୍ୱର ଯୋଗୁ ଏହି ମିଥ୍ୟା ସୃଷ୍ଟି ସତ୍ୟ ଭଳି ମନେହୁଏ । ଜ୍ଞାନରୂପକ ଔଷଧ ପ୍ରୟୋଗ ମାତ୍ରେ ସେହି ମିଥ୍ୟାସୃଷ୍ଟିର ଦୃଶ୍ୟ ଆଉ ଦେଖାଯାଏ ନାହିଁ ।

ମିଥ୍ୟା-ସ୍ୱପ୍ନରୁ ଜାଗ୍ରତ ହୋଇ ମନୁଷ୍ୟ ଯେପରି ନିର୍ଭୟ ହୋଇ ଉଠେ ସେହିଭଳି ଜ୍ଞାନ-ଦୃଷ୍ଟିରେ ମିଥ୍ୟାସୃଷ୍ଟିକୁ ଦେଖିବା ପରେ ଏହାର ବ୍ୟର୍ଥତା ଓ ଅସତ୍ୟତା ଉପଲବ୍ଧି କରି ମନୁଷ୍ୟ ନିର୍ଭୀକ ହୋଇ ଉଠେ । ତେଣୁ ଆମ୍ଭେମାନେ ଅବିଦ୍ୟା ଅର୍ଥାତ୍ ଅଜ୍ଞାନ ରୂପକ ନିଦ୍ରାରୁ ଶ୍ରବଣ, ମନନ ଓ ଚିନ୍ତନ ଆଦି ଦ୍ୱାରା ଜାଗ୍ରତ ହୋଇ ଜ୍ଞାନଲୋକ ଗ୍ରହଣ କରିବା ଉଚିତ । ଏବେ ଜାଗୃତିର ଲକ୍ଷଣ କ'ଣ ଶୁଣ ।

ଯିଏ ଜାଗ୍ରତ ପୁରୁଷ, ତାର ଚିତ୍ତ ସର୍ବଦା ବିଷୟ ପ୍ରତି ବିତସ୍ପୃହ । ଯାହାର ବୈରାଗ୍ୟଭାବ ଆସି ନ ପାରୁଛି ସେ ଅହଂକାରକୁ ଛାଡ଼ି ସାଧନମାର୍ଗରେ ଲାଗିଯିବା ଉଚିତ । ଯିଏ ବୈରାଗ୍ୟ ଚାହୁଁନି କିମ୍ବା ସାଧନମାର୍ଗକୁ ଗ୍ରହଣ କରିବାକୁ ଚାହୁଁନି ତଥାପି ନିଜକୁ ସିଦ୍ଧ ବୋଲି ଭାବୁଛି, ସେ ହେଉଛି ଚରମ ଆତ୍ମଘାତୀ । ଯିଏ ସିଦ୍ଧ ରୂପରେ ଆବଦ୍ଧ ତାହାଠାରୁ ବରଂ ମୁମୁକ୍ଷୁ ସାଧକ-ଭକ୍ତ ଶ୍ରେଷ୍ଠ । ଏହିଭଳି ଭକ୍ତ ଜ୍ଞାନର ଅଧିକାରୀ । ବଦ୍ଧ କିଏ, ମୁମୁକ୍ଷୁ କିଏ, ସାଧକ କିଏ, ଏବଂ ସିଦ୍ଧ କିଏ ମୁଁ ପୃଥକ୍ ପୃଥକ୍ ଭାବରେ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରିବି ।

## ସପ୍ତମ ସମାସ
## ।। ବଦ୍ଧ କିଏ ? ।।

ଏହି ସୃଷ୍ଟିରେ ଜୀବ ସଂଖ୍ୟା ଅଗଣିତ । ଏମାନେ ଚାରି ଶ୍ରେଣୀର ଯଥା— ବଦ୍ଧ, ମୁମୁକ୍ଷୁ, ସାଧକ ଓ ସିଦ୍ଧ । ପ୍ରଥମେ ଶୁଣନ୍ତୁ ବଦ୍ଧର ଲକ୍ଷଣ । ଅନ୍ଧବ୍ୟକ୍ତି ଅନ୍ଧାରରେ ଚାଲିବାବେଳେ ସବୁଦିଗ ଯେପରି ଶୂନ୍ୟ ଦେଖାଯାଏ, ବଦ୍ଧବ୍ୟକ୍ତିର ଅବସ୍ଥା ଠିକ୍ ସେହିଭଳି । ଏହି ବ୍ୟକ୍ତି ଭକ୍ତ, ଜ୍ଞାନୀ, ତପସ୍ୱୀ, ଯୋଗୀ, ବିରାଗୀ ଓ ସନ୍ନ୍ୟାସୀମାନଙ୍କୁ ଦେଖିପାରେ ନାହିଁ । ସେ କର୍ମ- ଅକର୍ମ କ'ଣ ଜାଣି ପାରେନାହିଁ । ସୁଗମ ପରମାର୍ଥ-ମାର୍ଗକୁ ମଧ୍ୟ ସେ ଦେଖିପାରେ ନାହିଁ । ସତ୍‌ସଙ୍ଗ, ସତ୍‌ଶାସ୍ତ୍ର, ସଜ୍ଜନ ଓ ସନ୍ମାର୍ଗ ପ୍ରଭୃତି ତାର ଦୃଷ୍ଟି ଗୋଚର ହୁଏ ନାହିଁ । ବଦ୍ଧବ୍ୟକ୍ତିର ସାର-ଅସାରର ବିଚାର, ସ୍ୱଧର୍ମର ଆଚାର, ଦାନପୁଣ୍ୟ, ପରୋପକାରର ଜ୍ଞାନ ହୁଏ ନାହିଁ । ତାର ମନରେ କୌଣସି ଜୀବପ୍ରତି ଦୟା ହୁଏ ନାହିଁ । ଅନ୍ୟକୁ ସୁଖୀ କରିବା ଲାଗି କିପରି ମଧୁରକଥା କୁହାଯାଏ ସେ କଥା ବି ସେ ଜାଣେନା । ତାଠି ଜ୍ଞାନ କିମ୍ବା ଭକ୍ତିଭାବର ଚିହ୍ନସୁଦ୍ଧା ନ ଥାଏ । ତାଠାରେ ବୈରାଗ୍ୟ, ଧ୍ୟାନ, ମୋକ୍ଷ ଏବଂ ଏହାର ସାଧନ ଆଦିର ଅଭାବ ପରିଲକ୍ଷିତ ହୋଇଥାଏ । ତା ମନରେ ଈଶ୍ୱରଚିନ୍ତା ବିଲକୁଲ ନ ଥାଏ । ଈଶ୍ୱର-କଳ୍ପନା ତ ଦୂରର କଥା । ସାଧୁସନ୍ଥମାନଙ୍କ ବିବେକ, ମାୟାର ଖେଳ, ପରମାର୍ଥର ମହିମା ଆଦି କୌଣସି କଥା ଶୁଣିବାକୁ ସେ ଭଲପାଏନା । ଯିଏ ଅଧ୍ୟାତ୍ମ-ନିରୂପଣ ସମ୍ପର୍କରେ କେବେ କିଛି ଶୁଣିନଥାଏ, ଯିଏ ନିଜକୁ ନିଜେ ଚିହ୍ନିନଥାଏ, ଜୀବର ଆଦି ଅନ୍ତ ସମ୍ପର୍କରେ ଯାହାର ଜ୍ଞାନ ନ ଥାଏ ସେ ହେଉଛି ବଦ୍ଧ-ଜୀବ । ବଦ୍ଧବ୍ୟକ୍ତି ତତ୍ତ୍ୱ-କଥା, ସାଂସାରିକ ବନ୍ଧନ, ମୁକ୍ତିର ଅର୍ଥ କିମ୍ବା ବ୍ରହ୍ମ ସମ୍ପର୍କରେ କିଛି ହେଲେ ଜାଣିନଥାଏ ।

ସେ ଶାସ୍ତ୍ରର ଅର୍ଥ କିଛି ବୁଝିପାରେନାହିଁ । ପ୍ରକୃତରେ ଯଦ୍ୱାରା ତାର ନିଜର ମଙ୍ଗଳ ହେବ ସେକଥା ସେ ଭାବିପାରେ ନାହିଁ । ବଦ୍ଧବ୍ୟକ୍ତିର ମୁଖ୍ୟଲକ୍ଷଣ ହେଉଚି, ନିଜର ଆତ୍ମା ସମ୍ପର୍କରେ ତାର ଜ୍ଞାନ ନଥାଏ । ତୀର୍ଥ, ଦାନ, ବ୍ରତ ଆଦି ଉପରେ ତାର ବିଶ୍ୱାସ ନଥାଏ । ତାଠାରେ ଦୟା, କରୁଣା, ମୈତ୍ରୀ, କ୍ଷମା, ଶାନ୍ତି ଆଦି ଗୁଣ ନ ଥାଏ । ସେ ନାନା କୁଲକ୍ଷଣ ଓ ଦୁର୍ଗୁଣ ଦ୍ୱାରା ଆବଦ୍ଧ ରହିଥାଏ ।

ନାନା ଦୁଷ୍କର୍ମ କରିବାରେ ସେ ଆନନ୍ଦ ଲାଭ କରିଥାଏ । ତାଠାରେ କାମ, କ୍ରୋଧ, ଲୋଭ, ମଦ, ଦର୍ପ ଆଦି ଭର୍ତ୍ତି ହୋଇଥାଏ । ସେ ସ୍ୱଭାବତଃ କଠୋର, ଭ୍ରଷ୍ଟ, ଅନାଚାରୀ, ସ୍ୱାର୍ଥପର, କୁଟିଳ, ମୂର୍ଖ, ବାଚାଳ, ପାଷାଣ୍ଡ ଓ କୃପଣ । ସାଂସାରିକ ପ୍ରପଞ୍ଚକୁ ଆଦର ଓ ପରମାର୍ଥକୁ ଅନାଦର କରୁଥିବା ଏହି ମୂଢ଼ବ୍ୟକ୍ତି ଦେହ-ବୁଦ୍ଧିରେ ସର୍ବଦା ଆବଦ୍ଧ ରହିଥାଏ । ତାର ମନ ଲାଖି ରହିଥାଏ କାମିନୀ ଓ କାଞ୍ଚନ ପ୍ରତି । ସାଂସାରିକ କଥା ବ୍ୟତୀତ ତାକୁ ଅନ୍ୟକିଛି ଭଲ ଲାଗେ ନାହିଁ । ଯେଉଁଠି ଏହିକଥା ପଡ଼ିଥାଏ, ସେଇଠି ସେ କାନଡ଼େରି ରହିଥାଏ । ସେ ଅନେକ ପ୍ରକାରର ଚିନ୍ତା, ବାସନା, ଉଦ୍‌ବେଗ ଓ ଦୁଃଖରେ ବୁଡ଼ି ରହିଥାଏ । ଭୁଲରେ ସୁଦ୍ଧା ପରମାର୍ଥ ପ୍ରତି ମନଦିଏ ନାହିଁ । ଦ୍ରବ୍ୟ-ଦାରା ଓ ପଇସାକୁ ସେ ସର୍ବସ୍ୱ ମନେକରେ ଏବଂ ସେଥିଲାଗି ସେ ତୀର୍ଥ-ଯାତ୍ରା, ଦାନପୁଣ୍ୟ, ଭକ୍ତିକଥା, ମନ୍ତ୍ର, ପୂଜା, ଜପ, ଧ୍ୟାନ ଆଦି ସବୁକିଛି କରିଥାଏ । ଶୟନ-ଜାଗରଣ ସବୁ ସମୟରେ ସେ ସେହି କଥା ହିଁ ଚିନ୍ତା କରିଥାଏ । ତେଣୁ ଅନ୍ୟ ସାଧନମାର୍ଗ ଲାଗି ତାର ଆଉ ସମୟ କାହିଁ ?

କିନ୍ତୁ ସଦ୍‌ଗୁରୁଙ୍କ କୃପାହେଲେ ବଦ୍ଧବ୍ୟକ୍ତିର ସମସ୍ତ ଅଶୁଭଲକ୍ଷଣର ପରିବର୍ତ୍ତନ ଘଟିପାରେ ଏବଂ ସେ ମୁମୁକ୍ଷୁ ହୋଇଯାଇ ପାରେ । ମୁଁ ପରବର୍ତ୍ତୀ ପରିଚ୍ଛେଦରେ ମୁମୁକ୍ଷୁର ଲକ୍ଷଣ କହିବି । ଯିଏ ଅଧ୍ୟାତ୍ମ-ମାର୍ଗ ପ୍ରତି ଆଗ୍ରହୀ ଏବଂ ବୈରାଗ୍ୟ ଦ୍ୱାରା ଅଭିଭୂତ, ସେ ହେଉଛି ମୁମୁକ୍ଷୁ । ମୁମୁକ୍ଷୁ ଆତ୍ମତତ୍ତ୍ୱ ଏବଂ ବ୍ରହ୍ମ-ଜ୍ଞାନର ଅଧିକାରୀ ହୋଇପାରେ । ସେହି ବ୍ୟକ୍ତିର ଲକ୍ଷଣ ମନଦେଇ ଶୁଣ ।

## ଅଷ୍ଟମ ସମାସ
## ।। ମୁମୁକ୍ଷୁ କିଏ ? ।।

ଅଭିମାନ ବଢ଼ିବା ସଙ୍ଗେ ସଙ୍ଗେ ମନୁଷ୍ୟଠାରେ ବହୁ ହୀନ ଲକ୍ଷଣ ଦେଖାଇଦେଇଥାଏ । ଏଭଳି ବ୍ୟକ୍ତିର ମୁହଁ ସୁଦ୍ଧା ଚାହିଁବା ଦୋଷ । ଏହି ହୀନ ବ୍ୟକ୍ତି ବହୁ ମୂର୍ଖତାପୂର୍ଣ୍ଣ କାର୍ଯ୍ୟ କରିବାପରେ ଅନୁତାପାନଳରେ ଦଗ୍ଧ ହୋଇ-ପଡ଼େ । ସାଂସାରିକ ସନ୍ତାପରେ ପୀଡ଼ିତ ହୋଇ କ୍ରମଶଃ ଅଧ୍ୟାତ୍ମକଥା ଶୁଣିବାଲାଗି ଆଗ୍ରହୀ ହୁଏ । ତା ମନ ବିଷୟବାସନାରୁ କ୍ରମଶଃ ହଟିଯାଏ । ସେ ମନକୁ ମନ କହିହୁଏ, "ମୋର ଘରସଂସାର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଗଲାଣି ।" ସେ ଭାବେ

ମୁଁ ଚାଲିଯିବା ପରେ ତ ଘରର ଜିନିଷପତ୍ର ସିମିତି ପଡ଼ି ରହିବ, ମୋର ସମସ୍ତ ପରିଶ୍ରମ ବ୍ୟର୍ଥ ହୋଇଯିବ । ତେଣୁ ଜୀବନର ଆଉ ଯେତିକି ସମୟ ବାକି ଅଛି, ତାକୁ ସାର୍ଥକ କରିବାକୁ ପଡ଼ିବ । ଏହି ଭାବନା ଆସିବା ମାତ୍ରେ ମନରେ ବହୁ ଗ୍ଲାନି ସୃଷ୍ଟି ହୁଏ, ଅତୀତର ସମସ୍ତ ଦୁଷ୍କର୍ମ ଗୋଟି ଗୋଟି ହୋଇ ମନେ ପଡ଼େ । ମଲେ ଯମ-ଯାତନା ଭୋଗ କରିବାକୁ ପଡ଼ିବ—ଏକଥା ଭାବିବା ମାତ୍ରେ ସେ ଭୀଷଣ ଭୟଭୀତ ହୁଏ ଏବଂ ନିଜ ପାପ କଥା ମନେ ପକାଏ । ପୁଣ୍ୟକର୍ମତ କିଛି କରିନି, ଭବସାଗରକୁ ପାରି ହେବି କିପରି—ଏହି ଚିନ୍ତା ହିଁ ତାକୁ ମାଡ଼ି ବସେ । ଥରକୁଥର ସେ ଭାବିବାକୁ ଲାଗେ— ଜୀବନସାରା ତ ସାଧୁସନ୍ଥମାନଙ୍କର କେବଳ ନିନ୍ଦା ହିଁ କରି ଆସିଚି; ଅତିଥି ଅଭ୍ୟାଗତମାନଙ୍କୁ ଦିନେହେଲେ ସନ୍ତୁଷ୍ଟ କରି ପାରିନି; ସର୍ବଦା କାମ, କ୍ରୋଧ, ମଦ, ମତ୍ସରରେ ବୁଡ଼ି ରହିଛି; ପରୋପକାର ଆଦୌ କରିନି; ଭାଗବାନଙ୍କ ପୂଜା ଭଜନ କରି ନାହିଁ; ନିରର୍ଥକ ଭାବେ ପାପକର୍ମରେ ହିଁ ଲିପ୍ତ ରହି ଆସିଚି; ଏବେ ଭଗବାନଙ୍କ କୃପାଲାଭ ଲାଗି ଉପାୟ କ'ଣ ? ଏ ପର୍ଯ୍ୟନ୍ତ ମୁଁ ଯେତେ ଦେବତାଙ୍କ ପୂଜା କରି ଆସିଚି, ସେ କେବଳ ଲୋକାଚାର ଦୃଷ୍ଟିରୁ । କେବଳ ଉଦରପୋଷଣ ଲାଗି ମୁଁ ଭଗବାନଙ୍କ ନାମକୁ ବ୍ୟବହାର୍ କରି ଆସିଛି । ମନରେ ଅହଂକାର ପୋଷଣ କରି ଅନ୍ୟମାନଙ୍କୁ ନିରହଙ୍କାରୀ ବୋଲି ଦେଖେଇ ହୋଇ ଆସିଛି । ଧ୍ୟାନଧାରଣାର ଛଳନା ଯାହାବି କରିଛି, ସେସବୁ ଧନଉପାର୍ଜନ ଉଦ୍ଦେଶ୍ୟରେ । ଛଳ, କପଟ କରି ଅନେକ ଲୋକକୁ ଠକିଛି । ପେଟ-ପାଟଣା ଖାତିରରେ ସାଧୁସନ୍ଥମାନଙ୍କୁ ଉପହାସ କରିଛି । ସତ୍ୟକୁ ବେଖାତିର କରି ଅସତ୍ୟର ପ୍ରତିପାଦନ କରି ଆସିଛି ।

ଏହିସବୁ କଥା ମନେ ପକାଇ ବଦ୍ଧବ୍ୟକ୍ତି ପୂର୍ବ ପାପକର୍ମ ଲାଗି ଅନୁତାପ କରେ । କ୍ରମଶଃ ସତ୍‌ସଙ୍ଗ ଓ ଶାସ୍ତ୍ର ପୁରାଣ ଆଦି ଶ୍ରବଣ-ମନନ କରିବାରେ ଲାଗେ । ଫଳରେ ତା ବିଚାରଧାରା ଶୁଦ୍ଧ ହୋଇ ମନରେ ବୈରାଗ୍ୟ ଜାତହୁଏ । ଏହି ବ୍ୟକ୍ତିଙ୍କୁ ହିଁ ମୁମୁକ୍ଷୁ କୁହାଯାଏ ।

ସଂସାର-କାର୍ଯ୍ୟପ୍ରତି ଯାହାର ମନ ବିରାଗୀ ହୋଇ ଉଠେ ଏବଂ ଯାହା ମନରେ ସତ୍‌ସଙ୍ଗ ଓ ପୁଣ୍ୟମାର୍ଗପ୍ରତି ଇଚ୍ଛା ଜାଗ୍ରତ ହୁଏ—ସେହି ବ୍ୟକ୍ତି ହିଁ ମୁମୁକ୍ଷୁ । ମନରୁ ଯାହାର ସମସ୍ତ ଦୁର୍ଗୁଣ ଲୋପପାଇ ଆସିଥାଏ, ଏବଂ ବୈରାଗ୍ୟ ଯୋଗୁଁ

ଯିଏ ପୂର୍ବ ଦୁଷ୍କୃତିକୁ ନିଜେ ନିନ୍ଦା କରେ—ସେହି ବ୍ୟକ୍ତି ମୁମୁକ୍ଷୁ ଶ୍ରେଣୀଭୁକ୍ତ । ଯିଏ ସତ୍‌ସଙ୍ଗ, ସତ୍‌ମାର୍ଗ ଏବଂ ଜନ୍ମ ସାର୍ଥକ କରିବାଲାଗି ତୀର୍ଥଯାତ୍ରା କରେ; ଶମ, ଦମ ସାଧନାକୁ ଗ୍ରହଣ କରେ; ପରମାର୍ଥ ଗ୍ରନ୍ଥାଦି ଅଧ୍ୟୟନ କରେ; କେବଳ ଭଗବତ୍ ଚିନ୍ତାରେ ସମୟର ସଦୁପଯୋଗ କରେ ଏବଂ ଏସବୁ କରିବା ସଙ୍ଗେ ସଙ୍ଗେ ପୂର୍ଣ୍ଣଜ୍ଞାନ ଲାଗି ସାଧୁସନ୍ଥଙ୍କ ଶରଣ ନିଏ, ସେ ବ୍ୟକ୍ତିକୁ ମୁମୁକ୍ଷୁ କୁହାଯିବ । ନିଜର ଦେହ, କୁଳ, ଧନ, ମାନ, ପ୍ରତିଷ୍ଠା ଆଦିକୁ ଛାଡ଼ି ଯିଏ ଅନନ୍ୟ ଭାବରେ ସନ୍ଥମାନଙ୍କ ଶରଣାଗତ ହୁଏ ସେ ହେଉଚି ମୁମୁକ୍ଷୁ ।

ସାରାଂଶ ହେଉଚି—ସାଂସାରିକ ଜଞ୍ଜାଳ ଏବଂ ଗୃହସ୍ଥିର ସ୍ୱାର୍ଥଭାବ ତ୍ୟାଗ କରି ଯିଏ ପରମାର୍ଥ ପ୍ରାପ୍ତିକୁ ନିଜର ପରମଲକ୍ଷ୍ୟ ମନେକରେ ଏବଂ କେବଳ ସତ୍‌ସଙ୍ଗରେ ପ୍ରବୃତ୍ତ ରହେ, ତାକୁ ହିଁ ମୁମୁକ୍ଷୁ କୁହାଯିବା ଉଚିତ ।

## ନବମ ସମାସ
## ।। ଉପାସକ-ଲକ୍ଷଣ ।।

ପୂର୍ବ ଅଧ୍ୟାୟରେ ମୁଁ ସଂକ୍ଷେପରେ ମୁମୁକ୍ଷୁର ଲକ୍ଷଣ କହିଛି । ଏବେ ଉପାସକ ତଥା ସାଧକର ଲକ୍ଷଣ ମନଦେଇ ଶୁଣନ୍ତୁ । ଯିଏ ଦୁର୍ଗୁଣକୁ ତ୍ୟାଗ କରି ସତ୍‌ସଙ୍ଗ କରିବାରେ ଲାଗିଥାଏ, ଯିଏ ସାଧୁସନ୍ଥଙ୍କ ଶରଣ ନେଇଥାଏ ଏବଂ ଯାହାକୁ ସାଧୁସନ୍ଥମାନେ ଆଶ୍ୱାସନା ଦେଇଥା'ନ୍ତି, ସିଏ ହେଉଛି ଉପାସକ ତଥା ସାଧକ । ସେ ସନ୍ଥ ସଦ୍‌ଗୁରୁମାନଙ୍କ ଉପଦେଶ ଦ୍ୱାରା ଆତ୍ମଜ୍ଞାନ ଲାଭକରି ସାଂସାରିକ ବନ୍ଧନରୁ ମୁକ୍ତ ହୋଇଥାଏ ଏବଂ ଦୃଢ଼ଭାବରେ ସାଧନ ମାର୍ଗରେ ଚାଲିଥାଏ । ଯିଏ ଆଧ୍ୟାତ୍ମ-ଚର୍ଚ୍ଚାକୁ ଭଲପାଏ, ଯାହାର ଅଦ୍ୱୈତ-ନିରୂପଣ ପ୍ରତି ମନ ବଳେ ଏବଂ ଏହାର ତଥ୍ୟକୁ ଜାଣିବା ଲାଗି ଉଦ୍ୟମ କରେ; ସେ ହେଉଛି ସାଧକ । ଏଭଳି ସାଧକ ନିଜର ସନ୍ଦେହ ଦୂର ଲାଗି ସତ୍‌ସଙ୍ଗ କରିଥାଏ । ସେ ନିଜକୁ, ଶାସ୍ତ୍ରବଚନକୁ ଏବଂ ଗୁରୁଙ୍କ ଅନୁଭୂତିକୁ ସମାନଭାବରେ ଦେଖିବା ଲାଗି ଚେଷ୍ଟା କରିଥାଏ । ସେ ନିଜ ବିବେକ ଦ୍ୱାରା ଦେହବୁଦ୍ଧିକୁ ନିୟନ୍ତ୍ରଣ କରି ଆତ୍ମବୁଦ୍ଧିକୁ ଦୃଢ଼ କରିଥାଏ । ସେ ଦୃଶ୍ୟମାନ ସଂସାର, ପ୍ରକୃତି ଏବଂ ମାୟାର ବିଚାର ତ୍ୟାଗକରି ଆତ୍ମଜ୍ଞାନରେ ପ୍ରବୃତ୍ତ ହୋଇଥାଏ ଏବଂ ଏଥିରେ ନିମଜ୍ଜିତ

ରହି ସୁଚିନ୍ତିତ ଭାବରେ ନିଜକୁ ସନ୍ତୁଷ୍ଟ କରିଥାଏ । ଏଭଳି ସାଧକ ଦ୍ୱୈତବୁଦ୍ଧିକୁ ତ୍ୟାଗ କରି ଅଦ୍ୱୈତ ସାଧନାରେ ଲିପ୍ତ ରହିଥାଏ । ଆତ୍ମଜ୍ଞାନ ହିଁ ତାର ଏକମାତ୍ର ସମ୍ବଳ । ଏହି ସମ୍ବଳ ଯାହାର ଥାଏ, ସେ ବିବେକ ସାହାଯ୍ୟରେ ଭବସାଗରକୁ ସହଜରେ ପାର ହୋଇପାରେ । ସେ ସନ୍ଥ ମହାତ୍ମାମାନଙ୍କର ସୁଲକ୍ଷଣଗୁଡ଼ିକ ଧାରଣ କରି ପରମବ୍ରହ୍ମ-ସ୍ୱରୂପ ଲାଭ ଲାଗି ଅହର୍ନିଶ ପ୍ରଯତ୍ନଶୀଳ ହୋଇଥାଏ । ସେ ଅସତକର୍ମକୁ ଛାଡ଼ି ସତ୍‌କର୍ମରେ ପ୍ରବୃତ୍ତ ରହିଥାଏ ଏବଂ ନିଜର ସ୍ୱରୂପସ୍ଥିତି ଅର୍ଥାତ୍ ଆତ୍ମଜ୍ଞାନକୁ ଦୃଢ଼ୀଭୂତ କରିଥାଏ । ସେ ଗୋଟିକ ପରେ ଗୋଟିଏ କ୍ରମଶଃ ଦୁର୍ଗୁଣକୁ ତ୍ୟାଗକରି ନିଜ ଅନ୍ତରଭିତରେ ସଦ୍‌ଗୁଣର ବିକାଶ ଘଟାଇଥାଏ, ଏବଂ ଆତ୍ମ ସ୍ୱରୂପରେ ସର୍ବଦା ରମଣ କରିଥାଏ । ସେ ଦୃଶ୍ୟଜଗତ ଅର୍ଥାତ୍ ମାୟାକୁ ଦେଖୁଥିଲେ ମଧ୍ୟ ନିଜର ଦୃଢ଼ସଂକଳ୍ପ ବଳରେ ଏହାଠାରୁ ଦୂରେଇ ରହିଥାଏ; ସବୁ କ୍ଷେତ୍ରରେ, ସବୁକର୍ମରେ କେବଳ ଈଶ୍ୱରଙ୍କୁ ଦେଖିବା ଲାଗି ସେ ଯତ୍ନବାନ ହୋଇଥାଏ ।

ସେ ଶରୀରକୁ ଉପେକ୍ଷା କରି ହୃଦୟ ଭିତରେ ଆତ୍ମସ୍ଥିତିକୁ ଚିନ୍ତନ କରିଥାଏ । ଯେଉଁ ଦୁର୍ଲ୍ଲଭ ତଥା ଅଲଭ୍ୟ ଆତ୍ମବସ୍ତୁ ସର୍ବସାଧାରଣଙ୍କ ପକ୍ଷରେ ଅପରିଚିତ ଏବଂ କଳ୍ପନାତୀତ, ସେ ସେହି ଆତ୍ମବସ୍ତୁକୁ ମନରେ ଧାରଣ କରିଥାଏ । ଯେଉଁ ବସ୍ତୁ ଅନିର୍ବଚନୀୟ ଏବଂ ଅଲଭ୍ୟ ତାକୁ ସାଧକ ନିଜ ସାଧନା ଦ୍ୱାରା ଲାଭ କରିପାରେ । ଯେଉଁ ବସ୍ତୁକୁ ସାଧନା ଦ୍ୱାରା ଲାଭ କରିହୁଏ ନାହିଁ ଏବଂ ଯାହା ସ୍ପଷ୍ଟ ଦୃଷ୍ଟିଗୋଚର ବି ନୁହେଁ, ତାକୁ ସାଧକ ନିଜ ଅନ୍ତର ଦ୍ୱାରା ଅନୁଭବ କରିଥାଏ । ଯେଉଁଠି ମନ ମଧ୍ୟ ପହଞ୍ଚି ପାରେ ନାହିଁ, ଯେଉଁଠି ତର୍କବିତର୍କ ମଧ୍ୟ ପଙ୍ଗୁ ହୋଇଯାଏ; ଏଭଳି ଅଚିନ୍ତ୍ୟ ଆତ୍ମସ୍ଥିତିକୁ ପ୍ରକୃତ ସାଧକ ହିଁ ଅନୁଭବ କରିପାରେ । ସ୍ୱାନୁଭବ ଦ୍ୱାରା ସେ କେବଳ ଯେ ଏହି ଅନିର୍ବଚନୀୟ ବସ୍ତୁକୁ ଜାଣିପାରେ ତାହା ନୁହେଁ, ସେ ସ୍ୱୟଂ ସେହି ଆତ୍ମବସ୍ତୁ ହୋଇଯାଏ । ସେ ନିଜେ ନିଜ ଭିତରେ ଯୋଗୀଜନମାନଙ୍କର ସମସ୍ତ ଲକ୍ଷଣକୁ ପ୍ରତିଷ୍ଠିତ କରିପାରେ ଏବଂ ସାଂସାରିକ ମାୟା ବନ୍ଧନରେ ଲିପ୍ତ ନ ରହି ନିଜ ଉଦ୍ଦେଶ୍ୟ ସିଦ୍ଧିରେ ସଫଳ ହୋଇଥାଏ । ସାଧକମାତ୍ରେ ସାଂସାରିକ ପଦପଦବୀରୁ ଦୂରରେ ରହି ଅସାଧ୍ୟବସ୍ତୁକୁ ମଧ୍ୟ ସାଧନା ଦ୍ୱାରା ସାଧ୍ୟ କରିପାରେ ଏବଂ ସ୍ୱ-ସ୍ୱରୂପରେ ସ୍ଥିର ରହେ । ନିତ୍ୟ ଓ ଅନିତ୍ୟ ଏହାର ପାର୍ଥକ୍ୟକୁ ଜାଣିବା ଶକ୍ତିର ନାମ ବିବେକ ।

ଏହି ବିବେକ ଦ୍ୱାରା ସେ ଦେହ ଆଦି ଅନିତ୍ୟ ବସ୍ତୁକୁ ତ୍ୟାଗ କରି ନିତ୍ୟ ସ୍ୱରୂପ ପରମବ୍ରହ୍ମରେ ଲୀନ ହୁଏ । ସ୍ଥୂଳଦେହଧାରୀ ସର୍ବସାଧାରଣ ଲୋକ ଏଭଳି ସାଧକକୁ ଅତି ସାମାନ୍ୟ ମନେ କଲେ ମଧ୍ୟ ବାସ୍ତବରେ ସେ ହେଉଛି ଆତ୍ମଜ୍ଞାନୀ । ଏହିଭଳି ସାଧକ ଆତ୍ମଜ୍ଞାନୀର ସ୍ୱରୂପକୁ ଅନ୍ୟକେହି କଳ୍ପନା ସୁଦ୍ଧା କରି ନ ପାରେ ।

ଏହିଭଳି ସାଧକ ଅହଂକାରକୁ ତ୍ୟାଗ କରି ସ୍ୱୟଂ ନିଜେ ନିଜକୁ ତୁରୀୟାବସ୍ଥାର ସେପଟେ ତନ୍ମୟାବସ୍ଥାରେ ନିଜକୁ ରଖି ଅଖଣ୍ଡ ଆନନ୍ଦ ଉପଭୋଗ କରିଥାଏ । ସେ ଦ୍ୱୈତଭାବଠାରୁ ସମ୍ବନ୍ଧ ଛିନ୍ନ କରି ଏହି ଦେହରେ ବିଦେହ ସ୍ଥିତିକୁ ଅନୁଭବ କରିଥାଏ । ସେ ସମସ୍ତ ପ୍ରକାର ସନ୍ଦେହରୁ ମୁକ୍ତ ହୋଇ ଅଖଣ୍ଡ ସ୍ୱରୂପରେ ନିମଗ୍ନ ହୋଇଥାଏ । ତାକୁ ପଞ୍ଚମହାଭୂତର ବିସ୍ତାର ସ୍ୱପ୍ନ ଭଳି ଜଣା ପଡ଼େ । ପରମାତ୍ମାଙ୍କ ନିର୍ଗୁଣ ସ୍ୱରୂପରେ ସେ ନିଶ୍ଚିତ ଭାବରେ ଅଧିଷ୍ଠିତ ହୁଏ । ଯେପରି ସ୍ୱପ୍ନବସ୍ଥାର ଭୟ ଜାଗ୍ରତ ଅବସ୍ଥାରେ ଦୂର ହୋଇଯାଏ, ସେହିଭଳି ଆତ୍ମଜାଗରଣଦ୍ୱାରା ତାର ସଂସାର ଭୟ ବିନଷ୍ଟ ହୋଇଥାଏ । ଅନ୍ୟ ଲୋକଙ୍କୁ ସୃଷ୍ଟି ପ୍ରତ୍ୟକ୍ଷ ଭାବେ ଦେଖାଯାଏ । ତେଣୁ ସେ ଭାବେ ସୃଷ୍ଟି ହିଁ ସତ୍ୟ । କିନ୍ତୁ ସାଧକର ସ୍ୱ-ଅନୁଭବ ଦ୍ୱାରା ଏହା ମିଥ୍ୟା ପ୍ରତୀତ ହୋଇଥାଏ । ଯାହାର ଏହି ପ୍ରକାରର ଅନ୍ତରସ୍ଥିତି ଘଟେ ସେ ବାହ୍ୟଆଚରଣ ପ୍ରତି ସମ୍ପୂର୍ଣ୍ଣ ରୂପେ ନିସ୍ପୃହ ହୋଇଯାଏ । ସାଂସାରିକ ପ୍ରପଞ୍ଚରେ ସେ ଆଉ ଜଡ଼ିତ ହୁଏ ନାହିଁ । ଯିଏ ପ୍ରକୃତ ସାଧକ ତାକୁ କାମକ୍ରୋଧ ଆଦି ଷଡ଼ରିପୁ ଏବଂ ଅନ୍ୟ ସବୁ ବିକାର ସ୍ପର୍ଶ କରିପାରେନା । କୁଳାଭିମାନ ଏବଂ ଲୋକାଚାରକୁ ତ୍ୟାଗ କରି ବୈରାଗ୍ୟ ବଳରେ ସେ ପରମାର୍ଥ ଆଡ଼କୁ ଅଗ୍ରସର ହୋଇଥାଏ ।

ଭେଦ, ଅହଂକାର, ସଂକଳ୍ପ, ବିକଳ୍ପ, ସ୍ୱାର୍ଥ, ଅନର୍ଥ, ଦ୍ୱେଷ, କୁ-ତର୍କ, ନାସ୍ତିକତା ଆଦି ପରମାର୍ଥର ଶତ୍ରୁଗୁଡ଼ିକୁ ସେ ନିପାତ କରିଦେଇଥାଏ । ପ୍ରବୃତ୍ତିକୁ ତ୍ୟାଗ କରି ସେ ନିବୃତ୍ତି ପଥ ଦ୍ୱାରା ଜ୍ଞାନଯୋଗର ସାଧନା କରିଥାଏ । ମାୟା, ମମତା, ଦୁରାଶା ଏହାର ପାଖ ସୁଦ୍ଧା ମାଡ଼ି ପାରନ୍ତି ନାହିଁ । ସେ ଅଭ୍ୟାସ ଓ ବୈରାଗ୍ୟ ବଳରେ ଅନ୍ତରକୁ ଶୁଦ୍ଧ କରି ବାହାରେ ସଜ୍ଜନଙ୍କ ସହିତ ସତ୍‌ସଙ୍ଗ କରିଥାଏ ଏବଂ ନିଜ ସାଧନାରେ ନିରନ୍ତର ତତ୍ପର ରହିଥାଏ । ଅର୍ଥାତ୍ ସେ ସମସ୍ତ ପ୍ରକାରର କାମନା, ବାସନା ଓ ପ୍ରବୃତ୍ତିକୁ ମନରୁ ହଟେଇ ସ୍ୱ-ସ୍ୱରୂପରେ

ଅବଗାହନ କରିଥାଏ । ଏହିଭଳି ବ୍ୟକ୍ତିକୁ କୁହାଯିବ ପ୍ରକୃତ ସାଧକ । ଯିଏ ଏହିଭଳି ଭାବରେ ସବୁ ଅବଗୁଣକୁ ଛାଡ଼ି ଆତ୍ମାନନ୍ଦରେ ଲୀନ ରହିଥାଏ, ସେହି ବ୍ୟକ୍ତି ହିଁ ପ୍ରକୃତ ସାଧକ । ହୁଏତ ଅନେକଙ୍କ ମନରେ ଏହି ପ୍ରଶ୍ନ ଉଠିପାରେ ଯେ କେବଳ ସର୍ବସଙ୍ଗ ପରିତ୍ୟାଗୀ, ନିସ୍ପୃହ ବ୍ୟକ୍ତି ହିଁ କ'ଣ ସାଧକ ? ସାଂସାରିକ କାର୍ଯ୍ୟରେ ଲିପ୍ତ ଥିବା ପୁରୁଷ କ'ଣ ସାଧକ ହୋଇପାରିବ ନାହିଁ ? ଏ ପ୍ରଶ୍ନର ଉତ୍ତର ପରବର୍ତ୍ତୀ ଅଧ୍ୟାୟରେ କୁହାଯିବ, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।

## ଦଶମ ସମାସ
## ।। ସିଦ୍ଧର ଗୁଣ ।।

ପୂର୍ବ ଅଧ୍ୟାୟରେ ଶ୍ରୋତାମାନେ ପ୍ରଶ୍ନ କରିଥିଲେ ଯେ ସାଂସାରିକ କାର୍ଯ୍ୟରେ ଲିପ୍ତ ଥିବା ପୁରୁଷ ସାଂସାରିକ କାର୍ଯ୍ୟକୁ ତ୍ୟାଗ ନ କରି କ'ଣ ସାଧକ ହୋଇ ପାରିବ ନାହିଁ ? ବର୍ତ୍ତମାନ ସେହି ପ୍ରଶ୍ନର ଉତ୍ତର ମୁଁ ଦେଉଛି । ସାଂସାରିକ କାର୍ଯ୍ୟ କଲେ ମଧ୍ୟ କୌଣସି ଗୃହସ୍ଥ ଚାହିଁଲେ ସାଧକ ହୋଇପାରେ । କିନ୍ତୁ ତାକୁ ଅସତ୍ ମାର୍ଗ ଓ ଅସତ୍ ପ୍ରବୃତ୍ତି ତ୍ୟାଗ କରି ସତ୍ ମାର୍ଗ ଏବଂ ସତ୍ ପ୍ରବୃତ୍ତି ଗ୍ରହଣ କରିବାକୁ ପଡ଼ିବ । କୁବିଚାରକୁ ତ୍ୟାଗ ନ କଲେ ସୁବିଚାର ଆସି ନ ପାରେ । କୁବୁଦ୍ଧି ଅର୍ଥାତ୍ କୁବିଚାର ତଥା ଖରାପ ବାଟକୁ ତ୍ୟାଗ କରିବା ହିଁ ମନୁଷ୍ୟର ପ୍ରକୃତ ତ୍ୟାଗ । କୁବିଚାର ଓ ମନ୍ଦ ଅଭିଳାଷକୁ ତ୍ୟାଗ କଲେ ଯାଇ ପରମାର୍ଥ ମାର୍ଗ ପ୍ରଶସ୍ତ ହୋଇପାରେ । ଏହିଭଳି ସୂକ୍ଷ୍ମ ଆନ୍ତରିକ ତ୍ୟାଗ ଉଭୟ ଗୃହସ୍ଥ ଓ ବୈରାଗ୍ୟବାନ ପୁରୁଷ ଲାଗି ଆବଶ୍ୟକ । ନିସ୍ପୃହ ଓ ବୈରାଗ୍ୟବାନ ଲାଗି ତ ବାହ୍ୟ ବସ୍ତୁ ଏବଂ ବିଷୟତ୍ୟାଗ ନିତାନ୍ତ ଆବଶ୍ୟକ । ଗୃହସ୍ଥ ପକ୍ଷରେ ଅନ୍ତତଃ କେତେକ ସୀମା ପର୍ଯ୍ୟନ୍ତ ବାହ୍ୟତ୍ୟାଗ ଅନିବାର୍ଯ୍ୟ । କାରଣ ଏହା ବ୍ୟତିରେକ ନିତ୍ୟନିୟମ ପାଳନ ଏବଂ ସଦ୍‌ଗ୍ରନ୍ଥ ଶ୍ରବଣ କରାଯାଇ ନ ପାରେ । ସାରାଂଶ ହେଉଛି ବାହ୍ୟବିଷୟ ତ୍ୟାଗ ବିନା କେହି ହେଲେ ପ୍ରକୃତ ସାଧକ ହୋଇନପାରେ । ସିଦ୍ଧ ସାଧକର ବିଶେଷ ଲକ୍ଷଣ ଆପଣମାନେ ମନ ଦେଇ ଶୁଣନ୍ତୁ ।

ଯେଉଁଥିରେ ମନୁଷ୍ୟ ବନ୍ଧନରେ ପଡ଼େ ଅର୍ଥାତ୍ ବାନ୍ଧି ହୋଇଯାଏ, ସେହି ସବୁ ଦୁର୍ଗୁଣ ପରିତ୍ୟାଗ କରିବା ପରେ ସେ ହୁଏ ମୁମୁକ୍ଷୁ । ସାଧକ ମାତ୍ରେ ମୁମୁକ୍ଷୁର

ଲକ୍ଷଣଗୁଡ଼ିକୁ ଅତିକ୍ରମ କରି ଆଗକୁ ଆଗକୁ ବଢ଼ିଚାଲେ । ତା ମନରୁ କ୍ରମଶଃ ସନ୍ଦେହ ତୁଟିଯାଏ । ସେ ଯେତେବେଳେ ସମ୍ପୂର୍ଣ୍ଣ ଭାବେ ନିଃସନ୍ଦେହ ହୋଇଉଠେ, ସେତେବେଳେ ସେ ହୁଏ ସିଦ୍ଧ । ସନ୍ଦେହରହିତ ଶୁଦ୍ଧଜ୍ଞାନ; ନିଶ୍ଚଳ -ବସ୍ତୁରୂପତା ହେଉଛି ସିଦ୍ଧ ପୁରୁଷର ମୁଖ୍ୟ ଲକ୍ଷଣ । ଯିଏ ନିଃସନ୍ଦେହ ଜ୍ଞାନରେ ପରିପୂର୍ଣ୍ଣ ସିଏ ସିଦ୍ଧ ପଦବାଚ୍ୟ । କର୍ମମାର୍ଗରେ ସନ୍ଦେହ ଭରପୂର ହୋଇ ରହିଥାଏ । ସାଧନ ମାର୍ଗରେ ମଧ୍ୟ ସନ୍ଦେହର ସମ୍ମୁଖୀନ ହେବାକୁ ପଡ଼ିଥାଏ । କିନ୍ତୁ ସିଦ୍ଧ ସର୍ବଦା ନିଃସନ୍ଦେହ । ସନ୍ଦେହାବସ୍ଥା ସର୍ବଦା ଅସତ୍ୟ । ସଂଶୟଗ୍ରସ୍ତ-ଜ୍ଞାନ ମିଥ୍ୟା । ସନ୍ଦେହପୂର୍ଣ୍ଣ ବୈରାଗ୍ୟ, ଭଜନ, କର୍ମକାଣ୍ଡ, ବ୍ରତ, ତୀର୍ଥ, ଭକ୍ତି, ଜ୍ଞାନ, କର୍ମ, ବିଦ୍ୟା-ଅଧ୍ୟୟନ, ପ୍ରୀତି, ମୋକ୍ଷ ଆଦି ନିରର୍ଥକ, ବ୍ୟର୍ଥ । ସନ୍ଦେହ ଜନିତ ଭାଷଣ ପ୍ରବଚନ ଆଦି ମଧ୍ୟ ବ୍ୟର୍ଥ । କାରଣ ଏସବୁ ଦ୍ୱାରା ପୂର୍ଣ୍ଣ ସମାଧାନ ମିଳିପାରେନା । ବରଂ ବକ୍ତା ଉପହାସିତ ହୋଇଥାଏ । ତେଣୁ ନିଃସନ୍ଦେହତା ଏବଂ ସାମାଧାନ ହିଁ ସିଦ୍ଧପୁରୁଷର ମୁଖ୍ୟ ଲକ୍ଷଣ । ଯାହା ମନରେ ସନ୍ଦେହ ରହିଥାଏ ସେ ସନ୍ଥ, ପଣ୍ଡିତ ଏବଂ ବିଖ୍ୟାତ ହେଲେ ମଧ୍ୟ ସବୁ ବେକାର । ଟିକିଏ ସନ୍ଦେହ ଓ ବେଶି ସନ୍ଦେହ ଭିତରେ କୌଣସି ପାର୍ଥକ୍ୟ ନାହିଁ । ସନ୍ଦେହ ମାତ୍ରେ ସନ୍ଦେହ । କାରଣ ଗୋଟିଏ ସନ୍ଦେହରୁ ଅନେକ ସନ୍ଦେହର ଶାଖା ପ୍ରଶାଖା ବାହାରିଥାଏ । ସେଥିରୁ ଏକ ପ୍ରକାଣ୍ଡ ବୃକ୍ଷ ସୃଷ୍ଟି ହୋଇଥାଏ । ସିଦ୍ଧାନ୍ତ ବିନା ଯେଉଁ ସବୁ କଥା କୁହାଯାଏ ସେ ସବୁ ବ୍ୟର୍ଥ । ସେସବୁ ବ୍ୟର୍ଥ ମନୁଷ୍ୟର ବାଚାଳତା । ଯାହାର ମନ ସଂଶୟଜଡ଼ିତ ତାର ମନରେ ସମାଧାନ ଲାଗି ସ୍ଥାନ କାହିଁ ? ତେଣୁ ସନ୍ଦେହରହିତ ଜ୍ଞାନ ଏବଂ ନିଶ୍ଚିତ ସମାଧାନ ହିଁ ସିଦ୍ଧି ପୁରୁଷର ଲକ୍ଷଣ ।

ଶ୍ରୋତାମାନେ ପୁଣି ପ୍ରଶ୍ନ କରିଛନ୍ତି, ସିଦ୍ଧାନ୍ତ କିପରି କରାଯାଏ ଏବଂ ସିଦ୍ଧାନ୍ତର ଲକ୍ଷଣ କ'ଣ ? ଏହାର ଉତ୍ତର ହେଉଛି—ପରବ୍ରହ୍ମ ପରମାତ୍ମାଙ୍କ ପ୍ରକୃତ ସ୍ୱରୂପକୁ ଜାଣିନେବା ଏବଂ ଅନ୍ୟ ଦେବଦେବୀମାନଙ୍କର ଫାଶରେ ନ ପଡ଼ିବା ହିଁ ପ୍ରକୃତ ସିଦ୍ଧାନ୍ତ । ଯେଉଁ ପରମାତ୍ମା ସୃଷ୍ଟିରେ ସବୁ ସ୍ଥାବର ଓ ଅସ୍ଥାବର ବସ୍ତୁର ନିର୍ମାଣ କରିଛନ୍ତି, ଏହି 'ଏକମେବା ଦ୍ୱିତୀୟ' ଶୁଦ୍ଧ ପରମବ୍ରହ୍ମକୁ ବିବେକବୁଦ୍ଧି ଦ୍ୱାରା ଚିହ୍ନିବା ଉଚିତ । ସିଦ୍ଧ ସାଧକ ମାତ୍ରେ ସମସ୍ତ ଅସତ୍ୟ ପଦାର୍ଥକୁ ଛାଡ଼ି ସତ୍ୟକୁ ଗ୍ରହଣ କରିବା ଉଚିତ । ସେ ଈଶ୍ୱରଙ୍କ ସଙ୍ଗେ ସଙ୍ଗେ ରହି ଆତ୍ମପରୀକ୍ଷା ମଧ୍ୟ କରିବା ଉଚିତ । ଅର୍ଥାତ୍ 'ମୁଁ କିଏ' ଏହି ପ୍ରଶ୍ନର ଉତ୍ତର ପାଇବା ଲାଗି

ସର୍ବଦା ସାଧନାରତ ହେବା ଉଚିତ । ସେ ସର୍ବସଙ୍ଗ ପରିତ୍ୟାଗ କରି ବ୍ରହ୍ମସ୍ୱରୂପ ହୋଇ ବିଚରଣ କରିବା ଉଚିତ । ସିଦ୍ଧ ପୁରୁଷ ସବୁ ବନ୍ଧନକୁ ଛିନ୍ନ କରି ମୋକ୍ଷପ୍ରାପ୍ତି ଦିଗରେ ପ୍ରଯତ୍ନଶୀଳ ହେବା ଉଚିତ । ସେ ଅଷ୍ଟବିଧ ପ୍ରକୃତି ଅର୍ଥାତ ପୂର୍ବପକ୍ଷର ସିଦ୍ଧାନ୍ତକୁ ତୁଳନା କରି ତ୍ରିଗୁଣ ଏବଂ ପଞ୍ଚମହାଭୂତଠାରୁ ଭିନ୍ନ ପରମାତ୍ମାକୁ ଚିହ୍ନିବା ସଙ୍ଗେ ସଙ୍ଗେ ନିଜକୁ ତାହା ସହିତ ମିଳେଇ ଦେବା ଉଚିତ । ଦେହାଭିମାନ ଯୋଗୁ ମନୁଷ୍ୟ ମନରେ ଅନେକ ସଂଶୟ ଉତ୍ପନ୍ନ ହୋଇଯାଏ । ତେଣୁ କେବଳ ଆତ୍ମାର ଚିନ୍ତନ କରିବା ଉଚିତ । ଆତ୍ମଜ୍ଞାନ ସ୍ୱୟଂସିଦ୍ଧ । ସଂଶୟ ରୂପକ ମେଘପଟଳ ଦୂରୀଭୂତ ହେବାମାତ୍ରେ ନିଶ୍ଚୟାତ୍ମକ ବୁଦ୍ଧିର ବିକାଶ ଘଟିଥାଏ । 'ଅହମାତ୍ମା' ଏହି ମହାମନ୍ତ୍ରକୁ କେହି ଭୁଲିଯାଅ ନାହିଁ । ସଂଶୟ ନିବାରଣ ଲାଗି ସିଦ୍ଧପୁରୁଷଙ୍କ ସତ୍‌ସଙ୍ଗ ଲାଭ କରିବାକୁ ସବୁବେଳେ ଉଦ୍ୟମ କର । ସିଦ୍ଧପୁରୁଷ ମାତ୍ରେ ଦେହାତୀତ ଏବଂ ନିଃସନ୍ଦେହ । ଅତଏବ ତା'ର ଲକ୍ଷଣ କେତେ ବା ବର୍ଣ୍ଣନା କରାଯାଇପାରେ ? ଲକ୍ଷଣ ବୋଲି ଆମେ ଯାହାକୁ କହୁ ସିଏତ ଏକ ଗୁଣବିଶିଷ୍ଟ । କିନ୍ତୁ ସିଦ୍ଧ ସାଧକ ଗୁଣାତୀତ ଅର୍ଥାତ ନିର୍ଗୁଣ । ସେ ସନ୍ଦେହରହିତ ଓ ଦେହାତୀତ । ନିର୍ଗୁଣ ବ୍ରହ୍ମର ସମାନ ହେବା ହିଁ ହେଉଚି ସିଦ୍ଧ ପୁରୁଷର ଲକ୍ଷଣ । ଜ୍ଞାନ ଦଶକରେ ସିଦ୍ଧପୁରୁଷର ସବୁ ଲକ୍ଷଣ ବିସ୍ତାରିତ ଭାବରେ ଆଗରୁ କୁହାଯାଇଛି । ସିଦ୍ଧବସ୍ତୁ ଅନିର୍ବଚନୀୟ, ତାକୁ ଲକ୍ଷ୍ୟ କରାଯାଇ ନ ପାରେ । ସେହି ସିଦ୍ଧବସ୍ତୁ ହିଁ ସିଦ୍ଧ ପୁରୁଷର ସ୍ୱରୂପ । ଏହି ବିଷୟଟିକୁ ଏହିଠାରେ ସମାପ୍ତ କରୁଛି । ସିଦ୍ଧର ଲକ୍ଷଣ ସମ୍ପର୍କରେ ମୁଁ ଏଠାରେ ଯାହା କହିଲି ସେଥିରେ ଯଦି କିଛି ତ୍ରୁଟି ରହିଯାଇଥାଏ, ସେଥିଲାଗି ଶ୍ରୋତାମାନଙ୍କଠାରେ ମୁଁ କ୍ଷମା ପ୍ରାର୍ଥନା କରୁଛି । ପରବର୍ତ୍ତୀ ଦଶକରେ ମୁଁ ଅଧ୍ୟାତ୍ମ-ନିରୂପଣର ପ୍ରାରମ୍ଭିକ ସୂଚନା ଦେବି । ଆପଣମାନେ ମନଦେଇ ଶୁଣିବେ ବୋଲି ମୋର ଆଶା ।



# ଷଷ୍ଠ ଦଶକ

## ପ୍ରଥମ ସମାସ
## ।। ଦେବ-ଶୋଧନ ।।

ଏହି ଦଶକରେ ଅଧ୍ୟାତ୍ମ-ନିରୂପଣ କରାଯିବ । ତେଣୁ ଶ୍ରୋତାମାନେ ସାବଧାନ ହୋଇ ଶୁଣନ୍ତୁ ।

ଯଦି କୌଣସି ନଗର ବା ଦେଶରେ କେହି ରହିବାକୁ ଇଚ୍ଛାକରେ, ତାହାହେଲେ ସେହି ସ୍ଥାନର କର୍ତ୍ତା ସହିତ ଭେଟିବା ଉଚିତ । ନଚେତ୍ ନିଜର ପ୍ରତିଷ୍ଠା ପ୍ରତି ଯେ କେବଳ ଆଞ୍ଚ ଆସିବ ତାହା ନୁହେଁ, ଅପମାନିତ ହେବାର ମଧ୍ୟ ଯଥେଷ୍ଟ ସମ୍ଭାବନା ରହିଚି । ମୁଖ୍ୟକର୍ତ୍ତାଙ୍କୁ ଯଦି ନ ଭେଟୁ ତାହାହେଲେ ଅଧୀନସ୍ଥ କର୍ମଚାରୀମାନେ ତୁମକୁ ବିନା ଦୋଷରେ ମଧ୍ୟ ଧରିନେଇ ପାରନ୍ତି କିମ୍ବା ଚୋରି ଅଭିଯୋଗରେ ତୁମକୁ ଅଭିଯୁକ୍ତ କରିପାରନ୍ତି । ସେହିଭଳି ପ୍ରଭୁଙ୍କ ସହ ଯଦି ସାକ୍ଷାତ୍‌କାର ନ ଘଟେ ତାହାହେଲେ ସାରା ସଂସାର ତୁଚ୍ଛ ମନେହେବ । କେବଳ ସେତିକି ନୁହେଁ, ତୁମକୁ ବହୁ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିବ । ନରପତି ଗଜପତି ଏବଂ ଭୂପତି ଏହି ସମସ୍ତଙ୍କଠାରୁ ଶ୍ରେଷ୍ଠ ହେଉଛନ୍ତି ସମ୍ରାଟ । ଏହି ଯେଉଁମାନଙ୍କ କଥା କୁହାଗଲା ସେହି ସମସ୍ତଙ୍କର ନିର୍ମାତା ବ୍ରହ୍ମଦେବ ହେଉଛନ୍ତି ସବୁଠାରୁ ବଡ଼ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ତିନିଙ୍କର ନିର୍ମାତା ଯେଉଁ ପରମେଶ୍ୱର ସେ ସବୁଠାରୁ ଶ୍ରେଷ୍ଠ । ଏଣୁ ଏହି ପରମେଶ୍ୱରଙ୍କ ସହିତ ପରିଚିତ ହେବାଲାଗି ଆମକୁ ସମସ୍ତ ପ୍ରକାର ଉପାୟ ଅବଲମ୍ବନ କରିବା ଉଚିତ । ଯଦି ଏହି ବ୍ରହ୍ମଦେବ ପରମାତ୍ମାଙ୍କ ସହିତ ପରିଚୟ ନ ଘଟେ ତାହାହେଲେ କେହି କେବେହେଲେ ଯମଯାତନାରୁ ମୁକ୍ତ ହୋଇନପାରେ । ଯିଏ ଜନ୍ମଦାତା ବିଶ୍ୱନାଥ ପ୍ରଭୁଙ୍କୁ ଜାଣିନାହିଁ ସେ ପତିତ ପଦବାଚ୍ୟ । ତେଣୁ ପ୍ରଭୁଙ୍କ ସହିତ ପରିଚିତ ହୋଇ ନିଜ ଜନ୍ମକୁ ସଫଳ କରିବା ଉଚିତ ଏବଂ ସେଥିଲାଗି ସାଧୁସନ୍ଥଙ୍କ ସହିତ ସତ୍‌ସଙ୍ଗ କରିବା ନିତାନ୍ତ ଆବଶ୍ୟକ । କିନ୍ତୁ ପ୍ରଶ୍ନ ଉଠିପାରେ କିଏ ପ୍ରକୃତ ସାଧୁସନ୍ଥ ସେକଥା

ଜାଣିବ କିପରି ? ଯିଏ ପ୍ରଭୁଙ୍କୁ ପାଇଥାଏ ସେହି ବ୍ୟକ୍ତି ହିଁ ସନ୍ଥ । ସନ୍ଥ ମାତ୍ରେ ଶାଶ୍ୱତ ଅଶାଶ୍ୱତକୁ ନିର୍ଣ୍ଣୟ କରି ଶାଶ୍ୱତ ପରବ୍ରହ୍ମଙ୍କୁ ଚିହ୍ନିପାରେ । ଯିଏ ସଂସାର ଭିତରେ ରହି ମଧ୍ୟ ସଂସାର ସହିତ ଜଡ଼ିତ ନୁହେଁ, ଯାହାର ଅନ୍ତରରେ ଆତ୍ମଜ୍ଞାନ ଜାଗ୍ରତ ଅର୍ଥାତ୍ ଯିଏ ନିର୍ଗୁଣ ପରମାତ୍ମାକୁ ଚିହ୍ନିଥାଏ, ସେହି ସନ୍ଥଙ୍କର ପରମାତ୍ମାଙ୍କ ନିର୍ଗୁଣ ସ୍ୱରୂପ ସମ୍ପର୍କରେ ଜ୍ଞାନ ହିଁ ପ୍ରକୃତ ଜ୍ଞାନ । ଏହା ବ୍ୟତୀତ ଅନ୍ୟ ସମସ୍ତ ଜ୍ଞାନ ହେଉଛି ଅଜ୍ଞାନ ।

ଉଦର ପୋଷଣ ଲାଗି ଲାଭ କରାଯାଇଥିବା ବିଦ୍ୟାକୁ ଜ୍ଞାନ କୁହାଯାଇନପାରେ । ଏହି ଉଦରପୋଷଣକାରୀ ବିଦ୍ୟା ମନୁଷ୍ୟର ଅନ୍ତିମ ସମୟରେ କୌଣସି କାମରେ ଲାଗି ନ ଥାଏ । ଯେଉଁଥିରେ ସର୍ବବ୍ୟାପକ ପରମାତ୍ମ ବସ୍ତୁର ତତ୍କାଳିକ ପ୍ରାପ୍ତି ଘଟିଥାଏ, ତାହା ହିଁ ପ୍ରକୃତ ଜ୍ଞାନ । ଏହି ପରମାତ୍ମ ଜ୍ଞାନ ଯାହାର ଥାଏ ସେ ସନ୍ଥପଦବାଚ୍ୟ । ଏହିଭଳି ସନ୍ଥଙ୍କର ଯେଉଁଠି ସମାଗମ ଘଟିଥାଏ ସେଠାରୁ ମନୁଷ୍ୟ ମନର ବହୁ ସମସ୍ୟାର ସମାଧାନ ହୋଇପାରେ । ଏହି ସମାଧାନ ପରେ ଈଶ୍ୱରପ୍ରାପ୍ତି ଲାଗି ପଥ ପ୍ରଶସ୍ତ ହୁଏ । ନିଜକୁ ସନ୍ଥ ବୋଲି ଦେଖେଇ ହେଉଥିବା ଲୋକ ପାଖକୁ ଯାଇ କି ଲାଭ ? ଅଜ୍ଞାନୀ ସହିତ ଅଜ୍ଞାନୀର ସାକ୍ଷାତ ହେଲେ କ'ଣ ଜ୍ଞାନପ୍ରାପ୍ତି ହୋଇପାରେ ? ଦରିଦ୍ର ପାଖକୁ ଗଲେ କ'ଣ ଧନ ମିଳିବ ? ରୋଗୀ ପାଖକୁ ରୋଗୀ ଗଲେ କଦାପି ଆରୋଗ୍ୟ ଲାଭ ହୋଇନପାରେ । ଦୁର୍ବଳ ପାଖକୁ ଦୁର୍ବଳ ଗଲେ କି ସାହାଯ୍ୟ ମିଳିବ ? ଭିକାରୀ ପାଖକୁ ଗଲେ ଯେପରି ଭିକ ମିଳେ ନାହିଁ; ଦୀକ୍ଷାହୀନ ପାଖକୁ ଗଲେ ଦୀକ୍ଷା ମିଳେ ନାହିଁ; ଅମାବାସ୍ୟାରେ ଯେପରି ଚନ୍ଦ୍ରକିରଣ ମିଳିବା ଅସମ୍ଭବ; ମୂର୍ଖ ପାଖକୁ ଗଲେ ଯେପରି ବୁଦ୍ଧିର ବିକାଶ ଘଟେନା ଏବଂ ବଦ୍ଧ ପୁରୁଷ ପାଖକୁ ବଦ୍ଧବ୍ୟକ୍ତି ଗଲେ ଯେପରି ମୁକ୍ତି ମିଳିବା ଅସମ୍ଭବ; ସେହିଭଳି ଭାବରେ ନାମକୁ ମାତ୍ର ନିଜକୁ ଜ୍ଞାନୀ ବୋଲାଉଥିବା ତଥାକଥିତ ସାଧୁସନ୍ଥଙ୍କ ପାଖକୁ ଗଲେ କାହାର କୌଣସି ମଙ୍ଗଳସାଧନ ହୋଇନପାରେ । ତେଣୁ ନିଜର ପଥପ୍ରଦର୍ଶନ ଲାଗି ସର୍ବଜ୍ଞତା ସୁଯୋଗ୍ୟ ସନ୍ଥ ପାଖକୁ ଯାଇ ନିଜର ଯାହାକିଛି ମଳିନତା ରହିଛି ତାହାକୁ ପରିଶୋଧନ କରିନେବା ଉଚିତ । ଯିଏ ନିଜେ ଜ୍ଞାତ ନୁହେଁ ସେ ଅନ୍ୟକୁ ଜ୍ଞାନମାର୍ଗ ଦେଖେଇବ କିପରି ? ତେଣୁ ପୂର୍ଣ୍ଣଜ୍ଞାନୀ, ନିସ୍ପୃହ, ଆତ୍ମଲୀନ ଏବଂ ବିବେକୀ ସାଧୁସନ୍ଥଙ୍କ ଅନୁଗ୍ରହ ଲାଭକରି ଆମେ ସାର ଅସାର

ବିଷୟ ସମ୍ପର୍କରେ ଜ୍ଞାନଲାଭ କରିବା ଉଚିତ । ତାହାହେଲେ ଯାଇ ଆମେ ଏହି ସଂସାରରେ ଅନେକ କଷ୍ଟ ଆପଦରୁ ମୁକ୍ତ ହୋଇ ଭବସାଗରକୁ ପାରିହୋଇ ପାରିବା ଏବଂ ସଚ୍ଚିଦାନନ୍ଦ ପରବ୍ରହ୍ମ ପରମାତ୍ମାଙ୍କ ସାନ୍ନିଧ୍ୟଲାଭ ସଙ୍ଗେ ସଙ୍ଗେ ମୋକ୍ଷ ମଧ୍ୟ ଲାଭ କରିପାରିବା ।

## ଦ୍ୱିତୀୟ ସମାସ
## ।। ବ୍ରହ୍ମପାବନ ।।

ଯେଉଁ ସତ୍‌ସଙ୍ଗ ଦ୍ୱାରା ସାଯୁଜ୍ୟ ମୁକ୍ତି ଲାଭ ହୋଇପାରେ, ବର୍ତ୍ତମାନ ସେହି ସତ୍‌ସଙ୍ଗର ଉପଦେଶ ଶୁଣନ୍ତୁ । ଅନେକ ମତ ମତାନ୍ତରର ନିରୀକ୍ଷଣ ପରୀକ୍ଷଣ ଦ୍ୱାରା କୌଣସି ଲାଭ ନାହିଁ । ଯେଉଁ ଉପଦେଶ ଦ୍ୱାରା ପରମାତ୍ମ-ଜ୍ଞାନ ଲାଭ ହୋଇନଥାଏ, ସେ ଉପଦେଶ ବ୍ୟର୍ଥ । ଏଭଳି ଜ୍ଞାନକୁ 'ଅଗାଡ଼ି' କୁହାଯାଇପାରେ । ଅଗାଡ଼ିରୁ ଚାଉଳ ମିଳିନଥାଏ, ସେହିଭଳି ଘୋଳଦହିରୁ ଲହୁଣୀ ମିଳିନପାରେ । ଚାଉଳଧୁଆ ପାଣିରୁ ଦୁଧର ସ୍ୱାଦ ମିଳିନପାରେ । ଗଛର ବକଳା ଖାଇଲେ ବା ଶୋଷିଲେ ପେଟ ପୂରିନପାରେ । ନଡ଼ିଆର ଶସକୁ ଫିଙ୍ଗିଦେଇ ସଢ଼େଇ ଖାଇଲେ ଭୋକ ମେଣ୍ଟିନପାରେ । ସେହିଭଳି ଯେଉଁଥିରେ ବ୍ରହ୍ମଜ୍ଞାନ ମିଳିନଥାଏ ସେଭଳି ଉପଦେଶ ନିରର୍ଥକ ।

ଏବେ ନିର୍ଗୁଣ ବ୍ରହ୍ମ ସ୍ୱରୂପର ବର୍ଣ୍ଣନା କରିବି । ଶ୍ରୋତାମାନେ ସ୍ଥିର ଚିତ୍ତରେ ଶୁଣନ୍ତୁ । ଏ ସଂସାର ହେଉଛି ପଞ୍ଚମହାଭୂତର ଏକ ଖେଳ । କିନ୍ତୁ ଏହି ଖେଳ ସବୁବେଳେ ଚାଲିନପାରେ । ସଂସାରର ଆଦି ଓ ଅନ୍ତରେ ନିର୍ଗୁଣ ବ୍ରହ୍ମ ବିଦ୍ୟମାନ ଏବଂ ଏହି ବ୍ରହ୍ମ ହିଁ ଏକମାତ୍ର ଶାଶ୍ୱତ ପରମାତ୍ମତତ୍ତ୍ୱ । ପଞ୍ଚମହାଭୂତ ବିନାଶଶୀଳ । ତେଣୁ ଏଗୁଡ଼ିକୁ ପରମାତ୍ମା କୁହାଯିବ କିପରି ? ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶ ଏ ସବୁର ବାହାରେ ଓ ଭିତରେ ଏହି ପରମାତ୍ମା ପରିବ୍ୟାପ୍ତ । ପଞ୍ଚମହାଭୂତ ନଷ୍ଟ ହୋଇଯାଇଥାଏ । କିନ୍ତୁ ଆତ୍ମା ଅମର । ନାମ ଓ ରୂପ ଆଦି କେବଳ ଭ୍ରମ ମାତ୍ର । ନାମ ଓ ରୂପର ଊର୍ଦ୍ଧ୍ୱରେ ଯେଉଁ ପରଂବ୍ରହ୍ମ ପରମାତ୍ମା, ତାଙ୍କୁ କେବଳ ଅନୁଭବ ଦ୍ୱାରା ଜାଣିହେବ । ପଞ୍ଚମହାଭୂତ ଏବଂ ତିନିଗୁଣରୁ ଅଷ୍ଟବିଧ ପ୍ରବୃତ୍ତି ଅର୍ଥାତ ଏହି ଦୃଶ୍ୟ ସଂସାରର ଉତ୍ପତ୍ତି । ବେଦ ତଥା

ଶତିରେ କୁହାଯାଇଛି ଯେ ଏହି ସବୁ ଦୃଶ୍ୟବସ୍ତୁ ଦିନେ ନା ଦିନେ ନଷ୍ଟ ହେବହିଁ ହେବ । ଜ୍ଞାନୀ ମାତ୍ରେ ବୁଝି ଥାଏ ଯେ ଏହି ସଂସାର ହେଉଛି ମିଥ୍ୟା, କେବଳ ନିର୍ଗୁଣ ବ୍ରହ୍ମ ହିଁ ସତ୍ୟ ଓ ଶାଶ୍ୱତ । ଏ ଯେଉଁ ପରମ ତତ୍ତ୍ୱ ତାକୁ କୌଣସି ଶସ୍ତ୍ର ଦ୍ୱାରା କଟାଯାଇ ନପାରେ କିମ୍ବା ଅଗ୍ନିଦ୍ୱାରା ଜଳାଯାଇ ନପାରେ । ଏହା କୌଣସି ଜଳଦ୍ୱାରା ମିଳେଇଯାଇ ନପାରେ । ବାୟୁଦ୍ୱାରା ମଧ୍ୟ ଏହା ଉଡ଼ିଯାଇନପାରେ । ଏହା ସବୁବେଳେ ସମାନ । ଆଦିରେ ଯାହା, ଅନ୍ତରେ ତାହା । ଯାହା ଥିଲା ତାହା । ଅବଶ୍ୟ ଆମ ଚର୍ମଚକ୍ଷୁ ଦ୍ୱାରା ଏହାକୁ ଦେଖି ହୁଏନା । ତେବେ ଏହା ଅତି ସୂକ୍ଷ୍ମ ରୂପରେ ସର୍ବତ୍ର ବିଦ୍ୟମାନ । ଆମେ ଚର୍ମଚକ୍ଷୁରେ ଯାହାକୁ ପ୍ରତ୍ୟକ୍ଷ ଭାବରେ ଦେଖୁ ତାହାର ଅସ୍ତିତ୍ୱକୁ ମାନିନେଉ । ଯାହା ଅଦୃଶ୍ୟ ବସ୍ତୁ ଅର୍ଥାତ ଆମେ ଯାହାକୁ ଦେଖିପାରୁନା ତାକୁ କହୁ ଗୂଢ଼ ଓ ରହସ୍ୟପୂର୍ଣ୍ଣ ।

ବାସ୍ତବରେ ଯାହା ପ୍ରକଟିତ ଭାବରେ ଦେଖାଦିଏ ସେ ବସ୍ତୁ ଅସାର । ଯାହା ଗୁହ୍ୟ ବା ଗୂଢ଼ ତାହା ସାର । ଏହି ରହସ୍ୟକୁ କେବଳ ସଦ୍‌ଗୁରୁଙ୍କ ଦ୍ୱାରା ଭଲ ଭାବରେ ବୁଝାଯାଇପାରେ । ଯେଉଁକଥାକୁ ଆମେ ବୁଝି ନ ପାରୁ ତାକୁ ବିବେକ ବୁଦ୍ଧି ଦ୍ୱାରା ବୁଝିବା ଲାଗି ଚେଷ୍ଟା କରିବା ଉଚିତ । ଯେଉଁ ଗୁହ୍ୟବସ୍ତୁ ଖାଲିଆଖିରେ ଚେଷ୍ଟା କଲେ ମଧ୍ୟ ଦେଖାଯାଏନା ତାକୁ ମଧ୍ୟ ବିବେକପୂର୍ଣ୍ଣ ଅନ୍ତର୍ଦୃଷ୍ଟି ଦ୍ୱାରା ଦେଖିବା ଉଚିତ । ଅସାଧ ଗୁପ୍ତ ବସ୍ତୁ ଲାଭ କରିବା ଲାଗି ସତତ ସାଧନା କରିବା ଉଚିତ । ହୁଏତ ଏହି ବସ୍ତୁ ଲାଭ କରିବା କଠିନ ବ୍ୟାପାର ହୋଇପାରେ କିନ୍ତୁ ତାକୁ ପାଇବା ଲାଗି ନିତ୍ୟଅଭ୍ୟାସ ଆବଶ୍ୟକ । ମନରେ ସାଧନା ଲାଗି ଇଚ୍ଛା ତୀବ୍ର ହୋଇଉଠିଲେ, ସେଥିଲାଗି ଅଧ୍ୟାତ୍ମଚର୍ଚ୍ଚା ଶୁଣିବା ଏବଂ ତା' ଉପରେ ଚିନ୍ତା କରିବା ଆବଶ୍ୟକ । ପରଂବ୍ରହ୍ମ ପରମାତ୍ମା ପୃଥିବୀ, ଜଳ, ତେଜ, ବାୟୁ, ଆକାଶଠାରୁ ଅଭିନ୍ନ ଏବଂ ରଙ୍ଗରୂପ ସାହାଯ୍ୟରେ ତାକୁ ବ୍ୟକ୍ତ କରାଯାଇ-ପାରେନା । ଆମେ ପ୍ରତ୍ୟେକ ଗ୍ରାମରେ ଭିନ୍ନ ଭିନ୍ନ ଦେବତା ରଖି ପୂଜା କରିଥାଉଁ । ଯେତେବେଳେ ପରଂବ୍ରହ୍ମ, ପରମାତ୍ମାଙ୍କ ସମ୍ପର୍କରେ ନିଃସନ୍ଦେହ ଏବଂ ନିଶ୍ଚିତ ହୋଇଯାଇ ପାରିବ ଏବଂ ଯେତେବେଳେ ଆମ୍ଭମାନଙ୍କ ମନରେ ଏହି ପରବ୍ରହ୍ମ ନିର୍ଗୁଣ ନିରାକାର ବୋଲି ପୂର୍ଣ୍ଣବିଶ୍ୱାସ ହୋଇପାରିବ ସେତେବେଳେ ନିଜେ ନିଜଭିତରେ ଏହାଙ୍କ ସାକ୍ଷାତ୍‌କାର ଲାଗି ପ୍ରଯତ୍ନ କରିବା ଉଚିତ । ଆତ୍ମାକୁ ଶରୀରର ଅଙ୍ଗ ବୋଲି ମାନିବା ହେଉଛି ଅଜ୍ଞାନ । ଶରୀର ଆତ୍ମାଠାରୁ ପୃଥକ୍ ସ୍ଥୂଳ ବସ୍ତୁ ମାତ୍ର । ମନ ମଧ୍ୟ ଆତ୍ମାଠାରୁ ଭିନ୍ନ । ଶରୀର କେବଳ ପଞ୍ଚତତ୍ତ୍ୱର ଏକ

ପୁତୁଳି । ଏ ତତ୍ତ୍ୱଗୁଡ଼ିକୁ ଅଲଗା ଅଲଗା କରିଦେବା ପରେ ଯାହା ରହେ ତାହା ହିଁ ଆତ୍ମା । 'ମୁଁ' କହିବା ଅର୍ଥ ତୁମେ କହୁଛ "ଇଏ ମୋ ଶରୀର" କିନ୍ତୁ ଏ ଶରୀର ତ ପରିଶେଷରେ ନଷ୍ଟ ହୋଇ ପଞ୍ଚତତ୍ତ୍ୱରେ ବିଲୀନ ହୋଇଯାଇଥାଏ । ଏହି ବିନାଶୀ ଶରୀରରେ ରହୁଥିବା ଆତ୍ମା ହିଁ କେବଳ ଅବିନାଶୀ । ଏହି ଅବିନାଶୀ ଆତ୍ମାର ଜନ୍ମ ଆଉ ମୃତ୍ୟୁ ଆସିବ କେଉଁଠୁ ? ଏହା ପାପପୁଣ୍ୟଠାରୁ ମଧ୍ୟ ମୁକ୍ତ । ଏହି ଜୀବାତ୍ମା କେବଳ ଦେହବୋଧ ଯୋଗୁଁ ହିଁ ନିଜକୁ ଆବଦ୍ଧ ବୋଲି ମନେକରେ । ଯଦି ବିବେକବୁଦ୍ଧି ଦ୍ୱାରା ଏହାର ବନ୍ଧନକୁ କାଟି ଦିଆଯାଏ, ତାହାହେଲେ ସେ ଦେହାତୀତ ହୋଇ ମୋକ୍ଷଲାଭ କରିପାରେ । ଏହି ମୋକ୍ଷଲାଭ ହିଁ ଜୀବନର ସାର୍ଥକତା ।

ଯେପରି ଜାଗ୍ରତ ହେବା ମାତ୍ରେ ସ୍ୱପ୍ନ ତୁଟିଯାଏ, ସେହିଭଳି ବିବେକବୁଦ୍ଧି ଦ୍ୱାରା ଦେଖିବା ପରେ ଏହି ଦୃଶ୍ୟଜଗତ ମଧ୍ୟ ଅଦୃଶ୍ୟ ହୋଇଯାଏ । ନିଜ ସ୍ୱରୂପର ଅନୁସନ୍ଧାନ କରିବା ହିଁ ପ୍ରାଣୀର ଏକମାତ୍ର ଲକ୍ଷ୍ୟ ହେବା ଉଚିତ, କାରଣ ତାହା କଲେ ଯାଇ ସେ ଉଦ୍ଧାର ପାଇପାରେ । ତେଣୁ ଆମର ପ୍ରଥମ କାମ ହେବା ଉଚିତ ଗୁରୁଜନମାନଙ୍କଠାରୁ ଅଧ୍ୟାତ୍ମ ସମ୍ପର୍କରେ ବିଚାର-ଆଲୋଚନା ଗମ୍ଭୀର ଭାବରେ ଶୁଣିବା । କେବଳ ସେତିକି ନୁହେଁ, ମନ, କର୍ମ ଓ ବଚନ ଦ୍ୱାରା ସଦ୍‌ଗୁରୁଙ୍କର ସେବା କରିବା ଉଚିତ । ସଦ୍‌ଗୁରୁଙ୍କ କୃପା ହେବା ମାତ୍ରେ ଶିଷ୍ୟର ଆତ୍ମବୋଧ ହୋଇଥାଏ । ଆତ୍ମବୋଧ ହୋଇଯିବା ପରେ ଏକଥା ପ୍ରକଟିତ ହୋଇଯାଏ ଯେ ଏହି ପରଂବ୍ରହ୍ମ ନିର୍ମଳ, ନିର୍ଲିପ୍ତ ଏବଂ ଶାଶ୍ୱତ । 'ମୁଁ' ବୋଲି ଯାହାକୁ କହୁଛ ତାହା ମଧ୍ୟ ସେହିଭଳି ହୋଇ ଯାଏ । ଏହିଭଳି ଭାବେ ବ୍ରହ୍ମଜ୍ଞାନ ଦ୍ୱାରା ଜୀବ ସ୍ୱୟଂ ବ୍ରହ୍ମସ୍ୱରୂପ ହୋଇଯାଏ ଏବଂ ସେ ନିଜ ଶରୀରକୁ ଆନନ୍ଦପୂର୍ବକ ପ୍ରାରବ୍ଧ ଉପରେ ଛାଡ଼ିଦିଏ । ଏହି ଜ୍ଞାନବୋଧକୁ କୁହାଯାଏ ଅଧ୍ୟାତ୍ମ-ଜ୍ଞାନ ବା ଆତ୍ମଜ୍ଞାନ । ଏହି ସଦ୍‌ଜ୍ଞାନ ଦ୍ୱାରା ମନୁଷ୍ୟ ଲାଭକରେ ପରମ ଶାନ୍ତି ଓ ସମାଧାନ ଏବଂ ଏହି ଜ୍ଞାନଦ୍ୱାରା ପୁରୁଷ ପରଂବ୍ରହ୍ମଠାରୁ ଅଭିନ୍ନ ଭକ୍ତିରେ ବିଲୀନ ହୋଇଯାଏ । ସେ ସଂପୂର୍ଣ୍ଣ ନିର୍ଦ୍ୱନ୍ଦ୍ୱ ଓ ନିଶ୍ଚିନ୍ତ ହୋଇଯାଏ । ଯାହାକିଛି ହେବାର କଥା ତାହା ହୁଏ, ଯାହାକିଛି ଚାଲିଯିବା କଥା ତାହା ଚାଲିଯାଏ । ସେଥିପ୍ରତି ତାର ଖାତିର ନ ଥାଏ । ଜନ୍ମ ମରଣ ଭୟ ତା ପାଖରୁ ବିଲକୁଲ୍ ତୁଟିଯାଏ । ଏହିଭଳି ଭାବେ ସଂସାରର ସମଗ୍ର ପ୍ରପଞ୍ଚଠାରୁ ମୁକ୍ତ ହୋଇ ସେ ଈଶ୍ୱରଙ୍କଠାରେ ଏକରୂପ ହୋଇଯାଏ । ଏସବୁ ହେଉଛି ସତ୍‌ସଙ୍ଗର ମହିମା ।

## ତୃତୀୟ ସମାସ
## ।। ମାୟା-ଉଦ୍ଭବ ନିରୂପଣ ।।

ନିର୍ଗୁଣ ଆତ୍ମା ଆକାଶ ଭଳି ନିର୍ମଳ, ନିଶ୍ଚଳ ଓ ସର୍ବବ୍ୟାପୀ । ଏହା ଆକାଶଠାରୁ ବହୁଗୁଣରେ ମହାନ, (ବୃହଦ୍ ଅର୍ଥାତ୍ ବ୍ରହ୍ମ) ଏବଂ ସୂକ୍ଷ୍ମ । ଏହି ବ୍ରହ୍ମସ୍ୱରୂପ ଆତ୍ମା ଆଖିରେ ତ ଦେଖାଯାଇ ନପାରେ, ଏହାର ପରିମାପ ମଧ୍ୟ କରାଯାଇ ନପାରେ । ଆତ୍ମା ଜନ୍ମମରଣ, ଗମନାଗମନଠାରୁ ମୁକ୍ତ । ଏହା କେବେହେଲେ ଭଗ୍ନ ହୁଏ ନାହିଁ କି ନଷ୍ଟ ହୁଏ ନାହିଁ । ଏହା ସର୍ବଦା ନିଷ୍କଳଙ୍କ, ପୂର୍ଣ୍ଣ ଏବଂ ସର୍ବବ୍ୟାପୀ । ବ୍ରହ୍ମ ଅବିନାଶୀ ଓ ନିର୍ଗୁଣ, ମାୟା ବିନାଶଶୀଳ ଓ ସଗୁଣ । ଏହି ବ୍ରହ୍ମ ଓ ମାୟା ଦୁହେଁ ମିଶି ରହିଥାନ୍ତି । ଯେପରି ରାଜହଂସ ଦୁଧ ଏବଂ ପାଣିକୁ ପୃଥକ କରି ଦେଇଥାଏ, ସେହିଭଳି ଜ୍ଞାନୀ ପୁରୁଷ ନିତ୍ୟ ବିବେକ ଦ୍ୱାରା ଜଡ଼, ମିଶ୍ର ଏବଂ ପଞ୍ଚଭୂତରେ ବ୍ୟାପ୍ତ ଆତ୍ମାକୁ ନିର୍ଲିପ୍ତ ଓ ସବୁଠାରୁ ପୃଥକ ବୋଲି ଅନୁଭବ କରିଥାଏ । ଯେଉଁଭଳି ଆଖୁରସକୁ ଗ୍ରହଣ କରିବା ପରେ ଏହାର ଖଦାକୁ ଫିଙ୍ଗି ଦିଆଯାଇଥାଏ, ସେହିଭଳି ଆମେ ଏ ଜଗତରୁ ପଞ୍ଚଭୌତିକ ଏବଂ ତ୍ରିଗୁଣାତ୍ମକ ବସ୍ତୁକୁ ତ୍ୟାଗକରି ଜଗଦିଶଙ୍କୁ ଲାଭ କରିବା ଉଚିତ । ଶ୍ରୋତାମାନେ ପଚାରୁଛନ୍ତି, ଆତ୍ମସ୍ଥିତା ନିର୍ଗୁଣ ବ୍ରହ୍ମରୁ ମାୟାର ଉତ୍ପତ୍ତି ହେଲା କିପରି ? ଏହାର ଉତ୍ତର ସ୍ୱରୂପ କୁହାଯାଇପାରେ କି ଯେପରି ଆକାଶରେ ବାୟୁର ଲହରୀ ଖେଳିଥାଏ, ସେହିଭଳି ବାୟୁର ତେଜ (ଅଗ୍ନି), ତେଜରୁ ବାଷ୍ପ (ଜଳ), ବାଷ୍ପରୁ ପୃଥିବୀ ଏବଂ ପୃଥିବୀରୁ ଅସଂଖ୍ୟ ପ୍ରାଣୀର ଉତ୍ପତ୍ତି ଘଟିଥାଏ । ଏହି ସବୁର ଆଦି ଓ ଅନ୍ତରେ ସେହି ଏକ ବ୍ରହ୍ମ ଯେ ବ୍ୟାପି ରହିଚି ସେକଥା ଯେମିତି ଭୁଲି ନ ଯାଅ । ଯେଉଁ ଯେଉଁ ପ୍ରାଣୀ ବା ପଦାର୍ଥ ଉତ୍ପନ୍ନ ହୋଇଥାଏ, ତାର ବିନାଶ ମଧ୍ୟ ଘଟିଥାଏ । କିନ୍ତୁ ପରବ୍ରହ୍ମର କୌଣସି ପରିବର୍ତ୍ତନ ଘଟେ ନାହିଁ ।

ଯେପରି ଘଟ ପ୍ରସ୍ତୁତ ହେବା ପୂର୍ବରୁ ଏବଂ ଘଟ ହେବାପରେ ମଧ୍ୟ ସେଥିରେ ଆକାଶ ରହିଥାଏ ଏବଂ ଘଟ ଭାଙ୍ଗିଗଲେ ମଧ୍ୟ ଆକାଶର ବିନାଶ ଘଟେ ନାହିଁ, ସେହିଭଳି ଚଳ ଅଚଳ ସଂସାର ରହୁ ବା ନରହୁ ବ୍ରହ୍ମ ସେହି ବ୍ରହ୍ମ ହୋଇ ରହିଥାଏ । ତାର କୌଣସି ପରିବର୍ତ୍ତନ ଘଟେନାହିଁ ବା ବିନାଶ ଘଟେନାହିଁ । ଏହା ଅଚଳ ଏବଂ ଅପରିବର୍ତ୍ତନୀୟ । ଏକଥା କେବଳ ଜ୍ଞାନୀପୁରୁଷ ହିଁ ସ୍ୱୀକାର

କରିଥାଆନ୍ତି । ଆଗରୁ କହିଛି ଏ ଦେହ ହେଉଛି ପଞ୍ଚତତ୍ତ୍ୱର ଏକ ପୁଟୁଳି । ଜ୍ଞାନୀଲୋକ ଏହି ପଞ୍ଚତତ୍ତ୍ୱଠାରୁ ନିଜକୁ ଅଲିପ୍ତ ଓ ଭିନ୍ନ ମନେକରି ସର୍ବଦା ବ୍ରହ୍ମସ୍ୱରୂପରେ ଲୀନ ରହିଥାଆନ୍ତି । ଏହାକୁ କୁହାଯାଏ ନିଜକୁ ନିଜେ ଚିହ୍ନିବା । ଅନ୍ୟଭାଷାରେ ଏହାକୁ ଆତ୍ମ-ଉପଲବ୍ଧି ବା ଆତ୍ମଲାଭ କୁହାଯାଇପାରେ । ନିଜ ମନକୁ ଛାଡ଼ି ବ୍ରହ୍ମଠାରୁ ଅଭିନ୍ନ ତଥା ଏକରୂପ ହୋଇଯିବା ହିଁ ଆତ୍ମନିବେଦନର ମର୍ମକଥା । ପଞ୍ଚତତ୍ତ୍ୱର ନିରାକରଣ ପରେ ମମତ୍ୱର ଭ୍ରମ ଦୂର ହୋଇଯାଇଥାଏ । 'ମୁଁ'ର ଆଉ ଅସ୍ତିତ୍ୱ ରହେ ନାହିଁ । 'ମୁଁ ହିଁ ବ୍ରହ୍ମ' ଏହି ଅନୁଭବ ଆପେ ଆପେ ଆସିଯାଏ । କିନ୍ତୁ ଏହି ଭାବ, ଏହି ଅନୁଭୂତି ସଦ୍‌ଗୁରୁଙ୍କ ବିନାକୃପାରେ ହୋଇନକାରେ । ଏହା ହିଁ ଅନନ୍ୟ ଭକ୍ତି ଏବଂ ଏହି ଅନନ୍ୟଭକ୍ତିରୁ ହିଁ ସାଯୁଜ୍ୟ ମୁକ୍ତି । ପଞ୍ଚତତ୍ତ୍ୱରେ ଜଡ଼ିତ ପ୍ରାଣୀ ଜନ୍ମ ହେବା ମାତ୍ରେ ଚିତ୍କାର କରି କହେ "କୋଽହଂ" ଅର୍ଥାତ "ମୁଁ କିଏ" ? କିନ୍ତୁ ବିବେକଜ୍ଞାନ ହେବା ପରେ ସେ କହେ "ସୋଽହଂ" ଅର୍ଥାତ୍ "ମୁଁ ହେଉଛି ସେହି ନିର୍ଗୁଣ ବ୍ରହ୍ମ ।" ଏହିପରି କହୁକହୁ ନିର୍ଗୁଣ ବ୍ରହ୍ମ ସହିତ ପ୍ରାଣୀ ଅନନ୍ୟ ସମରସ ହୋଇଯିବା ପରେ "ଅହଂ, ସୋଽହଂ" ଏହି ଦୁଇଟିଯାକ ଭୁଲିଯାଏ । କେବଳ ରହେ ଶାଶ୍ୱତ ବ୍ରହ୍ମ । ଏହାଠାରୁ ଅଭିନ୍ନ ମନୁଷ୍ୟ ଦେହଧାରୀ ହୋଇ ମଧ୍ୟ ଦେହାତୀତ ଅବସ୍ଥାକୁ ଅନୁଭବ କରିବାରେ ଲାଗେ । ବିବେକ ସମସ୍ତ ସାର ଅସାର ବିଷୟରେ ଉତ୍ତମ ଜ୍ଞାନ ଲାଭ କରୁ, ଏଥିପାଇଁ 'ମୁଁ କିଏ', 'ବ୍ରହ୍ମ କିଏ' ଏବଂ 'ଏଥିରୁ ଅଭିନ୍ନତା କିପରି ଲାଭ ହୋଇପାରେ' ସେ ସମ୍ପର୍କରେ ଏଠାରେ ବାରମ୍ବାର ଚର୍ଚ୍ଚା କରାଯାଇଛି । ଶ୍ରୋତାମାନଙ୍କ ମନରୁ ସନ୍ଦେହ ଦୂର ହେଉ ଏବଂ ସେମାନେ ଆତ୍ମସ୍ଥିତିକୁ ଯଥାର୍ଥ ଭାବରେ ବୁଝନ୍ତୁ ସେଥିଲାଗି ଏସବୁ କଥା ବାରମ୍ବାର କୁହାଯାଉଛି । ତେଣୁ ଶ୍ରୋତାମାନେ ମୋତେ କ୍ଷମା କରନ୍ତୁ ।

## ଚତୁର୍ଥ ସମାସ
## ।। ବ୍ରହ୍ମ ନିରୂପଣ ।।

କୃତଯୁଗ ଅର୍ଥାତ୍ ସତ୍ୟଯୁଗର କାଳନିର୍ଣ୍ଣୟ ସତରଲକ୍ଷ ଅଠେଇଶି ହଜାର ବର୍ଷ । ତ୍ରେତାଯୁଗ ବାରଲକ୍ଷ ଛୟାନବେ ହଜାର ବର୍ଷ । ଦ୍ୱାପର ଆଠଲକ୍ଷ ଚୌଷଠି ହଜାର ବର୍ଷ ଏବଂ କଳିଯୁଗ ଚାରିଲକ୍ଷ ବତିଶ ହଜାର ବର୍ଷ । ଏହି

ଚାରୋଟିଯାକ ଯୁଗର କାଳ ମୋଟ ତେୟାଳିସୀ ଲକ୍ଷ କୋଡ଼ିଏ ହଜାର ବର୍ଷ । ଏ ଚରୋଟିଯାକ ଯୁଗର ବର୍ଷକୁ ମିଶେଇଲେ ବ୍ରହ୍ମାଙ୍କର ଏକଦିନ ହୋଇଥାଏ । ଏହିଭଳି ହଜାରେ ବ୍ରହ୍ମଦିବସ ହେବାପରେ ବିଷ୍ଣୁଙ୍କର ଏକ ଘଟିକା (ଘଡ଼ି) ହୋଇଥାଏ । ହଜାରେ ବିଷ୍ଣୁଦିବସ ଅତିବାହିତ ହେବାପରେ ଶିବଜୀଙ୍କର ଏକ ପଲକ ହୋଇଥାଏ ତଥା ହଜାରେ ମହେଶ୍ୱରଦିବସ ପରେ ଆଦିମହାମାୟାଶକ୍ତି-ଙ୍କର ଏକ ମୁହୂର୍ତ୍ତ ହୋଇଥାଏ । ଶାସ୍ତ୍ରରେ କାଳର ନିର୍ଣ୍ଣୟ ଏହିଭଳି ଭାବେ କରାଯାଇଛି—

ଚତୁର୍ଯୁଗ ସହସ୍ରାଣି ଦିନମେକଂ ପିତାମହମ୍ ।
ପିତାମହ ସହସ୍ରାଣି ବିଷ୍ଣୋର୍ଘଟିକମେବଚ ।
ବିଷ୍ଣୋରେକସହସ୍ରାଣି ପଲମେକଂ ମହେଶ୍ୱରମ୍ ।
ମହେଶ୍ୱର ସହସ୍ରାଣି ଶକ୍ତିରର୍ଦ୍ଧପଲ ଭବେତ୍ ।

ଏହି ଭଳି ଭାବେ ଦେଖିବାକୁ ଗଲେ ଶକ୍ତିର ହେଉଚନ୍ତି ଅନନ୍ତ ଏବଂ ବ୍ରହ୍ମାଣ୍ଡ ମଧ୍ୟ ଅନନ୍ତ । ଅନନ୍ତକାଳ ଧରି ଏମାନଙ୍କ ଗମନାଗମନ ଲାଗି ରହିଥାଏ ତଥାପି ପରବ୍ରହ୍ମଙ୍କ ସ୍ଥିତି ଅଖଣ୍ଡ ରହିଥାଏ । ଏହାକୁ ''ସ୍ଥିତି'' ମଧ୍ୟ କୁହାଯିବ କିପରି ? କେବଳ ଶବ୍ଦଦ୍ୱାରା ବ୍ୟକ୍ତ କରିବାଲାଗି ''ସ୍ଥିତି''ର ଆଖ୍ୟା ଦିଆଯାଇଛି । ବେଦ ଓ ଶ୍ରୁତି ଆଦି ମଧ୍ୟ ଏହି ପରମାତ୍ମା-ସ୍ୱରୂପକୁ ବର୍ଣ୍ଣନା କରିବାରେ ନିଜର ଅସମର୍ଥତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ''ନେତି ନେତି'' (ଅର୍ଥାତ୍ ଏତିକି ନୁହଁ, ସେତିକି ନୁହଁ) କହି କହି ଚୁପ୍ ହୋଇ ପଡ଼ିଛନ୍ତି ।

ଏହି ମୂଳଗ୍ରନ୍ଥ ରଚନା କରିବା ବେଳକୁ କଳିଯୁଗର ୪୭୯୦ ବର୍ଷ ଅତିବାହିତ ହୋଇସାରିଛି । ଏତେବର୍ଷ ବିତିବା ପରେ ବର୍ଣ୍ଣ-ସଙ୍କର ଉପୁଜିବା ଲକ୍ଷଣ ଦେଖାଗଲାଣି । ଏହି ଚରାଚର ସୃଷ୍ଟିରେ ଜଣେ ଜଣଙ୍କଠୁ ବଳି ବହୁ ଦେବତା ରହିଛନ୍ତି । କିଏ ବିଷ୍ଣୁଙ୍କୁ ବଡ଼ ମନେ କରୁଚି ତ କିଏ ଶିବଙ୍କୁ, କେହି କେହି ଶକ୍ତିଙ୍କୁ । ଲୋକେ ନିଜ ନିଜର ପୂଜା ଉପାସନା ଅନୁସାରେ ଏହିଭଳି ମାନିଥାଆନ୍ତି । କିନ୍ତୁ ''ଯା ଦୃଷ୍ଟଂ ତନ୍ନଷ୍ଟମ୍''— ଏହି ଶ୍ରୁତିବଚନ ଅନୁସାରେ ଯାହା ଯାହା ଦେଖାଯାଇଥାଏ ସବୁ ବିନାଶଶୀଳ ଏବଂ ଏହି ଚଳ ଅଚଳ (ସ୍ଥାବର ଅସ୍ଥାବର) ସଂସାର ହେଉଛି ମାୟାର ଖେଳ । ଏକ ଆତ୍ମା ହିଁ ସର୍ବବ୍ୟାପୀ ଓ ଅବିନାଶୀ ବୋଲି ଯୁଗ ଯୁଗ ଧରି ସାଧୁସନ୍ଥମାନେ କହି ଆସିଛନ୍ତି ।

ଚିତ୍ରରେ ଅଙ୍କା ଯାଇଥିବା ସୈନ୍ୟ-ବାହିନୀ ଭିତରୁ କିଏ ବଡ଼ କିଏ ଛୋଟ ? ସ୍ୱପ୍ନରେ ଦେଖାଯାଇଥିବା ରାଜା ଓ ଭିକାରୀ ଜାଗ୍ରତ ଅବସ୍ଥାରେ ସମାନଭାବେ ମିଥ୍ୟା । ଏହି ତଥ୍ୟକୁ ଅଜ୍ଞାନୀମାନେ ବୁଝି ପାରନ୍ତି ନାହିଁ କିନ୍ତୁ ଜ୍ଞାନୀମାନେ ଭଲଭାବରେ ବୁଝନ୍ତି । ଯିଏ ଜନ୍ମ ଗ୍ରହଣ କରିଥାଏ ସେ ନିଜକୁ ଯେତେ ବଡ଼ ମନେ କଲେ ମଧ୍ୟ ଦିନେ ନା ଦିନେ ମରେ । ତେଣୁ ବାସ୍ତବରେ ଯିଏ ଆତ୍ମଜ୍ଞାନୀ ସିଏହିଁ ବଡ଼ ଏବଂ ସବୁଠାରୁ ମହାନ୍ ଏକମାତ୍ର ପରବ୍ରହ୍ମ ପରମାତ୍ମା । ଏଥିରେ ସବୁ ଦେବଦେବୀଙ୍କ ସମାବେଶ । ଏହି ପରମାତ୍ମା ନିର୍ଗୁଣ ଓ ନିରାକାର । ଏଠାରେ ଉତ୍ପତ୍ତି, ସ୍ଥିତି ଓ ଲୟର ପ୍ରଶ୍ନ ମଧ୍ୟ ଉଠି ନପାରେ । ଦେଶ, ସ୍ଥାନ, କାଳ, ନାମ-ରୂପ—ଏସବୁ ଅନୁମାନ ଓ କଳ୍ପନା ମାତ୍ର । ଏ ସବୁର ବିଚାର ବ୍ରହ୍ମ ପ୍ରଳୟରେ ସମାପ୍ତ ହୋଇ ଯାଇଥାଏ । ବ୍ରହ୍ମ-ପ୍ରଳୟ ଅର୍ଥାତ୍ ବ୍ରହ୍ମ-ସାକ୍ଷାତ୍କାର ସମୟରେ ଯେଉଁ ଅଶେଷ କଳ୍ପନାର ଲୟ ଘଟିଥାଏ, ସେହି ବ୍ରହ୍ମର ନାମ ନାହିଁ କି ରୂପ ନାହିଁ । ତେଣୁ ତାର ପ୍ରଳୟଆଦିର କୌଣସି ଭୟନଥାଏ । ବ୍ରହ୍ମ ସଦାସର୍ବଦା ନିତ୍ୟ ଏବଂ ଏକରସାତ୍ମକ । ଯିଏ ଏହି ବ୍ରହ୍ମର ବାସ୍ତବିକ ସ୍ୱରୂପକୁ ଜାଣେ, ଯିଏ ଏହାକୁ ପ୍ରତ୍ୟକ୍ଷ ଅନୁଭବ କରିଥାଏ ଏବଂ ଲୋକମଙ୍ଗଳ, ଲୋକୋଦ୍ଧାର ଲାଗି ଯିଏ ଏହାର ଯଥାର୍ଥ ନିରୂପଣ କରିଥାଏ, ସିଏ ହିଁ ପ୍ରକୃତ ବ୍ରହ୍ମବେତ୍ତା ବ୍ରାହ୍ମଣ ।

## ପଞ୍ଚମ ସମାସ
## ।। ମାୟା-ବ୍ରହ୍ମ ନିରୂପଣ ।।

ଶ୍ରୋତାଗଣ ଏଥର ମାୟା ଓ ବ୍ରହ୍ମ ସମ୍ପର୍କରେ ଶୁଣନ୍ତୁ । ବ୍ରହ୍ମ ନିର୍ଗୁଣ, ନିରାକାର । କିନ୍ତୁ ମାୟା ସଗୁଣ, ସାକାର । ବ୍ରହ୍ମ ଅନନ୍ତ, ମାୟା ସାନ୍ତ ଅର୍ଥାତ୍ ମାୟାର ଅନ୍ତ ରହିଛି । ବ୍ରହ୍ମ ନିର୍ମଳ, ନିଶ୍ଚଳ ଏବଂ ନିରୂପାଧିକ । କିନ୍ତୁ ମାୟା ଚଞ୍ଚଳ, ଚପଳ ଏବଂ ଉପାଧିସଂପନ୍ନ । ମାୟା ଦୃଶ୍ୟମାନ ଓ ଭାସମାନ କିନ୍ତୁ ବ୍ରହ୍ମ ସେପରି ନୁହଁ । ମାୟା ଜନ୍ମ-ମୃତ୍ୟୁ ଓ ବିକାରଗ୍ରସ୍ତ । କିନ୍ତୁ ବ୍ରହ୍ମ ସର୍ବଦା ନିର୍ବିକାର ଏବଂ ଜନ୍ମ-ମରଣ ରହିତ । ମାୟା ସବୁ କିଛି କରେ, ଧରେ, କିନ୍ତୁ ବ୍ରହ୍ମ ନିର୍ଲିପ୍ତ ଓ ନିଷ୍କାମ । ଧାରଣାଶକ୍ତି ଦ୍ୱାରା ମାୟାର କଳନା କରାଯାଇପାରେ କିନ୍ତୁ ବ୍ରହ୍ମ ଅକଳନ । ମାୟାର ନାମରୂପ ରହିଥାଏ ଅଥଚ ବ୍ରହ୍ମର ସେସବୁ କିଛି ନ ଥାଏ ।

ମାୟା ପଞ୍ଚଭୌତିକ ଓ ଅନେକ । କିନ୍ତୁ ବ୍ରହ୍ମ ଶ୍ୱାଶ୍ୱତ ଓ ଏକ । ମାୟା ଲଘୁ ଓ ଅସାର, ବ୍ରହ୍ମ ମହାନ୍ ତଥା ସାର । ଏହିଭଳି ଭାବରେ ମାୟାଠାରୁ ବ୍ରହ୍ମ ପାର୍ଥକ୍ୟ ବହୁତ । ସାଧୁସନ୍ଥ ଓ ସଜ୍ଜନମାନେ ଏହି ଭେଦ ବା ପାର୍ଥକ୍ୟକୁ ଭଲଭାବରେ ଜାଣିଥା'ନ୍ତି । ହଂସ ଯେପରି ପାଣିକୁ ଛାଣି ଦୁଧ ପିଇଥାଏ, ସେହିଭଳି ଜ୍ଞାନୀପୁରୁଷ ମାୟାର ପରଦା ହଟେଇ ବ୍ରହ୍ମାନୁଭୂତି-ରସ ପାନ କରିଥାଏ ।

ବ୍ରହ୍ମ ଆକାଶ ଭଳି ନିର୍ମଳ, କିନ୍ତୁ ମାୟା ପୃଥିବୀ ଭଳି ଜଟିଳ । ବ୍ରହ୍ମ ସୂକ୍ଷ୍ମ, ମାୟା ସ୍ଥୂଳ । ବ୍ରହ୍ମ ଅପ୍ରତ୍ୟକ୍ଷ ଏବଂ ଏହା ନେତ୍ରାଦି ଇନ୍ଦ୍ରିୟ ଦ୍ୱାରା ଅଗୋଚର । କିନ୍ତୁ ମାୟା ପ୍ରତ୍ୟକ୍ଷ ଏବଂ ଇନ୍ଦ୍ରିୟ ଦ୍ୱାରା ଗୋଚର । ବ୍ରହ୍ମ ସଦାସର୍ବଦା ଏକରୂପ, ମାୟା ବିଷମ ଓ ନାନାରୂପ । ବ୍ରହ୍ମ ଅଲକ୍ଷ୍ୟ ଅସାକ୍ଷୀ କିନ୍ତୁ ମାୟା ଲକ୍ଷ୍ୟ ଓ ସାକ୍ଷୀ (ଯିଏ ଦେଖିପାରେ) । ମାୟା ଜୀବ-ଶିବ, ବନ୍ଧ-ମୋକ୍ଷ, ପାପ-ପୁଣ୍ୟ, ପ୍ରବୃତ୍ତି-ନିବୃତ୍ତି ଏହିଭଳି ଏପଟକୁ ସେପଟ ହୋଇଥାଏ । ଅର୍ଥାତ୍ ଏହା ଦୁଇପକ୍ଷ । କିନ୍ତୁ ବ୍ରହ୍ମରେ କୌଣସି ପକ୍ଷ ନ ଥାଏ । ମାୟା ଖଣ୍ଡନମଣ୍ଡନ ରୂପକ ପୂର୍ବପକ୍ଷ କିନ୍ତୁ ବ୍ରହ୍ମ କେବଳ ସିଦ୍ଧାନ୍ତ ରୂପ । ବ୍ରହ୍ମ ନିରନ୍ତର ପରିପୂର୍ଣ୍ଣ, ସତ୍ୟ, ନିତ୍ୟ, ସନାତନ କିନ୍ତୁ ମାୟା ଅସତ୍ୟ, ଅନିତ୍ୟ ଏବଂ ଅପୂର୍ଣ୍ଣ । ବ୍ରହ୍ମଲାଗି ମୌନ ହିଁ ପର୍ଯ୍ୟାପ୍ତ । କିନ୍ତୁ ମାୟା ସମ୍ପର୍କରେ ଯେତେ କହିଲେ ମଧ୍ୟ କମ କୁହାଗଲା ବୋଲି ଧରାଯାଇ-ଥାଏ । ମାୟାର ଖେଳ ଚାଲିଥାଏ, ଏହା ଅନେକ ରୂପ ଧରିଥାଏ । ଏହା ଅସଂଖ୍ୟ ରଙ୍ଗରେ ରଞ୍ଜିତ ହୋଇଥାଏ ଏବଂ ନାନା କଳ୍ପନାବିଳାସରେ ମାତିଥାଏ । ତାତ୍ପର୍ଯ୍ୟ ହେଉଛି—ସ୍ଥାବର ଅସ୍ଥାବରସଂପନ୍ନ ଏହି ସମଗ୍ର ସୃଷ୍ଟିରେ ଯେଉଁସବୁ ପ୍ରବୃତ୍ତି ଚାଲିଥାଏ ଏବଂ ଯେଉଁ ସବୁ ପ୍ରବୃତ୍ତି ହଲଚଲ ହୋଇଥାଏ ସେସବୁ ହେଉଛି ମାୟା । ବ୍ରହ୍ମ ଏହି ସବୁଥିରେ ଅନ୍ତର୍ବଦ୍ଧ ଏବଂ ପରିପୂର୍ଣ୍ଣ ଅବସ୍ଥାରେ ଥାଏ । ଯେପରି ଆକାଶ ଜଳରେ ରହିଥିଲେ ମଧ୍ୟ ଏହାକୁ ଜଳ ସ୍ପର୍ଶ କରିପାରିନଥାଏ, ସେହିଭଳି ବ୍ରହ୍ମ ସବୁ ପ୍ରବୃତ୍ତି ଭିତରେ ଥିଲେ ମଧ୍ୟ କୌଣସିଥିରେ ଲିପ୍ତ ନୁହେଁ ।

ଆଉ ଏ ସମ୍ପର୍କରେ ବିସ୍ତାରିତ ଭାବରେ କହିବାର କୌଣସି ଆବଶ୍ୟକତା ନାହିଁ । ଯଦି ମାୟା ଓ ବ୍ରହ୍ମର ଗୂଢ଼ ରହସ୍ୟକୁ ଭଲ ଭାବରେ ବୁଝିନିଅ ଏବଂ ଏହାକୁ ପ୍ରତ୍ୟକ୍ଷ ଭାବରେ ଅନୁଭବ କର ତାହାହେଲେ ତୁମେ ଜନ୍ମମରଣ ଉପାଧିରୁ ମୁକ୍ତ ହୋଇଯାଇ ପାରିବ । କେବଳ ସନ୍ଥ ମହାତ୍ମାମାନଙ୍କ ଶରଣ ନେଲେ ହିଁ ତୁମେ ଏହି ରହସ୍ୟକୁ ଭେଦ କରି ପାରିବ ଏବଂ ମୋକ୍ଷର ପ୍ରକୃତ

ମାର୍ଗ ଅବଗତ ହୋଇପାରିବ । ସନ୍ଥମାନଙ୍କର ମହିମା କ'ଣ କହିବି ? ଏମାନଙ୍କ ମହିମାର କୌଣସି ସୀମା ନାହିଁ । ଏଭଳି ବ୍ରହ୍ମସ୍ୱରୂପ ସନ୍ଥଙ୍କ ସତ୍‌ସଙ୍ଗ ଦ୍ୱାରା ତୁମେ ସେମାନଙ୍କ କୃପାକଟାକ୍ଷ ଲାଭ କରିପାରିବ ଏବଂ ପ୍ରକୃତ ମୁମୁକ୍ଷୁଭାବରେ ମୋକ୍ଷର ଅଧିକାରୀ ହୋଇପାରିବ । ଯିଏ ଏହି ଅଧିକାର ଲାଭ କରେ ସେ ସ୍ୱୟଂ ପରମାତ୍ମା ସ୍ୱରୂପରେ ଲୀନ ହୋଇଯାଏ ।

## ଷଷ୍ଠ ସମାସ
## ।। ସୃଷ୍ଟି-କଥନ ।।

ଶ୍ରୋତାମାନଙ୍କ ପ୍ରଶ୍ନ—ଶାସ୍ତ୍ରର କଥାନୁସାରେ ବ୍ରହ୍ମ ରହି ଆସିଚି ସୃଷ୍ଟିର ଆଗରୁ ଏବଂ ସୃଷ୍ଟି ହେଉଚି ମିଥ୍ୟା । କିନ୍ତୁ ସୃଷ୍ଟିକୁ ତ ଆମେ ପ୍ରତ୍ୟକ୍ଷଭାବେ ଦେଖୁଚୁ, ତାକୁ ମିଥ୍ୟା କହିବୁ କିପରି ?

"ଭ୍ରମୈବାଁଶୋ ଜୀବଲୋକେ ଜୀବଭୂତ ସନାତନଃ ।" ଗୀତାର ଏହି ବାଣୀ ଏହାର ଉତ୍ତର ପାଇଁ ଯଥେଷ୍ଟ । ଭ୍ରମବଶତଃ ସୃଷ୍ଟି ସତ୍ୟ ମନେ ହୋଇଥାଏ, କିନ୍ତୁ "ଯଦୃଷ୍ଟଂ ତନ୍ନଷ୍ଟଂ"- (ଯାହା ଦେଖୁ ସେ ସବୁ ବିନାଶଶୀଳ) ଏହି ବିଚାର ଅନୁଯାୟୀ ସୃଷ୍ଟି ଯେ ମିଥ୍ୟା ଏହା ପ୍ରତିପାଦିତ ହୋଇଥାଏ । ଏହି ଦୁଇଟିଯାକ ବଚନକୁ ପ୍ରମାଣ ଭାବେ ମାନିଲେ ସୃଷ୍ଟି "ସତ୍ୟ କି ମିଥ୍ୟା" ଏହି ଭ୍ରମ ହୋଇଥାଏ । ତାହାହେଲେ ନିଶ୍ଚିତ ନିର୍ଣ୍ଣୟ କରାଯିବ କିପରି ? ସୃଷ୍ଟିକୁ ଯଦି ସତ୍ୟ କୁହାଯିବ ତ ସୃଷ୍ଟି ହେଉଛି ବିନାଶଶୀଳ । କିନ୍ତୁ ସତ୍ୟବସ୍ତୁର ବିନାଶ କେବେହେଲେ ଘଟି ନ ଥାଏ । ଧର, ସୃଷ୍ଟିକୁ ଅସତ୍ୟ କୁହାଯିବ; କିନ୍ତୁ ଏହା ତ ପ୍ରତ୍ୟକ୍ଷ ଭାବେ ଦେଖାଯାଉଚି । ତାତ୍‌ପର୍ଯ୍ୟ ହେଉଚି ସୃଷ୍ଟିକୁ ସତ୍ୟ କୁହାଯାଇ ପାରିବ ନାହିଁ କିମ୍ବା ଅସତ୍ୟ କୁହାଯାଇ ପାରିବନି । ତେଣୁ ଏହା ବ୍ରହ୍ମଭଳି ଅନିର୍ବଚନୀୟ ।

ସୃଷ୍ଟିରେ ଦୁଇ ଶ୍ରେଣୀର ଲୋକ ରହିଥା'ନ୍ତି—ଜ୍ଞାନୀ ଓ ଅଜ୍ଞାନୀ । ଯେଉଁମାନେ ଅଜ୍ଞାନୀ ସେମାନେ ସୃଷ୍ଟିକୁ ସତ୍ୟ ଓ ଶ୍ୱାଶ୍ୱତ ମନେ କରି ସେହିଭଳି ବ୍ୟବହାର କରିଥାଆନ୍ତି । ସେମାନଙ୍କ ବିଚାରରେ ଦେବ-ଧର୍ମ, ତୀର୍ଥ-ବ୍ରତ ଆଦି ସବୁ ସତ୍ୟ । ଏହାର ବିପରୀତରେ ଜ୍ଞାନୀପୁରୁଷ ସୃଷ୍ଟିକୁ ମିଥ୍ୟା ମନେ କରି ଶାଶ୍ୱତବ୍ରହ୍ମକୁ ଅଙ୍ଗୀକାର କରିଥାଆନ୍ତି । ଜ୍ଞାନୀମାନେ କହନ୍ତି—ଯଦି ଓ

ଅଜ୍ଞାନୀଜୀବମାନେ ମୂର୍ତ୍ତିପୂଜା କରିବାକୁ ଭଲ ପାଇଥାଆନ୍ତି, ବ୍ରହ୍ମ ପ୍ରଳୟ ସମୟରେ ଯେତେବେଳେ ସମଗ୍ର ବିଶ୍ୱର ବିନାଶ ଘଟେ, ସେତେବେଳେ ଏହି ମୂର୍ତ୍ତିପୂଜା କି କାର୍ଯ୍ୟରେ ଲାଗିବେ ? ସେତେବେଳେ ତ କୌଣସି ଦେବତାର ଅସ୍ତିତ୍ୱ ରହିବ ନାହିଁ । ସେମାନଙ୍କ ମୂର୍ତ୍ତିକୁ ରକ୍ଷା କରିବ କିଏ ? ତେଣୁ ଯେଉଁମାନେ ନିଜର ମଙ୍ଗଳ ଚାହାଁନ୍ତି, ସେମାନେ ଜ୍ଞାନୀ ପୁରୁଷ ତଥା ସନ୍ଥ ସଜ୍ଜନମାନଙ୍କ କଥାନୁସାରେ ଆଚରଣ କରିବା ଶ୍ରେୟସ୍କର । ଚନ୍ଦ୍ରଚୂଡ଼ଙ୍କ ବଚନ ହେଉଚି—

ତୀର୍ଥେ ତୀର୍ଥେ ନିର୍ମଳ ବ୍ରହ୍ମ ବୃନ୍ଦଂ
ବୃନ୍ଦେ ବୃନ୍ଦେ ତତ୍ତ୍ୱଚିନ୍ତାନୁବାଦଃ ।
ବାଦେ ବାଦେ ଜାୟତେ ତତ୍ତ୍ୱବୋଧ ।
ବୋଧେ ବୋଧେ ଭାସତେ ଚନ୍ଦ୍ରଚୂଡ଼ଃ ॥

ଅର୍ଥାତ୍ ତୀର୍ଥ ସ୍ଥାନମାନଙ୍କରେ ବ୍ରହ୍ମବାଦୀମାନଙ୍କ ଗହଣରେ ବସି ତତ୍ତ୍ୱଚିନ୍ତନ କରିବା ସଙ୍ଗେ ସଙ୍ଗେ ମୁମୁକ୍ଷୁ ଭାବରେ ପ୍ରଶ୍ନ କରି ମନରୁ ସନ୍ଦେହ ମୋଚନ କରିବା ଉଚିତ । ଏହାଦ୍ୱାରା ତତ୍ତ୍ୱବୋଧ ହୋଇଥାଏ । ତତ୍ତ୍ୱ-ବୋଧ ହେବା ପରେ ଈଶ୍ୱରପ୍ରାପ୍ତି ସୁଲଭ ହୋଇଥାଏ ।

ଶ୍ରୀ ଶଂକରାଚାର୍ଯ୍ୟ ଗୁରୁ-ଗୀତାରେ ସଦ୍‌ଗୁରୁ ଉପାସନା ମହିମାର ଅବତାରଣା କରିଛନ୍ତି । ସଦ୍‌ଗୁରୁ-ଉପାସନାର ପ୍ରଥମ ନିୟମ ହେଉଛି ଗୁରୁଙ୍କୁ ଭଲଭାବେ ଚିହ୍ନିବା । ଏହି ପରିଚୟ ହୋଇଯିବା ପରେ ସତ୍ ଅସତ୍ ନିରୂପଣ କରୁଥିବା ବିବେକ ବୁଦ୍ଧି ସାହାଯ୍ୟରେ ଏବଂ ସଦ୍‌ଗୁରୁଙ୍କ ଦ୍ୱାରା ନିଜ ପ୍ରଶ୍ନର ସମାଧାନ କରିନେବା ଉଚିତ । ସଦ୍‌ଗୁରୁ ମହିମା ସମ୍ପର୍କରେ କୁହାଯାଇଚି—

ବ୍ରହ୍ମାନନ୍ଦଂ ପରମସୁଖଦଂ କେବଳ ଜ୍ଞାନ-ମୂର୍ତ୍ତିମ୍ ।
ଦ୍ୱନ୍ଦ୍ୱାତୀତଂ ଗଗନସଦୃଶଂ ତତ୍ତ୍ୱମସ୍ୟାଦି ଲକ୍ଷ୍ୟମ୍ ।

ଏକଂ ନିତ୍ୟଂ ବିମଳମଚଳଂ ସର୍ବଧିସାକ୍ଷୀଭୂତମ୍ ।
ଭାବାତୀତଂ ତ୍ରିଗୁଣରହିତଂ ସଦ୍‌ଗୁରୁ ତଂ ନମାମି ॥

ସଦ୍‌ଗୁରୁଙ୍କର ଏଭଳି ଭାବାତୀତ ସ୍ୱରୂପରେ ସୃଷ୍ଟିର ମିଥ୍ୟା ଭାବ ରହିବା ଅସମ୍ଭବ । ଜ୍ଞାନୀପୁରୁଷ ସଦ୍‌ଗୁରୁଙ୍କ ବାସ୍ତବିକ ସ୍ୱରୂପକୁ ବୁଝେଇ ସୃଷ୍ଟିକୁ ମିଥ୍ୟା

ଯଦି କହନ୍ତି, ତାହାହେଲେ ଶ୍ରୋତାମାନେ ପ୍ରଶ୍ନ କରିବା ସ୍ୱାଭାବିକ ଯେ ତୀର୍ଥାଟନ, ଗୁରୁ ଉପାସନା ଆଦି କ'ଣ ମିଥ୍ୟା ? ଯଦି ଗୁରୁଉପାସନା ମିଥ୍ୟା ହୁଏ ତାହା ହେଲେ ଗୁରୁବଚନକୁ ସତ୍ୟ ବୋଲି ମାନିବୁ କିପରି ?

ଉତ୍ତର— ତୁମର କଳ୍ପନାର ଗୁରୁ କେବଳ ହାଡ଼ ମାଂସର ପୁତୁଳି ମାତ୍ର କିନ୍ତୁ ଗୁରୁଙ୍କ ସ୍ୱରୂପ "ବ୍ରହ୍ମାନନ୍ଦ ପରମ ସୁଖଦଂ" ଏବଂ ସେ "ଦ୍ୱନ୍ଦ୍ୱାତୀତ, ତତ୍ତ୍ୱମସ୍ୟାଦିଲକ୍ଷ୍ୟ ଏବଂ ନିତ୍ୟ ଅଚଳ ।" ଏପରି ସଦ୍‌ଗୁରୁଙ୍କ ଶୁଦ୍ଧ ସ୍ୱରୂପକୁ ଧ୍ୟାନ କଲେ ଯାଇ ସୃଷ୍ଟିର ମିଥ୍ୟାଭିମାନ ନଷ୍ଟ ହୋଇ ତୁମର ଉଦ୍ଧାର ହୋଇ ପାରିବ ।

ଶ୍ରୋତା ପୁଣି ପ୍ରଶ୍ନ କରୁଛନ୍ତି—ଆପଣ ଏବେ କହିଥିଲେ "ଜୀବଭୂତଃ ସନାତନଃ ।" ଭଗବାନଙ୍କର ଏହି କହିବାନୁସାରେ ସୃଷ୍ଟିର ଅସ୍ତିତ୍ୱ ସିଦ୍ଧ ହେଉଚି । ତାହାହେଲେ ଭଗବାନଙ୍କ ବଚନ କ'ଣ ମିଥ୍ୟା ?

ଉତ୍ତର—ଭଗବାନ ଯାହା କହିଛନ୍ତି ତୁମେମାନେ ତାର ରହସ୍ୟ ତଥା ଗୂଢ଼ାର୍ଥ ଜାଣିପାରୁ ନାହିଁ । ଶ୍ରୀକୃଷ୍ଣ କହିଛନ୍ତି- "ଅଶ୍ୱତ୍ଥଃ ସର୍ବବୃକ୍ଷାନାଂ" ଅର୍ଥାତ୍ ସବୁ ବୃକ୍ଷ ମଧ୍ୟରେ ମୁଁ ହେଉଚି ଅଶ୍ୱତ୍ଥଃ ବୃକ୍ଷ । କିନ୍ତୁ ବୃକ୍ଷକୁ ତ ଟିକି ଟିକି କରି କାଟି ଦିଆଯାଇପାରେ ଏବଂ ଏହାକୁ ପୋଡ଼ି ପାଉଁଶ କରି ଦିଆଯାଇପାରେ । ତେଣୁ ଭଗବାନ ପୁଣି କହିଛନ୍ତି—

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।

ଅର୍ଥାତ୍ ଆତ୍ମସ୍ୱରୂପକୁ ଶସ୍ତ୍ରଦ୍ୱାରା କଟାଯାଇନପାରେ, ଅଗ୍ନିଦ୍ୱାରା ଜଳାଯାଇନପାରେ, ପାଣିରେ ମିଳେଇ ଦିଆଯାଇନପାରେ କିମ୍ବା ବାୟୁଦ୍ୱାରା ଶୋଷଣ କରାଯାଇନପାରେ । କିନ୍ତୁ ଅଶ୍ୱତ୍ଥ ଗଛକୁ ତ କଟାଯାଇପାରିବ, ଜଳାଯାଇପାରିବ, ପାଣିରେ ବୁଡେଇ ଦିଆଯାଇପାରିବ ଏବଂ ବାୟୁରେ ଉଡ଼େଇ ଦିଆଯାଇପାରିବ । ତା ଅର୍ଥ ଏହା ବିନାଶଶୀଳ । ତେଣୁ ଏହି ଦୁଇ ପରସ୍ପର ବିରୋଧୀ କଥାରେ ସାମ୍ୟ ରହିବ କିପରି ? କିନ୍ତୁ ଏହାର ସମାଧାନ ସଦ୍‌ଗୁରୁ ଦ୍ୱାରା କରାଯାଇପାରେ ।

ଆଉ ଏକ ଉଦାହରଣ । ଶ୍ରୀକୃଷ୍ଣ ଭଗବାନ ଗୀତାରେ ଏକଥା ମଧ୍ୟ କହିଛନ୍ତି– ''ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି'' ଅର୍ଥାତ ମୁଁ ହେଉଛି ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ । ତେଣୁ ଏହି ଚଞ୍ଚଳମନ ଭିତରେ ସୃଷ୍ଟି ହେଉଥିବା ତରଙ୍ଗକୁ ରୋକାଯିବ କିପରି ? ଉତ୍ତର ସ୍ୱରୂପ କୁହାଯାଇପାରେକି ଯେପରି ଛୋଟ ପିଲାଙ୍କୁ ପାଟିରେ ଗୋଡ଼ିଆଦି ରଖି 'ଓଁ ନମଃ' ଆଦି ଶିକ୍ଷା ଦିଆଯାଇଥାଏ, ସେହିଭଳି ଭଗବାନ ଶ୍ରୀକୃଷ୍ଣ ଅବୋଧ ବାଳକକୁ ଗୀତା ମାଧ୍ୟମରେ ସାଧନମାର୍ଗ ଦେଖାଇଛନ୍ତି । ତେଣୁ ଏହା ଭିତରେ ଥିବା ବିରୋଧାଭାସକୁ କେନ୍ଦ୍ରକରି ବାଦବିବାଦ କରିବା ବ୍ୟର୍ଥ । ବେଦଶାସ୍ତ୍ର, ଶ୍ରୁତି ଓ ସ୍ମୃତି ଆଦିରେ ମଧ୍ୟ ଏହିଭଳି ଅନେକ ବିରୋଧାଭାସ ରହିଛି । ଏହାର ରହସ୍ୟ ନିର୍ଣ୍ଣୟ କେବଳ ସଦ୍‌ଗୁରୁଙ୍କ ଦ୍ୱାରା ହିଁ କରାଯାଇପାରେ । ଶାସ୍ତ୍ରରେ ତ ପୂର୍ବପକ୍ଷ ଓ ସିଦ୍ଧାନ୍ତର କେବଳ ସଙ୍କେତ ରହିଥାଏ । ଏହାର ନିଶ୍ଚିତ ସମାଧାନ ସଦ୍‌ଗୁରୁ ଏବଂ ସନ୍ଥମାନଙ୍କଦ୍ୱାରା କରାଯାଇପାରେ ।

ତେଣୁ ବାଦବିବାଦକୁ ଛାଡ଼ି ସତ୍‌ସଙ୍ଗର ଆଶ୍ରୟ ଗ୍ରହଣ କରିବା ଉଚିତ । କଳ୍ପନାର ଉଦର ଭିତରେ ଅନେକ ପ୍ରକାରର ସୃଷ୍ଟିର ଆଭାସ ମିଳିଥାଏ ଏବଂ ପରିଶେଷରେ ଏଗୁଡ଼ିକ ଧ୍ୱଂସ ପାଇଥାଏ । ତେଣୁ ନିଶ୍ଚିତ ଭାବରେ ବୁଝିନିଅ ଯେ ଏସବୁ ହେଉଛି ମିଥ୍ୟାଭାସ । ଉକ୍ତ କଳ୍ପନା ଦ୍ୱାରା କୌଣସି ଦେବତାକୁ ସତ୍ୟ ବୋଲି ମାନିନେଇ ତା' ଉପରେ ଦୃଢ଼ ବିଶ୍ୱାସ ପୋଷଣ କରେ । ଯେତେବେଳେ ସେହି ଦେବତାର ଅଙ୍ଗ ଭଙ୍ଗ ହୁଏ ସେତେବେଳେ ସେ ମନଦୁଃଖ କରେ । ସେ ପଥରର ମୂର୍ତ୍ତିକୁ ପୂଜା କରେ ଏବଂ ସେହି ମୂର୍ତ୍ତି ଖଣ୍ଡିଆ ହୋଇଗଲେ ସେ କାନ୍ଦିବାକୁ ଲାଗେ । କୌଣସି ମୂର୍ତ୍ତି ହଜିଗଲେ, ଚୋରି ହୋଇଗଲେ ବା କେହି ଦୁରାଚାର ତାକୁ ଅପହରଣ କରି ନେଇଗଲେ କିମ୍ବା ନଷ୍ଟଭ୍ରଷ୍ଟ କରିଦେଲେ ଆମେ କହିଥାଉ ଯେ ଦେବତାଙ୍କର ବିପୁଳ ମହିମା ଥିଲା, କିନ୍ତୁ ଦୁଷ୍ଟମାନେ ତାକୁ ନଷ୍ଟ କରିଦେଲେ । ଯଦି ଦେବତାଙ୍କର ମହିମା ଥିଲା ଏବେ ଗଲା କୁଆଡ଼େ ? ବଣିଆମାନେ ସୁନାରେ କେତେକ ଦେବ-ମୂର୍ତ୍ତି ତିଆରି କରନ୍ତି । କେତେକ ମୂର୍ତ୍ତି ଧାତୁରେ ତିଆରି କରାଯାଏ ତ ଆଉ କେତକ ମୂର୍ତ୍ତି ପଥର ଖୋଳି ତିଆରି କରାଯାଏ । ପୁଣି ନର୍ମଦା ଓ ଗଣ୍ଡୁକୀ ନଈବାଲିରୁ ଅଗଣିତ ଶାଳଗ୍ରାମ ଓ ଶିବଲିଙ୍ଗ ମିଳିଥାଏ । ଚକ୍ରତୀର୍ଥରେ ଅସଂଖ୍ୟ ଚକ୍ରଚିହ୍ନଥିବା ପଥର ମିଳେ । ଏହିଭଳି କୌଣସି ଗୋଟିଏ ଦେବତା ଉପରେ ମନ ଦୃଢ଼ ହୋଇ ରହେ ନାହିଁ । ଭଳିକିଭଳି

ପଥର ଓ ସ୍ଫଟିକରେ ତିଆରି ମୂର୍ତ୍ତି ଏବଂ ତମ୍ବାରେ ତିଆରି ମୋହର ଓ ମୂର୍ତ୍ତି ଆଦିକୁ ପୂଜା କରାଯାଇଥାଏ । ଏହି ଦେବତାମାନଙ୍କୁ ପ୍ରକୃତ ଦେବତା ବୋଲି ଆମେ ମାନିବା କିପରି ?

କେହି କେହି କହିଥାଆନ୍ତି, ''ଆମର ଦେବତା ବଡ଼ ପ୍ରତ୍ୟକ୍ଷ ଥିଲେ, ସଙ୍କଟ ସମୟରେ ସେ ସବୁବେଳେ ଆମକୁ ସାହାଯ୍ୟ କରୁଥିଲେ, ମନସ୍କାମନା ପୂର୍ଣ୍ଣ କରୁଥିଲେ । ଏବେ ସେ ଦେବତାଙ୍କର ଶକ୍ତି ସାମର୍ଥ୍ୟ ଲୋପପାଇଗଲାଣି । ତେଣୁ ସେ ଆଉ ସାହାଯ୍ୟ କରିପାରୁନାହାନ୍ତି ।'' ସେମାନେ ମନେ ମନେ ଭାବନ୍ତି, ଯାହା ହେବାର ଥିଲା ତା' ହୋଇଯାଉଛି, ତାକୁ ରୋକିବ କିଏ ? ସବୁଠାରୁ ମଜାକଥା ହେଉଛି; ଧାତୁ, ପଥର, ମାଟି, କାଠ ଆଦି ଦେବତା ହୋଇ ଯାଇପାରୁଛନ୍ତି । କିନ୍ତୁ ଜାଣିରଖ, ଇଏ ସବୁ ତୁମମାନଙ୍କର କଳ୍ପନା ମାତ୍ର । ତୁମେ ଯାହାକୁ ଦେବତା ମନେକରି ପୂଜା କରନା କାହିଁକି, କର୍ମଫଳ ଭୋଗିବାକୁ ହିଁ ପଡ଼ିବ । ଈଶ୍ୱର ଏହି ଦେବତାମାନଙ୍କଠାରୁ ବହୁତ ଦୂରରେ । ବେଦଶାସ୍ତ୍ର ଆଦିରେ କୁହାଯାଇଛି, ସମଗ୍ର ସଂସାର ହେଉଛି ମିଥ୍ୟା, ଏହା ମାୟାର ଏକ ଖେଳଘର । ସାଧୁସନ୍ଥ ଏବଂ ମହାନୁଭବମାନେ ଏକଥା ବି ଅନୁଭବ କରିଥାନ୍ତି । ବାସ୍ତବରେ ପରମାତ୍ମା ପଞ୍ଚମହାଭୂତଦ୍ୱାରା ନିର୍ମିତ ଏହି ମିଥ୍ୟାସୃଷ୍ଟିଠାରୁ ସମ୍ପୂର୍ଣ୍ଣ ପୃଥକ । ସୃଷ୍ଟି ଉତ୍ପନ୍ନ ହେବା ପୂର୍ବରୁ ସେ ଥିଲେ, ଏବେ ବି ରହିଛନ୍ତି । ଏ ସୃଷ୍ଟି ନଷ୍ଟ ହୋଇଗଲେ ମଧ୍ୟ ସେ ରହିଥିବେ । ଈଶ୍ୱର ସର୍ବବ୍ୟାପକ, ଅବିନାଶୀ, ଶାଶ୍ୱତ । ତାଙ୍କର ଆଦି ନାହିଁ କି ଅନ୍ତ ନାହିଁ । ଏହା ହେଉଛି ସତ୍ୟ ସିଦ୍ଧାନ୍ତ । ମାୟା ଏବଂ ବ୍ରହ୍ମ ବ୍ୟତୀତ ଯାହା କିଛି ଭାବନା କାହିଁକି, ସେ ସବୁ କଳ୍ପନା ମାତ୍ର ।

ସେହି କଳ୍ପନା ଭିତରେ ହିଁ ସୃଷ୍ଟି ଭାସମାନ । କଳ୍ପନା ଦ୍ୱାରା ନିର୍ମିତ ଆଠ ପ୍ରକାରର ସୃଷ୍ଟି ହେଉଛି—

ପ୍ରଥମତଃ କଳ୍ପନା ସୃଷ୍ଟି, ଦ୍ୱିତୀୟରେ ଶବ୍ଦସୃଷ୍ଟି, ତୃତୀୟରେ ପ୍ରତ୍ୟକ୍ଷ ସୃଷ୍ଟି (ଯାହାକୁ ସମସ୍ତେ ଜାଣନ୍ତି), ଚତୁର୍ଥରେ ଚିତ୍ରାଙ୍କିତ ସୃଷ୍ଟି ପଞ୍ଚମରେ ସ୍ୱପ୍ନ-ସୃଷ୍ଟି, ଷଷ୍ଠରେ ଗନ୍ଧର୍ବ ସୃଷ୍ଟି, ସପ୍ତମରେ ଜ୍ୱର-ସୃଷ୍ଟି ଓ ଅଷ୍ଟମରେ ଦୃଷ୍ଟିବନ୍ଧନ ସୃଷ୍ଟି । ଏଥିରୁ କେଉଁଟିକୁ ମିଥ୍ୟା କହିବ ? ଏସବୁ ସୃଷ୍ଟି କାଳ୍ପନିକ ଅର୍ଥାତ ଭ୍ରମ ଏବଂ ସବୁ ବିନାଶଶୀଳ । ସଜ୍ଜନମାତ୍ରେ ଏହାକୁ ଭଲ ଭାବରେ ଜାଣନ୍ତି । ତଥାପି ଅଜ୍ଞଲୋକେ ନିଜର ଶ୍ରଦ୍ଧା ଅନୁସାରେ ସଗୁଣଭକ୍ତି କରିବା ଉଚିତ । ସଗୁଣକୁ ଭିତ୍ତି କରି ହିଁ ନିର୍ଗୁଣ ବ୍ରହ୍ମକୁ ଉପଲବ୍ଧି କରାଯାଇପାରେ ।

ଏସବୁ ନିର୍ଭର କରୁଛି ସତ୍‌ସଙ୍ଗ ଉପରେ । କାହିଁକି ନା ସତ୍‌ସଙ୍ଗ ଦ୍ୱାରା ସାର ଅସାରର ବିଚାର କରାଯାଇପାରେ । ପରବର୍ତ୍ତୀ ସମାସରେ ମୁଁ ସଗୁଣଭକ୍ତି କିପରି କରାଯାଇପାରେ ସେହିକଥା ବର୍ଣ୍ଣନା କରିବି ।

## ସପ୍ତମ ସମାସ
## ।। ସଗୁଣ-ଭଜନ ।।

ଶ୍ରୋତାମାନଙ୍କ ପ୍ରଶ୍ନ—ଯଦି ଜ୍ଞାନ ଦୃଷ୍ଟିରୁ ଦୃଶ୍ୟମାନ ସମଗ୍ର ସୃଷ୍ଟି ମିଥ୍ୟା ତାହାହେଲେ ସଗୁଣ ସାକାର-ଉପାସନା ଓ ଭଜନ କୀର୍ତ୍ତନ ପୂଜନର ଆବଶ୍ୟକତା ବା କ'ଣ ଅଛି ? ଯଦି ଜ୍ଞାନଠାରୁ ଶ୍ରେଷ୍ଠ ଅନ୍ୟ କିଛି ନାହିଁ, ତାହାହେଲେ ପୂଜା ଉପାସନା ଆଦି ଝିଂଝଟ କାହିଁକି ?

ଯଦି ନିର୍ଗୁଣ-ଉପାସନାରୁ ବ୍ରହ୍ମ-ପ୍ରାପ୍ତି ଘଟୁଥାଏ, ତାହାହେଲେ ସଗୁଣଭକ୍ତି ଓ ଭଜନରେ କି ଲାଭ ?

ଶ୍ରୋତାମାନଙ୍କ ଏହି ସନ୍ଦେହ-ମୋଚନ ଲାଗି ବକ୍ତା କହୁଛନ୍ତି— ଗୁରୁଙ୍କ ଉପଦେଶ ପାଳନ କରିବା ହେଉଚି ପରମାର୍ଥର ପ୍ରଧାନ ଲକ୍ଷଣ । ଗୁରୁ ବଚନକୁ ଅମାନ୍ୟ କରିବାରେ ହାନି ଘଟିଥାଏ । ତେଣୁ ଗୁରୁ ଯଦି ସଗୁଣ ଉପାସନା ଲାଗି ଉପଦେଶ ଦିଅନ୍ତି ତାହାହେଲେ ତାହା ଶିରୋଧାର୍ଯ୍ୟ ।

ପୁଣି ଶ୍ରୋତାମାନଙ୍କ ପ୍ରଶ୍ନ—ଅବଶ୍ୟ ସଦ୍‌ଗୁରୁଙ୍କ ଉପଦେଶ ମାନିବା ଠିକ୍ କିନ୍ତୁ ସଦ୍‌ଗୁରୁ ସଗୁଣଉପାସନା କରିବାକୁ କହିବେ ବା କାହିଁକି ? ଇଆଡ଼େ ସଗୁଣକୁ ମିଥ୍ୟା ବୋଲି ପ୍ରତିପାଦିତ କରି ସଗୁଣ ଉପାସନା କର ବୋଲି କହିବା ବିଚିତ୍ର ନୁହଁକି ? ସଗୁଣ ଯଦି ମିଥ୍ୟା, ଏହି ମିଥ୍ୟାକୁ ପୂଜା କରିବ କାହିଁକି ? ପୂର୍ବଜନ୍ମର କର୍ମଫଳ ଅର୍ଥାତ ପ୍ରାରବ୍‌ଧକୁ ଭୋଗିବା ତ ନିଶ୍ଚିତ । ସେଥିରୁ ତ କେହି ତ୍ରାହି ପାଇ ପାରିବେ ନାହିଁ । ସଗୁଣ ଦେବତାର ଉପାସନା ଦ୍ୱାରା ତ ପ୍ରାରବ୍‌ଧକୁ ବଦଳେଇ ହେବ ନାହିଁ, ତାହାହେଲେ ଏତେ ବ୍ରତ-ଉପାସନା-ସାଧନା କାହିଁକି ?

ଉତ୍ତର—ଜ୍ଞାନର ମହିମାକୁ ବୁଝିଗଲେ କ'ଣ ମନୁଷ୍ୟ ଜ୍ଞାନୀ ହୋଇଯାଏ ? ତାର ଆଚରଣରେ କ'ଣ ଜ୍ଞାନର ସମସ୍ତ ଲକ୍ଷଣ ପ୍ରକାଶ ପାଏ ?

ସେହିଭଳି ସଗୁଣ-ଭକ୍ତି ଉପାସନାକୁ ମିଥ୍ୟା କହିଦେଲେ କ'ଣ ମନୁଷ୍ୟ ନିର୍ଗୁଣ-ପଦରେ ଅଧିଷ୍ଠିତ ହୋଇଯାଇପାରେ କି ? ତାର ସମସ୍ତ ସାଂସାରିକ କାର୍ଯ୍ୟ ବନ୍ଦ ହୋଇଯାଏ କି ? ଯଦି ବନ୍ଦ ହୋଇଯାଏ ତ ଭଲ କଥା; କିନ୍ତୁ ବାସ୍ତବରେ ତାହା ହୋଇନଥାଏ । ମନୁଷ୍ୟକୁ ତାର ଦେହର ସମସ୍ତ କାର୍ଯ୍ୟ କରିବାକୁ ପଡ଼ିଥାଏ । ତାର ଭୋଜନ ଓ ଜଳପାନଆଦି କେବେ ବନ୍ଦ ହୋଇଯାଏ ନାହିଁ, ମଳ ମୂତ୍ର ତ୍ୟାଗ ବନ୍ଦ ହୁଏ ନାହିଁ; ପର ଆପଣାର ଭେଦଭାବ ତୁଟେ ନାହିଁ । ନିଜ ସ୍ୱାର୍ଥହାସଲ ଲାଗି ସେ ଅନ୍ୟର ତୋଷାମତ କରିବା ଅଭ୍ୟାସକୁ ଛାଡ଼େ ନାହିଁ । ଅଥଚ ଭଜନ-କୀର୍ତ୍ତନ ପୂଜନ ଆଦିକୁ ଶୀଘ୍ର ଛାଡ଼ିବା ଲାଗି ସେ ପ୍ରସ୍ତୁତ ହୋଇପଡ଼େ । ଜ୍ଞାନ-ବିବେକ ଦୃଷ୍ଟିରୁ ଯଦି ସବୁକିଛି ମିଥ୍ୟା ତାହାହେଲେ ଅନ୍ୟ ମିଥ୍ୟାଗୁଡ଼ିକୁ ଜାବୁଡ଼ି ଧରି କେବଳ ଭଜନ-କୀର୍ତ୍ତନକୁ ମିଥ୍ୟା ବୋଲି ଧରି ନେଇ ତାକୁ ଛାଡ଼ିବା ପାଇଁ ମଣିଷ ଏତେ ବ୍ୟଗ୍ର କାହିଁକି ? ଯଦି ସବୁ ମିଥ୍ୟାକୁ ସତ୍ୟ ମନେ କରି ସେଗୁଡ଼ିକୁ ଆଗ୍ରହର ସହିତ ଗ୍ରହଣ କରିବା ପାଇଁ ପ୍ରସ୍ତୁତ, ତାହାହେଲେ ଭଜନ କୀର୍ତ୍ତନକୁ ମଧ୍ୟ ସତ୍ୟ ମାନିବା ଉଚିତ ନୁହଁକି ? ତୁମର ଯିଏ ଉଚ୍ଚପଦାଧିକାରୀ ସେ ତମଠାରୁ କନିଷ୍ଠ ହେଲେ ମଧ୍ୟ ତାର ପଦସେବା କରିବାକୁ ଯଦି ପ୍ରସ୍ତୁତ ଏବଂ ନିଜ ସ୍ୱାର୍ଥ ଦୃଷ୍ଟିରୁ ଯଦି ଏସବୁ ହୀନ କର୍ମ କରିପାରୁଛ ତାହାହେଲେ ଜ୍ଞାନର ଦ୍ୱାହିଁ ଦେଇ ଭଜନକୀର୍ତ୍ତନକୁ ଛାଡ଼ିବା ପାଇଁ ଏତେ ବ୍ୟାକୁଳ କାହିଁକି ?

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ଜ୍ଞାନୀ ଦେବତାମାନେ ମଧ୍ୟ ଭଜନ କୀର୍ତ୍ତନକୁ କେବହେଲେ ଛାଡ଼ି ନ ଥାଆନ୍ତି । ତୁମେମାନେ ତ ସେମାନଙ୍କଠାରୁ କ୍ଷୁଦ୍ରାଦପି କ୍ଷୁଦ୍ର । ତୁମେମାନେ ପରମାତ୍ମାଙ୍କ ଭଜନ ନ କଲେ ମଧ୍ୟ ସେମାନଙ୍କର କ୍ଷତି କ'ଣ ?

ମୁଁ ମୋ କଥା କହୁଚି । ମୁଁ ହେଉଚି ସଗୁଣ ସାକାର ଭଗବାନ ରାମଙ୍କ ଭକ୍ତ । ସେ ମୋର ସର୍ବସ୍ୱ, ସିଏ ହିଁ ମୋର ପରମାର୍ଥ । ସେ ସମର୍ଥଠାରୁ ସମର୍ଥ, ସେସବୁ ଦେବତାଙ୍କ ମୁକ୍ତିଦାତା । ମୁଁ ତାଙ୍କର ସେବକମାତ୍ର । ଭଗବାନ ରାମଙ୍କ ଉପାସନା କରି କରି ମୁଁ ଜ୍ଞାନ ଲାଭ କରିଛି । ମୋର ଉପଲବ୍ଧି ହୋଇଚି ଯେ ଉପାସନାଦ୍ୱାରା ହିଁ ଆତ୍ମ-ଜ୍ଞାନ ଲାଭ ହୋଇଥାଏ । ପରମାତ୍ମାଙ୍କ ଉପାସନା ତ୍ୟାଗ ଗରିବା ବ୍ୟକ୍ତିଠୁ ବଳି ଅଭାଗା କେହି ନାହିଁ ।

ସଦ୍‌ଗୁରୁ ଉତ୍ତମ ରୂପେ ବିଚାର କରି ଯେଉଁ ସାର ଅସାର ଉପଦେଶ ଦିଅନ୍ତି ତାକୁ ଶ୍ରଦ୍ଧାପୂର୍ବକ ଗ୍ରହଣ କରିବା ଉଚିତ । ତାଙ୍କ ବିଷୟରେ ତର୍କ ବିତର୍କ କରିବା ଅନୁଚିତ । ଯିଏ ନିଜକୁ ନିଜେ ବଡ଼ ବୋଲି ଭାବେ ସେ କେବେହେଲେ ବ୍ରହ୍ମଜ୍ଞାନୀ ହୋଇପାରେ ନାହିଁ । ତାହାର ଏଭଳି ଭାବନା କେବଳ ଦେହବୁଦ୍ଧିର ଅହଙ୍କାର ମାତ୍ର । ଏଣୁ ଆମେ ନମ୍ର ଭାବରେ ଦେହାଭିମାନ ତ୍ୟାଗ କରି ଶ୍ରୀରାମ ପ୍ରଭୁଙ୍କଠାରେ ଅନନ୍ୟ ଭକ୍ତି ରଖିବା ଉଚିତ ଏବଂ ସେହି ଭକ୍ତି ମାର୍ଗରୁ ସମସ୍ତ ସନ୍ଦେହ ଦୂର ହୋଇଯିବା ପରେ ନିର୍ଗୁଣ ବ୍ରହ୍ମଜ୍ଞାନ ବିଷୟରେ ଚର୍ଚ୍ଚା କରିବା ଉଚିତ ।

ଶ୍ରୀରାମ ପ୍ରଭୁଙ୍କ ଭଜନରେ ଲୀନ ହୋଇଯିବା ମାତ୍ରେ ତୁମେ ପ୍ରତ୍ୟକ୍ଷ ପ୍ରଭୁଙ୍କର ଦୁର୍ଜନସଂହାର ରୂପକୁ ଦେଖିବାକୁ ପାଉଛ । (ଏହା କହିବା ଦ୍ୱାରା ସମର୍ଥ ରାମଦାସ ଛତ୍ରପତି ଶିବାଜୀଙ୍କ ଦ୍ୱାରା ଦୁର୍ଜନ ଏବଂ ଆତତାୟୀମାନଙ୍କର ସଂହାର ଲୀଳାକୁ ଦର୍ଶାଇଛନ୍ତି ।) ଆମେ ମନେ ମନେ ଯାହା ଭାବିଥିଲୁ, ପ୍ରଭୁଙ୍କ କୃପାରୁ ସେହି କାର୍ଯ୍ୟ ନିର୍ବିଘ୍ନରେ ସଫଳ ହେବାକୁ ଯାଉଛି । ସେକଥା କ'ଣ ତୁମକୁ ଦେଖାଯାଉନାହିଁ ? ଶ୍ରୀରାମଙ୍କ ପ୍ରତି ଭକ୍ତି ଦ୍ୱାରା ଯେ କୌଣସି ଦୁଃସାଧ୍ୟ କାର୍ଯ୍ୟ ସମ୍ପନ୍ନ ଯେ ହୋଇପାରେ, ଏଥିରେ ଆଉ ସନ୍ଦେହ କାହିଁକି ? ଏ ସମସ୍ତ ଅନୁମାନ ନୁହେଁ, ପ୍ରତ୍ୟକ୍ଷ ଅନୁଭବର କଥା । ବ୍ରହ୍ମଜ୍ଞାନ ଉପଲବ୍ଧି କରିବା ଦ୍ୱାରା ସମସ୍ତ ଜନସମାଜ ଆମର ବଶୀଭୂତ ହୋଇଛି ଏବଂ ତା' ଦ୍ୱାରା ସମସ୍ତ ମହାନ୍ କାର୍ଯ୍ୟ ସଫଳତା ପୂର୍ବକ ସମ୍ପନ୍ନ ହୋଇପାରୁଛି । ଏହା ଶ୍ରୀ ରଘୁନାଥଜୀଙ୍କ ଉପାସନାର ଫଳ ମାତ୍ର । ଏଣୁ ପ୍ରଥମେ ତୁମେମାନେ ମନରେ ପ୍ରଭୁ ଶ୍ରୀରାମଙ୍କ ପ୍ରତି ଭକ୍ତି ପୋଷଣ କରିବା ଉଚିତ । ଏହା ଆମେ ଆତ୍ମ ପରିଚୟରୁ କହୁଛୁ । ଯଦି ତୁମର ବିଶ୍ୱାସ ହେଉନାହିଁ, ତାହାହେଲେ ନିଜେ ଅନୁଭବ କରିଦେଖ । ପ୍ରଭୁ ଶ୍ରୀରାମଙ୍କୁ ସ୍ମରଣ କର । ଦେଖିବ ଯେଉଁ କାମ ହାତକୁ ନେବ ସବୁ ସଫଳ ହୋଇଯିବ । ହର୍ତ୍ତା କର୍ତ୍ତା, ସବୁ ଏହି ଶ୍ରୀରାମ ।

'ମୁଁ କିଛି ନୁହଁ, ସେ ସବୁ'— ଏହା ହେଉଛି ସଗୁଣ ଭକ୍ତିର ନମ୍ର ନିବେଦନ । ଏହି ସଗୁଣ ଭକ୍ତି ମାଧ୍ୟମରେ ନିର୍ଗୁଣରେ ଲୀନ ହୋଇଯାଅ । ସଗୁଣ ଭକ୍ତ ଏବଂ ନିର୍ଗୁଣ ଭକ୍ତ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଦୁହେଁ ଅହଙ୍କାରଶୂନ୍ୟ । 'ମୁଁ କର୍ତ୍ତା'—ଏହି ଅଭିମାନ ସହିତ ଯଦି କୌଣସି କାର୍ଯ୍ୟ କରିବ, ତାହାହେଲେ

କଷ୍ଟ ପାଇବା ଅବଶ୍ୟମ୍ଭାବୀ । 'ରାମ ହିଁ କର୍ତ୍ତା'—ଏକଥା ମାନିନେଇ ଯଦି କାର୍ଯ୍ୟ କରିବ, ତାହାହେଲେ ନିଶ୍ଚିତ ଭାବରେ ସଫଳତା ଲାଭ କରିବ, ବହୁ ଯଶକୀର୍ତ୍ତିର ଅଧିକାରୀ ହୋଇପାରିବ । ଭାବ ସହିତ ଭଗବାନଙ୍କର ଭଜନ କଲେ ସୁଖୀ ହୋଇପାରିବ । ତାଙ୍କୁ ତ୍ୟାଗକଲେ ଦୁଃଖୀ ହେବ । ପ୍ରଶ୍ନ କରିପାର, ମଙ୍ଗଳମୟ ଭଗବାନଙ୍କ ସଗୁଣସ୍ୱରୂପକୁ ଅବଲମ୍ବନ କରାଯିବ କାହିଁକି ? ଉତ୍ତର ହେଉଛି, ଆମେ, ତୁମେ ସମସ୍ତେ ଏ ସଂସାରରେ ଦି ଦିନିଆ ଅତିଥି । କିନ୍ତୁ ପ୍ରଭୁ ଅନାଦି । ଆମ୍ଭେମାନେ କେବଳ ନିଜର ପରିବାର, ଆତ୍ମୀୟ ସ୍ୱଜନମାନଙ୍କ ସହିତ ପରିଚିତ । କିନ୍ତୁ ଭଗବାନଙ୍କର ପରିଚୟ ତିନିଲୋକ ସହିତ । ସେ କୀଟପତଙ୍ଗଠାରୁ ଆରମ୍ଭ କରି ସଂସାରର ସମସ୍ତଙ୍କୁ ଜାଣନ୍ତି । ତେଣୁ ଶ୍ରୀରାମ ପ୍ରଭୁଙ୍କର ଭକ୍ତ ହୁଅ । ଅନ୍ୟମାନଙ୍କ ମଧ୍ୟରେ ମଧ୍ୟ ରାମଭକ୍ତିଭାବ ସୃଷ୍ଟି କରାଅ ଏବଂ ସେମାନଙ୍କୁ ସତ୍‌କାର୍ଯ୍ୟ ଲାଗି ପ୍ରେରଣା ଦିଅ । ଅହଂଭାବଦ୍ୱାରା ମନୁଷ୍ୟର କ୍ଷତି ଘଟିଥାଏ । ନିଜର ବଡ଼ିମା ଦେଖେଇ ହେବା ଦ୍ୱାରା ନିଜର ହାନି ଘଟିଥାଏ । ଜ୍ଞାନର ଅହଂକାର ଯୋଗୁଁ ଯଦି ଆମେ ସଗୁଣ ଉପାସନା ନକରୁ, ତାହାହେଲେ ଆମକୁ ଅଭକ୍ତ ହିଁ କୁହାଯିବ । ଅହଂକାର ଫଳରେ ପ୍ରଭୁ ଆମକୁ ଉପେକ୍ଷା କରିଥାନ୍ତି । ପରିଣାମରେ ଆମକୁ ଖରାପ ଫଳ ଭୋଗ କରିବାକୁ ପଡ଼େ ।

ସନ୍ଥଜନ ମାତ୍ରେ ନିଃସଂଦେହ ଭାବରେ ସଗୁଣୋପାସକ ଏବଂ ବିବେକ ଦ୍ୱାରା ଜ୍ଞାନଲାଭପୂର୍ବକ ଅହଙ୍କାର ଶୂନ୍ୟ ହୋଇଥାଆନ୍ତି । ତେଣୁ ସୃଷ୍ଟିର ମିଥ୍ୟା ରହସ୍ୟକୁ ଶବ୍ଦଦ୍ୱାରା ବ୍ୟକ୍ତ କରାଯାଇ ନ ପାରେ । ପ୍ରତ୍ୟକ୍ଷ ଭାବରେ ରାମଭଜନରେ ତନ୍ମୟ ହେଲେ ଯାଇ ଏହାର ରହସ୍ୟକୁ ଭଲ ଭାବରେ ବୁଝିପାରିବ ।

## ଅଷ୍ଟମ ସମାସ
## ।। ଦୃଶ୍ୟ-ପରିହାର ।।

ଶ୍ରୋତାଗଣଙ୍କର ପ୍ରଶ୍ନ—ସୃଷ୍ଟି ଯଦି ମିଥ୍ୟା ତାହାହେଲେ ଏହା ଦେଖାଯାଉଛି କିପରି ଓ କାହିଁକି ? ଏହାର ଉତ୍ତରରେ କୁହାଯାଇ ପାରେ ଯେ, ଯାହା ଯାହା ଦେଖାଯାଏ ସେ ସବୁ ଯେ ସତ୍ୟ—ଏହା ଜ୍ଞାନୀର ଦର୍ଶନ ନୁହେଁ । ମୂର୍ଖ, ମୂଢ଼ ଓ ଅଜ୍ଞାନୀ ଜୀବ ଯଦିଓ ଦୃଶ୍ୟବସ୍ତୁଗୁଡ଼ିକୁ ସତ୍ୟ ବୋଲି ଗ୍ରହଣ କରିନିଏ

(ଏପରି ମାନିନେବା ଜୀବ ପକ୍ଷରେ ସ୍ୱାଭାବିକ) କିନ୍ତୁ ବାସ୍ତବରେ ଏଗୁଡ଼ିକ ସତ୍ୟ ନୁହେଁ । କୋଟି କୋଟି ଗ୍ରନ୍ଥ ଶାସ୍ତ୍ର ଏବଂ ସନ୍ଥ ମହର୍ଷିମାନେ ସୃଷ୍ଟିକୁ ମିଥ୍ୟା ପ୍ରତିପାଦିତ କରି ଆସିଛନ୍ତି । ଏହି ସୃଷ୍ଟି ମୋ ଆଖିକୁ ଦେଖାଯାଉଥିବାରୁ ତାହା ଯେ ସତ୍ୟ, ସେକଥା ମାନିନେବା ଉଚିତ ନୁହେଁ । କେବଳ ଆଖିକୁ ଦେଖାଯାଉଥିବାରୁ ଦୃଶ୍ୟବସ୍ତୁକୁ ସତ୍ୟ ବୋଲି ମାନିନେବା ମସ୍ତବଡ଼ ଭୁଲ । ମୃଗ ମରୀଚିକାକୁ ଦେଖି ତାକୁ ଜଳ ମନେକରି ପାଇବା ଆଶାରେ ଦଉଡ଼ିଥାଏ । କିନ୍ତୁ ପ୍ରକୃତରେ ମରୀଚିକା ଜଳ କି ? ନା, ଜଳ ନୁହେଁ । କିନ୍ତୁ ଏହା ଜଳ ନୁହେଁ ବୋଲି ପଶୁ ଭଳି ଅଜ୍ଞାନୀକୁ ବୁଝେଇବ କିପରି ? ରାତିରେ ସ୍ୱପ୍ନ ଦେଖିଲ ଯେ ତୁମେ ବହୁତ ଧନଲାଭ କରିଛ, ମନେ ମନେ ତାକୁ ଉପଭୋଗ ମଧ୍ୟ କରିବାରେ ଲାଗିଛ । ତୁମ ସ୍ୱପ୍ନ ଭାଙ୍ଗିଯିବା ପରେ ଜାଣିଲ ଯେ ସେ ଧନରୁ ଫଟା ପାହୁଲାଏ ବି ତୁମର ନୁହେଁ । ଧର କୌଣସି କୁଶଳୀ ଚିତ୍ରକର ଏକ ସୁନ୍ଦରୀ ସ୍ତ୍ରୀର ଚିତ୍ର ଆଙ୍କିଛି; ତାକୁ ଦେଖି ଯଦି କୌଣସି କାମାସକ୍ତ ପୁରୁଷ ଆଲିଙ୍ଗନ କରିବାକୁ ଦଉଡ଼େ ତାକୁ ଲୋକେ ପାଗଳ ଛଡ଼ା ଆଉ କ'ଣ କହିବେ ? କାଠ ଓ ପଥରରେ କାରିଗରମାନେ ସୁନ୍ଦର ସୁନ୍ଦର କଣ୍ଢେଇସବୁ ତିଆରି କରିଥାନ୍ତି । କିନ୍ତୁ ଏସବୁ କାଠ ଓ ପଥର ଛଡ଼ା ଆଉ କ'ଣ ?

ଏଭଳି ଭାବରେ ସୃଷ୍ଟିରେ ବହୁ ଜିନିଷ ରହିଚି ଯାହା ବାସ୍ତବରେ ଅସତ୍ୟ ଅର୍ଥାତ୍ ମିଥ୍ୟା, ଅଥଚ ସତ୍ୟ ଭାବରେ ଦୃଷ୍ଟିଗୋଚର ହୋଇଥାଏ । ଅଜ୍ଞାନ ଯୋଗୁଁହିଁ ଅସତ୍ୟବସ୍ତୁ ସତ୍ୟ ବୋଲି ପ୍ରତୀତ ହୋଇଥାଏ । ଏହାଉପରେ ଗଭୀରଭାବରେ ବିଚାର କରାଯିବା ଉଚିତ ।

ଦୃଷ୍ଟିର ଚାଞ୍ଚଲ୍ୟ ଯୋଗୁ ଯାହା କିଛି ଦେଖାଯାଏ ସେ ସବୁ ଏକାବେଳକେ ସତ୍ୟ ବୋଲି ମାନିବା କିପରି ? ଆକାଶକୁ ଦେଖିଲେ ଜଣାପଡ଼େ ସତେ ଯେପରିକି ଏକ ବିରାଟ ଚାନ୍ଦୁଆ ଟଙ୍ଗା ଯାଇଛି ଓ ସେହି ଚାନ୍ଦୁଆ ଦେହରେ ଚନ୍ଦ୍ର ଓ ତାରା ଆଦି ଖଞ୍ଜାଯାଇଛି । କିନ୍ତୁ ବାସ୍ତବରେ ଏ ସବୁ କଣ ସେଇଆ ? ତା' କଦାପି ନୁହେଁ । କୌଣସି ରାଜା ଚିତ୍ରକରକୁ ଡକେଇ ନିଜ ପରିବାରର ସମସ୍ତଙ୍କ ଚିତ୍ର ପ୍ରସ୍ତୁତ କରିପାରନ୍ତି । କିନ୍ତୁ ବାସ୍ତବରେ ସେମାନେ କଣ ସ୍ତ୍ରୀ-ପୁରୁଷ ? ପାଣିରେ ବହୁତ ଫୋଟକା ଦେଖାଯାଏ, ଏ ସବୁର ରୂପ ଅଲଗା

ଅଲଗା । କିନ୍ତୁ ଏସବୁ କ'ଣ ବାସ୍ତବରେ ପୃଥକ ପୃଥକ ? କୌଣସି ଲୋକ ମୁଣ୍ଡରେ ବୋଝ ଲଦି ନଇ କୂଳରେ ଗଲାବେଳେ ପାଣି ଭିତରେ ସେ ଠିକ୍ ସେହିଭଳି ଦେଖାଯାଏ । ପୋଖରୀ କୂଳରେ ବୁଲୁଥିବା ପଶୁପକ୍ଷୀ, ନର ବାନର ଏବଂ ସେ କୂଳରେ ଥିବା ମନ୍ଦିର ଓ ଅନେକ ପ୍ରକାରର ଗଛ ବାହାରେ ଯେପରି ଦେଖାଯାଏ ଜଳ ଭିତରେ ମଧ୍ୟ ସେହିଭଳି ଦେଖାଯାଇଥାଏ । କାଚଘରେ ଯଦି କୌଣସି ସଭା ହୁଏ, ତା ପାଖରେ ଠିକ୍ ସେହିଭଳି ଆଉ ଏକ ସଭା ହେଉଥିବା ଭଳି ଦେଖାଯାଏ । ଗୋଟିଏ ଦୀପମାଳାରୁ ବହୁତ ଦୀପମାଳା ଦେଖିବାକୁ ମିଳେ । ଏହିଭଳି ଅନେକ ଉଦାହରଣ ଦିଆଯାଇପାରେ; ଯାହା କି ମିଥ୍ୟା ହେଲେ ମଧ୍ୟ ସତ୍ୟ ବୋଲି ମନେହୁଏ । ସେହିଭଳି ଏହି ସୃଷ୍ଟିର ସ୍ୱରୂପମାୟା ମଧ୍ୟ ମିଥ୍ୟା । ଏହା କେବଳ ନଜରବନ୍ଦୀ, ଅସତ୍ୟ ହେଲେ ମଧ୍ୟ ସତ୍ୟ ଭଳି ଜଣାପଡ଼େ । ଯାଦୁକର ଦ୍ୱାରା ପ୍ରଦର୍ଶିତ ହେଉଥିବା ନାନା ଚମତ୍କାରିତା ବହୁ ଲୋକଙ୍କ ପକ୍ଷରେ ସତ୍ୟ ମନେ ହୋଇଯାଏ । କିନ୍ତୁ ସେସବୁ ମିଥ୍ୟା । ଏହି ମାୟା ଦେବତାମାନଙ୍କୁ ମଧ୍ୟ ଭୁଲେଇ ଦେଇଥାଏ । ପଞ୍ଚବଟୀରେ ଶ୍ରୀରାମଚନ୍ଦ୍ର ମଧ୍ୟ ମାୟା ସୁବର୍ଣ୍ଣମୃଗ ପଛରେ ଦଉଡ଼ିଥିଲେ । ଶ୍ରୀରାମଚନ୍ଦ୍ରଙ୍କ ସହିତ ଯୁଦ୍ଧ କରିବା ବେଳେ ରାବଣ ମଧ୍ୟ ମାୟାବଳରେ ଦଶଶିର ଧାରଣ କରିଥିଲା । ତାତ୍ପର୍ଯ୍ୟ ହେଉଛି, ମାୟାର ମୋହପାଶରୁ ସନ୍ଥ ମହାତ୍ମାଗଣ କ'ଣ ଏପରିକି ଦେବତାମାନେ ମଧ୍ୟ ରକ୍ଷା ପାଇ ପାରି ନାହାନ୍ତି ? ସେମାନଙ୍କ ତୁଳନାରେ ମନୁଷ୍ୟ ତ ଅତି ସାମାନ୍ୟ । ସେ ମାୟା ବଳରେ ନ ପଡ଼ିବ କିପରି ? ମନୁଷ୍ୟମାନଙ୍କର ଯାଦୁଗରୀ, ରାକ୍ଷସମାନଙ୍କ କପଟଲୀଳା ଓ ଭଗବାନଙ୍କ ମାୟା ଅନେକ ପ୍ରକାରର । ଏହା ସବୁ ସତ୍ୟ ମନେ ହୋଇଥାଏ, କିନ୍ତୁ ବିଚାରପୂର୍ବକ ଦେଖିଲେ ସବୁ ମିଥ୍ୟା । ଯାହାକୁ ଆମେ ଅସତ୍ୟ କହୁ ତାହା ପ୍ରତ୍ୟକ୍ଷ ଭାବରେ ମଧ୍ୟ ଦେଖାଯାଏ । ଏଣୁ ଆମେ ଦ୍ୱନ୍ଦ୍ୱରେ ପଡୁ । କିନ୍ତୁ ବାସ୍ତବରେ ଏ ସବୁ ହେଉଛି ମାୟାର ଖେଳ । ସବୁ ହେଉଛି ସ୍ୱପ୍ନ ଭଳି କଳ୍ପିତ ଓ ମିଥ୍ୟା । ଦୃଶ୍ୟମାନ ଜଗତ ମାତ୍ରେ ଅବିଦ୍ୟାମୂଳକ । ତୁମ ଶରୀର ମଧ୍ୟ ଅବିଦ୍ୟାତ୍ମକ । ଏହି ମିଥ୍ୟା ଶରୀରକୁ ମୁଁ ଓ ମୋର ବୋଲି ଗ୍ରହଣ କରିନେବା ଫଳରେ ଦେହବୋଧ ହେତୁ ସମଗ୍ର ଅଳୀକ ଦୃଶ୍ୟ ତୁମକୁ ସତ୍ୟ ମନେ ହୋଇଥାଏ । ଦେହବୁଦ୍ଧି ଦ୍ୱାରା ପରବ୍ରହ୍ମଙ୍କ ଦର୍ଶନ କରିବା ବାଟରେ ଏହି ଦୃଶ୍ୟ ସଂସାର ହିଁ ପ୍ରତିବନ୍ଧକ । ଦୃଶ୍ୟକୁ ସତ୍ୟ ମାନିନେବା ହେଉଛି ମସ୍ତବଡ଼ ଭୁଲ ।

ଏହି ହାଡ଼ମାଂସ ଶରୀରରେ ମୁଁ ଓ ଆପଣାର ଭାବ ରଖି ଚର୍ମଚକ୍ଷୁଦ୍ୱାରା ବ୍ରହ୍ମଦର୍ଶନ ଲାଗି ଉଦ୍ୟମ କରିବା ମୂର୍ଖଙ୍କ ଲକ୍ଷଣ, ଜ୍ଞାନୀଙ୍କ ଲକ୍ଷଣ ନୁହେଁ । ଯାହାସବୁ ଦେଖାଯାଏ, ସବୁ ହେଉଛି ବିନାଶଶୀଳ । ବ୍ରହ୍ମ ଏ ସବୁଠାରୁ ଭିନ୍ନ । ସେ ଦୃଶ୍ୟାତୀତ ଓ ଶ୍ୱାଶ୍ୱତ । ଏହା ପରେ ଆମେ ସତ୍ୟ-ଅସତ୍ୟ, ସାର-ଅସାରର ବିଚାର କରିବା ।

## ନବମ ସମାସ
## ।। ସାର-ଶୋଧନ ।।

ଏ ସଂସାରରେ ଜ୍ଞାନୀ ଓ ଅଜ୍ଞାନୀ, ଉତ୍ତମ ଓ ଅଧମ—ଏଭଳି ଦୁଇ ଶ୍ରେଣୀର ପ୍ରାଣୀ ରହିଥାଆନ୍ତି । ଏକଥା ଅନ୍ୟ ଦଶକରେ କୁହାଯାଇଛି । କୌଣସି ଧନୀବ୍ୟକ୍ତିର ଭଣ୍ଡାରରେ ରଖାଯାଇଥିବା ଅସଂଖ୍ୟ ମୂଲ୍ୟବାନ୍ ରତ୍ନର ଠିକଣା ଘରର ଚାକର ଜାଣିବ କିପରି ? କୌଣସି ଜଳାଶୟରେ ଜଳ ଭିତରେ ଯଦି କେହି ଅଗଣିତ ଧନ ରଖିଯାଏ, ଅନ୍ୟ ଲୋକକୁ ସେ ଧନ ଦେଖାନଯାଇ ଜଳ ହିଁ ଦେଖାଯିବ । ସାଧାରଣ ଲୋକକୁ କେବଳ ଉପରର ଜିନିଷ ହିଁ ଦେଖାଯାଇଥାଏ କିନ୍ତୁ ଜ୍ଞାନୀମାନେ ଭିତର ଜିନିଷ ଦେଖି ପାରନ୍ତି । ମୂର୍ଖ ବ୍ୟକ୍ତିମାତ୍ରେ ଆଜୀବନ କଷ୍ଟହିଁ ଭୋଗିଥାଆନ୍ତି । ଧନ ସମ୍ପତ୍ତିର ଭୋଗ ବିଳାସରୁ ଏହି କଷ୍ଟ ଓ ଦୁଃଖର ଉତ୍ପତ୍ତି ଘଟିଥାଏ । ଯାହାର ବିଚାର କରିବାର ଶକ୍ତି ତଥା ବିବେକ ବୁଦ୍ଧିଥାଏ, ସେ ଦୁଃଖକୁ ସୁଖଭାବରେ ଗ୍ରହଣ କରିଥାଏ । କିନ୍ତୁ ଅଜ୍ଞାନୀ ନାନା ମାନସିକ ବୋଝ ବହନ କରି ଜୀବନ ବିତାଇଥାଏ । କେହି କେହି ଭଲ ଭଲ ପୁଷ୍ଟିକର ସୁସ୍ୱାଦୁ ନିଜିଷ ଖାଇଥାଆନ୍ତି ତ କେହି କେହି ପଚାସଢ଼ା ଜିନିଷ ଖାଇଥାଆନ୍ତି । ସେହିଭଳି ଜ୍ଞାନୀବ୍ୟକ୍ତି ସାରବସ୍ତୁ ଗ୍ରହଣ କରିବା ସ୍ଥଳେ ଅଜ୍ଞାନୀ ଅସାର ବସ୍ତୁକୁ ହିଁ ଗ୍ରହଣ କରିଥାଏ । ସାରବସ୍ତୁ ଗୁପ୍ତ ଓ ଦୁର୍ଲ୍ଲଭ କିନ୍ତୁ ଅସାର ବସ୍ତୁ ପ୍ରଚୁର ପରିମାଣରେ ମିଳିଥାଏ । ସ୍ପର୍ଶମଣି ଓ ଚିନ୍ତାମଣି କ୍ୱଚିତ ମିଳିଥାଏ । କିନ୍ତୁ କାଚ ଓ ପଥର ବାଟ ଘାଟରେ ପଡ଼ିଥିବା ଦେଖାଯାଏ । ସୁନା କିମ୍ବା ହୀରା ଖଣି ଖୋଳି ବାହାର କରିବାଲାଗି କଠିନ ପରିଶ୍ରମ କରିବାକୁ ପଡ଼େ କିନ୍ତୁ ଗୋଡ଼ି ପଥର ପ୍ରାୟ ସବୁଠାରେ ମିଳେ । ସେହିଭଳି ନାନା ମତର ପ୍ରଚାର ଓ ଅଭ୍ୟାସ କରିବା ଭଳି ସାଧୁ ସଂଖ୍ୟା ବହୁତ କିନ୍ତୁ ଗୂଢ଼ ପରମାତ୍ମାତତ୍ତ୍ୱ ଲାଭ କରିବା ଦିଗରେ ମାର୍ଗଦର୍ଶନ

କରାଇବା ଜ୍ଞାନୀ ଯୋଗୀ ସଦ୍‌ଗୁରୁ ଦୁର୍ଲ୍ଲଭ । ସାର ବ୍ରହ୍ମବସ୍ତୁ ଅତ୍ୟନ୍ତ ଗୋପନୀୟ ତଥା ଦୁଷ୍ପ୍ରାପ୍ୟ । ଆତ୍ମାର ମାୟା ଚାରିଆଡ଼େ ପ୍ରକଟିତ ଓ ବିପୁଳ । ଏହାକୁ ଚିହ୍ନିବା ସନ୍ଥ ଜ୍ଞାନୀମାନଙ୍କ ଦ୍ୱାରା ହିଁ ସମ୍ଭବ ।

ଚକ୍ଷୁରେ ଅଞ୍ଜନ ଲଗା ନ ଗଲେ ଖାଲି ଆଖିରେ ତଥା ଏ ଚର୍ମଚକ୍ଷୁରେ ଗୁପ୍ତଧନକୁ ଦେଖିବା ସମ୍ଭବ ନୁହଁ । ସେହିଭଳି ଆଖିରେ ସନ୍ଥସମାଗମରୂପକ ଅଞ୍ଜନ ନ ଲଗାଇଲେ ଗୁପ୍ତ ପରମାତ୍ମାଙ୍କୁ ଦେଖିବା ଆଦୌ ସମ୍ଭବ ନୁହଁ । ଯେପରି ରାଜାଙ୍କ ସାଙ୍ଗସାଥି ହେଲେ ରାଜବିଳାସ ଉପଭୋଗ କରିବା ସହଜ ହୋଇଥାଏ, ସେହିଭଳି ସନ୍ଥ ସମାଗମ ଅର୍ଥାତ ସତ୍‌ସଙ୍ଗ ଦ୍ୱାରା ହିଁ ଅନାୟାସରେ ସଦ୍‌ବସ୍ତୁ ପରବ୍ରହ୍ମ ଲାଭ ହୋଇପାରେ । ମନକୁ ବିଶାଳ କଲେ ଯାଇ ବିଶାଳ ପରବ୍ରହ୍ମର ପ୍ରାପ୍ତି ହୋଇପାରେ ।

ସାରାଂଶ ହେଉଛି— ଦୃଶ୍ୟ ସଂସାର ଅଶାଶ୍ୱତ ଏବଂ କେବଳ ପରବ୍ରହ୍ମ ହିଁ ଶାଶ୍ୱତ । ଏହି ବ୍ରହ୍ମ ଦୃଶ୍ୟ ସଂସାରରେ ମଧ୍ୟ ଅଛନ୍ତି, ସଂସାରଠାରୁ ପୃଥକ ଭାବେ ମଧ୍ୟ ଅଛନ୍ତି । ବ୍ରହ୍ମ ବାହାରେ ଭିତରେ ସର୍ବତ୍ର ପରିପୂର୍ଣ୍ଣ । ମୁଁ ମଧ୍ୟ ସେହି ବ୍ରହ୍ମ ଯାହାର ଏହି ବିବେକବୁଦ୍ଧି ହୁଏ ସେ ତଦ୍ରୂପ ହୋଇଯାଏ । ଯାହାର ଏହି ତଦ୍ରୂପ ଅବସ୍ଥା ଆସିଯାଏ ତା ପକ୍ଷରେ ସଂସାର ବା ଗୃହସ୍ଥାଶ୍ରମକୁ ତ୍ୟାଗ କରିବାର କୌଣସି ଆବଶ୍ୟକତା ରହେ ନାହିଁ । ସେ ସବୁ କର୍ମକୁ ଅନାସକ୍ତ ଏବଂ ଅଲିପ୍ତ ଭାବରେ କରି ମଧ୍ୟ ବ୍ରହ୍ମସ୍ଥିତିରେ ଲୀନ ରହେ । ଏହିଭଳି ବିବେକସମ୍ପନ୍ନ ପୁରୁଷର ଜନ୍ମ ସଫଳ ଓ ସାର୍ଥକ ।

ଇଏ ସବୁ ନିଜ ଅନୁଭବର କଥା । ଏହାକୁ ଅନୁମାନ ବା କଳ୍ପନା ଦ୍ୱାରା ଉଡ଼େଇ ଦିଆଯାଇନପାରେ । ଏସବୁ ନଗଦାନଗଦି କଥା, କାହାଠାରୁ ଉଧାର କରିଆଣି କହିବାଭଳି କଥା ନୁହେଁ । ପରବର୍ତ୍ତୀ ଜନ୍ମରେ ମୋକ୍ଷଲାଭ ଲାଗି ଏଥିରେ ପ୍ରତିଶ୍ରୁତି ନାହିଁ । ଆତ୍ମ-ପରିଚୟର ଅନୁସନ୍ଧାନ କରିବାଦ୍ୱାରା ଏହି ଜନ୍ମରେ, ଏହି ଦେହରେ ମଧ୍ୟ ମୋକ୍ଷଲାଭ ହୋଇପାରେ । ସଂସାରରେ ରହି ମଧ୍ୟ ସଂସାରରେ ଲିପ୍ତ ନ ରହି ଅର୍ଥାତ ସଂସାରପ୍ରତି ଉଦାସୀନ ରହି, ବାହାରେ ଭଲ ଆଚରଣ ପ୍ରଦର୍ଶନ କରି ଅନ୍ତର ଭିତରେ ନିର୍ଗୁଣ ବ୍ରହ୍ମଠାରେ ଅନନ୍ୟ ଭକ୍ତି ରଖି ଏବଂ ଏହି ଧାରଣାକୁ ଦୃଢ଼ କରିବାଦ୍ୱାରାହିଁ ପ୍ରକୃତ ସମାଧାନ ଓ ପରମଶାନ୍ତି ମିଳିଥାଏ ।

ମନରେ କୌଣସି ସନ୍ଦେହ ନ ରଖି ଏବଂ ଦେହବୋଧରୁ ମୁକ୍ତ ହୋଇ ସବୁ କର୍ମ କଲେ ମଧ୍ୟ 'ମୁଁ ନିଜେ କିଛି କରୁନି'—ଏହି ଭାବହିଁ ଜୀବନ୍ମୁକ୍ତର ଲକ୍ଷଣ ।

## ଦଶମ ସମାସ
## ।। ଅନିର୍ବାଚ୍ୟ ସମାଧାନ ।।

ଶ୍ରୋତାମାନଙ୍କର ପ୍ରଶ୍ନ— ସମାଧାନକୁ ସମସ୍ତେ କହନ୍ତି ଯେ ଏହା ଅନିର୍ବଚନୀୟ ଅର୍ଥାତ୍ ଯାହାକୁ କଥାରେ ବର୍ଣ୍ଣନା କରିହେବ ନାହିଁ ଏବଂ ଯେଉଁ ଅନୁଭୂତିକୁ କଥାରେ କୁହାଯାଇପାରିବ ନାହିଁ । ଏହି ସମାଧାନ ବିଷୟଟି କି'ଣ ଆପଣ ଆମ୍ଭମାନଙ୍କୁ ପ୍ରାଞ୍ଜଳ ଭାବରେ ବୁଝେଇ ଦିଅନ୍ତୁ ।

ଉତ୍ତର— ଗୋଟିଏ ବାକ୍ୟରେ କହିବାକୁ ଗଲେ, ପରବ୍ରହ୍ମ-ସ୍ୱରୂପର ଜ୍ଞାନ ହିଁ ସମାଧାନ । ସମାଧାନର ବ୍ୟାଖ୍ୟା କରାଯାଇ ନ ପାରେ । ବସ୍ତୁତଃ ଏହା ଅନିର୍ବଚନୀୟ । କିନ୍ତୁ ଏହାକୁ ବର୍ଣ୍ଣନା କରା ନ ଗଲେ ଜାଣିବ କିପରି ? ଏହା ମୁଗ ଆଉ ଗୁଡ଼ରେ ତିଆରି ଲଡ୍ଡୁଭଳି । ସଦ୍‌ଗୁରୁ ହିଁ ପରବ୍ରହ୍ମ ସ୍ୱରୂପକୁ ବୁଝେଇବା ଲାଗି ସମର୍ଥ । ସଦ୍‌ଗୁରୁଙ୍କ କୃପା ହେଲେ କେବଳ ମୁମୁକ୍ଷୁ ଭକ୍ତମାନେ ହିଁ ଏହାକୁ ବୁଝିପାରିବେ । ତାହାହେଲେ ମୁମୁକ୍ଷୁ ଭକ୍ତ କିଏ ? ଯିଏ ଏକାନ୍ତରେ ନିଜକୁ ନିଜେ ଖୋଜିବା ପାଇଁ ଉଦ୍ୟମ କରିଥାଏ, ସେହି ବ୍ୟକ୍ତି ହିଁ ମୁମୁକ୍ଷୁ ଭକ୍ତ । ବାହ୍ୟ ଇନ୍ଦ୍ରିୟଠାରୁ ମନକୁ ହଟେଇ ନିଜ ସ୍ୱରୂପକୁ ଚିହ୍ନିବା ଉଚିତ । ଏହା କଲେ ସମଗ୍ର ସଂସାର ଯେ ମାୟାର ଏକ ରୂପ ତାହା ହୃଦ୍‌ବୋଧ ହୋଇଥାଏ । ଶେଷରେ ରହେ କେବଳ ଶୁଦ୍ଧ ଆତ୍ମସ୍ୱରୂପ । ଏହି ଆତ୍ମସ୍ୱରୂପ ହିଁ ସମାଧାନର ପୀଠ । ଏଠାରେ ସାକ୍ଷୀଭାବ ରହିନଥାଏ, ଆତ୍ମାକୁ ହିଁ ସର୍ବସାକ୍ଷୀ କୁହାଯାଇଥାଏ; କିନ୍ତୁ ପୂର୍ବପକ୍ଷ ଦୃଷ୍ଟି କୋଣରୁ ଏହା ହିଁ କୁହାଯାଏ । ସର୍ବସାକ୍ଷୀତ୍ୱ ମଧ୍ୟ ସାକ୍ଷୀତ୍ୱ । ଅନ୍ୟ କୌଣସି ଲକ୍ଷଣ ଆତ୍ମବସ୍ତୁ ପ୍ରତି ଲାଗୁ ହୋଇ ନ ପାରେ । ଏଠାରେ ସର୍ବସାକ୍ଷୀତ୍ୱ, ଅନୁଭବ, ପଦାର୍ଥଜ୍ଞାନ, ତ୍ରିପୁଟୀ, ବାଣୀ କିମ୍ବା ମନ କେହି ପହଞ୍ଚି ପାରନ୍ତି ନାହିଁ । ଯେତେବେଳେ ଦ୍ରଷ୍ଟାର ଦ୍ରଷ୍ଟାଭାବ ନଷ୍ଟ ହୋଇଯାଏ, ସେତେବେଳେ 'ମୁଁ' ଭାବ ଲୋପ ହୋଇଯାଏ । 'ମୁଁ' ଭାବ ନିଃଶେଷ ହେବା ହିଁ ଅନୁଭବର ପରିଚୟ । 'ଅନୁଭବ' ଜିନିଷଟି କ'ଣ ଏବଂ ଏହାକୁ ବର୍ଣ୍ଣନା କରାଯିବ କିପରି ? ସେଥିଲାଗି

ସମାଧାନକୁ 'ଅନିର୍ବଚନୀୟ' କୁହାଯାଇଛି । ବର୍ଣ୍ଣନା କରିବା ହେଉଚି ଶବ୍ଦର କାମ । ଶବ୍ଦରୁ ଅର୍ଥ ବାହାର କରାଯାଇଥାଏ । କିନ୍ତୁ ଶବ୍ଦ ହେଉଛି ମାୟିକ । ସେହି କାରଣରୁ ଏହା ପରମାତ୍ମା-ସ୍ୱରୂପର ଅର୍ଥ ପର୍ଯ୍ୟନ୍ତ ପହଞ୍ଚିପାରେ ନାହିଁ । ଶବ୍ଦଦ୍ୱାରା କେବଳ ଏତିକି ମାତ୍ର କୁହାଯାଇପାରେ ଯେ ବ୍ରହ୍ମ ଦୃଶ୍ୟଠାରୁ ଭିନ୍ନ । ଏତିକି କହିଦେଇ ଶବ୍ଦ ତାର କାର୍ଯ୍ୟ ଶେଷ କରିଦେଇ ମୌନ ରହେ । ଅର୍ଥ ବା ବସ୍ତୁକୁ କେବଳ ଅନୁଭବ ଦ୍ୱାରା ଜାଣି ହୁଏ ।

ଆକାଶ ଅତି ସୂକ୍ଷ୍ମ ତତ୍ତ୍ୱ । ବ୍ରହ୍ମକୁ ବୁଝେଇବା ଲାଗି ଆକାଶର ଉପମା ଦିଆଯାଇଥାଏ । କିନ୍ତୁ ଆକାଶର ଉପମା ମଧ୍ୟ କଳ୍ପନାରେ ପର୍ଯ୍ୟବସିତ । କଳ୍ପନା ତ ମୂଳରୁ ମିଥ୍ୟା । ତେଣୁ କଳ୍ପନାକୁ ଭିତ୍ତି କରି କରାଯାଇଥିବା ଅନୁଭବ ସତ୍ୟ ହେବ କିପିର ?

'ଅନୁଭବ କଲି' ବୋଲି କହିବା ମଧ୍ୟ ଦ୍ୱୈତଭାବ । କେବଳ ଦ୍ୱୈତଭାବ ନୁହେଁ, ସେଥିରେ ଅନୁଭବ, ଅନୁଭବ କର୍ତ୍ତା ଓ ଅନୁଭବ ବସ୍ତୁ ଏହିଭଳି ତ୍ରିପୁଟୀ ବା ତିନୋଟି କଥା ଆସିଯାଏ । ଏଭଳି ଭାବରେ ଦ୍ୱୈତ ବା ତ୍ରିପୁଟୀର ଅବସ୍ଥା ଶୁଦ୍ଧ ସ୍ୱରୂପରେ ହୋଇନଥାଏ । ଏଥିରେ ଅନୁଭବର ସତ୍ତା ମଧ୍ୟ ରହେ ନାହିଁ । ତେଣୁ ଏହି ସ୍ୱରୂପ ଅନିର୍ବଚନୀୟ । ସୂର୍ଯ୍ୟଙ୍କ ଯୋଗୁ ହିଁ ଦିନ ଓ ରାତିର ସ୍ଥିତି ରହିଛି । ଯଦି ସୂର୍ଯ୍ୟର ଅସ୍ତିତ୍ୱ ନଥା'ନ୍ତା ଦିନ ଓ ରାତି ଆସନ୍ତା କୁଆଡୁ ? ଓଁକାର ଯୋଗୁ ହିଁ ଶବ୍ଦ ଓ ମୌନର ବିଚାର କରାଯାଇଥାଏ । ଓଁକାରର ଆଶ୍ରୟ ନ ନେଲେ ଉଚ୍ଚାରଣ ହେବ କିପରି ? ସାରାଂଶ ହେଉଛି 'ଅନୁଭବ' ତ୍ରିପୁଟୀ ଅନ୍ତର୍ଗତ ହୋଇଥିବା ଯୋଗୁଁ ଏହା ମାୟାର ଅଙ୍ଗବିଶେଷ । କିନ୍ତୁ ସ୍ୱରୂପରେ ମାୟାର ଅଭାବ ଘଟିଲେ ଏହାର ଅସ୍ତିତ୍ୱ ରହିବ କେଉଁଠି ? ବସ୍ତୁ ଓ ସ୍ୱୟଂ ଏକ ହୋଇଗଲେ ଆଉ ସମାଧାନର ପ୍ରଶ୍ନ କେଉଁଠି ରହିଲା ? ବସ୍ତୁ ଏବଂ ସ୍ୱୟଂ ଏକ ହୋଇଯିବା ସ୍ୱାଭାବିକ । ଅର୍ଥାତ୍ ସ୍ୱରୂପ ସମାଧାନର ବର୍ଣ୍ଣନା କରାଯାଇ ନପାରେ । ଏହା ଅନିର୍ବାଚ୍ୟ ।

ସ୍ୱରୂପରେ ଜନ୍ମ, ବନ୍ଧନ, ମୋକ୍ଷ ଆଦି କିଛି ନାହିଁ । ଶୁଦ୍ଧସ୍ୱରୂପ ହିଁ ସ୍ୱୟଂ ସମାଧାନ । ସେଥିରେ ସୃଷ୍ଟି ବା ସଂସାରର ସ୍ପର୍ଶ ମଧ୍ୟ ନ ଥାଏ । ଗୋଟିଏ ଦୃଷ୍ଟାନ୍ତ ଦେଇ ଏହାକୁ ବୁଝେଇ ଦିଆଯାଇପାରେ । ଧର ଜଣେ (ଅଜନ୍ମା)

ଶୋଇଥିବା ଅବସ୍ଥାରେ ସ୍ୱପ୍ନ ଦେଖିଲା ଯେ ସେ ସଂସାରର ଦୁଃଖ କଷ୍ଟରେ ପୀଡ଼ିତ ହୋଇ ସଦ୍‌ଗୁରୁଙ୍କ ଶରଣ ନେବା ପାଇଁ ଯାଇଛି । ତା'ପରେ ସେ ଜ୍ଞାନଲାଭ କରି ମୁକ୍ତ ହୋଇଗଲା । ସେ ସ୍ୱପ୍ନରେ ବିଳିବିଳେଇ ହେବାକୁ ଲାଗିଲା ଯେ ସେ ସଂସାରର ଦୁଃଖ ଯାତନାରେ ସଂତପ୍ତ ହୋଇ ସଦ୍‌ଗୁରୁଙ୍କ ଶରଣ ନେବା ପରେ ତାଙ୍କର ଉପଦେଶ ଲାଭ କରି ସାଂସାରିକ ମୋହରୁ ମୁକ୍ତିଲାଭ କଲା । ତାର ଅଜ୍ଞାନ ତୁଟିଗଲା ଏବଂ ସେ ଜ୍ଞାନସଂପନ୍ନ ହୋଇଉଠିଲା । ପ୍ରଥମରୁ ଯାହା ଥିଲା ସେ ମୋହ ମାୟା ତୁଟିଗଲା, ଯାହା ପ୍ରଥମରୁ ନ ଥିଲା ତାହା ତ ନ ଥିଲା । ଅର୍ଥାତ୍ 'ଅଛି' ଏବଂ 'ନାହିଁ'-ଏ ଦୁଇଟିର ବିନାଶ ହେଲେ ଶୂନ୍ୟାବସ୍ଥା ଅର୍ଥାତ୍ ସ୍ୱରୂପାବସ୍ଥା ପ୍ରାପ୍ତ ହୁଏ । ଏହାପରେ ଶୂନ୍ୟାବସ୍ଥାର ଊର୍ଦ୍ଧ୍ୱରେ ଥିବା ଶୁଦ୍ଧ ଜ୍ଞାନର ସମାଧାନ ହୋଇଯାଏ ଏବଂ ପରମାତ୍ମ ସ୍ୱରୂପ ସହ ଏକାକାର ହୋଇଯାଇ ସେ ଅଭିନ୍ନ ସହଜସ୍ଥିତି ଲାଭକରେ ।

ଅଦ୍ୱୈତର ନିରୂପଣ ଦ୍ୱାରା ଅଜନ୍ମା ପୁରୁଷର ଦ୍ୱୈତଭାବ ନଷ୍ଟ ହୋଇଥାଏ ଏବଂ ସେ ଜ୍ଞାନ ଚର୍ଚ୍ଚା କରିବାକୁ ଲାଗେ । ହଠାତ୍ ମଝିରେ ଏହାର ନିଦ ଭାଙ୍ଗିଯିବା ପରେ ସ୍ୱପ୍ନଭଙ୍ଗ ମଧ୍ୟ ହୋଇଯାଏ ଏବଂ ଜାଗ୍ରତ ଅବସ୍ଥାରେ ପ୍ରକୃତ ସ୍ୱରୂପର ଉପଲବ୍‌ଧି ହୋଇଥାଏ । ବର୍ତ୍ତମାନ ଶ୍ରୋତାଗଣ ଯଦି ସାବଧାନ ଭାବେ ଏହି ଦୃଷ୍ଟାନ୍ତଟିକୁ ଶାନ୍ତ ଚିତ୍ତରେ ବିଚାର କରିବେ, ତାହାହେଲେ ଏହାର ରହସ୍ୟ ସହଜରେ ହୃଦୟଙ୍ଗମ କରିପାରିବେ ଏବଂ ଆପେ ଆପେ ସମସ୍ତ ପ୍ରଶ୍ନର ସମାଧାନ ହୋଇଯାଇ ପାରିବ ।

ଏହି ଅଜନ୍ମା ପୁରୁଷ ସ୍ୱପ୍ନାବସ୍ଥାରେ ଯେତେସବୁ ଜ୍ଞାନର କଥା କହିଥାଏ ସେସବୁ ତ ସ୍ୱପ୍ନଭଙ୍ଗ ମାତ୍ରେ ଶେଷ ହୋଇଯାଇଥାଏ । କିନ୍ତୁ ସେ ଯେଉଁ ଅନିର୍ବଚନୀୟ ସୁଖ ଲାଭକରେ ତାକୁ କଥାରେ କହିହେବ ନାହିଁ କିମ୍ବା ବର୍ଣ୍ଣନା କରାଯାଇପାରିବ ନାହିଁ । ଏହି ଅନିର୍ବଚନୀୟ ଆନନ୍ଦ ହିଁ ଈଶ୍ୱରଙ୍କ ସହିତ ଏକାକାର ହୋଇଯିବ । ଏଥିରେ କୌଣସି ଅନୁଭବ ନାହିଁ କିମ୍ବା ଅନୁଭବ ପୂରଣ କରାଗଲା ନାହିଁ । ବହୁ ଅଜନ୍ମା ଏହି ଆନନ୍ଦ ବା ସୁଖ ଲାଭ ନ କରୁଣୁ ମଝିରେ ଜାଗ୍ରତ ହୋଇ ପଡ଼ିଥାଆନ୍ତି । ଏମାନେ ସ୍ୱପ୍ନାବସ୍ଥାରେ ଅନ୍ୟ ସ୍ୱପ୍ନ ଦେଖି ଥାଆନ୍ତି ସତ, କିନ୍ତୁ ଏହି ସ୍ୱପ୍ନ ଦେଖୁ ଦେଖୁ ଜାଗି ଉଠନ୍ତି । ଶବ୍ଦଦ୍ୱାରା ଏହି ଅବସ୍ଥାକୁ ବର୍ଣ୍ଣନା

କରାଯାଇପାରିବ ନାହିଁ । ତେଣୁ ଏହି କଥାଟିକୁ ଅଧିକ ସ୍ପଷ୍ଟ ଭାବେ ବୁଝାଇବାକୁ ଚେଷ୍ଟା କରୁଛି ।

ଏହାପରେ ଶ୍ରୋତାମାନେ ପ୍ରସନ୍ନ-ଚିତ୍ତରେ କହିଲେ, ''ହେ ମହାରାଜ ! ଆପଣ ଯାହାସବୁ କହିଲେ ଆମମାନଙ୍କ ହୃଦୟଙ୍ଗମ ହୋଇପାରିବା ଭଳି ସ୍ପଷ୍ଟଭାବେ ବୁଝାଇ ଦିଅନ୍ତୁ ।''

ଶ୍ରୋତାମାନଙ୍କ ଆଗ୍ରହକୁ ଲକ୍ଷ୍ୟ କରି ସ୍ୱାମୀଜୀ କହିଲେ, ହେ ଶିଷ୍ୟଗଣ ! ମୁଁ ଯେଉଁ ଅଜନ୍ମା କଥା କହିଲି ନିଜେ ତୁମେମାନେ ହିଁ ସେହି ଅଜନ୍ମା । ତୁମେମାନେ ସ୍ୱପ୍ନବସ୍ଥାରେ ଥାଇ ଅନ୍ୟ ଯେଉଁ ସ୍ୱପ୍ନ ଦେଖିଲ ଏବଂ ଏହି ଅବସ୍ଥାରେ ଯେଉଁ କାର୍ଯ୍ୟ କଲ, ସେହି କଥା ହିଁ ମୁଁ ସ୍ପଷ୍ଟ ଭାବେ ବୁଝାଉଛି । ଏହି ସଂସାର ହିଁ ଏହି ସ୍ୱପ୍ନ ଅନ୍ତର୍ଗତ ଅନ୍ୟ ଏକ ସ୍ୱପ୍ନ ଏବଂ ଏହି ସ୍ୱପ୍ନାବସ୍ଥାରେ ହିଁ ତୁମେମାନେ ସାର ଅସାରର ବିଚାର କରିଥାଅ । ସଦ୍‌ଗୁରୁଙ୍କ ଶରଣାପନ୍ନ ହୋଇ ଏବଂ ତାଙ୍କଠାରୁ ଶୁଦ୍ଧ ବିଚାର ଶୁଣି ମଧ୍ୟ ତୁମେମାନେ ସେ ସମ୍ପର୍କରେ ବାରମ୍ବାର ଆଲୋଚନା ଓ ତର୍କ ବିତର୍କ କରିବାରେ ଲାଗିଥାଅ । କିନ୍ତୁ ପରମବସ୍ତୁକୁ ଅନୁଭବ କରିବାମାତ୍ରେ ସମସ୍ତ ଆଲୋଚନା ଓ ତର୍କ ବିତର୍କର ପରିସମାପ୍ତି ଘଟିଥାଏ । ଏପରିକି ବାଣୀ ମଧ୍ୟ ମୌନ ହୋଇଯାଏ । ଏହି ଯେଉଁ ପ୍ରଶାନ୍ତ-ବିଶ୍ରାମର ଅବକାଶ, ତାହା ହିଁ ଜାଗ୍ରତ ଅବସ୍ଥା । ଆତ୍ମାନୁଭବ ହିଁ ଜାଗରଣର ଲକ୍ଷଣ । ଜ୍ଞାନ-ଚର୍ଚ୍ଚାର କୋଳାହଳ ଦୂର ହୋଇଯିବା ପରେ ହିଁ ପ୍ରକୃତ ଅର୍ଥବୋଧ ହୋଇଥାଏ ଏବଂ ଏହି ଅର୍ଥର ଚିନ୍ତନ ଓ ମନନଦ୍ୱାରା ଏଭଳି ଏକ ବିଶେଷ ଅନୁଭୂତି ହୋଇଯାଏ ଯାହାକି ଅନିର୍ବଚନୀୟ । ତୁମେ ଅନୁଭବ କରିଥାଅ ସତେ ଯେମିତି ତୁମର ଜାଗରଣ ହୋଇଗଲାଣି । ଏହାର ଅର୍ଥ ସମ୍ପର୍କରେ କେବଳ ଏତିକିମାତ୍ର କୁହାଯାଇ ପାରେ ଯେ ଏପର୍ଯ୍ୟନ୍ତ ତୁମର ଭ୍ରମ ଦୂର ହୋଇ ନାହିଁ । ଅନୁଭବ ଭିତରେ ଅନ୍ୟ କୌଣସି ଅନୁଭବରେ ଲୀନ ହୋଇପଡ଼ିବା ଅଥବା ଅନୁଭବ ବ୍ୟତୀତ ଅନୁଭବ କରିବା ଭଳି ଆଭାସ ପାଇବା ଅବସ୍ଥାକୁ ସ୍ୱପ୍ନରୁ ଜାଗରଣ ଅବସ୍ଥା କୁହାଯାଇ ନ ପାରେ । ଜାଗ୍ରତ ହେବାପରେ ତୁମେ କହିଥାଅ ମୁଁ ହେଉଛି ସେହି ଅଜନ୍ମା । ଏଥିରୁ ସିଦ୍ଧ ହେଉଛି ଯେ ଏ ପର୍ଯ୍ୟନ୍ତ ତୁମ ମନରୁ ସାଂସାରିକ ସ୍ୱପ୍ନର ଧାରଣା ଦୂର ହୋଇପାରି ନାହିଁ ।

ମନୁଷ୍ୟ ଯେପରି ସ୍ୱପ୍ନରେ ଭାବେ ଯେ ସେ ଜାଗି ଉଠିଚି, ସେହିଭଳି ସେହି ସମୟରେ ତୁମେ ବୁଝିଥାଅ ଯେ ତୁମର ଅନୁଭୂତି ହୋଇଗଲା; କିନ୍ତୁ ବାସ୍ତବରେ ଏହା ମଧ୍ୟ ସେହି ସ୍ୱପ୍ନର ଅବସ୍ଥା ଅର୍ଥାତ୍ କେବଳ ଭ୍ରମ । ପ୍ରକୃତ ଜାଗରଣ ଏହାଠାରୁ ପୃଥକ୍ । ଏ ସମ୍ପର୍କରେ ବାଣୀ ବା କଥାଦ୍ୱାରା ବର୍ଣ୍ଣନା କରିବା ଅସମ୍ଭବ । ଏଠାରେ ବୁଦ୍ଧି ଓ ବିବେକର ଦୌଡ଼ ମଧ୍ୟ ଶେଷ ହୋଇ ଯାଇଥାଏ । ତେଣୁ ସେହି ଅବସ୍ଥାକୁ ଶବ୍ଦଦ୍ୱାରା ପ୍ରକଟ କରାଯାଇ ନ ପାରେ । ଏହା ହିଁ ସେହି ଅବସ୍ଥାର ବିଶେଷତ୍ୱ ଓ ଅଦ୍ୱିତୀୟ । ଯେଉଁ ଅନୁଭୂତି ନିଃଶବ୍ଦ ଓ ଅନିର୍ବଚନୀୟ, ତାକୁ ହିଁ କୁହାଯାଏ ସମାଧାନ । ଏହା ହିଁ ସମାଧାନ-ବୃତ୍ତିର ପରିଚୟ । ଅନ୍ୟ ସବୁ ଅନୁଭବ ବା ଅନୁଭୂତିକୁ ବର୍ଣ୍ଣନା କରାଯାଇ ପାରେ କିନ୍ତୁ ସମାଧାନକୁ ବର୍ଣ୍ଣନା କରାଯାଇ ନ ପାରେ ।

ସ୍ୱାମୀଜୀଙ୍କ ଏହି ଉପଦେଶ ଓ ବିବେଚନା ଦ୍ୱାରା ଶ୍ରୋତାମାନଙ୍କ ପ୍ରଶ୍ନର ସମ୍ପୂର୍ଣ୍ଣ ସମାଧାନ ହୋଇପାରିଲା ଏବଂ ସେମାନେ ଅନିର୍ବଚନୀୟ, ଅଚିନ୍ତ୍ୟ ଓ ଅନୁପମ ଅନୁଭବାନନ୍ଦର ରହସ୍ୟକୁ ଭଲଭାବେ ହୃଦୟଙ୍ଗମ କରିପାରିଲେ ।



# ସପ୍ତମ ଦଶକ

## ପ୍ରଥମ ସମାସ
## ।। ମଙ୍ଗଳାଚରଣ ।।

ବିଦ୍ୱାନମାନଙ୍କ ପୂର୍ବଜ, ଜ୍ଞାନସ୍ୱରୂପ ଶ୍ରୀ ଗଣେଶଙ୍କୁ ନମସ୍କାର । ଯିଏ ଗଜମୁଖ, ଏକଦନ୍ତ, ଚତୁର୍ମୁଖ ଓ ପର୍ଶୁପାଣି ସେହି ଶ୍ରୀ ଗଣେଶଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ । ଯାହାଙ୍କ ପ୍ରତାପରେ କୁବେରକୁ ଧନ, ବେଦକୁ ପରମାର୍ଥ, ଲକ୍ଷ୍ମୀଙ୍କ ଶ୍ରୀଲାଭ ହୋଇାପରିଚି, ସେହି ମୂଳପୁରୁଷ ଶ୍ରୀଗଣେଶ ହିଁ ସର୍ବବିଦ୍ୟାର ଜନକ । ଏହି ମୂଳ ପୁରୁଷ ହିଁ ସକଳ କର୍ତ୍ତୃତ୍ୱର ଅର୍ଥାତ ସବୁ କାର୍ଯ୍ୟର ଆରମ୍ଭ । ଶ୍ରୀଗଣେଶ ସ୍ୱୟମ୍ଭୂ । ତାଙ୍କରି ସ୍ୱତଃସ୍ଫୂର୍ତ୍ତ ଇଚ୍ଛାର ନାମ ହିଁ ଶାରଦା ।

କେହି ଯେତେବେଳେ ବ୍ରହ୍ମ ନିରୂପଣ କରିବାରେ ଲାଗେ, ସେତେବେଳେ ସେ ସେଥିରୁ ଭିନ୍ନ ହୋଇପଡ଼ିଥାଏ । ପୁଣି ତାର ଦ୍ୱୈତଭାବ ଲୋପ ପାଇବାରେ ସେ ଆଦ୍ୱୈତବୋଧ କରିଥାଏ ।

ତା'ପରେ ସ୍ୱସ୍ୱରୂପଭୂତ ସଦ୍‌ଗୁରୁଙ୍କୁ ନମସ୍କାର । ସଦ୍‌ଗୁରୁଙ୍କ କୃପାରୁ ହିଁ ସୃଷ୍ଟି ଆନନ୍ଦମୟ ଓ ସୁଖମୟ ହୋଇଉଠେ । ସଦ୍‌ଗୁରୁ ହିଁ ଆନନ୍ଦର ଜନକ, ସାଯୁଜ୍ୟ-ମୁକ୍ତିର ନାୟକ, କୈବଲ୍ୟଧାମର ଦାତା, ଅନାଥର ବନ୍ଧୁ । ମୁମୁକ୍ଷୁ-ରୂପୀ ଚାତକ ଯେତେବେଳେ ଅତି ଆର୍ତ୍ତଭାବରେ ପ୍ରାର୍ଥନା କରେ, ସେତେବେଳେ କରୁଣାମେଘ ଶ୍ୟାମ ସଦ୍‌ଗୁରୁ ସାଧକ ଉପରେ କୃପା ରୂପକ ଜଳଧାରା ବର୍ଷଣ କରିଥାଆନ୍ତି । ଶ୍ରୀଗୁରୁ ହେଉଛନ୍ତି ଭବ-ସାଗରର ନୌକା, ସେ ବୋଧରୂପକ ଆହୁଲା ଦ୍ୱାରା ଶିଷ୍ୟକୁ ଏହି ସାଗର ପାରି କରାଇଥାଆନ୍ତି । ସଙ୍କଟ ନିବାରକ, ମୃତ୍ୟୁଭୟ ନିବାରଣକାରୀ ଶ୍ରୀସଦ୍‌ଗୁରୁ ଦୟାବତୀ ମାତୃତୁଲ୍ୟା । ସଦ୍‌ଗୁରୁଙ୍କ କୃପାଦ୍ୱାରା ଭେଦଭାବ ନଷ୍ଟ ହୋଇଥାଏ । ଏଭଳି ସଦ୍‌ଗୁରୁଙ୍କୁ ମୋର ସାଷ୍ଟାଙ୍ଗ ପ୍ରଣାମ ।

ଏବେ ମୁଁ ସାଧୁ ସନ୍ଥଙ୍କ ବନ୍ଦନା କରିବି । ସଂସାରରୂପକ ସ୍ୱପ୍ନରେ ମଗ୍ନ ରହି ଜୀବ "ଇଏ ମୋ ସ୍ତ୍ରୀ, ଇଏ ମୋ ଧନସମ୍ପତ୍ତି, ଇଏ ମୋ ପୁତ୍ର-କନ୍ୟା" ଆଦି ଦିନରାତି କହିବାରେ ଲାଗିଛି । ଜ୍ଞାନ-ରବି ଅସ୍ତ ହୋଇଯିବା ପରେ ଆଲୋକ ଲୋପପାଏ ଏବଂ ସମଗ୍ର ବ୍ରହ୍ମାଣ୍ଡରେ ଅନ୍ଧକାର ଛାଇଯାଏ । ଫଳରେ ସତ୍ତ୍ୱଗୁଣର ଜ୍ୟୋସ୍ନା ଦେଖାଯାଏ ନାହିଁ । ସେହିଭଳି ମନୁଷ୍ୟ ମନର ଭ୍ରାନ୍ତି ଫଳରେ ସ୍ୱରୂପଦର୍ଶନ କରିପାରେ ନାହିଁ । ଦେହବୋଧର ଅହଂକାର ରୂପକ ନିଦ୍ରା ଯୋଗୁଁ ମନୁଷ୍ୟ ବା ଜୀବ ଦୁଃଖୀ ହୋଇପଡ଼େ । ବିଷୟସୁଖ ଲାଗି ତା ମନ ସର୍ବଦା ଚିତ୍କାର କରିବାରେ ଲାଗେ । ଏହି ଜୀବ ମାୟା ଫାଶରେ ଗୁଡ଼େଇ ହୋଇ ମରିଯାଏ । ପୁଣି ଜନ୍ମ ହୋଇ ପୁନର୍ବାର ମାୟା ନିଦ୍ରାରେ ଘାରି ହୁଏ । ତାର ଜୀବନ କେବଳ ମାୟା ନିଦ୍ରାରେ ହିଁ ବିତିଯାଏ । ଏହିଭଳି ଭାବେ ନିଦ୍ରାର ସ୍ଥିତିରେ ଜନ୍ମ ପରେ ଜନ୍ମ ବହୁ ଜନ୍ମ ଗ୍ରହଣ କରି ମଧ୍ୟ ପରମେଶ୍ୱରଙ୍କୁ ଜାଣି ନ ପାରି ସେ କଷ୍ଟଭୋଗ କରିଥାଏ । ଏହି କଷ୍ଟର ନିବାରଣ ଲାଗି ଆତ୍ମଜ୍ଞାନ ଆବଶ୍ୟକ । ସେହି କାରଣରୁ ହିଁ ଏହି ଅଧ୍ୟାତ୍ମଗ୍ରନ୍ଥ ଲେଖାଯାଉଛି । ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି—

ଅଧ୍ୟାତ୍ମ ବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତାମହମ୍ ।।

ଅର୍ଥାତ୍ ଆଧ୍ୟାତ୍ମ ହେଉଛି ସବୁ ବିଦ୍ୟା ମଧ୍ୟରେ ସାର । ଯାହାର ଚିତ୍ତ ନିଶ୍ଚଳ ସେ କେବଳ ଆଧ୍ୟାତ୍ମଗ୍ରନ୍ଥ ଦ୍ୱାରା ନିରୂପିତ ଆଧ୍ୟାତ୍ମ-ବିଦ୍ୟାର ରହସ୍ୟ ଜାଣିବା ଲାଗି ସମର୍ଥ ହୋଇପାରେ । ଯାହାର ଚିତ୍ତ ଚଞ୍ଚଳ ସେ ଏହି ଗ୍ରନ୍ତ ପାଠ କରିବା ଲାଗି କଷ୍ଟ କରିବା ଅନାବଶ୍ୟକ । କାରଣ ସେ ଏହାର ରହସ୍ୟ ବୁଝି ପାରିବ ନାହିଁ । ପରମାର୍ଥରେ ଯାହାର ରୁଚି ସେ ଦୃଢ଼ ଚିତ୍ତରେ ଏହି ଗ୍ରନ୍ଥ ପାଠ କରିବା ଉଚିତ । ଏଭଳି ଲୋକ ଏହାକୁ ଅଧ୍ୟୟନ କଲେ ତା ହୃଦୟରେ ପରମାର୍ଥ ଉଦୟ ହେବା ନିଶ୍ଚିତ । ପରମାର୍ଥରେ ଯାହାର ଆସ୍ଥା ନାହିଁ ତା ପକ୍ଷରେ କାମଧେନୁରୂପୀ ଏହି ମହାନ୍ ଗ୍ରନ୍ଥ ଅନୁପଯୋଗୀ ।

ଏହି ଗ୍ରନ୍ଥ କଥିତ ତଥା ପ୍ରାକୃତ ଭାଷାରେ ହୋଇଥିବାରୁ କେହି କେହି ଏହାକୁ ଅନାଦାର କରି ପାରନ୍ତି । ଏଭଳି ମୂର୍ଖଙ୍କ ପକ୍ଷରେ ଅର୍ଥ ସମ୍ବନ୍ଧର କୌଣସି ଜ୍ଞାନ ନ ଥାଏ । ବହୁମୂଲ୍ୟ ରତ୍ନାଳଂକାର ଲୁହାବାକ୍ସରେ ରଖା ଯାଇଥିଲେ

ବାକ୍ସଟି ଯେହେତୁ ଲୁହା ବୋଲି ଭାବି ତାକୁ କୌଣସି ବୁଝିବା ସୁଝିବା ଲୋକ ତ୍ୟାଗ କରେ କି ? ସେହିଭଳି ଯେଉଁଥିରେ ବେଦାନ୍ତର ଅନ୍ତିମ ସିଦ୍ଧାନ୍ତ ସ୍ପଷ୍ଟ ଭାବରେ ବିଶ୍ଳେଷଣ ଓ ନିରୂପଣ କରାଯାଇଚି, ଏହା ପ୍ରାକୃତ ଭାଷାରେ ଲେଖାଯାଇଚି ବୋଲି ଯିଏ ଏହାକୁ ଅନାଦର କରିବ, ତାକୁ ମୂଢ଼ମତି କହିବା ବ୍ୟତୀତ କ'ଣ କୁହାଯିବ ? ଯଦି ସହଜ ତଥା ସୁଲଭରେ ଧନ ମିଳୁଚି, ତାହାହେଲେ ତାକୁ ଖୁସିରେ ସ୍ୱୀକାର କରିବା ଉଚିତ । ଏହା କେଉଁ ଧାତୁରେ ତିଆରି ହୋଇଥିବା ପେଡ଼ିରେ ରଖା ଯାଇଚି, ତାର ବିଚାର କରିବା ଅନୁଚିତ । ବ୍ୟୁତ୍ପତ୍ତି , ଅନ୍ୱୟ ଆଦି ପରିଶ୍ରମରୁ ରକ୍ଷା ପାଇଁ ଯଦି ସକଳ ଶାସ୍ତ୍ର ରହସ୍ୟ ଅନାୟାସରେ ଉପଲବ୍ଧ ହୋଇପାରୁଚି, ତାହାହେଲେ ସତ୍‌ସଙ୍ଗ ଭଳି ଏହାକୁ ସାଦର ଗ୍ରହଣ କରିବା ଉଚିତ । ଯେଉଁ କଥା ବିପ୍ରୁତ୍ତି ଦ୍ୱାରା ବୁଝିହୁଏ ନାହିଁ ତାକୁ ସତ୍‌ସଙ୍ଗ ଦ୍ୱାରା ବୁଝି ନେବା ଉଚିତ । କାରଣ ସତ୍‌ସଙ୍ଗରୁ ଜ୍ଞାନର ରହସ୍ୟ ଅନୁଭୂତ ହୋଇଥାଏ । ତେଣୁ ସବୁ ସାଧନାର ମୂଳ ହେଉଚି ସତ୍‌ସମାଗମ । ସତ୍‌ସଙ୍ଗ ଲାଭ ହିଁ ଜନ୍ମର ସାର୍ଥକତା । ତେଣୁ ଇଏ ସଂସ୍କୃତ ଭାଷା, ସିଏ ପ୍ରାକୃତ ଭାଷା— ଏଭଳି ଭେଦଭାବ ନିରର୍ଥକ । କାର୍ଯ୍ୟର ସିଦ୍ଧି ଏହାର ଅର୍ଥ ଦ୍ୱାରା ହୋଇଥାଏ । ତେଣୁ ଭାଷାର ବିଚାର ଗୌଣ । ଭାଷାଭିମାନ ମୋକ୍ଷମାର୍ଗ ଦିଗରେ ପ୍ରତିବନ୍ଧକ । ଭଗବାନଙ୍କ ମହିମା ହିଁ ସର୍ବ ଅର୍ଥର ଲକ୍ଷ୍ୟ ।

ଅଧ୍ୟାତ୍ମ-ଗ୍ରନ୍ଥ ନିରୂପଣ ଶୁଣି ଏହାର ଅର୍ଥକୁ ହୃଦୟଙ୍ଗମ କରିବା ଭଳି ଶ୍ରୋତା ଦୁର୍ଲ୍ଲଭ କହିଲେ ଚଳେ । ଏଭଳି ଶ୍ରୋତାଙ୍କୁ ପାଇଲେ ବକ୍ତା ସନ୍ତୋଷଲାଭ କରିଥାଏ । ଉପଯୁକ୍ତ ଜହୁରୀ ପାଖରେ ପରୀକ୍ଷା ଲାଗି ରତ୍ନ ରଖାଗଲେ ଯେପରି ଆନନ୍ଦ ମିଳିଥାଏ, ସେହିଭଳି ଜ୍ଞାନୀ ନିକଟରେ ଜ୍ଞାନ ନିରୂପଣ ଦ୍ୱାରା ସୁଜ୍ଞାନୀବକ୍ତାକୁ ଆନନ୍ଦ ମିଳିଥାଏ । ମାୟା-ଜାଲରେ ପଡ଼ି ଦୁଃଶ୍ଚିନ୍ତାଗ୍ରସ୍ତ ସଂସାରୀପୁରୁଷ ଏହାର ରହସ୍ୟ ବୁଝିବ କିପରି ?

ବ୍ୟବସାୟାତ୍ମିକା ବୁଦ୍ଧି ରେକେହ କୁରୁନନ୍ଦନ ।
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍ । ୧ ।

ଅର୍ଥାତ୍ ଯାହାର ବୁଦ୍ଧି ପ୍ରପଞ୍ଚ ବ୍ୟବସାୟ ଦ୍ୱାରା ମିଳିତ ହୋଇଯାଇଥାଏ, ସେ ଆଧ୍ୟାତ୍ମ-ନିରୂପଣକୁ ବୁଝି ନ ପାରେ । ଏହା ବୁଝିବା ଲାଗି ଅତ୍ୟନ୍ତ

ସାବଧାନତା ଆବଶ୍ୟକ । ପରମାର୍ଥ-ପ୍ରବୃତ୍ତ ନିଶ୍ଚଳ-ଚିତ୍ତ ସାଧକ ହିଁ ଏହାର ଅଧିକାରୀ ହୋଇଥାଏ ।

ମାୟା ଓ ବ୍ରହ୍ମକୁ ଚିହ୍ନିବା ହେଉଚି ଅଧ୍ୟାତ୍ମ । ବ୍ରହ୍ମ ସ୍ୱରୂପକୁ ଜାଣିବା ପୂର୍ବରୁ ମାୟାର ରୂପ ସମ୍ପର୍କରେ ବିଦିତ ହେବା ଉଚିତ । ମାୟା ସଗୁଣ, ସାକାର, ସବିକାର ଓ ପଞ୍ଚଭୌତିକ । ମାୟା ଦୃଶ୍ୟଚକ୍ଷୁରେ ଦେଖାଦେଇଥାଏ ଏବଂ ମନରେ ଏହା ଭାସି ଉଠିଥାଏ । ମାୟା ନଶ୍ୱର ଏବଂ ବିବେକ-ଦୃଷ୍ଟିରେ ଦେଖିଲେ ଏହା ନିରସନ ହୋଇଥାଏ । ମାୟା ଏ ବିଶ୍ୱରେ ନାନା ରୂପରେ ପ୍ରକଟିତ । ମାୟା ଅର୍ଥାତ୍ ଆମର କଳ୍ପନା ସ୍ୱସ୍ୱରୂପରୁ ଉଦ୍‌ଧୃତ ଏକ ସଂକଳ୍ପମାତ୍ର । ତେଣୁ ଏହି ମିଥ୍ୟାର ନିରାକରଣ ଆତ୍ମ-ଜ୍ଞାନ ବିନା ଅସମ୍ଭବ । ଆଗାମୀ ସମାସରେ ଆତ୍ମ-ଜ୍ଞାନ ଅର୍ଥାତ ବ୍ରହ୍ମର ନିରୂପଣ କରାଯିବ ।

## ଦ୍ୱିତୀୟ ସମାସ
## ।। ବ୍ରହ୍ମ-ପ୍ରତିପାଦନ ।।

ବ୍ରହ୍ମ ନିର୍ଗୁଣ, ନିରାକର, ନିଃସଙ୍ଗ, ନିର୍ବିକାର, ସର୍ବବ୍ୟାପକ, ଶାଶ୍ୱତ, ଅଚ୍ୟୁତ, ଅନନ୍ତ ନିର୍ବିକଳ୍ପ । ଏହା ଦୃଶ୍ୟ ପ୍ରକୃତିର ଉପାସକ; କିନ୍ତୁ ଶୂନ୍ୟ ନୁହଁ କିମ୍ବା ଇନ୍ଦ୍ରିୟମଗ୍ନ ନୁହଁ । ଏହ ଅତ୍ୟନ୍ତ ସୂକ୍ଷ୍ମତମ । ଏହାକୁ ଶବ୍ଦରେ ବର୍ଣ୍ଣନା କରାଯାଇ ନ ପାରେ । ବ୍ରହ୍ମ ମନ ଓ ବଚନର ଅଗୋଚର ଏବଂ କଳ୍ପନାତୀତ ।

ବ୍ରହ୍ମ-ଭଣ୍ଡାରକୁ ଖୋଲିବା ଲାଗି ଚାବି ରହିଚି ସଦ୍‌ଗୁରୁଙ୍କ ହାତରେ । ସଦ୍‌ଗୁରୁଙ୍କ କୃପାରୁ ଶିଷ୍ୟକୁ ଏହି ଚାବି ମିଳିବାମାତ୍ରେ ଶିଷ୍ୟର ବୁଦ୍ଧି ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ଦ୍ୱୈତଭାବର କବାଟ ଏକାବେଳକେ ଖୋଲିଯାଏ । ବ୍ରହ୍ମସୁଖ ଅପାର କିନ୍ତୁ ତା ଭିତରକୁ ମନ ପ୍ରବେଶ କରି ପାରେନା । ଏହାକୁ ପାଇବା ଲାଗି ଯେଉଁ ଉଦ୍ୟମ କରିବାକୁ ପଡ଼େ, ସେଥିସହିତ ମନର କୌଣସି ସମ୍ପର୍କ ନ ଥାଏ । ମନର ବିନା ସାହାଯ୍ୟରେ ଏହା ଲାଭ କରାଯାଇପାରେ । ଏଥିରେ କୌଣସି ବାସନାର ସ୍ଥାନ ନାହିଁ । ଏହା ଲାଭ ହେବାମାତ୍ରେ ପୂର୍ଣ୍ଣ ସନ୍ତୋଷ ଓ ତୃପ୍ତି ଅନୁଭୂତ ହୁଏ । କଳ୍ପନା ଭଳି ଅଜ୍ଞାନ ଏହାର ସୀମା ସ୍ପର୍ଶ କରି ପାରେନା । ଏହା

ପରାବାଣୀର ଉପାସକ, ମନ ବୁଦ୍ଧିର ଅଗମ୍ୟ । ନିଃସଙ୍ଗ ହେଲେ ହିଁ ଏହା ଲାଭ କରାଯାଇପାରେ । ବ୍ରହ୍ମପ୍ରାପ୍ତିର ପ୍ରଧାନ ଅନ୍ତରାୟ ହେଉଚି ଅହଂକାର ବା ଅଜ୍ଞାନ । ଏହାକୁ ତ୍ୟାଗ କରି ଅର୍ଥାତ୍ 'ମୁଁ'କୁ ଛାଡ଼ିଲେ ଯାଇ ବ୍ରହ୍ମ ଦର୍ଶନ ସମ୍ଭବ ।

ଦେହ ବୁଦ୍ଧିର ବଡ଼ିମାକୁ ପ୍ରତିଷ୍ଠିତ କରି ବ୍ରହ୍ମଲାଭ କରାଯାଇ ନ ପାରେ । ବ୍ରହ୍ମରେ ଦେହବୁଦ୍ଧିର କୌଣସି ସତ୍ତା ନ ଥାଏ । ଉଚ୍ଚ-ନୀଚ, ଧନୀ ଗରିବ, ସ୍ତ୍ରୀ, ପୁରୁଷ ସର୍ବତ୍ର ସମାନଭାବରେ ବ୍ରହ୍ମ ପରିବ୍ୟାପ୍ତ । ବ୍ରାହ୍ମଣଲାଗି ବ୍ରହ୍ମ ପବିତ୍ର ଏବଂ ଶୂଦ୍ର ପକ୍ଷରେ ଅପବିତ୍ର-ବ୍ରହ୍ମରେ ଏଭଳି ଭେଦଭାବ ନାହିଁ । ରାଜାଙ୍କ ବ୍ରହ୍ମ ଉଚ୍ଚକୋଟିର ଏବଂ ତାଙ୍କ ଅଧୀନସ୍ଥ କର୍ମଚାରୀମାନଙ୍କ ବ୍ରହ୍ମ ନୀଚସ୍ତରର—ଏଭଳି କହିବା ମୂଢ଼ତାର ଲକ୍ଷଣ । ସମସ୍ତଙ୍କ ବ୍ରହ୍ମ-ସ୍ୱରୂପ ଏକ । ଦୀନହୀନ ଦରିଦ୍ରଠାରୁ ଆରମ୍ଭକରି ବ୍ରହ୍ମା ପର୍ଯ୍ୟନ୍ତ ଛୋଟ ବଡ଼ ସମସ୍ତଙ୍କ ପାଇଁ ତ୍ରୈଲୋକ୍ୟର ବିଶ୍ରାମଧାମ ବ୍ରହ୍ମ ଏକ । ଗୁରୁଙ୍କର ଯେଉଁ ବ୍ରହ୍ମ, ଶିଷ୍ୟଙ୍କର ମଧ୍ୟ ସେହି ବ୍ରହ୍ମ । ଏଥିଲାଗି ଦେହବୁଦ୍ଧିର ସମ୍ବନ୍ଧ ଏକାବେଳକେ ଭୁଲିଯିବା ଉଚିତ । ଦେହବୁଦ୍ଧି ଲୋପ ହେଲେ ଯାଇ ଏକ ହିଁ ବ୍ରହ୍ମପ୍ରାପ୍ତି ହୋଇଥାଏ । ବ୍ରହ୍ମ ''ଏକମେବ ଅଦ୍ୱିତୀୟ''— ଏହା ଶ୍ରୁତିର କଥନ । ସାଧୁ ସନ୍ଥମାନେ ଦେହ ଧାରଣ ହେତୁ ଭିନ୍ନ ଭିନ୍ନ ଦେଖାଗଲେ ମଧ୍ୟ ସ୍ୱ-ସ୍ୱରୂପରେ ଲୀନ ହେବା ଯୋଗୁଁ ସେମାନେ ଦେହାତୀତ ପରବ୍ରହ୍ମ ସ୍ୱରୂପ ।

ଯିଏ ଦେହବୁଦ୍ଧି ଯୋଗୁଁ ବ୍ରହ୍ମକୁ ନିଜଠାରୁ ପୃଥକ୍ ମନେକରେ, ତା ପକ୍ଷରେ ସମାଧାନ ଅସମ୍ଭବ । ଦେହ ମିଥ୍ୟା । ତେଣୁ ସାଧୁଗଣ ଏହାର ନିନ୍ଦା କରିଥାଆନ୍ତି । ଦେହାଭିମାନ ଯୋଗୁ ହିଁ ମନୁଷ୍ୟକୁ ଜନ୍ମ-ମରଣ ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ସନ୍ଥମାନଙ୍କ କଥାନୁସାରେ ଦେହାତୀତ ହେବା ଦ୍ୱାରା ହିଁ ଜୀବର କଲ୍ୟାଣ । ଯୋଗ-ସାମର୍ଥ୍ୟ ଥିଲେ ମଧ୍ୟ ଦେହବୋଧ ଯୋଗୁଁ ଯୋଗୀମାନଙ୍କର ପତନ ଘଟିଥାଏ । ତେଣୁ ବାରମ୍ବାର କହିବାକୁ ପଡୁଚି ଯେ ଦେହ-ବୁଦ୍ଧିର ବିନାଶ ଘଟିଲେ ହିଁ ପରମାର୍ଥ-ପ୍ରାପ୍ତି ଘଟିଥାଏ । ତେଣୁ ସୁବୁଦ୍ଧି ସମ୍ପନ୍ନ ମନୁଷ୍ୟ ଏହାକୁ ତ୍ୟାଗ କରି ସତ୍ୟ ବ୍ରହ୍ମରେ ଲୀନ ହୋଇଯିବା ଉଚିତ ।

ଆପଣମାନେ ପ୍ରଶ୍ନ କରି ପାରନ୍ତି, ସ୍ୱାମୀଜୀ ତ କେବଳ ବ୍ରହ୍ମ କଥା ବର୍ଣ୍ଣନା କରିବାରେ ଲାଗିଥିଲେ, ବର୍ତ୍ତମାନ ତ 'ସତ୍ୟବ୍ରହ୍ମ' କଥା କହିଲେଣି, ତାହାହେଲେ ଏହି ସତ୍ୟ ବ୍ରହ୍ମର ଅର୍ଥ କ'ଣ ?

ସ୍ୱାମୀଜୀ କହୁଛନ୍ତି— ବ୍ରହ୍ମ ତ ଏକ । କିନ୍ତୁ ବହୁ ମତ-ମତାନ୍ତର ହେତୁ ଏହା ନାନା ଦେହରେ ଅନେକ ରୂପରେ ଭାସିତ ହୋଇଥାଏ । ଯାହାକୁ ଯେଉଁ ରୂପରେ ଅନୁଭୂତ ହୋଇଥାଏ, ତାହାକୁ ସେ ସତ୍ୟ ମାନିଥାଏ । ବ୍ରହ୍ମ ଏକ ଏବଂ ନାମାତୀତ ହେଲେ ମଧ୍ୟ ଏହାକୁ ନିର୍ମଳ, ନିଶ୍ଚଳ, ଅରୂପ, ଅଲକ୍ଷ୍ୟ, ଅଗୋଚର, ଅଚ୍ୟୁତ, ଅନନ୍ତ, ଅପାର, ଅଦୃଶ୍ୟ, ନାଦରୂପ, ଜ୍ୟୋତିରୂପ, ଚୈତନ୍ୟରୂପ, ସତ୍ତାରୂପ, ସାକ୍ଷୀରୂପ, ସ୍ୱସ୍ୱରୂପ, ସନାତନ, ପରମେଶ୍ୱର, ସର୍ବେଶ୍ୱର, ଶାଶ୍ୱତ, ନିଃଶବ୍ଦ, ବିଶ୍ୱମ୍ଭର, ଆତ୍ମା, ପରମାତ୍ମା ଆଦି ନାନା ନାମରେ ସମ୍ବୋଧନ କରାଯାଇ ଥାଏ । ତେଣୁ ମୁଁ ଏହି ସନ୍ଦର୍ଭରେ ବ୍ରହ୍ମକୁ ସତ୍ୟବ୍ରହ୍ମ ନାମକରଣ କରିଛି । ବସ୍ତୁତଃ ବ୍ରହ୍ମ ନାମରୂପାତୀତ, କେବଳ ଏହାକୁ ନିର୍ଦ୍ଦେଶ କରିବା ଲାଗି ବିଭିନ୍ନ ନାମ ଦିଆଯାଉଚି । ଏହି ଆଦିପୁରୁଷ ପରମାତ୍ମା ସମସ୍ତଙ୍କ ବିଶ୍ରାନ୍ତିସ୍ଥଳ ।

ବ୍ରହ୍ମ ଯଦିଓ ଏକ, କିନ୍ତୁ ଏହାର ଅର୍ଥ ବୁଝାଇବା ଲାଗି ଶାସ୍ତ୍ରମାନଙ୍କରେ ଏହାକୁ ଚୌଦ-ବ୍ରହ୍ମ ନାମଦ୍ୱାରା ନିରୂପଣ କରାଯାଇଛି । ଏହାପରେ ମୁଁ ଚତୁର୍ଦ୍ଦଶ-ବ୍ରହ୍ମର ଲକ୍ଷଣ ବୁଝେଇବି ।

## ତୃତୀୟ ସମାସ
## ।। ଚତୁର୍ଦ୍ଦଶ-ବ୍ରହ୍ମ ।।

ବାସ୍ତବରେ ଚୌଦ ବ୍ରହ୍ମ ବୋଲି କିଛି ନାହିଁ, ଏଗୁଡ଼ିକ ହେଉଚି ଚଉଦଟି ଭ୍ରମ । ମନରୁ ଏଗୁଡ଼ିକର ଅପସାରଣ ଆବଶ୍ୟକ । ତେଣୁ ପ୍ରଥମେ ଏହି ଭ୍ରମଗୁଡ଼ିକୁ ବୁଝାଇ ତାପରେ ଭ୍ରମ କିପରି ଦୂର କରାଯାଇ ପାରିବ ତାର ବାଟ ବତେଇବି ।

(୧) ପ୍ରଥମ : ବ୍ରହ୍ମ - ଶବ୍ଦ-ବ୍ରହ୍ମ । କେବଳ ଶବ୍ଦ-ଜ୍ଞାନ ବ୍ରହ୍ମ ନୁହଁ । ଅନୁଭବ-ଶୂନ୍ୟ ଶବ୍ଦ-ଜ୍ଞାନର କି ମୂଲ୍ୟ ? ଏହା ତ କେବଳ ଶବ୍ଦାଡ଼ମ୍ବର । ଏଥିପ୍ରତି ଆମେମାନେ ସାବଧାନ ରହିବା ଉଚିତ ।

(୨) ଦ୍ୱିତୀୟ : 'ଓଁ' ବା ଅକ୍ଷର-ବ୍ରହ୍ମ । କିନ୍ତୁ ଯାହା 'କ୍ଷର' ନୁହଁ ବା ଯାହାର କ୍ଷୟ ନାହିଁ ଏହି ଅକ୍ଷର 'ଓଁ' ହେବ କିପରି ? ଅକ୍ଷର ତ ପୁଣି ଏକ ନାମ ! ନାମ ତ ବିନାଶଶୀଳ । ତେଣୁ ବ୍ରହ୍ମ 'କ୍ଷର' ନୁହଁ କି 'ଅକ୍ଷର' ନୁହଁ ।

(୩) ତୃତୀୟ : ଖଂ-ବ୍ରହ୍ମ ଅର୍ଥାତ୍ ଆକାଶ-ବ୍ରହ୍ମ । ଆକାଶ ଅର୍ଥାତ୍ ଶୂନ୍ୟ । ଶୂନ୍ୟଦ୍ୱାରା ଜ୍ଞାନର ନିରସନ ହୋଇଥାଏ । ତେଣୁ ଶୂନ୍ୟରେ ଶାଶ୍ୱତର ସ୍ଥାନ କାହିଁ ?

(୪) ଚତୁର୍ଥ : ସର୍ବବ୍ରହ୍ମ । ''ସର୍ବ ଖଲ୍ୱିଦଂ ବ୍ରହ୍ମ'' - ଏହି ଶ୍ରୁତିବଚନ ଅନୁସାରେ ପଞ୍ଚ-ଭୌତିକ ସୃଷ୍ଟିରେ ଯାହା ଯାହା ଦେଖାଯାଏ, ତାକୁ କେହି କେହି ବ୍ରହ୍ମ ସଂଜ୍ଞା ଦେଇଥାଆନ୍ତି, କିନ୍ତୁ ପ୍ରକୃତରେ ତାହା ବ୍ରହ୍ମ ନୁହଁ । କାରଣ ମହାପ୍ରଳୟ-କାଳରେ ତ ପଞ୍ଚଭୂତର ସବୁ ବିନାଶ ଘଟିଥାଏ ।

(୫) ପଞ୍ଚମ : ଚୈତନ୍ୟବ୍ରହ୍ମ । ପଞ୍ଚଭୂତକୁ ସଚେତ କରୁଥିବା ବ୍ରହ୍ମକୁ ଚୈତନ୍ୟ-ବ୍ରହ୍ମ କୁହାଯାଇଥାଏ । କିନ୍ତୁ ଯାହାକୁ ଚୈତନ୍ୟ କୁହାଯାଏ, ସେହି ପଞ୍ଚଭୌତିକ ବସ୍ତୁ ଯଦି ବିନାଶସିଦ୍ଧ ହେଉଚି ତାହାହେଲେ ଏହାକୁ ଚେତନା ଦେଉଥିବା ଚୈତନ୍ୟକୁ ସତ୍ୟ କୁହାଯିବ କିପରି ?

(୬) ଷଷ୍ଠ : ସତ୍ତା-ବ୍ରହ୍ମ । ଚୈତନ୍ୟ ପଛରେ ଯାହାର ସତ୍ତା ରହିଥାଏ, ତାକୁ ସତ୍ତା-ବ୍ରହ୍ମ କୁହାଯାଏ । କିନ୍ତୁ ଯେଉଁଠି ପରିବାର ସୁଦ୍ଧା ନାହିଁ ତାହାର ସତ୍ତା ଆସିବ କୁଆଡୁ ?

(୭) ସପ୍ତମ : ସାକ୍ଷୀ-ବ୍ରହ୍ମ । ଯାହା ପଦାର୍ଥହୀନ; ସେଠାରେ ସାକ୍ଷୀଭାବ ଆସିବ କୁଆଡୁ ? ଅର୍ଥାତ୍ ତାହା ମଧ୍ୟ ମିଥ୍ୟା ।

(୮) ଅଷ୍ଟମ : ସଗୁଣ-ବ୍ରହ୍ମ । ଗୁଣ ବିନାଶଶୀଳ । ତେଣୁ ବ୍ରହ୍ମ ସଗୁଣ ହୋଇ ନ ପାରେ ।

(୯) ନବମ : ନିର୍ଗୁଣ-ବ୍ରହ୍ମ । ଯାହାଠାରେ ଗୁଣର କୌଣସି ସମ୍ପର୍କ ନାହିଁ, ତାକୁ ନିର୍ଗୁଣ କୁହାଯାଇଥାଏ । କିନ୍ତୁ ଯେଉଁଠି ଗୁଣର କୌଣସି ପ୍ରଶ୍ନ ନାହିଁ, ତାକୁ ନିର୍ଗୁଣ କହିବାରେ ଲାଭ କ'ଣ ?

(୧୦) ଦଶ : ବାଚ୍ୟ-ବ୍ରହ୍ମ । ଯାହା କଥାରେ କୁହାଯାଏ, ତାହା ବାଚ୍ୟ । କିନ୍ତୁ ବ୍ରହ୍ମ ତ ଅବାଚ୍ୟ, ଅନିର୍ବଚନୀୟ, ଅବର୍ଣ୍ଣନୀୟ । ତେଣୁ ବ୍ରହ୍ମକୁ ଅବାଚ୍ୟ କହିବା ମଧ୍ୟ ନିରର୍ଥକ ।

(୧୧) ଏଗାର : ତଦାକାର-ବ୍ରହ୍ମ । ତଦାକାର ହେଲେ ଏହାର ନାମାଭିମାନ ହୋଇ ନ ପାରେ । ତେଣୁ 'ତଦାକାର' ନାମକରଣ ବୃଥା ।

(୧୨) ବାର : ଆନନ୍ଦ-ବ୍ରହ୍ମ । ଆନନ୍ଦ-ଅନୁଭବ ମଧ୍ୟ ଏକ ବୃତ୍ତି । ଏହି ବୃତ୍ତି ସହିତ ମନର ସମ୍ବନ୍ଧ ରହିଥାଏ । କିନ୍ତୁ ଶୁଦ୍ଧବ୍ରହ୍ମତ ବୃତ୍ତିର ଅତୀତ ।

(୧୩) ତେର : ଅନୁଭବ ବ୍ରହ୍ମ । କିନ୍ତୁ ତ୍ରିପୁଟୀ ସହିତ ଏହାର ସମ୍ପର୍କ ଥିବାରୁ ଏହା ଶୁଦ୍ଧବ୍ରହ୍ମ ନୁହଁ ।

(୧୪) ଚଉଦ : ଅନିର୍ବଚ୍ୟ-ବ୍ରହ୍ମ । ଯେଉଁଠି ବଚନ ମୌନ ହୋଇ-ଯାଇଥାଏ, ତାହା ଉନ୍ମନା-ଅବସ୍ଥାର ବ୍ରହ୍ମ ନୁହଁ । କିନ୍ତୁ ଶୁଦ୍ଧ-ବ୍ରହ୍ମ ସବୁ ଅବସ୍ଥାର ଊର୍ଦ୍ଧ୍ୱରେ ।

ଏହିଭଳି ଭାବେ ସାଧୁ-ସମର୍ଥମାନେ ଉପରୋକ୍ତ ଚତୁର୍ଦ୍ଦଶ କଳ୍ପିତ ବ୍ରହ୍ମକୁ ମନରୁ ହଟେଇ ଶୁଦ୍ଧ ବିମଳ ବ୍ରହ୍ମ ଲକ୍ଷଣର ଅବତାରଣା କରିଥାଆନ୍ତି । ଯେଉଁଠି ସବୁ ଉପାଧି ଏବଂ ନାମର ପରିସମାପ୍ତି ଘଟିଥାଏ ଏବଂ ସହଜ-ସମାଧି ଲାଭ ହୋଇଥାଏ, ତାକୁ ହିଁ ବ୍ରହ୍ମ-ସ୍ୱରୂପ କୁହାଯାଏ । ତେଣୁ ସ୍ୱାନୁଭବ ଦ୍ୱାରା କଳ୍ପନାର ବିଲୋପ ସାଧନ ଘଟାଇ ସ୍ୱ ସ୍ୱରୂପରେ ଲୀନ ହେବା ହିଁ ହେଉଚି ବ୍ରହ୍ମ-ସାକ୍ଷାତ୍‌କାର । ବ୍ରହ୍ମ କୌଣସି ପଦାର୍ଥ ନୁହଁ ଯେ ତାକୁ ଅନ୍ୟ କାହାକୁ ପ୍ରଦାନ କରିପାରିବ । ଏହା ହେଉଚି ସଦ୍‌ଗୁରୁଙ୍କ ଉପଦେଶାମୃତ ଦ୍ୱାରା ଅନୁପ୍ରାଣିତ ଅନୁଭବ ସିଦ୍ଧ ତଦ୍ରୂପାବସ୍ଥା ।

ଏହି ସମାସରେ ଚୌଦ ମାୟାବୀ-ବ୍ରହ୍ମର ଭ୍ରମକୁ ହିଁ ଦୂର କରାଯାଇଛି । ଏବେ ବିମଳ-ବ୍ରହ୍ମ (କୈବଲ୍ୟ-ବ୍ରହ୍ମ)ର ସ୍ୱରୂପ ବର୍ଣ୍ଣନା କରାଯିବ ।

## ଚତୁର୍ଥ ସମାସ
## ।। ବିମଳ ବ୍ରହ୍ମ ।।

ବ୍ରହ୍ମ ଆକାଶଠାରୁ ମଧ୍ୟ ଅଧିକ ନିର୍ମଳ, ଶୂନ୍ୟ, ଅରୂପ ଓ ବିଶାଳ । ଏକୋଇଶ ସ୍ୱର୍ଗ ଓ ସପ୍ତ ପାତାଳକୁ ନେଇ ଏକ ବ୍ରହ୍ମଗୋଳକ । ଏହିଭଳି ବ୍ରହ୍ମ-ଗୋଳକ ଅନେକ । ଏ ସବୁଥିରେ ବ୍ୟାପ୍ତ ରହି ମଧ୍ୟ ବ୍ରହ୍ମ ନିର୍ମଳ ଓ ନିର୍ଲିପ୍ତ ।

ତଳେ ଓ ଉପରେ ଅନନ୍ତ ବ୍ରହ୍ମାଣ୍ଡର ଅବସ୍ଥିତି ଏବଂ ବ୍ରହ୍ମ ସର୍ବବ୍ୟାପକ । ଯେପରି ଜଳଚର ପକ୍ଷରେ ଭିତର ବାହାରେ କେବଳ ଜଳ ହିଁ ଜଳ, ସେହିଭଳି ଏହି ପଞ୍ଚ-ଭୌତିକ ସୃଷ୍ଟିର ସବୁ ପଦାର୍ଥରେ ଏବଂ ସମସ୍ତ ପ୍ରାଣୀ ଦେହରେ ବ୍ରହ୍ମ ହିଁ ପରିବ୍ୟାପ୍ତ । ତେଣୁ ବ୍ରହ୍ମ ଲାଗି ଜଳର ଉପମା ଅପର୍ଯ୍ୟାପ୍ତ । ଏହା ଆକାଶ ଭଳି ସର୍ବବ୍ୟାପୀ । ଏହି ପରମାତ୍ମା ଓ ଆମ ଆତ୍ମାର ମିଳନ ଅଖଣ୍ଡ । ବ୍ରହ୍ମ ସର୍ବାଙ୍ଗରେ ଲିପ୍ତ ଏବଂ ଏହା ହିଁ ନିକଟତର ହେବାପରେ ମଧ୍ୟ ଲୋକଙ୍କୁ ଅତି ଦୂରରେ ଥିବାଭଳି ମନେ ହୁଏ । ବ୍ରହ୍ମ ଭିତରେ ରହି ମଧ୍ୟ ତାକୁ ନ ଜାଣିବା ହିଁ ଜୀବର ବଡ଼ ବିଚିତ୍ର ଦଶା । ସତ୍ୟକୁ ଜାଣି ପାରୁନୁ ଅଥଚ ଯାହା ଭାସମାନ, ଅସ୍ଥିର, ଅସ୍ଥାୟୀ ସେହି ମିଥ୍ୟା ଜଗତ ସହିତ ଆତ୍ମାର ଅତି ଘନିଷ୍ଠ ପରିଚୟ !

ଆକାଶରେ ମେଘ ଛାଇ ହୋଇ ରହିଥିବା ବେଳେ ତାହା ମଳିନ ମନେହୁଏ, କିନ୍ତୁ ବାସ୍ତବରେ ଆକାଶ ନିର୍ମଳ । ଆକାଶକୁ ଅତି ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ସେଥିରେ ଅନେକ ଚକ୍ର ଦେଖାଯାଏ । ସେହିଭଳି ବ୍ରହ୍ମ ଭିତରେ ନାନା ଦୃଶ୍ୟ ଦେଖାଗଲେ ମଧ୍ୟ ଜ୍ଞାନୀମାନଙ୍କ ଅନ୍ତର୍ଚକ୍ଷୁରେ ଏହା ମିଥ୍ୟା ଅନୁଭୂତ ହୋଇଥାଏ । ଯେପରି ଜାଗ୍ରତ ହେବାପରେ ସତ୍ୟ ମନେ ହେଉଥିବା ସ୍ୱପ୍ନ ମିଥ୍ୟା ପ୍ରତିପାଦିତ ହୋଇଥାଏ, ସେହିଭଳି ବ୍ରହ୍ମାନୁଭବ ଦ୍ୱାରା ଜ୍ଞାନର ଜାଗ୍ରତ ଅବସ୍ଥାରେ ଏହି ଦୃଶ୍ୟମାନ ଜଗତ ମିଥ୍ୟା ପ୍ରତିପାଦିତ ହୁଏ ।

ବ୍ରହ୍ମାଣ୍ଡର ଅନ୍ୟ ପାଖରେ ଶୁଦ୍ଧ ବ୍ରହ୍ମର ସ୍ୱରୂପ କ'ଣ ତାହା ବର୍ତ୍ତମାନ ବିଚାର କରାଯାଉ । ବ୍ରହ୍ମ ସକଳ ବ୍ରହ୍ମାଣ୍ଡରେ ସବୁ ପଦାର୍ଥରେ ଓତଃପ୍ରୋତଃ ଭାବେ ପରିବ୍ୟାପ୍ତ । ବ୍ରହ୍ମ ବ୍ରହ୍ମାଣ୍ଡର ଭିତରେ ରହିଥାଏ, ବାହାରେ ମଧ୍ୟ ରହିଥାଏ । ତେଣୁ ବିଶ୍ୱବ୍ରହ୍ମାଣ୍ଡ ଭିତରୁ ବାହାରକୁ କିମ୍ବା ବାହାରୁ ଭିତରକୁ ଯିବା ଆସିବା କରିବାର କୌଣସି ପ୍ରଶ୍ନ ଉଠି ନପାରେ । ଏହା ପଞ୍ଚ ମହାଭୂତରେ ବ୍ୟାପ୍ତ ଥାଇ ମଧ୍ୟ ଏଥିରେ ଲିପ୍ତ ନୁହଁ । ବ୍ରହ୍ମଭଳି ଅନ୍ୟ କୌଣସି ବସ୍ତୁ ନାହିଁ । ତେଣୁ ଏ ବ୍ରହ୍ମ ''ଏଇଭଳି'' ବୋଲି କୌଣସି ଉପମା ଦେଇ କୁହାଯାଇ ନ ପାରେ । ଆକାଶକୁ ଉପମା ଦେବାରେ ଆଂଶିକ ଭାବେ ସାର୍ଥକ ହୋଇପାରେ । ଶ୍ରୁତିରେ ବ୍ରହ୍ମକୁ ''ଏବଂ ବ୍ରହ୍ମ'' କୁହାଯାଇଛି । ସ୍ମୃତିରେ ମଧ୍ୟ ''ଗଗନ ସଦୃଶ'' ବୋଲି ବର୍ଣ୍ଣନା କରାଯାଇଛି । ତେଣୁ ବ୍ରହ୍ମକୁ ଆକାଶ ସହିତ ତୁଳନା କରାଯିବା କେତେକାଂଶରେ

ଯଥାର୍ଥ । ଯଦି ପିତଳ କଳା ନ ପଡ଼ନ୍ତା ତ ତାକୁ ମଧ୍ୟ ସୁନା କୁହାଯାଆନ୍ତା । ସେହିଭଳି ଆକାଶ ଯଦି ଶୂନ୍ୟ ହୋଇ ନ ଥା'ନ୍ତା ତ ଆକାଶକୁ ବ୍ରହ୍ମ ବୋଲି ସ୍ୱୀକାର କରାଯାଆନ୍ତା । ଆକାଶ ବ୍ରହ୍ମର ସମୀପବର୍ତ୍ତୀ । ତେଣୁ ବ୍ରହ୍ମ ଲାଗି ଆକାଶର ଉପମା ଦିଆଯାଉଛି । ଆକାଶ ଭଳି ଯେଉଁ ବ୍ରହ୍ମ ଭାସମାନ ଦେଖାଯାଏ ତାହା ବ୍ରହ୍ମ ନୁହଁ । ଯେପରି ଆକାଶରୁ ବାୟୁର ଉଦ୍‌ଭବ, ସେହିଭଳି ବ୍ରହ୍ମରୁ ମାୟାର ଉଦ୍‌ଭବ । ଯେପରି ନିଃଶବ୍ଦ ଆକାଶରେ ବାୟୁ ଉତ୍ପନ୍ନ ହେବାପରେ ଶବ୍ଦ ପ୍ରକଟିତ ହୁଏ, ସେହିଭଳି ବ୍ରହ୍ମରୁ ମାୟାରୂପୀ ସଦୃଶ୍ୟ ଜଗତର ଆବିର୍ଭାବ । ତେଣୁ ମାୟା ମିଥ୍ୟା ଏବଂ ବ୍ରହ୍ମ ଶାଶ୍ୱତ ଓ ସର୍ବ ବ୍ୟାପକ । ବ୍ରହ୍ମ ପୃଥିବୀକୁ ଭେଦ କରି ମଧ୍ୟ ପୃଥିବୀ ଭଳି କଠୋର ନୁହେଁ । ପୃଥିବୀଠାରୁ ଜଳ, ଜଳଠାରୁ ତେଜ (ଅଗ୍ନି), ତେଜଠାରୁ ବାୟୁ, ବାୟୁଠାରୁ ଆକାଶ ଏବଂ ଆକାଶ ଠାରୁ ବ୍ରହ୍ମ ମଧ୍ୟ ଅଧିକ କୋମଳ ବୋଲି ମଧ୍ୟ କୁହାଯାଇ ନ ପାରେ । ଏହା କୋମଳ ନୁହଁ କିମ୍ବା କଠୋର ନୁହଁ । ଏହା ଅନୁପମ । ଏହା ଉପରେ ପଞ୍ଚ ମହାଭୁତର କୌଣସି ପ୍ରଭାବ ପଡ଼ି ନ ପାରେ । ଏହା ଶରୀରରେ ସର୍ବତ୍ର ବ୍ୟାପ୍ତ ହେଲେ ମଧ୍ୟ ଶରୀର ଏହାକୁ ଯେ ଅନୁଭବ କରିପାରେ ନାହିଁ ତାହା ହିଁ ସବୁଠାରୁ ବଡ଼ ବିସ୍ମୟ । ଏହି ବ୍ରହ୍ମରେ ହିଁ ଆମର ଅସ୍ତିତ୍ୱ; କିନ୍ତୁ ଏହା ଆକାଶଭଳି ଅଦୃଶ୍ୟ ହେତୁ ଆମକୁ ଦୃଶ୍ୟଗୋଚର ନୁହେଁ ।

ସବୁ ଦୃଶ୍ୟପଦାର୍ଥ ଏହାର, କିନ୍ତୁ ଗୁପ୍ତଧନ ଭଳି ଏହା ଅଦୃଶ୍ୟ ପ୍ରତୀତ ହୋଇଥାଏ । ଆଗରେ, ପଛରେ ଆକାଶ ଏବଂ ମଝିରେ କୌଣସି ପଦାର୍ଥ ନାହିଁ, କେବଳ ବ୍ରହ୍ମର ହିଁ ବିସ୍ତାର । ଏହି ଦୃଶ୍ୟମାନ ପୃଥ୍ୱୀ ବ୍ରହ୍ମର ବିସ୍ତାର ବ୍ୟତୀତ ଅନ୍ୟ କିଛି ନୁହଁ । ନାମ ରୂପାତ୍ମକ ସମଗ୍ର ସୃଷ୍ଟି ହେଉଛି ଭ୍ରମ ଏବଂ ନାମ ରୂପାତୀତ ବ୍ରହ୍ମ କେବଳ ଅନୁଭବର ବସ୍ତୁ । ଏହା ସଦା ସର୍ବଦା ସର୍ବତ୍ର ବିଦ୍ୟମାନ । ପୋଥି ପଢ଼ିଲେ ତାକୁ ହିଁ ପଢ଼ିବ । ଅକ୍ଷର ଭିତରେ ମଧ୍ୟ ସେହି ବ୍ରହ୍ମ । ଆଖିରେ ଯାହା ଦେଖାଯାଏ, କାନରେ ଯାହା ଶୁଣାଯାଏ, ମନରେ ଯାହା ଚିନ୍ତା କରାଯାଏ ସେ ସବୁ ବ୍ରହ୍ମର ପ୍ରେରଣାରୁ ସଂଭବ । ପାଦରେ ଚାଲିବାରେ, ହାତରେ ଯେ କୌଣସି କାର୍ଯ୍ୟ କରିବାରେ - ମୋଟାମୋଟି ଭାବେ ସମସ୍ତ ପ୍ରବୃତ୍ତିରେ ଏହି ବ୍ରହ୍ମର ବ୍ୟାପ୍ତି । କିନ୍ତୁ ଇନ୍ଦ୍ରିୟଗୁଡ଼ିକ କେବଳ ବିଷୟ ସହିତ ପରିଚିତ ଥିବାରୁ ଅତି ନିକଟରେ ଥାଇ ମଧ୍ୟ ଦେଖାଯାଏନା । ଦୃଶ୍ୟକୁ ଭୁଲିଲେ ଯାଇ ବ୍ରହ୍ମକୁ ଅନୁଭବ କରାଯାଇପାରେ ।

ଏହା ଚର୍ମ ଚକ୍ଷୁରେ ଦେଖାଯାଏନା । ଏହାକୁ ଦେଖିବା ଲାଗି ଆବଶ୍ୟକ ଜ୍ଞାନଚକ୍ଷୁ, ଜ୍ଞାନଦୃଷ୍ଟି ।

ବ୍ରହ୍ମ ଓ ମାୟା ଉଭୟକୁ ଏକା ସାଙ୍ଗରେ ନିରୀକ୍ଷଣ କରିବା ଭଳି ସର୍ବସାକ୍ଷୀ ଅବସ୍ଥାକୁ ହିଁ କୁହାଯାଏ ତୁରୀୟ ଅବସ୍ଥା । ଏହି ଅବସ୍ଥାରେ ମନ ଓ ଜ୍ଞାନର ଅଭିମାନ ନ ଥାଏ । ଯେଉଁଠି ଜ୍ଞାନ, ଅଜ୍ଞାନ ଓ ବିଜ୍ଞାନର ଚିହ୍ନବର୍ଣ୍ଣ ସୁଦ୍ଧା ନ ଥାଏ ତାହା ହିଁ ପରଂବ୍ରହ୍ମ ବା ବିମଳବ୍ରହ୍ମ । ଏହା ଶାଶ୍ୱତ, ନିର୍ବିକଳ୍ପ ଏବଂ ଯୋଗୀଜନମାନଙ୍କ ଏକାନ୍ତ ବିଶ୍ରାମ ।

## ପଞ୍ଚମ ସମାସ
## ।। ଦ୍ୱୈତର ନିରସନ ସଂଭବ କିପରି ? ।।

ଶ୍ରୋତାଙ୍କ ପ୍ରଶ୍ନ—ବ୍ରହ୍ମ ଓ ମାୟାର ସ୍ୱରୂପ ସଂପର୍କରେ ଜ୍ଞାନ ହେଲା ସତ; କିନ୍ତୁ ଚିତ୍ତରେ ବ୍ରହ୍ମ ପ୍ରକାଶ ଓ ବାହାରେ ପ୍ରତ୍ୟକ୍ଷ ମାୟାର ଦର୍ଶନ—ଏଭଳି ଭାବେ ବ୍ରହ୍ମ ଓ ମାୟାର ଦ୍ୱୈତଭାବ ଜାତ ହେବା ସ୍ୱାଭାବିକ । ଏହି ଦ୍ୱୈତଭାବର ବିଲୋପ ସାଧନ ହେବ କିପରି ?

ସମର୍ଥ ବକ୍ତା କହିଲେ—ମାୟା ଓ ବ୍ରହ୍ମକୁ ଯିଏ ଅନୁଭବ କରିପାରେ ପ୍ରଥମେ ତାର ବିଚାର କରାଯାଉ । ବାସ୍ତବରେ ମନ ହିଁ ଏହି ଦୁଇଟିଯାକର କଳ୍ପନା କରିଥାଏ । ଏଥି ମଧ୍ୟରୁ ବ୍ରହ୍ମ-କଳ୍ପନା ହେଉଛି ଶୁଦ୍ଧ, ମାୟାର କଳ୍ପନା ହେଉଚି ଅଶୁଦ୍ଧ । ଗୋଟିଏ ସଂକଳ୍ପ ତ ଅନ୍ୟଟି ବିକଳ୍ପ । ଏ ଦୁଇଟିକୁ କଳ୍ପନା କରୁଥିବା ମନର ଅବସ୍ଥାକୁ ତୁରୀୟ ବା ସର୍ବସାକ୍ଷୀ ଅବସ୍ଥା କୁହାଯାଇଥାଏ । ସଂକଳ୍ପ ଓ ବିକଳ୍ପ ଏ ଦୁଇଟିଯାକ ମନର କ୍ରିୟା । କିନ୍ତୁ ଯେଉଁଠି ମନ ମିଥ୍ୟା, ସେଠାରେ ସାକ୍ଷୀ ଅବସ୍ଥାର ପ୍ରଶ୍ନ ଉଠିବ କିପରି ? ସାକ୍ଷୀତ୍ୱ, ଚୈତନ୍ୟତ୍ୱ ଏବଂ ସତ୍ତା—ଏସବୁ ଗୁଣକୁ ମାୟା ହିଁ ବ୍ରହ୍ମ ଉପରେ ଲଦିଛି । ବାସ୍ତବିକ ଏସବୁ ସହିତ ବ୍ରହ୍ମର କୌଣସି ସମ୍ପର୍କ ନାହିଁ କାରଣ ବ୍ରହ୍ମ ନିର୍ଗୁଣ । ଘଟ ଓ ମଠକୁ ଅବଲମ୍ବନ କରାଯାଇଥିବାରୁ ଘଟାକାଶ ଓ ମଠାକାଶ ଶବ୍ଦର ପ୍ରୟୋଗ କରାଯାଇଛି । ବସ୍ତୁତଃ ଆକାଶ ଲାଗି ଦୁଇଟିଯାକ କଳ୍ପନା ମିଥ୍ୟା । ତେଣୁ ବ୍ରହ୍ମ ପ୍ରତି ମାୟା ଦ୍ୱାରା କରାଯାଇଥିବା ଗୁଣର ଆରୋପ ବୃଥା । ବ୍ରହ୍ମ ନିର୍ଗୁଣ, ନିଧର୍ମ । ମାୟାକୁ ମାନୁଥିବା

ପର୍ଯ୍ୟନ୍ତ ବ୍ରହ୍ମର ସାକ୍ଷୀରୂପ ରହିଥାଏ । କିନ୍ତୁ ମାୟା ଓ ଅବିଦ୍ୟା ଲୋପ ପାଇବା ପରେ ଅବଶେଷ ରହେ ବ୍ରହ୍ମ । ଏଥିରେ ଦ୍ୱୈତର ସ୍ଥାନ କାହିଁ ? ତେଣୁ ସର୍ବସାକ୍ଷୀ ମନ ତୁରୀୟ ଅବସ୍ଥା ଆଗରୁ ଆସେ । ଉନ୍ମନ-ଅବସ୍ଥା ଅର୍ଥାତ୍ ଆନନ୍ଦ-ସାଗରରେ ଲୀନ ହେବା ପରେ ତୁରୀୟ-ଦ୍ୱୈତ-ଜ୍ଞାନ ସହଜରେ ବିଲୀନ ହୋଇଯାଇଥାଏ । ଯେତେବେଳେ ଦ୍ୱୈତର କଳ୍ପନା କରୁଥିବା ମନ ଉନ୍ମନା ହୋଇଉଠେ, ସେତେବେଳେ ଦ୍ୱୈତର ମଧ୍ୟ ପରିବ୍ୟାପ୍ତି ଘଟିଥାଏ । କେବଳ ସେତିକି ନୁହଁ, ଦ୍ୱୈତ କଳ୍ପନାର ସାପେକ୍ଷ ଅଦ୍ୱୈତଭାବ ମଧ୍ୟ ତିରୋହିତ ହୋଇଥାଏ । ଦ୍ୱୈତା-ଦ୍ୱୈତର କଳ୍ପନାଗୁଡ଼ିକ ହେଉଚି ଏହି ବୃତ୍ତିର ଖେଳମାତ୍ର । ବୃତ୍ତିରହିତ ଜ୍ଞାନ ହିଁ ପ୍ରକୃତ ସମାଧାନ । ଏଠାରେ ମାୟା ଏବଂ ବ୍ରହ୍ମର ଅନୁସନ୍ଧାନ ତୁଟି ଯାଇଥାଏ ।

ବ୍ରହ୍ମ କଳ୍ପନାତୀତ ନିର୍ବିକଳ୍ପ । ବ୍ରହ୍ମ ମନ ଓ ବୁଦ୍ଧିର ଊର୍ଦ୍ଧ୍ୱରେ । ତେଣୁ ଏଠାରେ ଦ୍ୱୈତ କାହିଁ ? ଦ୍ୱୈତର କଳ୍ପନାରେ ବ୍ରହ୍ମ ନ ଥାଏ ଏବଂ ଯେଉଁଠି ବ୍ରହ୍ମ ସେଠାରେ ଦ୍ୱୈତ ନ ଥାଏ । ଏସବୁ ଖେଳ କଳ୍ପନାର । କଳ୍ପନା ହିଁ ମାୟାର ଆବରଣ ସୃଷ୍ଟି କରି ବ୍ରହ୍ମକୁ ସିଦ୍ଧ କରିଥାଏ, ସଂଦେହ ସୃଷ୍ଟି କରିଥାଏ ଏବଂ ଏହାର ନିବାରଣ ମଧ୍ୟ କରିଥାଏ । ବନ୍ଧ ଓ ମୋକ୍ଷ—ଉଭୟ ହେଉଚି କଳ୍ପନା । ବ୍ରହ୍ମର ଅନୁସନ୍ଧାନ ବା ଚିନ୍ତନ ମଧ୍ୟ କଳ୍ପନା ମାତ୍ର । କଳ୍ପନା ହିଁ ଦ୍ୱୈତର ଜନନୀ । ଜ୍ଞାନ ମଧ୍ୟ କଳ୍ପନା । ଅଶୁଦ୍ଧ କଳ୍ପନା ମିଥ୍ୟା ବ୍ରହ୍ମାଣ୍ଡକୁ ଦର୍ଶାଇଥାଏ ଏବଂ ଶୁଦ୍ଧକଳ୍ପନା ବ୍ରହ୍ମ ପ୍ରକାଶ ପ୍ରତି ଧ୍ୟାନ ଦେଇଥାଏ । କେତେବେଳେ ସଂସାର ଭୟ, କେତେବେଳେ ସ୍ଥିର ଭାବରେ ସ୍ୱରୂପର ଜ୍ଞାନ, କେତେବେଳେ ଜ୍ଞାନ ତ କେତେବେଳେ ଅଜ୍ଞାନ, କେତେବେଳେ ବିକାରର ପ୍ରଭାବ—ସବୁ ହେଉଚି କଳ୍ପାନ । "ମୋର ଜନ୍ମ ଅଛି, ମୃତ୍ୟୁ ଅଛି"—ଇଏ ଯେପରି କଳ୍ପନା, "ମୁଁ ମୁକ୍ତ"— ଏ ଭାବ ମଧ୍ୟ କଳ୍ପନା । ପ୍ରଥମ କଳ୍ପନାଟି ପତନକାରୀ ଏବଂ ଦ୍ୱିତୀୟ କଳ୍ପନା ମୋକ୍ଷର ସମାଧାନ ଦାତା-ଅର୍ଥାତ ବନ୍ଧ ଓ ମୋକ୍ଷର ମୂଳ କାରଣ ।

ଶ୍ରବଣ, ମନନ ଓ ନିଦିଧ୍ୟାସନର ଅଭ୍ୟାସ ଦ୍ୱାରା ମାୟାର ମିଥ୍ୟା କଳ୍ପନା ନିଃଶେଷ ହୋଇଯାଇଥାଏ ଏବଂ ଶୁଦ୍ଧ ବ୍ରହ୍ମର ନିର୍ଣ୍ଣୟ ହୋଇଥାଏ ।

ସୂର୍ଯ୍ୟାଲୋକରେ ଅନ୍ଧକାରର ସତ୍ତା ରହିପାରେ କି ? ସେହିଭଳି ଶୁଦ୍ଧ ଜ୍ଞାନ ନିଶ୍ଚିନ୍ତ ହୋଇଯିବାପରେ ଦ୍ୱୈତ କଳ୍ପନାର ଅସ୍ତିତ୍ୱ ରହେ ନାହିଁ । ବ୍ରହ୍ମର

ଶୁଦ୍ଧ କଳ୍ପନା ଦ୍ୱାରା ମାୟାର ମିଥ୍ୟା କଳ୍ପନା ନଷ୍ଟ ହୋଇଯାଏ । କଳ୍ପନା ଦ୍ୱାରା ହିଁ କଳ୍ପନାର ବିନାଶ ଘଟେ । ଯେପରି ବାଣ ଦ୍ୱାରା ବାଣର ବିନାଶ ଘଟେ, ସେହିଭଳି ନିର୍ଗୁଣର ଶୁଦ୍ଧ କଳ୍ପନା ଦ୍ୱାରା ସଗୁଣ ଦ୍ୱୈତଭାବର ଅଶୁଦ୍ଧ କଳ୍ପନାର ପ୍ରତିକାର ହୋଇଥାଏ ।

ତେଣୁ ହେ ଶ୍ରୋତାଗଣ ! ଦୃଢ଼ ସିଦ୍ଧାନ୍ତ ସହିତ ଅଖଣ୍ଡ ଶ୍ରବଣ ଓ ମନନ କରିବା ଉଚିତ । ଯେଉଁଥିରେ ଦ୍ୱୈତର ଆଭାସ, ତାହା "ମୁଁ" ନୁହେଁ—ଏକଥା ସର୍ବଦା ମନେ ରଖିବା ଉଚିତ ।

## ଷଷ୍ଠ ସମାସ
## ।। ବନ୍ଧ-ମୁକ୍ତ ନିରୂପଣ ।।

ପ୍ରଶ୍ନକର୍ତ୍ତା ପଚାରିଛନ୍ତି—ଅଦ୍ୱୈତ ବ୍ରହ୍ମ ଯେ କଳ୍ପନାରହିତ ଏହି ନିରୂପଣ ଶୁଣିବା ଦ୍ୱାରା ଅବଶ୍ୟ ମୁଁ କ୍ଷଣିକ ଲାଗି ତଦାକାର ଓ ତନ୍ମୟ ହୋଇପଡୁଛି, କିନ୍ତୁ ସ୍ଥାୟୀ ଭାବରେ ତଦାକାର ବ୍ରହ୍ମରୂପ ହୋଇ ପୁଣି ସାଂସାରିକ ବନ୍ଧନରେ ଯେପରି ନ ପଡ଼ିବି ତାର ଉପାୟ ମତେ ବତେଇ ଦିଅନ୍ତୁ । ମୁଁ କିଛି ସମୟ ପାଇଁ ନିର୍ବିକଳ୍ପ ବ୍ରହ୍ମକୁ ଅନୁଭବ କରି ପୁଣି ସାଂସାରିକ ଜଞ୍ଜାଳରେ ଜଡ଼ିତ ହେବାଭଳି ସୁବିଧାଜନକ ବ୍ୟବସ୍ଥା ଚାହେଁନା । ମୁଁ ଜନ୍ମ ମୃତ୍ୟୁର ଚକ୍ରରେ ପଡ଼ି ଥରକୁ ଥର ସଂସାରକୁ ଆସି ସେଥିରେ ଜଡ଼ିତ ରହି ସୁଖ ଦୁଃଖ ବ୍ୟୁହ ଭିତରେ ପଡ଼ିବାକୁ ଚାହେଁନା । କାରଣ ଏଥିରେ ପଡ଼ି ରହି ମୁଁ ଭୀଷଣ ହଇରାଣ ହେଲିଣି ।

କୌଣସି ଏକ ଭ୍ରମରର ଗୋଡ଼ରେ ଦଉଡ଼ି ବାନ୍ଧି ତାକୁ କିଛି ସମୟ ପାଇଁ ଉପରେ ଉଡ଼ିବାକୁ ଛାଡ଼ିଦେଇ ପୁଣି ଦଉଡ଼ିକୁ ଟାଣି ତାକୁ ତଳକୁ ଖସେଇ ଆଣିବା ଭଳି ମୋର ଦଶା ହୋଇଛି । ମୁଁ ଚାହେଁ, ଅଦ୍ୱୈତବ୍ରହ୍ମ ତତ୍ତ୍ୱକୁ ଶୁଣିବା ମାତ୍ରେ ମୋର ଏ ଶରୀରର ମୃତ୍ୟୁ ଘଟୁ । ନଚେତ ଏହି ଶରୀର ଥିଲେ ମଧ୍ୟ ମନରୁ ପର ଆପଣାର ଭେଦଭାବ ତୁଟିଯାଉ । କିନ୍ତୁ ବ୍ରହ୍ମ ସ୍ୱରୂପ ହୋଇ ସାରି ସାଂସାରିକ କାର୍ଯ୍ୟ କରିବାକୁ ମୋର ଭୀଷଣ ଲଜ୍ଜାବୋଧ ହେଉଛି । ବ୍ରହ୍ମରେ ଲୀନ ହେବା ପରେ ପୁଣି ଇନ୍ଦ୍ରିୟପ୍ରବୃତ୍ତିର ଅଧୀନ ହେବାକୁ କେହି କ'ଣ ଇଚ୍ଛା

କରିଥାଏ ? ମୁଁ ଜାଣେ ଏବଂ ଭଲ ଭାବରେ ବୁଝି ପାରୁଚି ଯେ ବ୍ରହ୍ମ-ସୁଖର ଅନୁଭବ ହେବାପରେ ମଧ୍ୟ ଜୀବର ସଂସାର ପ୍ରତି ଆକର୍ଷଣ ରହିଥାଏ ଏବଂ ସାଂସାରିକ କାର୍ଯ୍ୟରେ ଲିପ୍ତ ରହିଥିଲେ ମଧ୍ୟ ତାର ଚିତ୍ତ ପୁଣି ବ୍ରହ୍ମ ଅଭିମୁଖେ ଦୌଡ଼ିଥାଏ । ମୁଁ ଏଭଳି ସୁବିଧାବାଦୀ ସ୍ଥିତିରେ ରହିବାକୁ ଚାହେଁ ନାହିଁ ।

ତେଣୁ ମୁଁ ଚାହେଁ ବ୍ରହ୍ମ-ନିରୂପଣ ଶୁଣିବା ମାତ୍ରେ ମୋର ଶରୀରପାତ ଘଟୁ ଏବଂ ପୁନର୍ବାର ବୃତ୍ତି ଓ ପ୍ରବୃତ୍ତି ରୂପକ ସଂସାରରେ ଘାଣ୍ଟି ହେବାର ଦୁର୍ଦ୍ଦଶା ନ ଘଟୁ । ଏହାର ନିଶ୍ଚିତ ଉପାୟ ଅଛି କି ? ମୋର ମନ ଏପରି ଚଞ୍ଚଳ ଯେ ଏ ବାଟକୁ ଧରିବି କି ସେ ବାଟକୁ ଧରିବି ସ୍ଥିର କରିପାରୁ ନାହିଁ । ତେଣୁ ହେ ସ୍ୱାମୀ ! ଏ ଚିତ୍ତ ଯେପରି ଅଖଣ୍ଡ ବ୍ରହ୍ମାକାର ହୋଇପାରିବ, ତାର ସାଧନ କ'ଣ କହନ୍ତୁ ।

ସମର୍ଥ ବକ୍ତା ଏହାର ଉତ୍ତର ଦେଇ କହିଲେ, ତୁମର ପ୍ରଶ୍ନ ଠିକ୍ ଅଛି, କିନ୍ତୁ ମୁଁ ତୁମକୁ ଏକ ପ୍ରଶ୍ନ କରୁଛି । ଯିଏ ବ୍ରହ୍ମରେ ଲୀନ ହୋଇ ଦେହ ମୁକ୍ତ ହୋଇଯାଏ କ'ଣ କେବଳ ତାକୁ ମୁକ୍ତ କୁହାଯିବ ? ବ୍ୟାସ ଆଦି ଅନ୍ୟ ମହର୍ଷିମାନେ କ'ଣ ମୁକ୍ତ ନ ଥିଲେ ? ତୁମେ କ'ଣ ଭାବୁଚ ସାଂସାରିକ କାର୍ଯ୍ୟ କରୁଥିବା ଲୋକର ମୁକ୍ତିଲାଭ ହୋଇ ନ ପରେ ? କୁହାଯାଇଚି କି—

ପ୍ରହ୍ଲାଦ ନାରଦ ପରାଶର ପୁଣ୍ଡରୀକ
ବ୍ୟାସାଂମ୍ବରୀଶଶୁକ ଶୌନକ ଭୀଷ୍ମ ଦାଲଭ୍ୟାମ୍ ।
ରୁଗ୍ମାଗଦାର୍ଜ୍ଜୁନ ବଶିଷ୍ଠ ବିଭୀଷଣାଦିନ୍
ପୁଣ୍ୟାନିମାନ୍ ପରମ ଭଗବତାନ୍ସ୍ମରୋମି ।। ୧ ।।
କବିହରିରନ୍ତରୀକ୍ଷ ପ୍ରବୁଦ୍ଧଃ ପିପ୍ଲାୟନଃ
ଅବିର୍ହୋତ୍ରୋଽଥ ଦ୍ରୁମିଳଶ୍ଚମସଃ କରଭାଜନଃ ।। ୨ ।।

ଅର୍ଥାତ ପ୍ରହ୍ଲାଦ, ନାରଦ, ପରାଶର, ପୁଣ୍ଡରୀକ, ବ୍ୟାସ, ଅମ୍ବରୀଶ, ଶୌନକ, ଭୀଷ୍ମ, ଦାଲଭ୍ୟ, ରୁଗ୍ମାଂଗଦ, ଅର୍ଜ୍ଜୁନ, ବଶିଷ୍ଠ, ବିଭୀଷଣ ଆଦି ପୁଣ୍ୟବାନ-ଭଗବତ-ପରାୟଣ ବ୍ୟକ୍ତି ଏବଂ ଭାଗବତରେ ବର୍ଣ୍ଣିତ, କବି, ହରି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପ୍ଲାୟନ, ଅବିର୍ହୋତ୍ର, ଦ୍ରୁର୍ମିଳ, ଚମସ ତଥା କରଭାଜନ ପ୍ରଭୃତି ନବଯୋଗୀ ଏବଂ ବ୍ରହ୍ମା, ବିଷ୍ଣୁ, ମହେଶ, ବିଦେହ ରାଜା ଜନକ ଆଦି

ଅନେକ ଋଷି ଓ ମୁନି ହେଉଛନ୍ତି ସିଦ୍ଧଯୋଗୀ । ଏମାନେ ଆତ୍ମଜ୍ଞାନ ଲାଭ କରି କର୍ମରତ ଥାଇ ମଧ୍ୟ ମୁକ୍ତ । ତେଣୁ ଶରୀରପାତ ହୋଇଥିବା ଶୁକଦେବ, ବାମଦେବ ଆଦି ଯୋଗୀମାନେ ହିଁ ମୁକ୍ତ, ଅନ୍ୟମାନେ ମୁକ୍ତ ହୋଇପାରିବେ ନାହିଁ ଭାବୁଚ କାହିଁକି ? ଯେଉଁମାନେ ଏଭଳି ଭାବି ଥାଆନ୍ତି ସେମାନେ ପାଠୁଆ-ମୂର୍ଖ ।

ଯିଏ ଜୀବିତ ଅବସ୍ଥାରେ ଜ୍ଞାନ ଲାଭ କରି ସାଂସାରିକ କାର୍ଯ୍ୟ ମଧ୍ୟ କରିବାରେ ଲାଗିଥାଏ ତାକୁ 'ଜୀବନ୍ମୁକ୍ତ' କୁହାଯାଏ । ବ୍ରହ୍ମରେ ଲୀନହୋଇ ଯାହାର ଦେହବୋଧ ନ ଥାଏ ତାକୁ କୁହାଯାଏ "ବିଦେହମୁକ୍ତ" । ସ୍ୱରୂପବୋଧରୁ କ୍ରମଶଃ ସ୍ତବ୍‌ଧତା ପ୍ରାପ୍ତ ହେବା ହେଉଚି ଦେହ-ଧର୍ମ । ଏହାର ସ୍ୱରୂପ ବୋଧ ସହିତ କୌଣସି ସମ୍ପର୍କ ନଥାଏ । ମୁଖ୍ୟ କଥା ହେଉଚି ଆତ୍ମାନୁଭବ । ଏହା ଲାଭ କରିବା ପରେ କିଏ ସ୍ତବ୍‌ଧ ତ କିଏ ନିଶ୍ଚେଷ୍ଟ ରହିଥାଏ । ଆଉ କେହି ଚାଞ୍ଚଲ୍ୟ ପୂର୍ବକ ବ୍ୟବହାର କରିପାରେ ।

ଏତିକି ଜାଣ ଯେ ସ୍ୱରୂପର ଅନୁଭବ ଅର୍ଥାତ ଆତ୍ମୋପଲବ୍‌ଧି ହିଁ ମୁକ୍ତି, ଆଉ ସବୁ ବୃଥାକଥା । ତେଣୁ ସ୍ୱସ୍ୱରୂପର ଅନୁଭବ ଲାଭ କରି ତୃପ୍ତ ଓ ସନ୍ତୁଷ୍ଟ ହେବା ଉଚିତ । ଯିଏ ଆକଣ୍ଠ ଭୋଜନ କରି ସାରିଛି, ତାକୁ କେହି ଭୋକିଲା କହିଲେ କ'ଣ ସେ ଭୋକିଲା ହୋଇଯିବ ? ନିରାକାରରେ ଦେହର ଅସ୍ତିତ୍ୱ ଆସିବ କୁଆଡୁ ? ତେଣୁ ସଂଦେହ କେଉଁଥି ପାଇଁ ? ବଦ୍ଧ ଓ ମୁକ୍ତର ଲକ୍ଷଣର ପ୍ରଶ୍ନ ଯେଉଁଠି ଉଠେ, ସେଠାରେ ଦେହ ସମ୍ବନ୍ଧର ପ୍ରଶ୍ନ ଉଠିବା ସ୍ୱାଭାବିକ । ସତ୍ ସ୍ୱରୂପ ବଦ୍ଧ ନୁହଁ କି ମୁକ୍ତ ନୁହଁ । ସିଏତ ସ୍ୱୟମ୍ । ଯିଏ ପେଟରେ ମୁକ୍ତିର ପଥର ବାନ୍ଧି ସଂସାର-ସାଗର ପାର ହେବାକୁ ଚାହିଁଥାଏ, ସିଏ ତ ପାତାଳରେ ହିଁ ପହଞ୍ଚିଯାଏ । ଯାହାର ଦେହ-ବୁଦ୍ଧି ରହିଥାଏ, ତାର ସ୍ୱ ସ୍ୱରୂପ ଲାଭ କଦାପି ହୋଇ ନ ପାରେ । ଯାହାର ଅହଂଭାବ ନଷ୍ଟ ହୋଇଯାଏ, ସେ କେବଳ ମୁକ୍ତ ହୋଇପାରେ । ସେ ଚାହୁଁଥାଉ, କହୁଥାଉ ବା ମୌନ ରହିଥାଉ ସେ ମୁକ୍ତ । ଯିଏ ସତ୍ ସ୍ୱରୂପ, ସେ କେବେହେଲେ ବଦ୍ଧ ହୋଇ ନ ପାରେ, ତେଣୁ ତାର ମୁକ୍ତି ବିଷୟରେ ଯାହା କିଛି କୁହ, ସବୁ ନିରର୍ଥକ । କେବଳ ବଦ୍ଧ ଲାଗି ମୁକ୍ତି ଆବଶ୍ୟକ । ତେଣୁ କୁହାଯାଇଛି—

ବଦ୍ଧୋମୁକ୍ତ ଇତି ବ୍ୟାଖ୍ୟା ଗୁଣ ତୋ ମେନ ବସ୍ତୁତଃ
ଗୁଣସ୍ୟ ମାୟା ମୂଳାତ୍‌ବାନ୍ନ ମେ ମୋକ୍ଷୋ ନ ବନ୍ଧନମ୍ ॥

ଅର୍ଥାତ୍ ବଦ୍ଧତା ଓ ମୁକ୍ତିର ବିଚାର କେବଳ ମାୟାର କାରଣ । ନାମ ରୂପାତ୍ମକ ମାୟା ନଷ୍ଟ ହୋଇଯିବାପରେ ମୁକ୍ତିର କଳ୍ପନା କରିବ କିଏ ? ବଦ୍ଧ ଓ ମୁକ୍ତ ଆତ୍ମାର ଲକ୍ଷଣ ନୁହଁ । ଇଏ ତ କେବଳ ଦେହର ଗୁଣ । ଦେହ ତ ଆତ୍ମା ନୁହଁ । ଦେହ ହେଉଚି ଅହଂକାର କରିବା ଲାଗି ଏକ ବନ୍ଧନ । ମାୟାତୀତ ପରବ୍ରହ୍ମ ପ୍ରାପ୍ତି ହେବା ପର୍ଯ୍ୟନ୍ତ "ମୁଁ ଭାବ" ରହିଥାଏ । ତେଣୁ ବଦ୍ଧ ଓ ମୁକ୍ତ ଭାବ ଜ୍ଞାନୀଙ୍କ ଲାଗି କଳ୍ପନା ମାତ୍ର । ଏହା ମରୀଚିକାର ଜଳ ଏବଂ ବାଦଲ ଭଳି ମିଥ୍ୟା କଳ୍ପନା । ଯିଏ ସଂସାର-ସ୍ୱପ୍ନରେ ନିଜକୁ ବଦ୍ଧ ବା ମୁକ୍ତ ମନେ କରି ଥାଏ ସେ ନିଦ୍ରିତ । ସେ ବଦ୍ଧତା ଓ ମୁକ୍ତିର ପ୍ରକୃତ ଅର୍ଥ ବୁଝିପାରେ ନାହିଁ । ଯିଏ ଶୁଦ୍ଧ ଆତ୍ମଜ୍ଞାନୀ ତାକୁ ସଂସାରଯାକର ଜୀବ ମୁକ୍ତ ଦେଖାଯାଇଥାଏ । ସେ କାହାକୁ ହେଲେ ବଦ୍ଧ ମନେ କରେ ନାହିଁ । ଅର୍ଥାତ୍ ବଦ୍ଧ ଓ ମୁକ୍ତର ଭାବନାହିଁ ଭୁଲ । ତେଣୁ ସାଧୁ ସନ୍ଥମାନେ ସର୍ବଦା ଦେହାତୀତ । ବଦ୍ଧ କିମ୍ବା ମୁକ୍ତପ୍ରତି ସେମାନଙ୍କର ଧ୍ୟାନ ନଥାଏ । ଏହି ସମାସକୁ ଏହିଠାରେ ଶେଷ କରୁଛି । ଆଗାମୀ ସମାସରେ ସାଧନ ବା ଉପାୟ କଥା କହିବି । ଶ୍ରୋତାମାନେ ସାବଧାନ ହୋଇ ଶୁଣନ୍ତୁ ।

## ସପ୍ତମ ସମାସ
## ।। ସାଧନ-ପ୍ରତିଷ୍ଠା ଓ ଅଲିପ୍ତର ଲକ୍ଷଣ ।।

ପ୍ରଶ୍ନ— ବ୍ରହ୍ମ ଯଦି ନିର୍ବିକଳ୍ପ ଓ ନିର୍ବିକାର ତାହାହେଲେ ତାକୁ କଳ୍ପନା କରାଯିବ କିପରି ? ବ୍ରହ୍ମର କଳ୍ପନା କରିବା ମାତ୍ରେ ମନ ତ ଭ୍ରମବଶତଃ ଇତଃସ୍ତତଃ ହେବାକୁ ଲାଗୁଚି । ବ୍ରହ୍ମ ବସ୍ତୁଟି କ'ଣ ? ସିଏ ତା ଆଖିକୁ ଦେଖାଯାଉନି କି ମନରେ କଳ୍ପନା କରିହେଉନି, ତାହାହେଲେ ତାକୁ ଚିହ୍ନିବ କିପରି ? କଳ୍ପନା କଲେ ତ ଚାରିଆଡ଼ ଅନ୍ଧକାର ମନେ ହେଉଛି । ବ୍ରହ୍ମ ତ ରଙ୍ଗ, ରୂପ, ଗୁଣବିହୀନ ଏବଂ ଅଚିନ୍ତ୍ୟ । ତାହାହେଲେ ସେହି ନିର୍ଗୁଣର ଦର୍ଶନ ହେବ କିପରି ? କୁହାଯାଇଛି—

ଅଚିନ୍ତ୍ୟା ବ୍ୟକ୍ତି ରୂପାୟ ନିର୍ଗୁଣାୟ ଗୁଣାତ୍ମନେ
ସମସ୍ତ ଜଗଦାଧାର ମୂର୍ତ୍ତୟେ ବ୍ରହ୍ମଣେ ନମଃ ।।

ବ୍ରହ୍ମ ଅସଂଗ, ନିରାଲମ୍ବ ଏବଂ ନିଃଶବ୍ଦ—ଏହି ଅଦ୍ୱୈତର ଧ୍ୟାନ କରିବା ମାତ୍ରେ ଦ୍ୱୈତ ଆସି ଉପସ୍ଥିତ ହୋଇଯାଉଛି । ଯଦି ଅନୁସଂଧାନ ନ କରୁଛି ତ

ମନ ସଂଦେହ କରିବାରେ ଲାଗୁଚି; ଧ୍ୟାନ କରିବା ମାତ୍ରେ ତ ମନ ଶୂନ୍ୟର ସଂଦେହରେ ଜଡ଼ିତ ହୋଇପଡୁଛି । ବ୍ରହ୍ମ ସଂପର୍କରେ ଚିନ୍ତା ନ କଲେ ଜ୍ଞାନ ହୋଇପାରୁନି । ଆପଣଙ୍କ ଉପଦେଶ ହେଉଚି ଯେ ସଂଦେହାବସ୍ଥା ଦୂର କରିବା ଲାଗି ବିବେକ ସହିତ କାମ କର, ସଜ୍ଞାନ ବ୍ୟବହାର କର ଏବଂ ଅହଂ ଭାବକୁ ମିଟେଇ ଦିଅ । କିନ୍ତୁ ଅହଂଭାବ ଯିବ କିପରି ଦୟାକରି ତାର ଉପାୟ କହନ୍ତୁ ।

ଉତ୍ତର—ପରବ୍ରହ୍ମ ଅଦ୍ୱୈତ ଏବଂ ବ୍ରହ୍ମର କଳ୍ପନା କରିବା ମାତ୍ରେ ମନରେ ଦ୍ୱୈତଭାବ ଆସି ଉପସ୍ଥିତ ହୋଇପାରୁଚି—ଏ ଯେଉଁ କଥାଟି କହିଲ ସେଥିରେ କୌଣସି ଭୁଲ ନାହିଁ । ବ୍ରହ୍ମର ସ୍ୱରୂପ ଏଭଳି ଯେ ତାକୁ ଶବ୍ଦରେ ବର୍ଣ୍ଣନା କରାଯାଇ ନ ପାରେ । ଏହା ସହିତ କୌଣସି ହେତୁ କିମ୍ବା କାର୍ଯ୍ୟ କାରଣକୁ ଯୋଡ଼ାଯାଇ ନ ପାରେ । "ଏକମେବା ଦ୍ୱିତୀୟ"— ଅର୍ଥାତ ଏହା ସହିତ ସମାନ କୌଣସି ବସ୍ତୁ ନ ଥିବାରୁ ଏହାକୁ ବୁଝାଇବା ପାଇଁ କୌଣସି ସାର୍ଥକ ଉପମା ମଧ୍ୟ ଦିଆଯାଇ ନ ପାରେ । ଏହାକୁ ସ୍ମରଣ କରିବା ଦ୍ୱାରା ସ୍ମରଣର ବିସ୍ମରଣ ହୋଇଯିବା ଉଚିତ ଅଥବା ବିସ୍ମରଣ ଅବସ୍ଥାରେ ଏହାର ସ୍ମରଣ ରହିବା ଉଚିତ । ଏହାକୁ ଜାଣିସାରିବା ପରେ ଜ୍ଞାନକୁ ଭୁଲିଯିବା ଉଚିତ । ଏହା ସହିତ ଭେଟ ନ ହେଲେ ମଧ୍ୟ ଭେଟ ହୋଇଯାଇଥାଏ ଅଥଚ ଭେଟିବା ପାଇଁ ଇଚ୍ଛା କଲେ ମଧ୍ୟ ଏହାକୁ ଭେଟି ହୁଏ ନାହିଁ—ଏଭଳି ଏହି ବିଚିତ୍ର ଅବସ୍ଥା । ଏହା ଏଭଳି ଏକ ମୌନାବସ୍ଥା ଯେ ଏହା ବସି ପାରେନି କି ଦୌଡ଼ି ପାରେନି । ଏହାକୁ ପାଇବା ଲାଗି ଯେ କୌଣସି ଉପାୟ କରନା କାହିଁକି ଏହା ଅପାୟ ହୋଇ ପଡ଼େ । ଏହାକୁ ନ ଜାଣି ମଧ୍ୟ ଜାଣି ହୁଏ, ନ ଦେଖିଲେ ମଧ୍ୟ ଏହା ପ୍ରକାଶିତ, ଦେଖିବା ଲାଗି ଚେଷ୍ଟା କରିବା ମାତ୍ରେ ଏହା ଅଦୃଶ୍ୟ ହୋଇଯାଏ । ସ୍ମରଣ ଓ ବିସ୍ମରଣ, ମିଳନ ଓ ବିୟୋଗ, ଜ୍ଞାନ ଓ ଅଜ୍ଞାନ, ଦେଖିବା ଓ ନ ଦେଖିବା ସବୁଥିରୁ ଅଲିପ୍ତ ସେ । ଏହା ଧ୍ୟାନ କିମ୍ବା ଚିନ୍ତନର ବିଷୟ ନୁହଁ । ଏହାକୁ ମନରେ ଧରି ହେବ ନାହିଁ କାରଣ ମନ ହେଉଚି ଏକଦର୍ଶୀ କିନ୍ତୁ ବ୍ରହ୍ମ ସର୍ବଦର୍ଶୀ । ଧର ଏହାକୁ ଜଳର ଉପମା ଦେଇ କହିବା ଯେ ଏହା ଜଳଭଳି ନିର୍ମଳ ଓ ନିଶ୍ଚଳ । କିନ୍ତୁ ଜଳ ତ ସବୁବେଳେ ନିର୍ମଳ ନିଶ୍ଚଳ ନ ଥାଏ । ଜଳ ସମଗ୍ର ବ୍ରହ୍ମାଣ୍ଡକୁ ବୁଡେଇ ଦେଲେ ମଧ୍ୟ ବ୍ରହ୍ମକୁ ବୁଡେଇ ଦେଇ ନ ପାରେ । ଏହାକୁ ଆଲୋକ କିମ୍ବା ଅନ୍ଧକାରର ଉପମା ମଧ୍ୟ ଦିଆଯାଇ ନ ପାରେ ।

ପ୍ରଶ୍ନ— ଏହି ନିରଞ୍ଜନ ବ୍ରହ୍ମ ଯାହା ମନ ବୁଦ୍ଧିର ଅଗୋଚର ତାର ଅନୁସନ୍ଧାନ କରାଯିବ କିପରି ? ତାକୁ ଅନୁଭବ କରିବ କିପରି ? ବ୍ରହ୍ମ କୌଣସି ବସ୍ତୁ ବୋଲି ମଧ୍ୟ ନିଶ୍ଚୟ କରାଯାଇ ପାରି ନଥିବାରୁ ପ୍ରକୃତରେ ଏହାର ଅସ୍ତିତ୍ୱ ସମ୍ପର୍କରେ ଦୃଢ଼ ସନ୍ଦେହ ଉପୁଜିବା ସ୍ୱାଭାବିକ । ତେଣୁ ଭଲ ଭାବରେ ଏହାର ବିବେଚନା କରାଯାଉ ।

ଉତ୍ତର— ଯଦି ବ୍ରହ୍ମ ବୋଲି ଯେ କିଛି ନାହିଁ—ଏହା ସତ୍ୟ ବୋଲି ମାନି ନେଉ ତାହାହେଲେ ବେଦ ଶାସ୍ତ୍ର ଏବଂ ବ୍ୟାସାଦି ମହର୍ଷିମାନଙ୍କ ବଚନକୁ ମିଥ୍ୟା କହିବାକୁ ପଡ଼ିବ । କ'ଣ, ମୁଁ "ମୋର" ଆଦି ଅହଂଭାବ ଯୋଗୁଁ ତୁମେ ବ୍ରହ୍ମକୁ ମିଥ୍ୟା କହିବାକୁ ଚାହୁଁଚି ?

ବହୁ ଜ୍ଞାନୀ ଆତ୍ମ-ଲାଭର ଯେଉଁ ସାଧନ କଥା କହିଛନ୍ତି, ସେ ସବୁ ମିଥ୍ୟା ନୁହଁ । ସ୍ୱୟଂ ମହାଦେବ ଶିବ ଗୁରୁ-ଗୀତାରେ ପାର୍ବତୀଙ୍କୁ ଅଦ୍ୱୈତର ଉପଦେଶ ଦେଇଥିଲେ । ଅବଧୂତ ଅବଧୂତ-ଗୀତାରେ ଗୋରେଖନାଥଙ୍କୁ ଜ୍ଞାନ-ମାର୍ଗ ଦର୍ଶାଇଥିଲେ । ବିଷ୍ଣୁମଧ୍ୟ ହଂସଗୀତାରେ ରାଜହଂସ ରୂପ ଧରି ବ୍ରହ୍ମାଜୀଙ୍କୁ ବ୍ରହ୍ମୋପଦେଶ ଦେଇଥିଲେ । ବ୍ରହ୍ମାଜୀ ମଧ୍ୟ ନାରଦଙ୍କୁ ଚତୁଃ-ଶ୍ଳୋକୀ ଭାଗବତରେ ଏହି ଉପଦେଶ ଦେଇଥିଲେ । ପରେ ବିସ୍ତାରିତ ଭାବରେ ବୁଝାଇ ଥିଲେ ବ୍ୟାସଦେବ । ମହର୍ଷି ବଶିଷ୍ଠ ଯୋଗ-ବଶିଷ୍ଠରେ ଶ୍ରୀ ରାମଚନ୍ଦ୍ରଜୀଙ୍କୁ ଏବଂ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହି କଥା ହିଁ ବୁଝାଇଥିଲେ ।

ଅଦ୍ୱୈତର ଜ୍ଞାନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସତ୍ୟ । ତେଣୁ ଆତ୍ମଜ୍ଞାନକୁ ମିଥ୍ୟା କହିବା ଲୋକର ପତନ ଘଟିଥାଏ । ଯେଉଁଠି ଶେଷର ମତି କୁଣ୍ଠିତ ହୋଇ ପଡ଼େ, ଯେଉଁଠି ଶ୍ରୁତି ପୁରାଣାଦି ନେତି ନେତି କହି କହି ମୌନ, ସେଠାରେ ଆମ୍ଭେ ଏହି ବ୍ରହ୍ମ ସ୍ୱରୂପର ବର୍ଣ୍ଣନା କରିବା କିପରି ? ଅହଂକାର ଯୋଗୁଁ ସ୍ୱରୂପସ୍ଥିତିକୁ ଅନୁଭବ କରିପାରୁ ନାହୁଁ ବୋଲି ତାକୁ ମିଥ୍ୟା କହିବା ମୂର୍ଖତା । ସତ୍ୟବ୍ରହ୍ମକୁ ମିଥ୍ୟା ଏବଂ ମିଥ୍ୟା ମାୟାକୁ ସତ୍ୟ କହିବା ଅର୍ଥ ହେଉଚି ସନ୍ଦେହ-ସାଗରରେ ନିମଗ୍ନ ରହିବା । ମନର ସ୍ୱଭାବ ହେଉଚି କଳ୍ପନା କରିବା ଏବଂ ସେ ଯେଉଁ କଳ୍ପନାର ଜାଲ ବୁଣେ ତାକୁ ସତ୍ୟ ମାନିବା । ତେଣୁ ମୂଢ଼ମନ ଅନ୍ୟବସ୍ତୁ ଭଳି ବ୍ରହ୍ମକୁ ମଧ୍ୟ କଳ୍ପନା କରିଥାଏ । କିନ୍ତୁ ଏହି କଳ୍ପନା ସ୍ୱରୂପରେ ପହଞ୍ଚି ନ

ପାରିବା ଯୋଗୁଁ ନିଜର ଦୁର୍ବଳତାକୁ ଘୋଡ଼େଇବା ପାଇଁ ସଂଶୟଗ୍ରସ୍ତ ହୋଇ "ମୁଁ" ଭାବରେ ଅଭିମାନୀ ହୋଇ ପଡ଼ିଥାଏ । ତେଣୁ ସତ୍‌ସଙ୍ଗ ଦ୍ୱାରା 'ମୁଁ' ର ଅହଂକାରକୁ ତ୍ୟାଗ କରି ସଂଶୟଶୂନ୍ୟ ଭାବରେ ପରମାତ୍ମା-ସ୍ୱରୂପ ସହିତ ସଂପର୍କ ସ୍ଥାପନ କରିବା ଉଚିତ ।

'ମୁଁ' ପଣର ଅହଂକାର ଅତି କଠିନ । ମୁଁ ଭାବ ସହଜରେ ତୁଟେ ନାହିଁ କି ଫୁଟେ ନାହିଁ । ଏହା କୌଣସି ପ୍ରକାରେ ନଷ୍ଟ ହୁଏ ନାହିଁ । ଏହି 'ମୁଁ' ଭାବର ଅହଂକାର ହେତୁ ବ୍ରହ୍ମସ୍ୱରୂପର ଜ୍ଞାନ ହୋଇ ନ ଥାଏ । ଏହି ଅହଂକାର ଯୋଗୁଁ ହିଁ ଭକ୍ତି ଓ ବୈରାଗ୍ୟ ବୃଥା ହୋଇପଡ଼େ । 'ମୁଁ' ଭାବ ଯୋଗୁ ପରମାର୍ଥ ଲାଭ ତ କୌଣସିମତେ ସମ୍ଭବ ନୁହଁ, ସାଂସାରିକ କାର୍ଯ୍ୟ ମଧ୍ୟ ଠିକ୍ ମତେ ସମ୍ପନ୍ନ ହୋଇ ନ ଥାଏ । ଯଶକୀର୍ତ୍ତିର ମଧ୍ୟ ହାନି ଘଟିଥାଏ । ଏଥିଯୋଗୁ ମୈତ୍ରୀ ଓ ପ୍ରେମଭାବ ରହିପାରେ ନାହିଁ । ବୃଥାଭିମାନ ବଢ଼ିବାରେ ଲାଗେ । କଳହ ଓ ବିକଳ୍ପ ସୃଷ୍ଟି ହୋଇ ଏକତା ନଷ୍ଟ ହେବା ସାଙ୍ଗହୋଇଥାଏ । ତେଣୁ 'ମୁଁ' ଭାବକୁ ତ୍ୟାଗ କରି ଆତ୍ମସାଧନରେ ଲୀନ ରହିବା ଉଚିତ ।

ପ୍ରଶ୍ନ— "ମୁଁ" ଭାବକୁ ଛାଡ଼ିବ କିପରି ? ବ୍ରହ୍ମାନୁଭବ ଓ ଆତ୍ମସମାଧାନ ହେବ କିପରି ?

ଉତ୍ତର—"ମୁଁ" ଭାବ ଯେ ଅନିଷ୍ଟକର ଏହାକୁ ଜାଣି ତ୍ୟାଗ କରିବା ଆବଶ୍ୟକ । ବ୍ରହ୍ମରୂପ ହୋଇ ଏହାକୁ ଅନୁଭବ କରିବା ଉଚିତ ଏବଂ ନିଃସଙ୍ଗ ହୋଇ ଆତ୍ମସାଧନର ଆନନ୍ଦ ଅନୁଭବ କରିବା ଉଚିତ । ଯିଏ 'ମୁଁ' ଭାବକୁ ଛାଡ଼ି ସାଧନ କରିଥାଏ ସିଏ ଧନ୍ୟ । "ମୁଁ ସ୍ୱୟଂ ବ୍ରହ୍ମ" ତେଣୁ ସାଧାନର କୌଣସି ଆବଶ୍ୟକତା ନାହିଁ—ଏପରି କଳ୍ପନା କରିବା ମଧ୍ୟ ଅଜ୍ଞାନ । କଳ୍ପନା ଦ୍ୱାରା କଳ୍ପନାର ବିସ୍ତାର ହୋଇ ଜୀବ ସଂଶୟଗ୍ରସ୍ତ ହୋଇପଡ଼େ । ବ୍ରହ୍ମସ୍ୱରୂପରେ କଳ୍ପନାର ସ୍ଥାନ ନାହିଁ । କଳ୍ପନାର ଅନୁସନ୍ଧାନ କରିବା ନିର୍ବିକଳ୍ପକୁ କଳ୍ପନା କରିବା ହେଉଚି କଳ୍ପନା-ତ୍ୟାଗର ମାର୍ଗ । ଯାହା ଆମେ କଳ୍ପନା କରୁ; ତାହା ଆମର ରୂପ ନୁହଁ, ଆମେ ଏହି କଳ୍ପିତ ରୂପଠାରୁ ପୃଥକ—ଏହି ଅନୁଭବ ତ୍ୟାଗ କରିବାଦ୍ୱାରା ହିଁ ସମ୍ଭବ । ଦକ୍ଷ ତଥା ସମାଧାନସମ୍ପନ୍ନ ସାଧକ ସାଂସାରିକ କର୍ମ କରୁଥିଲେ ମଧ୍ୟ ବ୍ରହ୍ମଜ୍ଞାନ ଭୂମିକାରେ ସ୍ଥିତ ରହିଥାଏ ।

ଯାହାକୁ କଳ୍ପନା କରୁ ତାହା ହିଁ ସ୍ୱୟଂ ବ୍ରହ୍ମ—ଏହି ଅନୁଭବ ହେବମାତ୍ରେ କଳ୍ପନାର ଆଉ ସତ୍ତା ରହେ ନାହିଁ । ଆମେ ଏହିଭଳି ସ୍ୱରୂପରେ ଲୀନ ରହି ସାଧନା କରିବା ଆବଶ୍ୟକ । ଯେପରି ଶାସନ କ୍ଷମତା ଲାଭ କରିବା ପରେ ରାଜା କିଛି ନ କରି ମଧ୍ୟ ସବୁ ଶାସନ କାର୍ଯ୍ୟ ସୁଚାରୁ ରୂପେ ଚାଲିଥାଏ, ସେହିଭଳି ବ୍ରହ୍ମ-ସ୍ୱରୂପ ଭୂମିକାରେ ରହି ମଧ୍ୟ ସମସ୍ତ ସାଧନ କାର୍ଯ୍ୟ କରୁଥିବା ଉଚିତ । ଏକଥା ମାନିବା ଉଚିତ ଯେ ଏହି ଦେହ ହିଁ ସାଧନ କରୁଛି କିନ୍ତୁ ଦେହ ସହିତ ସେ ଲିପ୍ତ ନୁହଁ । କାର୍ଯ୍ୟ କରୁଥିଲେ ମଧ୍ୟ ଅକର୍ତ୍ତା ହୋଇ ରହିବା ଅବସ୍ଥାକୁ ବିଦେହ-ସ୍ଥିତି କୁହାଯାଇଥାଏ ।

ପ୍ରଶ୍ନ—ଯଦି ମନୁଷ୍ୟ ସ୍ୱୟଂ ସାଧ୍ୟ ଅର୍ଥାତ୍ ବ୍ରହ୍ମସ୍ୱରୂପକୁ ଲାଭ କରିସାରିଛି; ତାହାହେଲେ ତାର ସାଧନ କରିବାର ଆବଶ୍ୟକତା ଆଉ କ'ଣ ଅଛି ?

ଉତ୍ତର—ଯଦି ଆମେ ନିଜକୁ ସାଧ୍ୟ ମନେ କରି ସାଧନକୁ ଛାଡ଼ି ଦେଉ ତାହାହେଲେ ଦେହ-ମମତା ବଢ଼ିବାର ଯଥେଷ୍ଟ ସମ୍ଭାବନା ରହିଛି । ଏହା ଫଳରେ ବ୍ରହ୍ମଜ୍ଞାନ ଲାଭ ବାହାନାରେ ଆଳସ୍ୟ ବୃଦ୍ଧି ପାଇଥାଏ ଏବଂ ପରମାର୍ଥ ନାଁରେ ଅନ୍ତରରେ ସ୍ୱାର୍ଥ ଦେଖାଦିଏ । ଧ୍ୟାନର ବାହାନାରେ ନିଦ ଆସିଥାଏ । (କିନ୍ତୁ ମୁକ୍ତି ସମ୍ପର୍କରେ ଭାବନା ଫଳରେ ଅନ୍ତର କ୍ରମଶଃ ସ୍ୱଚ୍ଛ ହୋଇ ଆସେ ।) ନିରୂପଣ ନାଁରେ ନିଦ୍ରା ଆସିଯାଏ, ସମ୍ବାଦ ନାଁରେ ବିସମ୍ବାଦ ବୃଦ୍ଧି ପାଏ । ବିତଣ୍ଡା କରିବାକୁ ମନ ପ୍ରବୃତ୍ତ ହୁଏ । ପଦପଦବୀ ବା ଉପାଧି ଯୋଗୁଁ ଅହଂକାର ବଢ଼ି ବଢ଼ି ଚାଲେ ।

କିଂ କରୋମି ଗଚ୍ଛାମି କିଂ ପୃଚ୍ଛାମିତ୍ୟଜାଭିକିମ୍ ।
ଆତ୍ମନା ପୂରିତଂ ସର୍ବଂ ମହାକଳ୍ପାମ୍ବୁନା ଯଥା ।।

ଏହି କଥାନୁସାରେ ମନୁଷ୍ୟ ଆଳସ୍ୟ ଯୋଗୁଁ ବ୍ରହ୍ମସ୍ଥିତିକୁ ନିଜେ ଗୋଇଠା ମାରିଥାଏ । ସେ ବିପରୀତ ଆଚରଣ ଦ୍ୱାରା ନିଜର ଅହିତ ହିଁ କରିଥାଏ ଏବଂ ସାଧନକୁ ଛାଡ଼ି ମୁକ୍ତହେବା ଦୂରେ ଥାଉ ସେ ନିଜକୁ ଅଧିକ ଆବଦ୍ଧ କରି ପକାଏ । ସେ ଭାବେ ଯେ ସେ ଯଦି କେବଳ ସାଧନ କରିବାରେ ହିଁ ଲାଗି ରହିବ, ତାହାହେଲେ ସିଦ୍ଧତାର ଅନୁଭବ କରି ପାରିବ ନାହିଁ । ସେଥିଯୋଗୁ ସେ ସାଧନାକୁ ଛାଡ଼ି ଦେଇଥାଏ । ଏ ଏକଥା ମଧ୍ୟ ଭାବିଥାଏ ଯେ ସାଧନା କରିବାଦ୍ୱାରା ଲୋକେ

ମତେ ସିଦ୍ଧ ମନେ ନ କରି କେବଳ ସାଧକ ବୋଲି ଭାବିବେ । କିନ୍ତୁ ଏହି ମୂର୍ଖ ଏକଥା ଜାଣେ ନାହିଁ ଯେ ବ୍ରହ୍ମା, ବିଷ୍ଣୁ, ମହେଶାଦି ଦେବତାମାନେ ମଧ୍ୟ ସାଧନାବଳରେ ଉଚ୍ଚପଦରେ ପ୍ରତିଷ୍ଠିତ । ତେଣୁ ଏସବୁ ଅବିଦ୍ୟା କଥା ଆମେ ମନରୁ ତ୍ୟାଗ କରିବା ଉଚିତ । ଆଧ୍ୟାତ୍ମ-ବିଦ୍ୟାର ଅଭ୍ୟାସ ଦ୍ୱାରା ହିଁ ବ୍ରହ୍ମଜ୍ଞାନ ଲାଭ ହୋଇଥାଏ ।

ଶ୍ରୋତାଙ୍କର ପ୍ରଶ୍ନ—ଅଭ୍ୟାସ ଓ ପରମାର୍ଥ ସାଧନ କ'ଣ ?
ବକ୍ତା ଏହାର ଉତ୍ତର ପରବର୍ତ୍ତୀ ସମାସରେ ଦେବେ ।

## ଅଷ୍ଟମ ସମାସ
## ।। ଶ୍ରବଣ-ନିରୂପଣ ।। (୧)

ପରମାର୍ଥଦ୍ୱାରା ହିଁ ସମସ୍ତ ସମସ୍ୟାର ସମାଧାନ ହୋଇଥାଏ । ଏହି ପରମାର୍ଥର ସାଧନ ହେଉଚି ଶ୍ରବଣ-ଭକ୍ତି । ଶ୍ରବଣ ଦ୍ୱାରା ଭକ୍ତି ଓ ବୈରାଗ୍ୟ ଉଭୟ ଲାଭ ହୋଇଥାଏ ଏବଂ ବିଷୟପ୍ରତି ଆସକ୍ତି ନଷ୍ଟ ହୋଇଯାଏ । ଶ୍ରବଣଦ୍ୱାରା ଚିତ୍ତଶୁଦ୍ଧି ହୋଇ ମନର ମଳ, ବିକ୍ଷେପ ଓ ଆବରଣ, ତିନୋଟିଯାକ ଦୋଷ ଦୂରୀଭୂତ ହୋଇଥାଏ । ଆତ୍ମ-ବୁଦ୍ଧି ଦୃଢ଼ ହୁଏ । କେବଳ ସେତିକି ନୁହଁ ଯେଉଁ ଅହଂକାର ଫଳରେ ଜୀବ ସଂସାର ସହିତ ଜଡ଼ିତ ହୋଇପଡ଼ିଥାଏ, ତାର ବିନାଶ ଘଟେ ।

"ମୁଁ ଓ ମୋର" ଅହଂଭାବ ସତ୍‌ସଙ୍ଗ ଓ ସଦ୍‌ଗ୍ରନ୍ଥର ସ୍ୱାଧ୍ୟାୟ ଦ୍ୱାରା କ୍ରମଶଃ ଦୂର ହୋଇପାରେ । ଆତ୍ମ-ନିଶ୍ଚୟ ଏବଂ ଏହାଦ୍ୱାରା ପ୍ରାପ୍ତ ସମାଧାନ ଶ୍ରବଣ ଦ୍ୱାରା ହିଁ ସମ୍ଭବ । ଶ୍ରବଣଦ୍ୱାରା ମନ ସଂଯତ, ନିୟନ୍ତ୍ରିତ ହୋଇ ଆସେ ଏବଂ ଅନେକ କୁସଂସ୍କାର ଲୋପପାଏ, ସମାଧାନ ଦିଗରେ ମନପ୍ରବୃତ୍ତ ହୁଏ । ସତ୍‌ସଙ୍ଗ ଶ୍ରବଣ ଦ୍ୱାରା ପ୍ରବୋଧନା ମିଳେ ଏବଂ ପ୍ରଜ୍ଞା (ଶୁଦ୍ଧବୁଦ୍ଧି)ର ବିକାଶ ଘଟେ । ଏହାଦ୍ୱାରା ବିଷୟ-ଫାଶ କ୍ରମଶଃ ଶୀଥିଳ ହୋଇ ପଡ଼ି ଶେଷରେ ଛିଣ୍ଡି ଯାଏ ଏବଂ ସାଧକ-ଶ୍ରୋତାର ସଦ୍‌ଚିନ୍ତା ଜାଗ୍ରତ ହୋଇ ସଦ୍‌ବସ୍ତୁ ଲାଭ ହୋଇଥାଏ ।

ଶ୍ରବଣ ଦ୍ୱାରା ସଦ୍ ବୁଦ୍ଧି ବିକଶିତ ହୁଏ ଏବଂ କାମ-କ୍ରୋଧାଦି ଦୁର୍ଗୁଣର ପିଣ୍ଡ ଛାଡ଼ିଯାଏ । ଏହାଦ୍ୱାରା ମୋହର ବିନାଶ ଘଟେ ଏବଂ ଶାନ୍ତି, ନିବୃତ୍ତି ଓ ସଦ୍‌ଗତି ମିଳିଥାଏ । ଶ୍ରବଣ ଭଳି ସାରକଥା ଅନ୍ୟ କୌଣସି ସାଧନା ଦ୍ୱାରା ହୋଇନପାରେ । ଭବସାଗର ପାର ହେବା ଲାଗି ଆଧ୍ୟାତ୍ମ-ସାଧନ ହେଉଚି ଅମୋଘ ସାଧନ । ପ୍ରବୃତ୍ତି ହେଉ ବା ନିବୃତ୍ତି ହେଉ ଶ୍ରବଣ ବିନା ଇଚ୍ଛିତ ବସ୍ତୁଲାଭ ହୋଇନପାରେ—ଏହା ଅନୁଭବର କଥା । ଶୁଣିବା ଓ ବୁଝିବା ବିନା ସାରବସ୍ତୁର ଜ୍ଞାନ ହୋଇନପାରେ । ତେଣୁ ଶ୍ରବଣ-ଭକ୍ତି ସର୍ବଶ୍ରେଷ୍ଠ । ଯାହାକୁ ଆମେ କଳ୍ପନା ସୁଦ୍ଧା କରି ନ ଥାଉ ତା ସମ୍ପର୍କରେ ନାନା ସନ୍ଦେହ ରହିଥାଏ । ତେଣୁ ସନ୍ଦେହ-ନିବାରଣ ଲାଗି ସତ୍‌ସଙ୍ଗ ଶ୍ରବଣ ବ୍ୟତୀତ ଅନ୍ୟ କୌଣସି ଉପଯୁକ୍ତ ସାଧନ ନାହିଁ । ସୂର୍ଯ୍ୟ ବିନା ଯେପରି ସବୁ ଅନ୍ଧାର, ସେହିଭଳି ଶ୍ରବଣ ବିନା ଅଜ୍ଞାନ ଦୂର ହୋଇ ନ ପାରେ ।

ନବବିଧ ଭକ୍ତି, ଚତୁର୍ବିଧ ମୁକ୍ତି, ସତ୍‌କର୍ମାଚରଣ, ଉପାସନା, ବ୍ରତ, ତପ, ତୀର୍ଥାଟନ, ଯୋଗ-ଯାଗ, ପିଣ୍ଡଦାନ, ତତ୍ତ୍ୱଜ୍ଞାନ, ସହଜସାମାଧି ଏ ସବୁ ଲାଭ କରାଯାଏ ଶ୍ରବଣଦ୍ୱାର । ଏକ ଜଳରୁ ହିଁ ସବୁ ବନସ୍ପତିର ଉତ୍ପତ୍ତି, ଏକ ରସରୁ ହିଁ ସବୁ ଜୀବର ଉତ୍ପତ୍ତି । ସବୁ ଜୀବ ଲାଗି କେବଳ ଗୋଟିଏ ଆକାଶ । ସମସ୍ତଙ୍କ ଲାଗି ଏକ ପୃଥ୍ୱୀ, ଏକ ସୂର୍ଯ୍ୟ ଏକ ବାୟୁ । ସମସ୍ତଙ୍କ ନିବାସ ଏକ ପରଂବ୍ରହ୍ମ । ସେହିଭଳି ସବୁ ଜୀବ ଲାଗି ସାରଭୂତ ସାଧନ ଏକମାତ୍ର ଶ୍ରବଣ । ଯଦିଓ ସଂସାରରେ ଅନେକ ଭାଷା ଓ ଅନେକ ମତ-ମତାନ୍ତର ରହିଛି, ତେବେ ସମସ୍ତଙ୍କ ପାଇଁ ଜ୍ଞାନ ଲାଭର ଏକମାତ୍ର ସାଧନ "ଶ୍ରବଣ ।"

ଶ୍ରବଣ ବଳରେ ବଦ୍ଧ ମନୁଷ୍ୟ ପରିବର୍ତ୍ତିତ ହୋଇ ମୁମୁକ୍ଷୁ ହୋଇଥାଏ ଏବଂ ମୁମୁକ୍ଷୁ ସାଧକ ହୋଇ ସାଧନା ଦ୍ୱାରା ସିଦ୍ଧାବସ୍ଥା ଲାଭ କରେ । ଶ୍ରବଣ ଦ୍ୱାରା ଖଳ, ଚାଣ୍ଡାଳ ମଧ୍ୟ ପୁଣ୍ୟଶୀଳ ମହାତ୍ମା ହୋଇ ଉଠେ, ଦୁରାତ୍ମା ପୁଣ୍ୟାତ୍ମା ହୋଇପାରେ । ଶ୍ରବଣ-ସାଧନର ଏଭଳି ମହାନ୍ ମହିମା ।

ତୀର୍ଥ ବ୍ରତର ଫଳ ପରେ ମିଳିପାରେ, କିନ୍ତୁ ଶ୍ରବଣର ଫଳ ସଙ୍ଗେ ସଙ୍ଗେ ନଗଦ ମିଳିଥାଏ । ଯେପରି ରାମବାଣଔଷଧ ସଙ୍ଗେ ସଙ୍ଗେ ରୋଗୀର ପୀଡ଼ା ଦୂର କରିଥାଏ, ଶ୍ରବଣର ଚମତ୍କାରିତା ସେହିଭଳି । ଶ୍ରବଣର ମହତ୍ତ୍ୱ ଜାଣିବା ପରେ କେବଳ ଯେ ଭାଗ୍ୟୋଦୟ ଘଟିଥାଏ ତାହା ନୁହଁ, ପରମାତ୍ମା ତତ୍ତ୍ୱ ମଧ୍ୟ

ଲାଭ ହୋଇଥାଏ । ଶ୍ରବଣରୁ ଆରମ୍ଭ ହୁଏ ମନନ । ଶ୍ରବଣ, ମନନ, ନିଦିଧ୍ୟାସନ ଓ ସାକ୍ଷାତ୍‌କାର—ଇଏ ହେଉଚି ସାଧନାର କ୍ରମ । ଯାହା ଶୁଣାଯାଏ, ତାକୁ ଯଥାର୍ଥ ଭାବରେ ଗ୍ରହଣ କରିବା ଦ୍ୱାରା ସମାଧାନ ମିଳେ ଏବଂ ସନ୍ଦେହର ନିବୃତ୍ତି ଘଟେ । ଜନ୍ମର ଭୁଲ କାରଣରୁ ଯେଉଁ ସନ୍ଦେହ ତାହା ଶ୍ରବଣ ଦ୍ୱାରା ଦୂରୀଭୂତ ହୁଏ । ମେଘ ହଟିଯିବା ପରେ ଆକାଶ ଯେପରି ନିର୍ମଳ ହୋଇଉଠେ, ସେହିଭଳି ମନ ସନ୍ଦେହହୀନ ହୋଇ ସମାଧାନ-ସୁଖରେ ଆନନ୍ଦ ଅନୁଭବ କରେ । ଯେଉଁଠି ଶ୍ରବଣ, ମନନ ନାହିଁ ସେଠାରେ ସମାଧାନ ଆସିବ କିପରି ? ତେଣୁ ମୁମୁକ୍ଷୁ ଓ ସିଦ୍ଧ ସାଧକ ସମସ୍ତେ ଶ୍ରବଣ-ମନନ ଅଭ୍ୟାସ ରଖିବା ଉଚିତ । ଏହାଦ୍ୱାରା ଚିତ୍ତ-ଶୁଦ୍ଧି ହୋଇଥାଏ ।

ଶ୍ରବଣ ବିନା ପରମାର୍ଥ ଲାଭ ଅସମ୍ଭବ । ତେଣୁ ଶ୍ରବଣ, ମନନକୁ ନିୟମ ଭାବେ ଗ୍ରହଣ କରି ନିତ୍ୟ ଅଭ୍ୟାସ କରି ସଂସାର-ସାଗର ପାର ହେବାଲାଗି ଉଦ୍ୟମ କରିବା ଉଚିତ । ଶରୀର ପୋଷଣ ଲାଗି ଯେପରି ପ୍ରତିଦିନ ଅନ୍ନ-ଜଳ ସେବନ କରିବାକୁ ପଡ଼ିଥାଏ, ସେହିଭଳି ଆତ୍ମୋପଲବ୍ଧି ଲାଗି ସବୁବେଳେ ଶ୍ରବଣ ମନନ କରିବାରେ ଲାଗିରହିଥାଅ । ଯିଏ ଏ ଦିଗରେ ଅବହେଳା କରିବ, ସେ ନିଜର ଅହିତ କରିବା ସାରହେବ ।

## ନବମ ସମାସ
## ।। ଶ୍ରବଣ-ନିରୂପଣ ।। (୨)

ଶ୍ରବଣ କିପରି କରାଯିବା ଉଚିତ ଏବଂ କେଉଁ କେଉଁ ଗ୍ରନ୍ଥର ପଣିଶୀଳନ କରାଯିବା ଉଚିତ ଏବେ ସେହିକଥା କହିବି । କେହି କେହି ଏଭଳିସବୁ ପ୍ରବଚନ ଦେଇଥାଆନ୍ତି ଯାହାକୁ ଶୁଣିବାରେ ମଣିଷ ଅଳ୍ପବହୁତେ ଲାଭ କରିଥିବା ଶାନ୍ତି ନଷ୍ଟ ହୋଇଯାଏ । ଯେଉଁଥିରେ ନିଶ୍ଚୟାତ୍ମକ ଜ୍ଞାନ ନାହିଁ ଅର୍ଥାତ୍ ସମସ୍ତ ନିରୂପଣ କେବଳ ମାୟିକ ଅର୍ଥାତ୍ ସଂଶୟାତ୍ମକ—ଏଭଳି ପ୍ରବଚନ ଶୁଣିବା ବୃଥା । ସେହିଭଳି ଗ୍ରନ୍ଥ । ଗୋଟିଏ ଗ୍ରନ୍ଥରେ ଯାହା କୁହାଯାଇଥାଏ, ଅନ୍ୟ ଗ୍ରନ୍ଥରେ ତାର ଖଣ୍ଡନ କରାଯାଇଥିବା ଦେଖାଯାଇଥାଏ । ଯଦି କେହି ଏହିଭଳି ଦୁଇଯିଯାକ ଗ୍ରନ୍ଥ ପାଠ କରେ କିମ୍ବା ଗ୍ରନ୍ଥପାଠ ଶ୍ରବଣ କରେ ତାହାହେଲେ ସେ ଅଧିକରୁ ଅଧିକ ସନ୍ଦେହରେ ପଡ଼ିବା ସ୍ୱାଭାବିକ । ତେଣୁ ଯେଉଁ ଗ୍ରନ୍ଥଦ୍ୱାରା ସନ୍ଦେହ ନଷ୍ଟ ହୋଇ

ସବୁ ଆଶଙ୍କାର ସମାଧାନ ହୋଇପାରେ, ସେହିଭଳି ଅଦ୍ୱୈତବାଦୀ ଗ୍ରନ୍ଥର ଶ୍ରବଣ ପରମାର୍ଥମାର୍ଗୀ ମାତ୍ରେ ହିଁ କରିବା ଉଚିତ । ମୋକ୍ଷର ଅଧିକାରୀ ମୁମୁକ୍ଷୁ ପକ୍ଷରେ ଅଦ୍ୱୈତବାଦୀଗ୍ରନ୍ଥ ରୁଚିକର ହୋଇଥାଏ । ଯାହାର ସାଂସାରିକ ବିଷୟ ପ୍ରତି ବିତୃଷ୍ଣା ଥାଏ ଏବଂ ପରମାର୍ଥ ଲାଭ ଲାଗି ଯାହାର ମନ ବ୍ୟାକୁଳ, ସେ କେବଳ ଅଦ୍ୱୈତବାଦୀ ଶାସ୍ତ୍ର ପାରାୟଣ କରିବା ଉଚିତ । ଅଦ୍ୱୈତ ପ୍ରତି ଯାହାର ଇଚ୍ଛା, ସେ ଦ୍ୱୈତବାଦୀ ଗ୍ରନ୍ଥ ପାଠ କରିବାକୁ ଭଲପାଏନା । ଯିଏ ଯାହା ଚାହେଁ ତାହା ପାଇଲେ ଆନନ୍ଦଲାଭ କରିବା ହେଉଚି ମନୁଷ୍ୟର ସ୍ୱଭାବ । ଯିଏ ଯାହାକୁ ପୂଜା କରେ, ତାହା ତାହାର ପ୍ରିୟ । ଅନ୍ୟ ଦେବତାର ସ୍ତୁତି ତାକୁ ଭଲ ଲାଗେନା । ଏହା ହେଉଚି ପ୍ରେମର ସ୍ୱାଭାବିକ ଲକ୍ଷଣ ।

ଆତ୍ମଜ୍ଞାନୀ ବ୍ୟକ୍ତିକୁ ସାରାସାର ବିବେକ ହିଁ ଭଲ ଲାଗିଥାଏ । ଦେବୀଭକ୍ତକୁ ସପ୍ତଶତୀ ପାଠ କରିବାକୁ ଭଲ ଲାଗେ । ଅନ୍ୟ ଦେବାଦେବୀଙ୍କ ପ୍ରତି ତାର ସେତେ ଶ୍ରଦ୍ଧା ନଥାଏ । କାମନା ଲାଳସା ଆଦି କଥା ସାଧୁସନ୍ଥମାନଙ୍କୁ ଭଲ ଲାଗନୋହିଁ । କଙ୍କଣ ହାତରେ ପିନ୍ଧିଲେ ଶୋଭାପାଏ, ତାକୁ ନାକରେ ପିନ୍ଧାଯାଏନା । ଯେଉଁ ସ୍ଥାନ ପାଇଁ ଯେଉଁ ବସ୍ତୁ ସେହି ବସ୍ତୁ ସେଇଠି ରହିଲେ ଶୋଭାପାଏ ।

ତେଣୁ ଯେଉଁମାନେ ପ୍ରକୃତ ଆତ୍ମ-କଲ୍ୟାଣ ଲାଗି ସାଧନା କରିବାକୁ ଚାହାଁନ୍ତି, ସେମାନେ ଅଦ୍ୱୈତବାଦୀ ଗ୍ରନ୍ଥର ପରିଶୀଳନ କରିବା ଉଚିତ । ଏସବୁ ଗ୍ରନ୍ଥକୁ ଏକାନ୍ତ ଭାବେ ଏକାଗ୍ର ମନରେ ପାଠକରି ଏବଂ ଚିତ୍ତରେ ମନେ କରି ଶାନ୍ତି ଲାଭ କରିବା ଉଚିତ । ସବୁ ଦୃଷ୍ଟିରୁ ବିଚାର କଲେ ଜଣାପଡ଼ିବ ଯେ ଅଦ୍ୱୈତ ଗ୍ରନ୍ଥ ଭଳି ଉତ୍କୃଷ୍ଟ ଗ୍ରନ୍ଥ ଅନ୍ୟ କିଛି ନାହିଁ । ଏହା ପରମାର୍ଥ କୂଳରେ ପହଞ୍ଚାଇଦେବା ଲାଗି ଉତ୍କୃଷ୍ଟ ଜାହାଜ । କେତେକ ଗ୍ରନ୍ଥରେ ଲଘୁକଥା, ହସ ପରିହାସ, ବିନୋଦ କଥା ଭରି ରହିଥାଏ; ଆଉ କେତେକ ଗ୍ରନ୍ଥରେ ଶୃଙ୍ଗାର, ବୀର, କରୁଣ ଆଦି ନବରସର ପ୍ରବାହ ଛୁଟିଥିବା ଦେଖାଯାଇଥାଏ । ଏସବୁ ଗ୍ରନ୍ଥ ପରମାର୍ଥୀ ଲାଗି ଉପଯୁକ୍ତ ନୁହଁ । ଯେଉଁ ଗ୍ରନ୍ଥର ଅଧ୍ୟୟନ ବା ଶ୍ରବଣ ଦ୍ୱାରା ପରମାର୍ଥର ବିକାଶ ଘଟିଥାଏ, ଯେଉଁ ଗ୍ରନ୍ଥପାଠ କଲେ ମନୁଷ୍ୟ ସାଂସାରିକବନ୍ଧନ ହେତୁ ଅନୁତପ୍ତ ହୋଇ ଭକ୍ତି-ସାଧନା ଲାଗି ଅନୁପ୍ରାଣିତ ହୋଇପାରେ; ଦୁର୍ଗୁଣସବୁ ନଷ୍ଟହୋଇ ମନରେ ସାତ୍ତ୍ୱିକ ଭାବ ଜାଗ୍ରତ ହୁଏ; ବିଷୟ ବାସନା ଶେଷ ହୋଇ ମନ

ଜ୍ଞାନମାର୍ଗରେ ଧାବିତ ହୁଏ; ପରୋପକାର ଲାଗି ଇଚ୍ଛା ପ୍ରବଳ ହୋଇ ଉଠେ ଏବଂ ଅହଂକାର ଓ ଭ୍ରାନ୍ତି ଦୂର ହୋଇ ଚିତ୍ତ ଭଗବାନଙ୍କ ପ୍ରତି ଆକୃଷ୍ଟ ହୁଏ ଏବଂ ଅଧୋଗତିରୁ ମନୁଷ୍ୟ ଊର୍ଦ୍ଧ୍ୱଗତି ଲାଭ କରି ମୋକ୍ଷର ଅଧିକାରୀ ହୋଇଥାଏ- ସେହି ଗ୍ରନ୍ଥ ହିଁ 'ଗ୍ରନ୍ଥ' ପଦବାଚ୍ୟ । ଅନେକ ପ୍ରକାରର ବିଧିବିଧାନ ଲାଗି ପଥନିର୍ଦ୍ଦେଶ କରି କାମନା ପରିପୂର୍ଣ୍ଣ ଲାଗି ମନୁଷ୍ୟକୁ ନାନାଭାବରେ ପ୍ରଲୋଭିତ କରୁଥିବା ଗ୍ରନ୍ଥକୁ ଗ୍ରନ୍ଥ କୁହାଯାଇ ନପାରେ । ଯେଉଁ ଗ୍ରନ୍ଥପାଠ ଦ୍ୱାରା ବୈରାଗ୍ୟ ଓ ଭକ୍ତିଭାବ ଉତ୍ପନ୍ନ ହୋଇ ନ ପାରେ, ଯେଉଁଥିରେ ମୋକ୍ଷଲାଭର ପନ୍ଥା ନିରୂପଣ କରାଯାଇ ନାହିଁ, ଯେଉଁ ଗ୍ରନ୍ଥପାଠ ଶୁଣିବାଦ୍ୱାରା ଲୋଭ ବଢ଼ିଥାଏ, ଏହି ଗ୍ରନ୍ଥ ବିବେକକୁ ଜାଗ୍ରତ କରିବ କିପରି ? ଏହି ବ୍ରତ ବା ପୂଜା କଲେ ଏଇ ଫଳ ମିଳିବ, ନ କଲେ ଦୁଃଖ ଯାତନା ଭୋଗିବା ସାର ହେବ—ଏପରି ସବୁ କଥା ଯେଉଁ ଗ୍ରନ୍ଥରେ ଥାଏ ତାହା ପାଠ କରିବା ଅନୁଚିତ । ଫଳଲାଭର ଦୁରାଶା ମନରେ ସୃଷ୍ଟି ହେବା ହିଁ ଅଧୋଗତିର ଲକ୍ଷଣ ।

ବହୁପ୍ରକାରର ଫଳଖାଇ ବହୁପ୍ରକାର ପକ୍ଷୀ ତୃପ୍ତି ଲାଭ କରିଥାଆନ୍ତି କିନ୍ତୁ ଚକୋର ସେସବୁ ଫଳପ୍ରତି ନିସ୍ପୃହ ରହିଥାଏ । ସେ ଅମୃତଲାଭ ଲାଗି କେବଳ ପ୍ରତୀକ୍ଷା କରିଥାଏ । ସେହିଭଳି ପ୍ରପଞ୍ଚ-କୂପରେ ନିମଗ୍ନ ମନୁଷ୍ୟ ଅନେକ ସାଂସାରିକଲୋଭରେ ବଶୀଭୂତ ହୋଇ ପଡ଼ିଥାଆନ୍ତି । କିନ୍ତୁ ନିଷ୍କାମଭକ୍ତ କେବଳ ଭଗବାନଙ୍କ ପ୍ରେମକଣିକା ପାଇବା ପାଇଁ ବ୍ୟାକୁଳ ରହିଥାଏ । ଜ୍ଞାନୀର ଜ୍ଞାନପ୍ରତି, ଭକ୍ତର ଭଜନ ପ୍ରତି, ସାଧକର ନିଜର ପ୍ରିୟ ସାଧନାପ୍ରତି, ଯୋଗୀର ଯୋଗ ପ୍ରତି, ଭୋଗୀର ଭୋଗ ପ୍ରତି ଏବଂ ରୋଗୀର ରୋଗନିବାରକ ଔଷଧପ୍ରତି ଅଭିଳାଷ ରହିଥାଏ । କବିର କାବ୍ୟ, ତାର୍କିକର ତର୍କବାଦ, ଭାବୁକର ସମ୍ବାଦ, ପଣ୍ଡିତର ବ୍ୟୁତ୍ପତ୍ତି, ବିଦ୍ୱାନର ଅଧ୍ୟୟନ, ଚତୁରର ଚତୁରତା, ଗାୟକର ରାଗ, ଯୋଗାଭ୍ୟାସୀର ଦେହବୋଧ, ତତ୍ତ୍ୱଜ୍ଞର ତତ୍ତ୍ୱଜ୍ଞାନ, ବୈଦ୍ୟର ଆୟୁର୍ବେଦ, କାମୁକ ପୁରୁଷର ଶୃଙ୍ଗାର, ଅଳସୁଆର ହାସ୍ୟବିନୋଦ, ନିନ୍ଦୁକ ପକ୍ଷରେ ଅନ୍ୟର ଦୋଷ ବଖାଣିବା, ପାପୀର ବିଷୟବୁଦ୍ଧି, ଭକ୍ତର ଭକ୍ତି, ତନ୍ତ୍ରସାଧକର ତନ୍ତ୍ର ବିଦ୍ୟା, ଶୂରବୀରର ସଂଗ୍ରାମ, ବହୁଶ୍ରୁତ ପକ୍ଷରେ ନାନା ବିଷୟରେ ଚର୍ଚ୍ଚା ଏବଂ ମୁମୁକ୍ଷୁ ପକ୍ଷରେ ମୋକ୍ଷ ହିଁ ପ୍ରିୟ । ଏହିଭଳି ଭାବେ ପ୍ରତ୍ୟେକ ମନୁଷ୍ୟର ନିଜ ନିଜ ବିଷୟରେ ରୁଚି ଥାଏ । ଲୋକେ ନିଜ ପ୍ରିୟ ବିଷୟ ଲିପିବଦ୍ଧ ଥିବା ପୁସ୍ତକକୁ ବାଛି ଅଧ୍ୟୟନ କରିଥାଆନ୍ତି । କିନ୍ତୁ ଏପରି ପଠନକୁ ସ୍ୱାଧ୍ୟାୟ ବା ଗ୍ରନ୍ଥପଠନ

କୁହାଯାଇ ନ ପାରେ । ଏହି ଗ୍ରନ୍ଥପାଠ ବା ଶ୍ରବଣ ଦ୍ୱାରା ମୁମୁକ୍ଷୁର କୌଣସି ଲାଭ ହୋଇ ନଥାଏ । ତେଣୁ ଯେଉଁ ଗ୍ରନ୍ଥପାଠଦ୍ୱାରା ମୋକ୍ଷ-ସାଧନ ମାର୍ଗକୁ ଉପଲବ୍ଧି କରାଯାଇ ପାରେନା, ସେ ପ୍ରକାରର ଗ୍ରନ୍ଥପାଠ ବା ଶ୍ରବଣ ବୃଥା । ଏହାକୁ 'ଶ୍ରବଣ' କୁହାଯାଇ ନପାରେ । ଏଥିରେ କେବଳ ମନୋରଞ୍ଜନ ଏବଂ ସମୟର ଦୁରୁପଯୋଗ ସାର ହୋଇଥାଏ । ବିନା ମିଠାରେ ମିଷ୍ଟାନ୍ନ, ନାକ ବିନା ସୁଗନ୍ଧ ଯେପରି ବ୍ୟର୍ଥ, ସେହିଭଳି ବିନା ଜ୍ଞାନରେ ନିରୂପଣ ବା କୌଣସି ସିଦ୍ଧାନ୍ତ ବୃଥା ।

ଏ ସମ୍ପର୍କରେ ବହୁତ କୁହାଗଲାଣି । ସାରକଥା ହେଉଚି ମୁମୁକ୍ଷୁସାଧକ କେବଳ ଅଦ୍ୱୈତବାଦୀ ପରମାର୍ଥ ଗ୍ରନ୍ଥର ଅଭିନିବେଶ, ପଠନ, ଶ୍ରବଣ ଓ ମନନ କରିବା ଉଚିତ । ପରମାର୍ଥ ଗ୍ରନ୍ଥ ବ୍ୟତୀତ ଅନ୍ୟଗ୍ରନ୍ଥ ଅପାଠ୍ୟ । ଯେଉଁ ଗ୍ରନ୍ଥରେ ନିତ୍ୟ ଅନିତ୍ୟ ବିବେକ ଅର୍ଥାତ ସାର ଅସାର ବିଚାରର ନିର୍ଣ୍ଣୟ କରାଯାଇଛି ସେହି ଗ୍ରନ୍ଥ ହିଁ ମନୁଷ୍ୟକୁ ଭବସାଗର ତାରଣର ଏକମାତ୍ର ଭରସା ।

## ଦଶମ ସମାସ
## ।। ଦେହାତୀତ ଲକ୍ଷଣ ।।

ଜଗତ ମିଥ୍ୟା ଅଥଚ ସତ୍ୟ ପ୍ରତୀତ ହୋଇଥାଏ ଏବଂ ବ୍ରହ୍ମ ସତ୍ୟ ହୋଇ ମଧ ମିଥ୍ୟା ମନେ ହୋଇଥାଏ । ଏସବୁ ହେଉଚି ମାୟାର ଖେଳ । ସତ୍ୟବସ୍ତୁକୁ ଜାଣିବା ଲାଗି ଅନେକ ପ୍ରବଚନ ଓ ସିଦ୍ଧାନ୍ତ କଥା ମନ ଭିତରେ ଦୃଢ଼ୀଭୂତ ହୋଇ ରହିଲେ ମଧ ଅସତ୍ୟ-ଭାବନା ନଷ୍ଟ ହୋଇ ନଥାଏ । ବେଦ-ଶାସ୍ତ୍ର-ପୁରାଣ-ମାନଙ୍କର ସତ୍ୟ-ବ୍ରହ୍ମର ନିଶ୍ଚୟାତ୍ମକ ନିରୂପଣ କରାଯାଇଛି । କିନ୍ତୁ ସତ୍ୟର ମୁଖ ଆଚ୍ଛାଦିତ ରହିଥିବାରୁ ଏହା ଦେଖାଯାଇ ନ ଥାଏ ଏବଂ ଅସତ୍ୟ ଭିତରେ ହିଁ ସତ୍ୟର ଆଭାସ ହୋଇଥାଏ । ଇଏ ସବୁ ହେଉଚି ମାୟାର ବିପରୀତ କୀର୍ତ୍ତି । କିନ୍ତୁ ସତ୍‌ସଙ୍ଗ ଦ୍ୱାରା ସତ୍ୟ କିଏ ମିଥ୍ୟା କିଏ ସେ ସମ୍ପର୍କରେ ଯଥାର୍ଥ ଜ୍ଞାନ ହୋଇଥାଏ ।

ତେଣୁ ନିଜକୁ ନିଜେ ଜାଣିବା ଦ୍ୱାରା ହିଁ ପ୍ରକୃତ ସମାଧାନ ହୋଇଥାଏ । ଚିତ୍ତ ଓ ଚୈତନ୍ୟ ଯେ ଏକ ଏଭଳି ଆତ୍ମ-ସ୍ୱରୂପ ଜ୍ଞାନ ପ୍ରାପ୍ତ ହୋଇ ଏବଂ

ପ୍ରାରବ୍ଧ ଉପରେ ଦେହକୁ ସମର୍ପି ଦେଇ ବୋଧଶକ୍ତିଦ୍ୱାରା ମନରୁ ସନ୍ଦେହ ଦୂର କରି ଦିଆଯିବା ପରେ ଦେହର ପରିଣତି ଯାହା ହେଉ ନା କାହିଁକି ସେ ସମ୍ପର୍କରେ ଚିନ୍ତା କ'ଣ ? ଏହାପରେ ଯେଉଁଠି ଦେହର ପତନ ହେଉନା କାହିଁକି, ତାହା ହେବ ପୁଣ୍ୟଭୂମି । ସମସ୍ତେ ପୁଣ୍ୟଭୂମିରେ ଦେହତ୍ୟାଗ କରିବାକୁ ଚାହିଁଥାଆନ୍ତି । ଏମାନେ ଉତ୍ତରାୟଣ କାଳରେ ମରିବା ଉତ୍ତମ ଏବଂ ଦକ୍ଷିଣାୟନରେ ମରିବା ଖରାପ ମନେ କରିଥାଆନ୍ତି । ସେମାନେ ଭାବନ୍ତି ଉତ୍ତରାୟଣ, ଶୁକ୍ଳପକ୍ଷ, ବେଳରତରତ ସମୟ ଏବଂ ମନରେ ଭଗବାନଙ୍କ ସ୍ମରଣ ଥିବା ବେଳେ ମୃତ୍ୟୁ ହେଲେ ସଦ୍‌ଗତି ହୋଇଥାଏ । କିନ୍ତୁ ପ୍ରକୃତ ଜ୍ଞାନୀ ଭକ୍ତ ଏସବୁ କିଛି ଚାହିଁ ନ ଥାଏ । କାରଣ ସେ ଜୀବିତ ଅବସ୍ଥାରେ ହିଁ ମୁକ୍ତିର ଆନନ୍ଦ ଉପଭୋଗ କରିଥାଏ । ଭଗବଦ୍-ପ୍ରାପ୍ତିର କଳ୍ପନା ଦ୍ୱାରା ଯଦି ଆମେ ଜୀବନରେ ଶରୀରକୁ ସାର୍ଥକ ଓ ସଦୁପଯୋଗ କରି ନ ପାରୁଛୁ, ତାହାହେଲେ ସଦ୍‌ଗତି ଓ ମୁକ୍ତିର ଲାଭ ମିଳିବ କିପରି ?

ଯଦି ଠିକ୍ ମଞ୍ଜି ନବୁଣୁ ଭଲ ଫଳ ପାଇବୁ କିପରି ? ଈଶ୍ୱରଙ୍କ ଭଜନ ଦ୍ୱାରା ହିଁ ଜୀବନ ସାର୍ଥକ ହୋଇପାରେ । ଯଦି ଜୀବନରେ ଆମେ ଭଗବଦ୍-ଭକ୍ତିର ଆଶ୍ରୟ ନ ନେଉ ତାହାହେଲେ ମରଣପରେ ମୁକ୍ତିର ଆଶା କରିବା ବୃଥା । ଯିଏ ଯେପରି କରିବ, ସେ ସେହିପରି ଫଳ ପାଇବ । ଯିଏ ଜୀବନ୍ମୁକ୍ତ ତଥା ଜ୍ଞାତା ତାର ମୃତଶରୀର ଜଙ୍ଗଲରେ ପଡ଼ି ମାଟିରେ ମିଶିଯାଉ କିମ୍ବା ଶ୍ମଶାନରେ ପୋଡ଼ା ହେଉ କିମ୍ବା ତା ଶବକୁ ପଶୁପକ୍ଷୀ ଖାଇଯାଆନ୍ତୁ, ତାକୁ ଧନ୍ୟ ଧନ୍ୟ ହିଁ କୁହାଯିବ ।

ଅଜ୍ଞାନୀ ଲୋକେ ହିଁ ବୃଥାରେ ଶୋକ କରିଥାଆନ୍ତି । ଯାହାର ଜନ୍ମ ନାହିଁ ତାର ମୃତ୍ୟୁ ହେବ କିପରି ? ଯିଏ ସ୍ୱ ସ୍ୱରୂପ ସଂଧାନ ଦ୍ୱାରା ମାୟାର ଖେଳକୁ ଜାଣି ସାରିଥାଏ, ତାର ମୃତ୍ୟୁ ଭୟ ନ ଥାଏ । ଯିଏ ଜୀବିତ ଅବସ୍ଥାରେ ମୃତଞ୍ଜୟୀ ସେ ହେଉଚି ମୁକ୍ତ ପୁରୁଷ । ଏଭଳି ଜ୍ଞାନୀ ପୁରୁଷମାନେ ସାଧାରଣ ଲୋକଙ୍କ ଚକ୍ଷୁରେ ସାଧାରଣ ଓ ସାମାନ୍ୟ ଦେଖାଗଲେ ମଧ ସେମାନେ ଅସାଧାରଣ । ସେମାନଙ୍କୁ ଏହି ଦୃଶ୍ୟସଂସାର ସ୍ପର୍ଶ କରି ନଥାଏ । ଏଭଳି ଜ୍ଞାନୀ ସାଧୁ ପୁରୁଷଙ୍କ ଉପଦେଶ ଓ ଭଜନ ମାତ୍ରେ ଅନ୍ୟମାନେ ପବିତ୍ର ହୋଇ ଉଠନ୍ତି । ଯିଏ ସଦ୍‌ଗୁରୁଙ୍କ

ପ୍ରକୃତ ଶିଷ୍ୟ, ସେ ବିବେକପୂର୍ବକ ଆଧ୍ୟାତ୍ମ ସଂପର୍କରେ ଶ୍ରବଣ, ମନନ ଏବଂ ନିଦିଧ୍ୟାସନ କରିବା ଉଚିତ । ସଦ୍‌ଶିଷ୍ୟ, ସାଧକମାନଙ୍କୁ ମୋର ଏହି ଅନ୍ତିମ ନିବେଦନ ଯେ ସମସ୍ତ ସଜ୍ଜନଙ୍କ ଶରଣ ଗ୍ରହଣ କରି, ସେମାନଙ୍କ ମୁହଁରୁ ଜ୍ଞାନ ସଂପର୍କୀୟ ବିଷୟ ହିଁ ଶ୍ରବଣ କରନ୍ତୁ । ଏହା କରିବା ଦ୍ୱାରା ଶିଷ୍ୟ ମଧ୍ୟ ସଚ୍ଚା ସନ୍ଥ ହୋଇ ଲୋକ-କଲ୍ୟାଣ ଦିଗରେ ସମର୍ଥ ହୋଇପାରିବ । ସତ୍‌ସଙ୍ଗଠାରୁ ବଳି ଅନ୍ୟ କୌଣସି ସାଧନ ନାହିଁ । ଗୁରୁ ହେଉଛନ୍ତି ଭକ୍ତିର ଆଧାର । ଗୁରୁ-ଭକ୍ତିର ଆଧାର, ସିଦ୍ଧାନ୍ତ-ବିଚାର ଓ ଆଚାର ଶୁଦ୍ଧି ଦ୍ୱାରା ଯେ କୌଣସି ବ୍ୟକ୍ତି ସ୍ୱ ସ୍ୱରୂପ-ଜ୍ଞାନ ଲାଭ କରିପାରେ । ସଦ୍‌ଗୁରୁଙ୍କ ବଚନ ପାଳନ କରିବା ଦ୍ୱାରା ପରମାର୍ଥବୁଦ୍ଧିର ବିକାଶ ହୋଇଥାଏ ଏବଂ ସହଜ-ସମାଧାନ ଲାଭ ହୋଇଥାଏ । ଶରୀର ଯେ ନଶ୍ୱର ଏକଥା ଜାଣି ସଦ୍‌କାର୍ଯ୍ୟ ଓ ପରୋପକାର ଦ୍ୱାରା ତାକୁ ସାର୍ଥକ କରିବା ଉଚିତ । ଏହାଦ୍ୱାରା ସଦ୍‌ଗୁରୁ ସନ୍ତୁଷ୍ଟ ହୋଇଥାଆନ୍ତି । ଯେପରି ମାଆ ବହୁ କଷ୍ଟ ସହି ଅଜ୍ଞାନ ବାଳକକୁ ପାଳନ କରିଥାଏ, ସେହିଭଳି ସଦ୍‌ଗୁରୁ ନିଜ ଭକ୍ତର ମଙ୍ଗଳ ଚିନ୍ତା ହିଁ କରିଥାଆନ୍ତି । ତେଣୁ ଗୁରୁଙ୍କ ପ୍ରତି ଯାହାର ଅନନ୍ୟ ଭକ୍ତି ରହିଥାଏ, ସେହି ଶିଷ୍ୟ ଧନ୍ୟ ।

ସାରାଂଶ-ସତ୍‌ସଙ୍ଗ, ଅଧ୍ୟାତ୍ମ-ଶ୍ରବଣ ଏବଂ ସଦ୍‌ଗୁରୁ ଭକ୍ତି-ଏହି ତିନୋଟି ଭିତରେ ସବୁ କିଛି ନିହିତ ରହିଛି । ଏଭଳି ଗ୍ରନ୍ଥକୁ ବିବେକ ପୂର୍ବକ ଅଧ୍ୟୟନ, ପରିଶୀଳନ ଏବଂ ମନନ କଲେ ଆତ୍ମ-ନିଶ୍ଚୟ-ବୁଦ୍ଧି ହେବା ନିଶ୍ଚିତ । ଯେଉଁ ଗ୍ରନ୍ଥରେ ଅଦ୍ୱୈତର ବିବେଚନ ହୋଇଥାଏ, ତାହା ହିଁ ପ୍ରକୃତ ଗ୍ରନ୍ଥ । ତେଣୁ ଏହାକୁ ଉପେକ୍ଷା କରିବା ଅନୁଚିତ । ଅଜ୍ଞ ବ୍ୟକ୍ତି ସିନା ଏହାକୁ ବୁଝିପାରେ ନାହିଁ, କିନ୍ତୁ ଜ୍ଞାନୀମାତ୍ରେ ସାର ବସ୍ତୁକୁ ଗ୍ରହଣ କରିଥାଏ । ''ନେତି ନେତି'' କହି କହି ବେଦ ମଧ୍ୟ ଯାହାକୁ ଠଉରେଇ ପାରିନାହିଁ, ତାକୁ ଭାଷାରେ ବର୍ଣ୍ଣନା କରିବା ବେକାର । ପରମାତ୍ମ ତତ୍ତ୍ୱ ଆଦିରୁ ଅନ୍ତ ପର୍ଯ୍ୟନ୍ତ ଅନିର୍ବଚନୀୟ । ମାଙ୍କଡ଼ ପକ୍ଷରେ ନଡ଼ିଆ ଯେପରି ନିରସବୋଧ ହୋଇଥାଏ, ସେହିଭଳି ମୂର୍ଖ ଅଜ୍ଞାନୀ ପକ୍ଷରେ ଅଦ୍ୱୈତ ଜ୍ଞାନ ଚର୍ଚ୍ଚା ନିରର୍ଥକ । କିନ୍ତୁ ଜ୍ଞାନୀମାତ୍ରେ ଏହାର ସରସତାକୁ ବୁଝିଥାଏ, ନଡ଼ିଆକୁ ଛଡ଼େଇଲେ ଏବଂ ଭାଙ୍ଗିଲେ ରସ ମିଳେ ବୋଲି ଜାଣେ ଏବଂ ସେହି ରସକୁ ହିଁ ସେ ଗ୍ରହଣ କରେ ।



# ଅଷ୍ଟମ ଦଶକ

## ପ୍ରଥମ ସମାସ
## ।। ଦେବ-ଦର୍ଶନ ।।

ଆତ୍ମବୋଧ ବା ବିମଳ ଜ୍ଞାନ କ'ଣ ସେକଥା ଅଜ୍ଞାନୀ ତଥା ନାନା ଭ୍ରମରେ ପଡ଼ିଥିବା ଲୋକେ ଯେପରି ସହଜରେ ବୁଝିପାରିବେ, ସେଥିଲାଗି ଏହି ସମାସରେ ଉଦ୍ୟମ କରାଯାଇଛି । ଶାସ୍ତ୍ର ପୁରାଣ ଅନେକ । ଯଦି ସବୁ ପଢ଼ିବାକୁ ଚାହଁ ତ ଜୀବନସାରା ଅଧ୍ୟୟନ କଲେ ସରିବନି । ଶାସ୍ତ୍ର ଅଧ୍ୟୟନ ଓ ପରିଶୀଳନ ଦ୍ୱାରା ମନରୁ ସନ୍ଦେହ ଦୂର ହୋଇ ନ ଥାଏ ବରଂ ବଢ଼ିବାରେ ଲାଗିଥାଏ । ଜୀବନସାରା ତୀର୍ଥ ଭ୍ରମଣ କଲେ ମଧ୍ୟ ସବୁ ତୀର୍ଥ ସ୍ଥାନରେ ପହଞ୍ଚିବା ସମ୍ଭବ ନୁହଁ । କେତେକ ତୀର୍ଥ ସ୍ଥାନ ତ ଅତି ଦୁର୍ଗମ । ଅଧିକାଂଶ ଲୋକଙ୍କ ବିଶ୍ୱାସ ଯେ ତପସ୍ୟା, ଯୋଗ ଯାଗ, ଦାନ, ପୁଣ୍ୟ, ନାନା ପନ୍ଥା, ମତ ମତାନ୍ତର ହେଉଚି ଭଗବତ୍ ପ୍ରାପ୍ତି ଲାଗି ଏବଂ ବିନା କଷ୍ଟରେ ପ୍ରଭୁଙ୍କୁ ଲାଭ କରିବା ସମ୍ଭବ ନୁହେଁ ।

ଯେଉଁ ପ୍ରଭୁଙ୍କ ସମ୍ପର୍କରେ ଏତେ କଥା କୁହାଯାଉଛି ସେ ପ୍ରଭୁଟି କିଏ ? ଏକଥା ଜାଣିବା ଲାଗି ପୂର୍ଣ୍ଣଜ୍ଞାନ ଆବଶ୍ୟକ । ଏ ସଂସାରରେ ଲୋକଙ୍କ ବିଶ୍ୱାସ ଅନୁଯାୟୀ ଦେବାଦେବୀଙ୍କ ସଂଖ୍ୟା ଅନେକ । ତାହା ହେଲେ ଏକ ପରମାତ୍ମାଙ୍କର ଉପାସନା କର ବୋଲି କୁହାଯିବ କିପରି ? ଜଗତରେ ଉପାସନାର ପ୍ରଣାଳୀ ଅନେକ, ପନ୍ଥା ମଧ୍ୟ ଅନେକ । ସେହିଭଳି ଦେବା-ଦେବୀଙ୍କ ସଂଖ୍ୟ ବହୁତ । ଜଣେ ଏ ଦେବତାର ଭକ୍ତ ତ ଆଉ ଜଣେ ଅନ୍ୟ ଦେବତାଙ୍କ ଭକ୍ତ । ଫଳରେ ଭକ୍ତମାନଙ୍କ ଭିତରେ ଝଗଡ଼ା ଲାଗିରହିଛି ସବୁବେଳେ । ଏ ପରିସ୍ଥିତିରେ ''ଏକପରମାତ୍ମା'' କଥାଟିକୁ ନିଶ୍ଚିତ କରାଯିବ କିପରି ? କୋଟି କୋଟି ଲୋକଙ୍କ ମଧ୍ୟରୁ କେତେ ବ୍ୟକ୍ତି ନିର୍ଗୁଣ ନିରାକାର ପରମାତ୍ମାଙ୍କ ଅନୁସନ୍ଧାନରେ ମଧ୍ୟ ଲାଗି ରହିଛନ୍ତି । ଅନ୍ୟ କେତେକ କହୁଛନ୍ତି ପରଂବ୍ରହ୍ମ ସାକାର, ସଗୁଣ । ଏ ଝଗଡ଼ା ମଧ୍ୟ ଚାଲିଛି ।

ସଂକ୍ଷେପରେ ଏତିକି ମାତ୍ର କୁହାଯାଇପାରେ ଯେ ଯିଏ ଏହି ଚରାଚରର ସୃଷ୍ଟିର ନିର୍ମାତା; ଯିଏ ସମଗ୍ର ବ୍ରହ୍ମାଣ୍ଡର ପରିଚାଳକ; ଯିଏ ସୂର୍ଯ୍ୟଙ୍କୁ ତେଜ ପ୍ରଦାନ କରିଛି; ଯାହା ଆଜ୍ଞାରେ ସମୁଦ୍ର ସୀମା ଲଙ୍ଘନ କରେ ନାହିଁ; ଯିଏ ଆକାଶରେ ଚନ୍ଦ୍ର ଓ ଅଗଣିତ ନକ୍ଷତ୍ରଙ୍କୁ ପ୍ରତିଷ୍ଠିତ କରି ଏଗୁଡ଼ିକୁ ଗତିମାନ କରିଛି; ଯିଏ ଅସଂଖ୍ୟ ଜୀବ ଜନ୍ତୁଙ୍କୁ ଜୀବନ ଦେଇଛି; ଯିଏ ବ୍ରହ୍ମା, ବିଷ୍ଣୁ ଓ ମହେଶ ରୂପ ଧାରଣ କରି ସୃଷ୍ଟି ନିର୍ମାଣ, ପୋଷଣ ଓ ସଂହାର କ୍ରମ ଚଳାଇ ଆସୁଛନ୍ତି— ସେହି ତ୍ରୀଲୋକର ସ୍ୱାମୀହିଁ ପରମାତ୍ମା ।

ଯେଉଁ ଦେବ-ଦେବୀଙ୍କ ମୂର୍ତ୍ତି ଆଦି ପ୍ରତିଷ୍ଠିତ କରି ଲୋକେ ଭଗବାନ ବୋଲି ପୂଜା କରିଥାଆନ୍ତି ସେହି ଭଗବାନ ସୃଷ୍ଟିର ଜୀବଜଗତକୁ ଉତ୍ପନ୍ନ କରି ନ ପାରେ, ସେହି ଭଗବାନ ଠାରେ ଅନନ୍ତ ବ୍ରହ୍ମାଣ୍ଡର ନିର୍ମାଣର କ୍ଷମତା ରହି ନ ପାରେ । ଦେବ-ଦେବୀମାନଙ୍କର ସେ ଶକ୍ତି ନାହିଁ । ସର୍ବବ୍ୟାପକ, ସର୍ବସାକ୍ଷୀ, ସର୍ବକର୍ତ୍ତା ଭଗବାନ ତ ନିରାକାର ।

ନିରାକାର ପରମାତ୍ମାଙ୍କ ସାକାର ସୃଷ୍ଟି ହେଲା କିପରି ? ପ୍ରଥମ ତତ୍ତ୍ୱ ହେଉଚି ଆକାଶ । ଏହା ଶୂନ୍ୟ । ପରମାତ୍ମାଙ୍କ ସଂକଳ୍ପରୁ ଆକାଶରୁ ବାୟୁର ଉତ୍ପତ୍ତି । ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଏବଂ ଜଳରୁ ପ୍ରକଟିତ ହେଲା ପୃଥିବୀ ବା ମାଟି । ଏହି ଅଘଟିତ ଘଟଣାଗୁଡ଼ିକୁ ଯିଏ ସଂଘଟିତ କଲା ସେ ହେଉଚି ପରମାତ୍ମା । ପରମାତ୍ମାଙ୍କ ଦ୍ୱାରା ନିର୍ମିତ ଏହି ସୃଷ୍ଟିରେ ହିଁ ପାଷାଣ ନିର୍ମିତ ହେଲା ଏବଂ ଏହି ପାଷାଣରେ ନିର୍ମିତ ମୂର୍ତ୍ତିକୁ ଅବିବେକୀ ଲୋକେ ଭଗବାନ କହିବାକୁ ଲାଗିଲେ । ସୃଷ୍ଟିର ସୃଜନକର୍ତ୍ତାକୁ ପରମାତ୍ମା କୁହାଯିବ ନା ସୃଷ୍ଟିରୁ ପ୍ରସ୍ତୁତ ହୋଇଥିବା ପଥରକୁ ପରମାତ୍ମା କୁହାଯିବ — ଏକଥା ବିଚାର କରିବା କଥା । କାର୍ଯ୍ୟ ଓ କାରଣ ଏକ ହୋଇ ନ ପାରେ । ତେଣୁ ସୃଷ୍ଟିକର୍ତ୍ତା ଯେ ସୃଷ୍ଟିର ଉର୍ଦ୍ଧ୍ୱରେ— ଏ ବିଶ୍ୱାସ ମନରେ ଦୃଢ଼ୀଭୂତ ହେବା ଆବଶ୍ୟକ । କୁମ୍ଭାର ବିଭିନ୍ନ ମାଟିର ପାତ୍ର ଗଢ଼ିଥାଏ । ତା ବୋଲି ମାଟିର ପାତ୍ରଗୁଡ଼ିକୁ କୁମ୍ଭାର କୁହାଯିବ କି ? କାଠ କଣ୍ଢେଇ ଏବଂ ଏହାର ସୂତ୍ରଧାର ଏକ ନୁହନ୍ତି । ସେହିଭଳି ସୃଷ୍ଟିକର୍ତ୍ତା ସୃଷ୍ଟିର ଅଙ୍ଗବିଶେଷ କିମ୍ବା ଜୀବ ହୋଇ ନ ପାରନ୍ତି । ଜଗଦୀଶ ଜଗତରେ ବ୍ୟାପ୍ତ ରହି ମଧ୍ୟ ଜଗତ

ସହିତ ଲିପ୍ତ ନୁହନ୍ତି—ସେ ଅଲିପ୍ତ । ସେହିଭଳି ପଞ୍ଚଭୂତରେ ନିର୍ମିତ ଏହି ଦେହଠାରୁ ଆତ୍ମା ଅଲିପ୍ତ । ଅବିଦ୍ୟା ତଥା ଅଜ୍ଞାନ ହେତୁ ମାୟା ସତ୍ୟ ପ୍ରତୀତ ହୋଇଥାଏ । କିନ୍ତୁ ବାସ୍ତବରେ ମାୟାରେ ନିର୍ମିତ ଏହି ସୃଷ୍ଟି ମିଥ୍ୟା ଏବଂ 'ଏକମେବା ଦ୍ୱିତୀୟ ବ୍ରହ୍ମ' ହିଁ ସତ୍ୟ । ଏହି ବ୍ରହ୍ମସ୍ୱରୂପ ପରମାତ୍ମା ସବୁର ଉର୍ଦ୍ଧ୍ୱରେ ଏବଂ ଏହା ସର୍ବବ୍ୟାପୀ । ଏହା ଅତିରିକ୍ତ ସାରା ପ୍ରପଞ୍ଚ ମାୟାର ଖେଳ ମାତ୍ର ଅର୍ଥାତ ମିଥ୍ୟା ।

ଭଗବାନ ଆସିଲେ, ଗଲେ, ତାଙ୍କର ଜନ୍ମଲାଭ ହେଲା ଏବଂ ଦେହାନ୍ତ ଘଟିଲା—ଏସବୁ ଭାଷାର ପ୍ରୟୋଗ ପାପ । ଯାହାର ସଞ୍ଜା ମାତ୍ରକେ ଇନ୍ଦ୍ର ଆଦି ଦେବତାମାନେ ଅମର ହୋଇପାରିଲେ, ସେହି ଦେବାଧିଦେବଙ୍କ ଜନ୍ମ ମୃତ୍ୟୁର ବିଚାର କରିବା ଅବିବେକିତା ବ୍ୟତୀତ କିଛି ନୁହଁ । ଅନ୍ତଃକରଣ, ପଞ୍ଚପ୍ରାଣ ଏବଂ ଦେହର ଅନେକ ତତ୍ତ୍ୱ ଚଞ୍ଚଳ ଓ ବିନାଶଶୀଳ କିନ୍ତୁ ପରମାତ୍ମା ନିଶ୍ଚଳ, ଅବିନାଶୀ ଏବଂ ଏହା କଳ୍ପନାତୀତ ।

ଶ୍ରୋତାଙ୍କ ପ୍ରଶ୍ନ—ଯଦି ପରମାତ୍ମା କଳ୍ପନାତୀତ ତାହାହେଲେ ସେ ବ୍ରହ୍ମାଣ୍ଡକୁ ନିର୍ମାଣ କଲେ କିପରି ? କାର୍ଯ୍ୟ ଓ କାରଣକୁ କେନ୍ଦ୍ର କରି ତାଙ୍କୁ ସଗୁଣ କୁହାଯିବ ନାହିଁ କାହିଁକି ? ଯେପରି ଦ୍ରଷ୍ଟା ମଧ ସ୍ୱୟଂ ଦୃଶ୍ୟ ହୋଇଯାଇପାରେ, ସେହିଭଳି କର୍ତ୍ତବ୍ୟ ଦୃଷ୍ଟିରୁ ନିର୍ଗୁଣ ସଗୁଣ ହୋଇ ପାରିବ ନାହିଁ କାହିଁକି ? ତେଣୁ ବ୍ରହ୍ମାଣ୍ଡକୁ ସୃଷ୍ଟି କରିଥିବା ପରମାତ୍ମା କିଏ ଏବଂ କିପରି ଆମକୁ ସେକଥା ନିଶ୍ଚିତ ଭାବରେ ବୁଝାଇ ଦିଅନ୍ତୁ । ଖାଲି ସେତିକି ନୁହଁ ଏହି ପରମାତ୍ମାଙ୍କ ଲକ୍ଷଣ କ'ଣ ? ଏହା ବାସ୍ତବରେ ସଗୁଣ କି ନିର୍ଗୁଣ ଏବଂ ଯଦି ଏହା ନିର୍ଗୁଣ ତାହାହେଲେ ଏହାଠାରୁ ସଗୁଣ ସୃଷ୍ଟି ହେଲା କିପରି — ମନରେ ଉପୁଜୁଥିବା ଏସବୁ ସନ୍ଦେହ ଦୂର କରିବା ଲାଗି ଆପଣ ସ୍ପଷ୍ଟଭାବେ ଆମକୁ ବୁଝାନ୍ତୁ ।

## ଦ୍ୱିତୀୟ ସମାସ
## ।। ସୂକ୍ଷ୍ମ ଆଶଙ୍କା ବା ସୂକ୍ଷ୍ମ ସଂଶୟ ।।(୧)

ଶ୍ରୋତାମାନଙ୍କ ପ୍ରଶ୍ନ ହେଉଛି ଯେଉଁ ବ୍ରହ୍ମକୁ ନିତ୍ୟ, ସତ୍ୟ, ନିରାକାର, ନିର୍ବିକାର ଓ ନିଷ୍କ୍ରିୟ କୁହାଯାଉଚି ତାଠାରୁ ମିଥ୍ୟା ସୃଷ୍ଟି ହେଲା କିପରି ?

ଏହାର ଉତ୍ତର ହେଉଚି—ଆରମ୍ଭରେ କେବଳ ନିତ୍ୟ, ମୁକ୍ତ, ନିର୍ବିକଳ୍ପ ବ୍ରହ୍ମ ହିଁ ଥିଲା । ତାଠାରୁ ସୂକ୍ଷ୍ମ ରୂପରେ ମାୟାର ଆବିର୍ଭାବ ଘଟିଲା ।

ଆଦ୍ୟମେକଂ ପରବ୍ରହ୍ମ ନିତ୍ୟ ମୁକ୍ତମବିକ୍ରିୟମ୍
ତସ୍ୟ ମାୟା ସମାବେଶୋ ଜୀବମବ୍ୟାକୃତାତ୍ମକମ ॥

ଏକଥା କୁହାଗଲେ ମଧ୍ୟ ମନରେ ସନ୍ଦେହ ହେଉଚି ଯେ ଯଦି ବ୍ରହ୍ମ ନିର୍ଗୁଣ, ମୁକ୍ତ ଏବଂ କ୍ରିୟାହୀନ ତାହାହେଲେ ତାଠାରେ ସଗୁଣ ମାୟା ଉତ୍ପନ୍ନ କରିବାର ଇଚ୍ଛା (ସଗୁଣତା) ଜାତ ହେଲା କିପରି ? ଯଦି ନିର୍ଗୁଣ ହିଁ ସ୍ୱେଚ୍ଛାରେ ସଗୁଣ ହେଲା ବୋଲି ଗୁହାଯିବ ତାହାହେଲେ ଏଭଳି କହିବା ମଧ୍ୟ ମୂର୍ଖତା । କେହି କେହି କହିଥାଆନ୍ତି ଯେ ''କର୍ତ୍ତୁମ କର୍ତ୍ତୁମ୍ ଅନ୍ୟଥା କର୍ତ୍ତୁମ୍''— ଏଭଳି ସର୍ବ ଶକ୍ତିମାନ ପ୍ରରବ୍ରହ୍ମର ଲୀଳା ଓ ମହିମାକୁ ଅଜ୍ଞ ପାମର ଅଧମ ଜୀବ କଳନା କରିବ କିପରି ? କେହି କେହି କହିଥାଆନ୍ତି ଯେ ଲୋକେ ଶାସ୍ତ୍ର-ବଚନର ବିପରୀତ ଅର୍ଥ କରି ନିର୍ଗୁଣ ବ୍ରହ୍ମ ଉପରେ ବୃଥାରେ କର୍ତ୍ତୃତ୍ୱର ଆରୋପ କରୁଛନ୍ତି । ଯଦି ଏହାର କର୍ତ୍ତାପଣ ବୋଲି କିଛି ନାହିଁ, ତାହାହେଲେ ଏହା ସବୁକିଛି କରି ମଧ୍ୟ ଅକର୍ତ୍ତା ବୋଲି କୁହାଯିବ କିପରି ? ଯିଏ ମୂଳରୁ ନିର୍ଗୁଣ ଓ ନିଷ୍କ୍ରିୟ ତାଠାରେ କର୍ତ୍ତୃତ୍ୱ ଆସିଲା କେଉଁଠୁ ? ଯଦି ଏହାର କର୍ତ୍ତୃତ୍ୱ ବୋଲି କିଛି ନାହିଁ ତାହାହେଲେ ସୃଷ୍ଟି ରଚନା କରିବାର ସଂକଳ୍ପ ତାଠାରୁ ଆସିଲା କିପରି ?

ଅଧିକାଂଶ ଲୋକ କହିଥାଆନ୍ତି ଯେ ସବୁ ହେଉଚି ପରମାତ୍ମାଙ୍କ ଇଚ୍ଛା । କିନ୍ତୁ ନିର୍ଗୁଣର ଇଚ୍ଛା ଆସିଲା କେଉଁଠୁ ? ଯଦି କୁହାଯିବ ଯେ ଈଶ୍ୱରଙ୍କ ଇଚ୍ଛାବିନା ତା ମନକୁ ସବୁ କିଛି ହୋଇଗଲା, ତାହାହେଲେ ଈଶ୍ୱରଙ୍କ ଅସ୍ତିତ୍ୱ ବୋଲି ତ କିଛି ନାହିଁ । ଯଦି ଈଶ୍ୱର ବୋଲି କିଛି ନାହିଁ ତାହାହେଲେ ମିଥ୍ୟା ମାୟା ସଂସାରରୁ ଆମକୁ ଉଦ୍ଧାର କରିବ କିଏ ? ତାହାହେଲେ ଭକ୍ତମାନଙ୍କୁ ରକ୍ଷା କରିବ କିଏ ?

ତେଣୁ ମାୟା ଈଶ୍ୱରଙ୍କଠାରୁ ସ୍ୱତନ୍ତ୍ର, ଭିନ୍ନ ବୋଲି ମଧ୍ୟ କୁହାଯାଇ ନ ପାରେ । ଏହି ମାୟାକୁ ତିଆରି କରିବା ଏବଂ ଏହାକୁ ବିସ୍ତାର କରିବା ଭଳି କୌଣସି ସ୍ୱତନ୍ତ୍ର ସାର୍ବଭୌମ ସତ୍ତା ନିଶ୍ଚୟ ରହିଛି ।

କେହି କେହି ଏକଥା ମଧ୍ୟ କହିଥାଆନ୍ତି ଯେ ଈଶ୍ୱର ହିଁ ଏହି ମାୟା ପଟଳ ବିସ୍ତାର କରିଛନ୍ତି ଏବଂ ତାଙ୍କ ଇଚ୍ଛାରୁ ହିଁ ଏହି ସୃଷ୍ଟିର ନିର୍ମାଣ ହୋଇଛି । କିନ୍ତୁ ଏହାକୁ ଖଣ୍ଡନ କରି କେହି କେହି କହିଥାଆନ୍ତି ଈଶ୍ୱରଙ୍କୁ ତ ନିର୍ଗୁଣ ନିରାକାର କୁହୁଚ, ତାର ଇଚ୍ଛା ଆସିଲା କୁଆଡୁ ? ଏହି ମାୟା କେବଳ ଏକ ଭ୍ରମ ରୂପ, ଏହାର ଅସ୍ତିତ୍ୱ ବୋଲି କିଛି ନାହିଁ । ଯେପରି ଭ୍ରମବଶତଃ ଦଉଡ଼ିକୁ କେହି କେହି ସାପ କହିଥାଆନ୍ତି,'ସେହିଭଳି ବ୍ରହ୍ମ ଓ ମାୟାର ଭ୍ରମ । ଅର୍ଥାତ୍ ବ୍ରହ୍ମ ଦେହରେ ମାୟାର ଭ୍ରମ ।

ତୃତୀୟ ଯୁକ୍ତି ହେଉଚି ମାୟାକୁ ତ ଆମେ ପ୍ରତ୍ୟକ୍ଷ ଭାବେ ଦେଖୁଛୁ, ମାୟାକୁ ଭ୍ରମ ବୋଲି କହିବୁ କିପରି ? ତା ଦେହରେ ପରମାତ୍ମା ଶକ୍ତିର ଆବିଷ୍କାର କରାଯିବା ଉଚିତ ।

ଚତୁର୍ଥ ଶ୍ରୋତାଙ୍କ ପ୍ରଶ୍ନ ହେଉଚି ଯଦି ସାରା ସଂସାର ମିଥ୍ୟା, ତାହାହେଲେ ସାଧନା କରିବୁ କାହିଁକି ? ସାଧନାକୁ ମଧ୍ୟ ସାଂସାରିକ ମାୟା କୁହାଯିବ ।

ପୁଣି କେହି କେହି କହନ୍ତି ଯେ ଦର୍ଶକର ଭାବନା ଅନୁଯାୟୀ ଦୃଶ୍ୟ ପ୍ରକଟିତ ହୋଇଥାଏ । ଏହି ଯୁକ୍ତିଟି ମାୟା ପ୍ରତି ମଧ୍ୟ ପ୍ରଯୁଜ୍ୟ ।

କେତେକ ଲୋକ କହନ୍ତି ଯେ ମାୟା ବୋଲି କିଛି ନାହିଁ, ସବୁ ହେଉଚି ବ୍ରହ୍ମ । ଘିଅ ଜମାଟ ବାନ୍ଧି ରହୁ କିମ୍ୱା ତରଳ ଅବସ୍ଥାରେ ରହୁ ଘିଅ ମାତ୍ରେ ଘିଅ । ଭିନ୍ନ ନୁହଁ । ସେହିଭଳି ମାୟା ଓ ବ୍ରହ୍ମ ସେହି ଏକ ତତ୍ତ୍ୱ । କେହି କେହି କହିଥାଆନ୍ତି ସ୍ୱର୍ଣ୍ଣ ଓ ଅଳଙ୍କାର ମଧ୍ୟରେ କୌଣସି ଭେଦ ନାହିଁ । ସ୍ୱର୍ଣ୍ଣ ହିଁ ଅଳଙ୍କାର । ଅଳଙ୍କାର ତିଆରି ନ ହୋଇଥିବା ଅବସ୍ଥାରେ ଏହାର ନାମ କେବଳ ସ୍ୱର୍ଣ୍ଣ, ଅଳଙ୍କାର ପ୍ରସ୍ତୁତ ହେବାପରେ ଏହା ସ୍ୱର୍ଣ୍ଣାଳଙ୍କାର ।

କେହି କେହି ବ୍ରହ୍ମସ୍ୱରୂପ ପରମାତ୍ମା ଏବଂ ସୃଷ୍ଟିକୁ ସମୁଦ୍ର ଓ ଲହରୀର ଉପମା ଦେଇଥାଆନ୍ତି । କେହି କେହି କହିଥାଆନ୍ତି ସମୁଦ୍ର ସମୁଦ୍ର, ଲହରୀ ଲହରୀ । ସମୁଦ୍ରକୁ ତ ଲହରୀ କୁହାଯିବ ନାହିଁ । କୌଣସି ଅଚଳ ବସ୍ତୁକୁ ସଚଳ, ଚଞ୍ଚଳ ବସ୍ତୁର ଉପମା ଦିଆଯାଇ ପାରେ କି ?

ଆଉ କେହି କେହି କହିଥାଆନ୍ତି ଯେ ମାୟାକୁ କେବଳ କଳ୍ପନା କୁହାଯାଉଚି, ଏହା କଳ୍ପିତ ବସ୍ତୁ; ଏହା ପ୍ରତ୍ୟକ୍ଷ ଦେଖାଗଲେ ମଧ ଏହାର ଅସ୍ତିତ୍ୱ ନାହିଁ ।

ଏହିଭଳି ଭାବେ ଲୋକଙ୍କ ମନରେ ନାନା ସଂଶୟ ରହିଛି । ଯିଏ ଯାହା ଭାବୁଚି ତା ସପକ୍ଷରେ ନାନା ତର୍କ ବିତର୍କ ଚାଲୁଚି । ଏହାର ସମାଧାନ ଓ ସଂଦେହ ନିବାରଣ ଆବଶ୍ୟକ ।

ଆପଣମାନେ ସ୍ୱୀକାର କରିବାଉଚିତ ଯେ ମାୟା ହେଉଚି ମିଥ୍ୟା । କେବଳ ଏତିକି ମାତ୍ର ବୁଝାଇବା ଆବଶ୍ୟକ ହେଉଚି ଯେ ମାୟା ବ୍ରହ୍ମରେ ପ୍ରକଟିତ ହେଉଚି କିପରି ? ମିଥ୍ୟା ଶବ୍ଦଟିକୁ କିଏ କିପରି ତିଆରି କଲା, କାହିଁକି କଲା ସେ ପ୍ରଶ୍ନ ଉଠାଇବା ନିଷ୍ପ୍ରୟୋଜନ । କିନ୍ତୁ କେବଳ ନିଷ୍ପ୍ରୟୋଜନ କହିଦେଲେ ତ ସଂଦେହ ଦୂର ହେବ ନାହିଁ ? ଯଦି କୁହାଯିବ ଏହା ବ୍ରହ୍ମର ଖେଳ ତାହାହେଲେ ମଧ ଏହା ଅଘଟିତ କଥା ଭଳି ମନେ ହେବ । ତେଣୁ ଆଗାମୀ ସମାସରେ ଏହି ଶଙ୍କା, କୁଶଙ୍କା ସଂପର୍କରେ କୁହାଯିବ ।

## ତୃତୀୟ ସମାସ
## ।। ସୂକ୍ଷ୍ମ ଆଶଙ୍କା ।। (୨)

ଯାହା ପ୍ରଶ୍ନାତୀତ ସେ ସଂପର୍କରେ ପ୍ରଶ୍ନ ? ଯାହାହେଉ ଆପଣମାନେ ତ ପ୍ରଶ୍ନ କରି ସାରିଲେଣି, ସେଥିଲାଗି ତାର ଉତ୍ତର ଦିଆଯିବା ଆବଶ୍ୟକ ।

ଦଉଡ଼ିକୁ ଦେଖି ମନରେ ସାପ ବୋଲି ଯେପରି ଭ୍ରମ ହୋଇଥାଏ; ସେପରି ଜଳରେ ତରଙ୍ଗ ଉଠେ; ସୂର୍ଯ୍ୟକିରଣ ହେତୁ ମରୀଚିକା ଦେଖାଯାଏ; କଳ୍ପନା ଦ୍ୱାରା ସ୍ୱପ୍ନ ସୃଷ୍ଟି ହୋଇଥାଏ; ସେହିଭଳି ବ୍ରହ୍ମର ଛାୟା ମାତ୍ର ଯେଉଁ ମାୟା ତାହା ସତ୍ୟ ମନେ ହୋଇଥାଏ । ଭଗବାନଙ୍କ ମାୟା ଅକଳନୀୟ । ସେ ଅନନ୍ତ ବ୍ରହ୍ମାଣ୍ଡର ନିର୍ମାତା । ପରମାତ୍ମା, ପରମେଶ୍ୱର, ସର୍ବକର୍ତ୍ତା, ଅନନ୍ତନାମୀ, ଅନନ୍ତଶକ୍ତି ସମ୍ପନ୍ନ ଯେଉଁ ମୂଳ ପରମାତ୍ମାତତ୍ତ୍ୱ ସେଥିରୁ ସମଗ୍ର ସୃଷ୍ଟିର ବିସ୍ତାର । ଏହାକୁ ମୂଳ ମାୟା ମଧ କୁହାଯାଇଥାଏ । ବାସ୍ତବରେ ସୃଷ୍ଟିର ଅସ୍ତିତ୍ୱ ନାହିଁ ।

କିନ୍ତୁ ସୃଷ୍ଟି ଅଛି ବୋଲି. ଯାହା ମନରେ ଭ୍ରମ ଦୃଢ଼ୀଭୂତ (ଏ ଧରଣର ଲୋକ ଅଧିକାଂଶ), ଏଭଳି ଲୋକଙ୍କୁ ବୁଝାଇବା ଲାଗି ବ୍ରହ୍ମ ଓ ମାୟା ଏବଂ ଜଗଦୀଶ୍ୱର ଓ ଜଗତ-ଏହିଭଳି ଭାବେ ଦ୍ୱୈତର ଆଶ୍ରୟ ନିଆଯାଇଥାଏ । କିନ୍ତୁ ମୂଳ ମାୟା ସେହି ଏକ ବ୍ରହ୍ମ । ଏହି ମୂଳ ପୁରୁଷ ହେଉଛନ୍ତି ଅଂନନ୍ତନାମୀ ଜଗଦୀଶ । ଏହି ନାମ ରୂପାତ୍ମକ ଶକ୍ତି । ଏହି ବ୍ରହ୍ମ ଶକ୍ତିରୁ ମାୟାର ଉଦ୍‌ଭବ କିପରି ହେଲା ସେହି କଥା ହିଁ ବୁଝାଇବି ।

ଯାଦୁକର ଯେପରି ନଜରବନ୍ଦୀ ଦ୍ୱାରା ସଙ୍ଗେ ସଙ୍ଗେ ମାଟିକୁ ମିଠେଇ, ମଞ୍ଜିରୁ ଗଛ କରି ଏବଂ ଶୂନ୍ୟ ଶୂନ୍ୟରୁ ପାରା ବାହାର କରି ନାନା ଆଶ୍ଚର୍ଯ୍ୟଜନକ ଖେଳ ସବୁ ଦେଖାଇଥାଏ, ସେହିଭଳି ପରଂବ୍ରହ୍ମ ପରମାତ୍ମା ମନୁଷ୍ୟକୁ ମାୟାରେ ମୋହିତ କରି ଏହି ମାୟାବୀ ସୃଷ୍ଟିର ଖେଳ ଦେଖାଇବାରେ ଲାଗିଛନ୍ତି । ଆକାଶ ଶୂନ୍ୟ ଓ ନିର୍ମଳ ଥିଲେ ମଧ୍ୟ ଯେପରି ବାୟୁର ଚଞ୍ଚଳତା ଅନୁଭବ କରାଯାଇଥାଏ, ସେହିଭଳି ନିର୍ଗୁଣ ନିରାକାର ବ୍ରହ୍ମରେ ସଗୁଣ ସାକାର ମାୟାର ଆଭାସ ହୋଇଥାଏ । ଯେପରି ବାୟୁ ଫଳରେ ଆକାଶର ଖଣ୍ଡନ ହୋଇ ନ ଥାଏ, ସେହିଭଳି ମାୟା ଯୋଗୁ ନିର୍ଗୁଣ ବ୍ରହ୍ମର ବ୍ୟାପକତା କ୍ଷୁଣ୍ଣ ହୋଇ ନ ଥାଏ । ବାୟୁ ଯେପରି ପୁରାତନ ନୁହେଁ, ସେହିଭଳି ମୂଳମାୟା । ବାୟୁକୁ ଯଦି ସତ୍ୟ ବୋଲି ସ୍ୱୀକାର କରାଯାଏ, ତାହାହେଲେ ବାୟୁତ ଆକାଶରେ ଏବଂ ମାୟା ବ୍ରହ୍ମରେ ବିଲୀନ ହୋଇଯାଇଥାଏ । ତେଣୁ ଯେପରି ବାୟୁର ରୂପ, ସେହିଭଳି ମାୟାର ରୂପ । ଯେପରି ବାୟୁକୁ ଅନୁଭବ କରାଗଲେ ମଧ୍ୟ ଏହାକୁ ଧରି ହୁଏନା, ସେହିଭଳି ମାୟା ଭାସିତ ହେଲେ ମଧ୍ୟ ଏହାର ଅସ୍ତିତ୍ୱ ନାହିଁ । ବାୟୁ ଯୋଗୁଁ ଅଦୃଶ୍ୟ ଆକାଶ ଯେପରି ଦୃଶ୍ୟମାନ ହୋଇଥାଏ; ସେହିଭଳି ବ୍ରହ୍ମଯୋଗୁଁ ସୃଷ୍ଟିରୂପୀ ମାୟା ଦୃଷ୍ଟିଗୋଚର ହୋଇଥାଏ । ଯେପରି ନିଶ୍ଚଳ ଆକାଶ ମେଘ ଯୋଗୁଁ ଚଳାୟମାନ ଦେଖା ଯାଇଥାଏ, ସେହିଭଳି ବ୍ରହ୍ମ ନିଶ୍ଚଳ, ନିର୍ଗୁଣ ହୋଇଥିଲେ ମଧ୍ୟ ଚଞ୍ଚଳ, ସଗୁଣ ସାକାର ଦେଖାଯାଇଥାଏ । ବାଦଲ ଯୋଗୁଁ ଚନ୍ଦ୍ର ଦୌଡୁଥିବା ଭଳି ମନେ ହୁଏ । ବାସ୍ତବରେ ଚନ୍ଦ୍ର ନିଶ୍ଚଳ, ବାଦଲ ହିଁ ଚାଲିବାରେ ଲାଗିଥାଏ । ସେହିଭଳି ନିଶ୍ଚଳ ନିର୍ଗୁଣ ପରମାତ୍ମାଙ୍କ ସ୍ୱରୂପ । ମାୟା ଯୋଗୁଁ ଏହା ସଗୁଣ ଜଣାପଡ଼ିଥାଏ । କିନ୍ତୁ ଏହା କଳ୍ପନା ମାତ୍ର ।

ଯାଦୂକରର ନଜରବନ୍ଦୀ ଖେଳ ପରି ଏହି ସୃଷ୍ଟି ରୂପୀ ମାୟା ମଧ୍ୟ ଚଞ୍ଚଳ ଏବଂ ଅସତ୍ୟ । କିନ୍ତୁ ବ୍ରହ୍ମ ନିଶ୍ଚଳ ଓ ସତ୍ୟ । ମାୟାର ସ୍ୱାଭାବିକ ଗୁଣ ହେଉଚି ଅସତ୍ୟକୁ ସତ୍ୟ, ନିର୍ଗୁଣକୁ ସଗୁଣ, ନିରାକାରକୁ ସାକାର ଭାବେ ଦେଖାଇବା । ମାୟା ବୋଲି ବସ୍ତୁତଃ କିଛି ନାହିଁ ତଥାପି ଏହା ସତ୍ୟ ଭଳି ପ୍ରତୀତ ହୋଇଥାଏ ଏବଂ ବାଦଲ ଭଳି ଏହା ଉତ୍ପନ୍ନ ହୋଇ ନଷ୍ଟ ହୋଇଥାଏ । ବ୍ରହ୍ମର ସ୍ୱତଃସ୍ଫୁର୍ତ୍ତ ଭାବ ହେଲା ଏକରୁ ଅନେକ ହେବା ପାଇଁ । ଏହି ସ୍ୱତଃସ୍ଫୁର୍ତ୍ତି ହିଁ ମାୟା । ଗୁଣ ତ ମାୟାର ଖେଳ । ତେଣୁ ଯାହାସବୁ ଦେଖାଯାଇଥାଏ ତାହା ମାୟାଜାଲ ।

ଆକାଶ, ବାୟୁ, ତେଜ, ଜଳ ଓ ପୃଥ୍ୱୀ—ଏହି ପାଞ୍ଚୋଟି ତତ୍ତ୍ୱ ମାୟାଠାରେ ପ୍ରାରମ୍ଭରୁ ରହିଥାଏ । ଓଁକାର ମଧ୍ୟ ବାୟୁର ଗତି । ଏହାକୁ ସମର୍ଥ ଜ୍ଞାନୀ ପୁରୁଷ ହିଁ ଜାଣି ଥାଆନ୍ତି । ମାୟାର ଚଞ୍ଚଳତା ହିଁ ବାୟୁ । ସୂକ୍ଷ୍ମତତ୍ତ୍ୱ ହିଁ କ୍ରମଶଃ ସ୍ଥୂଳ ହୋଇଥାଏ । ଯେଉଁ ପଞ୍ଚଭୂତ ପ୍ରାରମ୍ଭରୁ ଅବ୍ୟକ୍ତ ଥିଲା, ସୃଷ୍ଟି ରଚନା ପରେ ଏହା ବ୍ୟକ୍ତ ହୋଇପଡ଼ିଲା । ମାୟାର ସ୍ୱରୂପ ମଧ୍ୟ ପଞ୍ଚ-ଭୌତିକ । ତେଣୁ ଏହାକୁ ଅତି ସୂକ୍ଷ୍ମ ଦୃଷ୍ଟିରେ ହିଁ ଦେଖାଯାଇପାରେ । ଆକାଶ ଓ ବାୟୁର ସଂଯୋଗରେ ମାୟାରେ ସ୍ଫୁର୍ତ୍ତି ବା ଇଚ୍ଛାଶକ୍ତିର ଆବିର୍ଭାବ ଘଟିଲା ଏବଂ ଏହି ଇଚ୍ଛା ଶକ୍ତି କ୍ରମଶଃ ତେଜ ଅର୍ଥାତ୍ ଅଗ୍ନିରେ ପ୍ରକଟିତ ହେଲା । ମାୟାର ମୃଦୁତା ଜଳ ରୂପରେ ବା ଦ୍ରବ୍ୟ ରୂପରେ ପ୍ରକଟିତ ହେଲା ଏବଂ ଏଥିରୁ ଜଳ ଓ ପୃଥ୍ୱୀର ନିର୍ମାଣ ହେଲା । ଏହିଭଳି ଭାବେ ଏହି ସମଗ୍ର ପଞ୍ଚଭୌତିକ ସଂସାର ହେଉଚି ମାୟାର ଖେଳ ।

ଆଦିରେ ମୂଳବ୍ରହ୍ମ, ମଝିରେ ମାୟାରୂପୀ ପଞ୍ଚଭୂତ (ଯାହା ପୃଥ୍ୱୀ, ମୃତ୍ୟୁଲୋକ, ସ୍ୱର୍ଗ, ପାତାଳ ସର୍ବତ୍ର ବ୍ୟାପ୍ତ) ଏବଂ ଶେଷରେ ଏହି ପରଂବ୍ରହ୍ମ । ତେଣୁ କୁହାଯାଏ—

> ସ୍ୱର୍ଗେ ମୃତ୍ୟୌ ପାତାଳେ ବା ଯତ୍‌କିଂଚିତ୍ ସଚରାଚରମ୍
> ସର୍ବଂ ପଞ୍ଚଭୂତକଂ ରାମ ଷଷ୍ଠଂ କିଂଚିନ୍ନ ଦୃଶ୍ୟତେ ॥

ପରବର୍ତ୍ତୀ ସମାସରେ ମାୟା କିପରି ପଞ୍ଚଭୂତାତ୍ମକ ହେଲା, ଏହି ପ୍ରଶ୍ନର ଉତ୍ତର ଦିଆଯିବ ।

## ଚତୁର୍ଥ ସମାସ
## ।। ସୂକ୍ଷ୍ମ ପଞ୍ଚଭୂତ ନିରୂପଣ ।।

ବ୍ରହ୍ମରୁ ମାୟାର ଉଦ୍‌ଭବ କିପରି ହେଲା ପୂର୍ବ ସମାସରେ ବୁଝେଇ ଦିଆଯାଇଛି । ଏହି ମାୟାରୁ ସତ୍ତ୍ୱ, ରଜ, ତମ ଏହି ତ୍ରିଗୁଣର ଉତ୍ପତ୍ତି ଘଟିଲା । ପରେ ତମଗୁଣରୁ ସୃଷ୍ଟି ହେଲା ସୂକ୍ଷ୍ମ ପଞ୍ଚଭୂତ । ଏହିଭଳି ଭାବେ ପ୍ରଥମ ପଞ୍ଚ ମହାଭୂତର ଉତ୍ପତ୍ତି ଏବଂ ଏଥିରୁ ସାରା ସୃଷ୍ଟିର ବିସ୍ତାର ଘଟିଲା । ସୃଷ୍ଟିରେ ପଞ୍ଚଭୂତ କିପରି ବିଦ୍ୟମାନ ତାହା ହିଁ ଦେଖାଯାଉ । ଯେଉଁ ବସ୍ତୁ ଜଡ଼ ଓ କଠିନ ତାହା ହେଉଛି ପୃଥ୍ୱୀତତ୍ତ୍ୱ । ଉଷ୍ଣ ଓ ତେଜଯୁକ୍ତ ବସ୍ତୁ ହେଉଚି ଅଗ୍ନିର ଅଂଶ । ଚଞ୍ଚଳତା ଓ ଚେତନା ହେଉଚି ବାୟୁର ଗୁଣ । କୋମଳତା ଏବଂ ଦ୍ରବରୂପ ପଦାର୍ଥ ହେଉଚି ଜଳତତ୍ତ୍ୱ । ଶୂନ୍ୟ ଓ ନିର୍ମଳ ଅବକାଶ ହେଉଚି ଆକାଶ । ପଞ୍ଚଭୂତର ଏହିସବୁ ଲକ୍ଷଣକୁ ମନେ ରଖ । ଏହି ପଞ୍ଚଭୂତ ମଧ୍ୟରୁ ପ୍ରତ୍ୟେକ ଭୂତ (ତତ୍ତ୍ୱ)ରେ ଅନ୍ୟ ତତ୍ତ୍ୱ କିପରି ସନ୍ନିହିତ ତାହା କହୁଚି ଶୁଣ । ମୂଳ ମାୟା (ବ୍ରହ୍ମ)ରେ ତ୍ରିଗୁଣାତୀତ— ଏହାକୁ ସୂକ୍ଷ୍ମ ଭାବରେ ଜାଣିବା ଆବଶ୍ୟକ ।

(୧) ଆକାଶରେ ପଞ୍ଚଭୂତ—ଆକାଶର ଅନ୍ୟ ନାମ ଅବକାଶ । ଅବକାଶର ଅର୍ଥ ହେଉଚି ଶୂନ୍ୟ । ଶୂନ୍ୟ ହିଁ ଅଜ୍ଞାନ । ଅଜ୍ଞାନ ହିଁ ଜଡ଼ତାର ଲକ୍ଷଣ । ଆକାଶ ସ୍ୱୟଂ ମଧ୍ୟ ମୃଦୁ ଅର୍ଥାତ୍ କୋମଳ । କୋମଳତା ହେଉଚି ଜଳର ଲକ୍ଷଣ ଅର୍ଥାତ୍ ଆକାଶରେ ମଧ୍ୟ ରହିଚି ଜଳ । ଅଜ୍ଞାନ ଯୋଗୁଁ ଅଦୃଶ୍ୟ, ଶୂନ୍ୟ ଆକାଶ ଭାସମାନ । ଆକାଶରେ ମଧ୍ୟ ତେଜ ତତ୍ତ୍ୱ ରହିଛି । ବାୟୁ ଓ ଆକାଶ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଦୁହେଁ ମୂଳତଃ ସ୍ତବ୍‌ଧ ଏବଂ ଆକାଶରେ ବାୟୁ ମିଶ୍ରିତ । ଏହିଭଳି ଭାବେ ଆକାଶ ତତ୍ତ୍ୱରେ ପଞ୍ଚତତ୍ତ୍ୱର ସମାବେଶ ।

(୨) ବାୟୁରେ ପଞ୍ଚଭୂତ—ବାୟୁର ପ୍ରକୋପରେ ବଡ଼ ବଡ଼ ବୃକ୍ଷ ମଧ୍ୟ ଉପୁଡ଼ି ପଡ଼ିଥାଏ । କାରଣ ବାୟୁରେ ନିହିତ ଅଛି ଶକ୍ତି । ଶକ୍ତି ସୂକ୍ଷ୍ମ ରୂପରେ ପୃଥ୍ୱୀର ଅଂଶ । ବାୟୁରେ ଯେଉଁ ମୃଦୁତା ବା କୋମଳତା ରହିଛି ତାହା ହେଉଚି ଜଳର ଲକ୍ଷଣ । ବାୟୁର ଆଭାସ ହିଁ ତେଜ । ବାୟୁରେ ତ ଆକାଶ ମିଳେଇ

ରହିଛି ଏବଂ ଚଞ୍ଚଳତା ବାୟୁର ଗୁଣ । ଏହିଭଳି ଭାବେ ବାୟୁ ତତ୍ତ୍ୱରେ ମଧ ପଞ୍ଚତତ୍ତ୍ୱ ନିହିତ ।

(୩) ତେଜ (ଅଗ୍ନି)ରେ ପଞ୍ଚଭୂତ— ତେଜର ଆଭାସ ହେଉଚି ପୃଥ୍ୱୀର ଗୁଣ । ଆଭାସରେ ମୃଦୁତା—ତାହା ଜଳର ଲକ୍ଷଣ । ତେଜରେ ତେଜ (ଆଲୋକ)ତ ସ୍ୱୟଂସିଦ୍ଧ । ଏଥିରେ ଚଞ୍ଚଳ ବାୟୁ ଏବଂ ବାୟୁ ସଂଶ୍ଳିଷ୍ଟ ଆକାଶର ମଧ ସମାବେଶ ଘଟିଚି ।

(୪) ଅପ (ଜଳ)ରେ ପଞ୍ଚଭୂତ— ଜଳର ମୃଦୁତା ହେଉଚି ଏହାର ସ୍ୱୟଂସିଦ୍ଧ ସ୍ୱରୂପ । ଏହି ମୃଦୁତାରେ ମଧ ବରଫ ଭଳି କଠିନତା ଦେଖା ଦେଇଥାଏ । କଠିନତା ହେଉଚି ପୃଥ୍ୱୀର ଲକ୍ଷଣ । ଜଳର ମୃଦୁତାରେ ତେଜ ମଧ ସମାବିଷ୍ଟ । ଜଳର ଶକ୍ତିଦ୍ୱାରା ବହୁ ବଡ଼ ବଡ଼ କାର୍ଯ୍ୟ ସମ୍ପନ୍ନ ହୋଇଥାଏ । ଯେ କୌଣସି କଠିନ କର୍ମ ସମ୍ପନ୍ନ କରିବା ତେଜର ଲକ୍ଷଣ । ଜଳର କୋମଳତାରେ ଯେଉଁ ସ୍ତବ୍‌ଧତା ଏବଂ ନୀରବତା, ତାହା ବାୟୁର ଲକ୍ଷଣ । ଜଳରେ ମଧ ଆକାଶତତ୍ତ୍ୱ ରହିଛି । କାରଣ ଏହା ସର୍ବତ୍ର ବ୍ୟାପ୍ତ । ତେଣୁ ଜଳ-ତତ୍ତ୍ୱରେ ମଧ ପଞ୍ଚତତ୍ତ୍ୱର ମିଶ୍ରଣ ଘଟିଥିବା ନିଶ୍ଚିତ ।

(୫) ପୃଥ୍ୱୀତତ୍ତ୍ୱରେ ପଞ୍ଚଭୂତ— ଏବେ ପୃଥ୍ୱୀ କଥା ଦେଖାଯାଉ । ଏହା କଠିନ ଓ ସ୍ଥୂଳ । ଏହି କଠିନତା ଓ ସ୍ଥୂଳତା ଭିତରେ ମଧ ରହିଛି କୋମଳତା । ଜଳତତ୍ତ୍ୱର କୋମଳତା ଯୋଗୁଁ ହିଁ ଏହା ସମ୍ଭବ ହୋଇପାରିଛି । ପୃଥ୍ୱୀରେ ଯେଉଁ କଠିନତାର ଆଭାସ ହୋଇଥାଏ ତାହା ତେଜତତ୍ତ୍ୱର ପ୍ରଭାବ । କଠିନତା ଭିତରେ ଯେଉଁ ପ୍ରତିରୋଧ ବା ପ୍ରତିକାର କରିବା ଶକ୍ତି ନିହିତ— ତାହା ହେଉଚି ବାୟୁତତ୍ତ୍ୱ । ଏହାକୁ ଆକାଶ ମଧ କୁହାଯାଇପାରେ । କାରଣ ଆକାଶ ସବୁ ତତ୍ତ୍ୱ ସହିତ ଓତଃପ୍ରୋତଃ ଭାବେ ଜଡ଼ିତ । ଅର୍ଥାତ୍ ପୃଥ୍ୱୀ-ତତ୍ତ୍ୱରେ ମଧ ପଞ୍ଚତତ୍ତ୍ୱ ବିଦ୍ୟମାନ ।

ଉପରୋକ୍ତ ବିଶ୍ଳେଷଣରୁ ଜଣାଯାଉଚି ଯେ ପଞ୍ଚଭୂତ ଭିତରୁ ପ୍ରତ୍ୟେକ ଭୂତତ୍ତ୍ୱରେ ବାକୀ ଚାରୋଟି ଭୂତ (ତତ୍ତ୍ୱ) ସମାବିଷ୍ଟ । କିନ୍ତୁ ସ୍ଥୂଳ ଦୃଷ୍ଟିରେ ଏହା ଅନୁଭବ କରାଯାଇ ନ ଥାଏ । ତେଣୁ ଏ ସମ୍ପର୍କରେ ମନରେ ସନ୍ଦେହ ରହିଥାଏ । ଏହି ଭ୍ରମ ହେତୁ ବହୁ ବିଦ୍ୱାନ ଏ ସମ୍ପର୍କରେ ବୃଥା ବିବାଦ କରିବାରେ ଲାଗିଥାନ୍ତି ।

ଆମେ ବିଶ୍ଳେଷଣରୁ ଜାଣିପାରୁଛେ ଯେ ବାୟୁରେ ପାଞ୍ଚଟିଯାକ ତତ୍ତ୍ୱ ନିହିତ ଏବଂ ଏହି ପଞ୍ଚଭ୍ରମାତ୍ମକ ବାୟୁ ମାୟାର ମୂଳ ସ୍ୱରୂପ । ମାୟା ଏବଂ ସୂକ୍ଷ୍ମ ତ୍ରିଗୁଣ (ସତ୍ତ୍ୱ, ରଜ, ତମ) ସବୁ ହେଉଚି ପଞ୍ଚଭୂତାତ୍ମକ । ସୂକ୍ଷ୍ମ ବିଚାର କରା ନଯିବା ପର୍ଯ୍ୟନ୍ତ ଏ ସମ୍ପର୍କରେ ସନ୍ଦେହ କରିବା ମୂର୍ଖତା ।

ତିନିଗୁଣ ଯୋଗୁଁ ହିଁ ପଞ୍ଚମହାଭୂତ ସ୍ଥୂଳ ଓ ବ୍ୟକ୍ତ । ଅନ୍ୟ ଭାବରେ କହିବାକୁ ଗଲେ ତିନୋଟିଯାକ ଗୁଣ ହିଁ ପଞ୍ଚମହାଭୂତ ରୂପରେ ବ୍ୟକ୍ତ । ଏହିଥିରୁ ପିଣ୍ଡ ଓ ବ୍ରହ୍ମାଣ୍ଡର ରଚନା । ଏହି ପଞ୍ଚଭୂତର ସମ୍ମିଶ୍ରଣ ଓ ସଂଯୋଗ ଯୋଗୁଁ ହିଁ ଏହି ବ୍ରହ୍ମାଣ୍ଡର ବିସ୍ତାର । ପଞ୍ଚଭୂତ ଯେ ମାୟାର ଖେଳ— ଏହି ସତ୍ୟ ତଥ୍ୟକୁ ସୂକ୍ଷ୍ମ ଦୃଷ୍ଟିରେ ବିଚାର କରିବା ଉଚିତ ।

ପଞ୍ଚଭୂତ ପୂର୍ବରୁ କେଉଁଠି କିଛି ହେଲେ ନ ଥିଲା । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ପୃଥ୍ୱୀ, ମେରୁ, ସପ୍ତ ସମୁଦ୍ର—ସବୁକିଛି ପଞ୍ଚଭୂତ ପରେ ହିଁ ଉତ୍ପନ୍ନ । ଅନେକ ଲୋକ, ଅନେକ ସ୍ଥାନ, ସୂର୍ଯ୍ୟ, ଚନ୍ଦ୍ର, ତାରାମଣ୍ଡଳ, ସପ୍ତଦ୍ୱୀପ, ଚଉଦ ଭୁବନ, ଶେଷନାଗ, କୂର୍ମ, ସପ୍ତପାତାଳ, ଏକୋଇଶ ସ୍ୱର୍ଗ, ଅଷ୍ଟଦିଗପାଳ, ତେତିଶ କୋଟି ଦେବଦେବୀ, ବାର ଆଦିତ୍ୟ, ଏଗାର ରୁଦ୍ର, ନଅ ନାଗ, ସପ୍ତର୍ଷି, ଅନେକ ଅବତାର, ମନୁ ଏବଂ ଲକ୍ଷ ଲକ୍ଷ ପ୍ରକାରର ଜୀବଜନ୍ତୁ— ସମସ୍ତେ ପ୍ରକଟିତ ହୋଇଚନ୍ତି ପଞ୍ଚଭୂତ ପରେ ।

ସାରାଂଶ—ସମଗ୍ର ବ୍ରହ୍ମାଣ୍ଡ ବିସ୍ତାରର ମୂଳ ହେଉଚି ମାୟା ।

ଏଥିରେ ପଞ୍ଚଭୂତର ବର୍ଣ୍ଣନା ସବିଶେଷ ଭାବେ କରାଗଲା । ଶ୍ରୋତାମାନେ ଏହା ଉପରେ ଭଲ ଭାବରେ ମନନ କରିବା ଉଚିତ । ତାହାହେଲେ ସମସ୍ତେ ପଞ୍ଚଭୂତାତ୍ମକ ବ୍ରହ୍ମାଣ୍ଡର ସବୁ କଥା ବୁଝିପାରିବେ । ସେମାନେ ସ୍ପଷ୍ଟଭାବେ ବୁଝିପାରିବେ ଯେ ଜଗତ ମିଥ୍ୟା; ସବୁ ହେଉଚି ଭ୍ରମ । ମୂଳ ବସ୍ତୁ ହେଉଚି 'ବ୍ରହ୍ମ' । ତାହାହିଁ ସତ୍ୟ । ତାକୁ ଖୋଜିବା ଆବଶ୍ୟକ । ଯେପରି ମୁଖଶାଳା ଅତିକ୍ରମ କରିବା ପରେ ଦେବତାଙ୍କ ଦର୍ଶନ ମିଳିଥାଏ, ସେହିଭଳି ଦୃଶ୍ୟ ଜଗତକୁ ଭୁଲିପାରିଲେ ହିଁ ବ୍ରହ୍ମଦର୍ଶନ ସମ୍ଭବ । ପରବର୍ତ୍ତୀ ସମାସରେ ପଞ୍ଚଭୂତର ଲକ୍ଷଣ ବିଶଦଭାବେ ବର୍ଣ୍ଣନା କରାଯିବ ।

## ପଞ୍ଚମ ସମାସ
## ।। ସ୍ଥୂଳ ପଞ୍ଚମହାଭୂତ ନିରୂପଣ ।।

ମୁଁ ଏହି ସମାସରେ ପଞ୍ଚ ମହାଭୂତର ଲକ୍ଷଣ ପ୍ରାଞ୍ଜଳ ଭାବରେ ବୁଝେଇବାକୁ ଚାହୁଁଚି, ତା ଫଳରେ ସାଧାରଣ ଲୋକେ ମଧ୍ୟ ବିଷୟଟିକୁ ଭଲଭାବରେ ବୁଝିପାରିବେ । ଏହି ପଞ୍ଚମହାଭୂତ ପରସ୍ପର ମିଶି ରହିଛନ୍ତି ଏବଂ ସେମାନଙ୍କର ସଂଯୋଗ ଦ୍ୱାରା ସ୍ଥୂଳ ପଞ୍ଚମହାଭୂତର ଉତ୍ପତ୍ତି ଘଟିଛି । ସୃଷ୍ଟିର କୌଣସି ସଜୀବ କିମ୍ୱା ନିର୍ଜୀବ ପଦାର୍ଥରେ ଏହି ପଞ୍ଚମହାଭୂତକୁ ପୃଥକ ଭାବେ ପାଇବା ଅସମ୍ଭବ । ସବୁଠି ଏଗୁଡ଼ିକୁ ଏକତ୍ର ଦେଖିବାକୁ ମିଳିବ । ବର୍ତ୍ତମାନ ଏହି ପଞ୍ଚଭୂତ ବା ତତ୍ତ୍ୱକୁ ଅଲଗା ଅଲଗା ଶ୍ରେଣୀରେ ବିଭକ୍ତ କରି ମୁଁ ବର୍ଣ୍ଣନା କରୁଛି ।

(୧) ପୃଥ୍ୱୀ ତତ୍ତ୍ୱ— ପର୍ବତ, ପାଷାଣ, ନାନା ରଙ୍ଗର ମାଟି, ବାଲି, ଗୃହ, ନଗର, ମନ୍ଦିର, ସୁନ୍ଦର ଉପବନ, ସପ୍ତଦ୍ୱୀପ, ନିର୍ଜନ ବନ, ନାନା ମୂର୍ତ୍ତିରେ ନିର୍ମିତ ଦେବଦେବୀ, ରାଜା ମହାରାଜା, ନାନା ଭାଷା, ନାନା ରୀତିନୀତି, ଚୌରାଶି ଲକ୍ଷ ପ୍ରକାରର ଜୀବଜନ୍ତୁ, ବୃକ୍ଷଲତା ଆଦିକୁ ନେଇ ବସୁନ୍ଧରା ବା ପୃଥ୍ୱୀତତ୍ତ୍ୱ । ଏହି ସବୁଥିରେ ଅନ୍ୟ ଚାରୋଟି ତତ୍ତ୍ୱ ଅଳ୍ପାଧିକ ପରିମାଣରେ ରହିଥିଲେ ମଧ୍ୟ ପୃଥ୍ୱୀତତ୍ତ୍ୱ ହିଁ ପ୍ରଧାନ । ଜଡ଼ତା ଓ କଠୋରତା ହେଉଚି ପୃଥ୍ୱୀତତ୍ତ୍ୱର ଅଂଶ । ସବୁ ପ୍ରକାର ଧାତୁ, ବିବିଧ ରତ୍ନ, କାଷ୍ଠ ଆଦି ଯେତେ ଜଡ଼ବସ୍ତୁ ସବୁଥିରେ ପୃଥ୍ୱୀ-ତତ୍ତ୍ୱ ହିଁ ପ୍ରଧାନ ।

(୨) ଅପ (ଜଳ) ତତ୍ତ୍ୱ— ବାମ୍ପି, କୂଅ, ସରୋବର, ଅନେକ ନଦୀ, ନିର୍ଝର, ସପ୍ତସାଗର ଓ ମେଘ ଆଦି ହେଉଚି ଜଳପ୍ରଧାନ । ସେହିଭଳି ଭାବେ ମଦ୍ୟ, ଦୁଗ୍ଧ, ଦହି, ଘିଅ, ଆଖୁରସ ଓ ଶୁଦ୍ଧ ଜଳ ହେଉଚି ଜଳାଂଶ । ଜଳ ମଧ୍ୟରୁ କେତେକାଂଶ ରହିଛି ଭୂଗର୍ଭରେ ଏବଂ ଆଉ କେତେକ ଉପରେ । ଅନେକ ବୃକ୍ଷର ରସ, ମହୁ, ପାରା, ଅମୃତ ଓ ତୈଳାଦି ଯେଉଁସବୁ ଜିନିଷ ତରଳ, ନରମ ଓ ଶୀତଳ—ସେ ସବୁ ଜଳପ୍ରଧାନ । ଶୁକ୍ର, (ବୀର୍ଯ୍ୟ), ଲାଳ, ରକ୍ତ, ଝାଳ, କଫ ଏ ସବୁ ମଧ୍ୟ ଜଳତତ୍ତ୍ୱରୁ ଉତ୍ପନ୍ନ ।

(୩) ତେଜ (ଅଗ୍ନି) ତତ୍ତ୍ୱ— ଚନ୍ଦ୍ର, ସୂର୍ଯ୍ୟ, ତାରାମଣ୍ଡଳ, ଦିବ୍ୟ ସତେଜ ଦେହ, ଆକାଶରେ ଚମକୁଥିବା ବିଜୁଳି, ସମୁଦ୍ରରେ ସୃଷ୍ଟି ହେଉଥିବା ବଡ଼ବାନଳ, ଶିବଜୀଙ୍କ ତୃତୀୟ ନେତ୍ରର ଜ୍ୱାଳା, ଜଠରାଗ୍ନି— ଏସବୁ ଅଗ୍ନିତତ୍ତ୍ୱରୁ ସୃଷ୍ଟି । ଯେଉଁ ପଦାର୍ଥ ଜ୍ୟୋତିର୍ମୟ, ତେଜସ୍ୱୀ, ଶୋଧକ, ଉଷ୍ଣ ଏବଂ ପ୍ରଖର ସେ ସବୁ ତେଜ (ଅଗ୍ନି) ତତ୍ତ୍ୱରୁ ଉତ୍ପନ୍ନ ।

(୪) ବାୟୁତତ୍ତ୍ୱ— ବାୟୁର ଗୁଣ ଚୈତନ୍ୟ ଓ ଚଞ୍ଚଳତା । ଯେଉଁ ପ୍ରାଣୀ ଓ ପଦାର୍ଥ ହଲଚଲା, ଯାହାର ଜୀବନ ରହିଛି, ଯାହାର ପ୍ରସାରଣ ଓ ସଙ୍କୁଚନ ଶକ୍ତି ଅଛି— ସେସବୁ ବାୟୁ ପ୍ରଧାନ । ବାୟୁବିନା ସୃଷ୍ଟି ଚଳିନପାରେ । ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ— ଏହି ପଞ୍ଚପ୍ରାଣ ଏବଂ ନାଗ, କୂର୍ମ, କର୍କଶ, ଦେବଦତ୍ତ, ଧନଞ୍ଜୟ— ଏହି ପାଞ୍ଚଟି ଉପପ୍ରାଣ ବାୟୁରେ ନିର୍ମିତ । ପ୍ରାଣବାୟୁର ସ୍ଥାନ ହୃଦୟରେ । ଦିନକରେ ଅର୍ଥାତ୍ ଅଷ୍ଟପ୍ରହରରେ ଜୀବ ୨୧୬୦୦ ଥର ନିଃଶ୍ୱାସ ପ୍ରଶ୍ୱାସ ନେଇଥାଏ । ଅପାନ ବାୟୁର ସ୍ଥାନ ଗୁହ୍ୟ ଓ ମୂତ୍ରଦ୍ୱାର । ଏହାଦ୍ୱାରା ତ୍ୟାଗ କାର୍ଯ୍ୟ ସମ୍ପନ୍ନ ହୋଇଥାଏ । ଉଦାନ ବାୟୁର ସ୍ଥାନ ହେଉଚି କଣ୍ଠ । ଅନ୍ନ ଜଳ ବିଭାଗକରଣ ଏହି କଣ୍ଠ ଦେଇ ହୋଇଥାଏ । ବାୟୁ ହିଁ ସ୍ୱପ୍ନଦର୍ଶନର କାରଣ । ବ୍ୟାନ ବାୟୁ ସମଗ୍ର ଶରୀରରେ ବ୍ୟାପ୍ତ । ଶରୀରର ପ୍ରତିକ୍ଷେତ୍ରରେ ଏହାର ସଞ୍ଚାଳନ । ସମାନବାୟୁର ସ୍ଥାନ ହେଉଚି ନାଭିମଣ୍ଡଳ । ଏହା ଶରୀରର ପ୍ରତିକ୍ଷେତ୍ରକୁ ସମାନ ଭାବରେ ରସ ଯୋଗାଇଥାଏ ।

ପଞ୍ଚ ଉପପ୍ରାଣର କାର୍ଯ୍ୟ ଭିନ୍ନ ଭିନ୍ନ । ନାଗପ୍ରାଣର କାର୍ଯ୍ୟ ହେଉଚି ବାନ୍ତି କରାଇବା, କୂର୍ମପ୍ରାଣର କାର୍ଯ୍ୟ ଆଖିପତାକୁ ଉଠାଇବା, ବନ୍ଦ କରାଇବା, କର୍କଶ (କୃକଳ)ର କାର୍ଯ୍ୟ ହେଉଛି ଛିଙ୍କ କରାଇବା, ଦେବଦତ୍ତର କାମ ହାଇ କରାଇବା ଏବଂ ଧନଞ୍ଜୟର କାର୍ଯ୍ୟ ଦେହକୁ ହୃଷ୍ଟପୁଷ୍ଟ କରାଇବା ।

(୪) ଆକାଶତତ୍ତ୍ୱ— ଆକାଶ ହେଉଚି ଅନ୍ତିମ ତତ୍ତ୍ୱ । ଆକାଶ ପରବ୍ରହ୍ମଙ୍କ ଭଳି ଅଚଳ, ଅଟଳ, ନିର୍ମଳ ଓ ନିଶ୍ଚଳ ।

ଉପରୋକ୍ତ ପୃଥ୍ୱୀ, ଜଳ, ଅଗ୍ନି ଓ ବାୟୁ— ଏହି ଚାରିତତ୍ତ୍ୱର ଅସ୍ତିତ୍ୱ ସେହି ଏକ ଆକାଶରେ । ଆକାଶ ସବୁତତ୍ତ୍ୱ ମଧ୍ୟରେ ଶ୍ରେଷ୍ଠ ଏବଂ ଏହା ସର୍ବବ୍ୟାପକ ତତ୍ତ୍ୱ । ପ୍ରଶ୍ନ କରାଯାଇପାରେ ଯେ ଯଦି ଆକାଶ ସର୍ବଶ୍ରେଷ୍ଠ ତାହାହେଲେ ଏହା ବ୍ରହ୍ମ ବୋଲି ସ୍ୱୀକାର କରାଯିବ ନାହିଁ କାହିଁକି ? ଏହାର ଉତ୍ତର

ହେଉଚି ଆକାଶ ବ୍ରହ୍ମ ହୋଇ ନ ପାରେ । କାରଣ ବ୍ରହ୍ମ ନିର୍ଗୁଣ କିନ୍ତୁ ଆକାଶ ସପ୍ତଗୁଣ ସମ୍ପନ୍ନ । କାମ, କ୍ରୋଧ, ଶୋକ, ମୋହ, ଭୟ, ଅଜ୍ଞାନ ଏବଂ ଶୂନ୍ୟତା— ଏହି ସାତଟି ହେଉଚି ଆକାଶର ସ୍ୱଭାବ । ଶାସ୍ତ୍ରରେ ଆକାଶର ଏହି ସାତୋଟି ଗୁଣର ବର୍ଣ୍ଣନା ପ୍ରାଞ୍ଜଳ ଭାବେ କରାଯାଇଛି । ତେଣୁ ଆକାଶ ଭୂତତତ୍ତ୍ୱ ଏବଂ ବ୍ରହ୍ମସ୍ୱରୂପ ନିର୍ବିକାର, ଅନୁପମ । ଗୁଣ ସପ୍ତଭେଦ ହେତୁ ଆକାଶକୁ ବ୍ରହ୍ମ କୁହାଯାଇ ପାରିବ ନାହିଁ । ଚାଉଳ ଓ ଧଳା ଗୋଡ଼ି, ସ୍ଫଟିକମଣି ଓ ପୋହଳା, ଜଳ ଓ କାଚରେ ଛାଇ ହୋଇଥିବା ଜମି, ଗୁଡ଼ ଓ ଚୁଡ଼ାରେ ବୋଳା ହୋଇଥିବା ପଥର, ସୁନା ଓ ସୁନାରେ ଛାଉଣି ହୋଇଥିବା ପିତ୍ତଳ ଯଦିଓ ଦେଖିବାକୁ ସମାନ, ବା ଏକାପରି— ଏସବୁ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିଥାଏ ।

ଆଗରୁ କୁହାଯାଇଛି ଆକାଶ ହେଉଛି ଭୂତ-ତତ୍ତ୍ୱ । ତେଣୁ ଭୂତ ଓ ପରମାତ୍ମା ଏକ ହେବ କିପରି ? ବ୍ରହ୍ମର କୌଣସି ବର୍ଣ୍ଣ ନାହିଁ, କିନ୍ତୁ ଆକାଶର ବର୍ଣ୍ଣ ନୀଳ । ତେଣୁ ଆକାଶ ଓ ବ୍ରହ୍ମ ଏକ ହେବ କିପରି ?

ଶ୍ରୋତାମାନଙ୍କର ପୁଣି ପ୍ରଶ୍ନ— ଆକାଶ ନିରାକାର ଓ ଅବିନାଶୀ । ଶେଷ ଚାରୋଟିଯାକ ଭୂତ ନଷ୍ଟ ହୋଇଥାଏ କିନ୍ତୁ ଆକାଶର ତ ବିନାଶ ନାହିଁ । ଏହା ମଧ୍ୟ ଅଚଳ ଦେଖାଯାଇଥାଏ । ତାହାହେଲେ ଏହାକୁ ବ୍ରହ୍ମ କୁହାଯିବ ନାହିଁ କାହିଁକି ?

ଉତ୍ତର— ଆକାଶର ଲକ୍ଷଣଗୁଡ଼ିକୁ ମନ ଦେଇ ଶୁଣ । ଆକାଶ ସଗୁଣ । ଏହା ତମୋଗୁଣରୁ ଉତ୍ପନ୍ନ । ତେଣୁ ଏହା କାମ, କ୍ରୋଧ ଆଦି ବିକାରଗ୍ରସ୍ତ ଏବଂ ଏହାର ଶୂନ୍ୟତାର ଅର୍ଥ ହେଉଚି ଅଜ୍ଞାନ । ଅଜ୍ଞାନ ଯୋଗୁଁ କାମ, କ୍ରୋଧ, ମୋହ, ଭୟ ଓ ଶୋକ ଆଦି ବିକାରର ଉତ୍ପନ୍ନ । ଏସବୁର କାରଣ ହେଉଚି ଆକାଶ-ତତ୍ତ୍ୱ । ଯାହାର ଅସ୍ତିତ୍ୱ ନାହିଁ ତାକୁ ଶୂନ୍ୟ କୁହାଯାଇଥାଏ । ଅଜ୍ଞାନୀକୁ ମଧ୍ୟ ହୃଦୟଶୂନ୍ୟ କୁହାଯାଇଥାଏ । ଶୂନ୍ୟ ବା ଅଜ୍ଞାନର ଲକ୍ଷଣ ହେଉଚି ଜଡ଼ତା । ତେଣୁ ଯେଉଁ ଆକାଶ ସଗୁଣ, ଶୂନ୍ୟ ଅର୍ଥାତ୍ ଅଜ୍ଞାନ ବିକାରଗ୍ରସ୍ତ— ତାକୁ ସତ୍‌ସ୍ୱରୂପ ପରଂବ୍ରହ୍ମ କୁହାଯିବ କିପରି ?

ଆକାଶ ଅଜ୍ଞାନ-ମିଶ୍ରିତ । ଆକାଶ ଓ ଅଜ୍ଞାନର ମିଶ୍ରଣ କେବଳ ଜ୍ଞାନ ଦ୍ୱାରା ନଷ୍ଟ ହୋଇଥାଏ । ତେଣୁ ଆକାଶ ମଧ୍ୟ ନଶ୍ୱର ତତ୍ତ୍ୱ । ଯଦିଓ ଆକାଶ ଓ

ବ୍ରହ୍ମସ୍ୱରୂପ ଏକ ଦେଖାଯାଇଥାଏ, ତଥାପି ଦୁହିଁଙ୍କ ଭିତରେ ରହିଥାଏ ଶୂନ୍ୟତାର ପରଦା । ତେଣୁ ଦୁହେଁ ଭିନ୍ନ । ଜାଗ୍ରତ ଓ ସୁଷୁପ୍ତି ଅବସ୍ଥା ଏକାଭଳି ମନେହେଲେ ମଧ୍ୟ ଜ୍ଞାନୀପୁରୁଷ ଏହାର ପାର୍ଥକ୍ୟକୁ ଠିକ୍ ଧରି ପାରିଥାଏ । ମରୀଚିକାକୁ ଦେଖି ମୃଗ ଜଳବୋଲି ଭାବି ଭ୍ରମରେ ପଡ଼ିଥାଏ । କାରଣ ମୃଗ ଏହାର ରହସ୍ୟଭେଦ କରିପାରେ ନାହିଁ ।

ଆପଣମାନଙ୍କୁ ବୁଝାଇବା ପାଇଁ ମୁଁ ଏସବୁ ଦୃଷ୍ଟାନ୍ତ ସଙ୍କେତ ଭାବେ ଦେଉଛି । ମୋର ବିଶ୍ୱାସ, ଏଣିକି ଆପଣମାନେ ବୁଝି ପାରିଛନ୍ତି ଯେ ଭୂତାକାଶ ଓ ଅନନ୍ତ ବ୍ରହ୍ମ ଏକ ହୋଇନପାରେ । ଆକାଶକୁ ଆମ୍ଭେମାନେ ଅଲଗା ଦେଖି ପାରୁଛେ, କିନ୍ତୁ ବ୍ରହ୍ମକୁ ଦେଖିପାରୁଛେ କି ? ବ୍ରହ୍ମସ୍ୱରୂପ ତ ଅନୁଭବର ବିଷୟ । ବ୍ରହ୍ମରେ ଲୀନ ହେଲେ ଯାଇ ବ୍ରହ୍ମ ଦର୍ଶନ ସମ୍ଭବ । ବ୍ରହ୍ମଠାରୁ ଅଲଗା ରହି ବ୍ରହ୍ମାନୁଭବ ହୋଇନପାରେ । କିନ୍ତୁ ଆକାଶକୁ ସମସ୍ତେ ତାଠାରୁ ଅଲଗା ରହି ପ୍ରତ୍ୟକ୍ଷ କରିଥାଆନ୍ତି । ତେଣୁ ବ୍ରହ୍ମକୁ ଆକାଶର ଉପମା ଦିଆଯାଇନପାରେ । ଦୁଧରେ ପାଣି ମିଶିଲେ ମଧ୍ୟ ଦୁଧଭଳି ଦେଖାଯାଇଥାଏ, କିନ୍ତୁ ରାଜହଂସ ଦୁଧରୁ ପାଣିକୁ ଅଲଗା କରିଦେଇଥାଏ । ସେହିଭଳି ଆକାଶ ଓ ବ୍ରହ୍ମ ମଧ୍ୟରେ ପ୍ରଭେଦ କ'ଣ ସନ୍ଥ ସଜ୍ଜନମାନେ ଜାଣନ୍ତି । ତେଣୁ ମୁମୁକ୍ଷୁ ଓ ସାଧକମାନେ ସନ୍ଥ-ସମାଗମରେ ଯୋଗ ଦେଇ ସତ୍‌ସଙ୍ଗରୁ ଜ୍ଞାନଲାଭ କରିବା ଉଚିତ । ଜ୍ଞାନଲାଭ ହେବାମାତ୍ରେ ଯେ କୌଣସି ବ୍ୟକ୍ତି ମାୟାର ଖେଳକୁ ଭଲଭାବେ ଜାଣିପାରିବ ।

ସନ୍ଥସମାଗମ ତଥା ସତ୍‌ସଙ୍ଗଦ୍ୱାରା ହିଁ ମନୁଷ୍ୟର ଅଜ୍ଞାନ ଅନ୍ଧକାର ଦୂର ହୋଇଥାଏ ଏବଂ ଜ୍ଞାନାଲୋକରେ ତାର ସମସ୍ତ ଚେତନା ଉଦ୍‌ଭାସିତ ହୋଇ ଉଠିଥାଏ । ସନ୍ଥ ସାନ୍ନିଧ୍ୟ ଏବଂ ସେମାନଙ୍କ ସଦୁପଦେଶ ଦ୍ୱାରା ହିଁ ମୋକ୍ଷ-ଲାଭର ପଥ ପ୍ରଶସ୍ତ ହୋଇଥାଏ ଏବଂ ମୋକ୍ଷ ସୁଲଭ ହୋଇଥାଏ ।

## ଷଷ୍ଠ ସମାସ
## ।। ଦୃଷ୍ଟିଓ ନିରୂପଣ ।।

ଶ୍ରୋତାଙ୍କ ପ୍ରଶ୍ନ– ସତ୍‌ସଙ୍ଗର ମହିମା କ'ଣ ? ଏହାଦ୍ୱାରା କେତେ-ଦିନରେ ମୋକ୍ଷଲାଭ ହୋଇପାରିବ ?

ବକ୍ତାଙ୍କ ଉତ୍ତର— ସାଧୁସନ୍ଥମାନଙ୍କ ବଚନ ଉପରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରିପାରିଲେ ସଙ୍ଗେ ସଙ୍ଗେ ମୁକ୍ତିଲାଭ ହୋଇପାରେ । କିନ୍ତୁ ମନରେ ବା ଚିତ୍ତରେ ଯଦି ସନ୍ଦେହ ଓ ଦ୍ୱିଧାଭାବ ରହେ ମୁକ୍ତିଲାଭ ଅସମ୍ଭବ ।

ଶ୍ରୋତା— ଚିତ୍ତ ସ୍ଥିର ଓ ନିର୍ମଳ ରହିଲେ ମଧ୍ୟ ଏହା ଅବାଟରେ ଚାଲିଯାଉଛି । ଏଥିଲାଗି ପ୍ରତିକାର କ'ଣ ?

ଉତ୍ତର— ମନରୁ ସମସ୍ତ ଚିନ୍ତାକୁ ହଟାଇ ଏକାଗ୍ରଚିତ୍ତରେ ଏବଂ ଉତ୍ସାହ-ପୂର୍ବକ ସତ୍‌ସଙ୍ଗରେ ବସିବା ଆବଶ୍ୟକ । ପ୍ରତିମୁହୂର୍ତ୍ତରେ ସାବଧାନ ରହି ସମୟର ସଦୁପଯୋଗ କରିବା ଉଚିତ । ସତ୍‌ସଙ୍ଗରେ ଯାହାକିଛି ଶୁଣିବ, ତାର ଅର୍ଥ ସମ୍ପର୍କରେ ପରେ ମନନ କରିବା ଆବଶ୍ୟକ । ଯଦି ମନ ଚଞ୍ଚଳ ହୋଇଉଠେ, ବାରମ୍ବାର ଶ୍ରବଣ ଓ ମନନ କର । ଯିଏ ଅର୍ଥକୁ ମନନ ନକରି ଅର୍ଥାତ୍ ମନରେ ଗ୍ରହଣ ନ କରି କେବଳ ଶ୍ରବଣ କରିଥାଏ, ସେ ଶ୍ରୋତା ନୁହଁ, ସିଏ ମନୁଷ୍ୟରୂପୀ ଖଣ୍ଡେ ପଥର । 'ପଥର' କହୁଚି ବୋଲି ଖରାପ ମନେ କର ନାହିଁ । ପଥରକୁ ଗୁଣ୍ଡ ଗୁଣ୍ଡ କରିଦେଲେ ପୁଣି ଯୋଡ଼ାଯାଇ ନ ପାରେ । କିନ୍ତୁ ମନୁଷ୍ୟର ଦୁର୍ବୁଦ୍ଧି ସତ୍‌ସଙ୍ଗଦ୍ୱାରା ଥରେ ନଷ୍ଟ ହେଲେ ମଧ୍ୟ ପୁଣି ସେହି ଦୁର୍ବୁଦ୍ଧି ଘେରିବସେ । ଏଭଳି ମନୁଷ୍ୟ ଅପେକ୍ଷା ତ ପଥର କୋଟିଏ ଗୁଣରେ ଭଲ । ପଥର ଭିତରେ ହୀରା, ମୋତି, ମାଣିକ୍ୟ, ପ୍ରବାଳ, ଗୋମେଦ, ସ୍ୱର୍ଣମଣି, ସୂର୍ଯ୍ୟକାନ୍ତ, ସୌମ୍ୟକାନ୍ତ ପ୍ରଭୃତି ବହୁ ମୂଲ୍ୟବାନ ପଥର ରହିଚି । ପାଷାଣରେ ବହୁ ଦେବତାଙ୍କ ମୂର୍ତ୍ତି ମଧ୍ୟ ଗଢ଼ାଯାଇଥାଏ । ମନ୍ଦିର, ବାମ୍ପି, କୂପ ଆଦି କାର୍ଯ୍ୟରେ ମଧ୍ୟ ପଥର ବ୍ୟବହୃତ ହୋଇଥାଏ । ତେଣୁ ପାଷାଣ ଭଳି ଉପଯୋଗୀ ବସ୍ତୁ କ'ଣ ଅଛି ? ମନୁଷ୍ୟ ତ ପଥର ତୁଳନାରେ ମୂଲ୍ୟହୀନ କହିଲେ ଚଳେ । ହଁ, କୌଣସି କୌଣସି ପଥର ଶୌଚାଗାର ନିର୍ମାଣ କାର୍ଯ୍ୟରେ ଲାଗିଥାଏ । ଦୁଶ୍ଚିନ୍ତ ବା ପାଷାଣ୍ଡ ମନୋଭାବାପନ୍ନ ଲୋକ ସହିତ ଏହିସବୁ ପାଷାଣର ତୁଳନା କରାଯାଇପାରେ ।

ଦୁଶ୍ଚିନ୍ତ ଫଳରେ ପ୍ରପଞ୍ଚ ଓ ପରମାର୍ଥ ଉଭୟର ହାନି ଘଟିଥାଏ । ଏହାଦ୍ୱାରା କେବଳ ଯେ କାର୍ଯ୍ୟ ବିଗିଡ଼ିଥାଏ ତା ନୁହଁ, ନାନା ଚିନ୍ତା ଜାତ ହୋଇଥାଏ । ବିସ୍ମରଣ ଦେଖାଦିଏ । ଫଳରେ ନାନା ପ୍ରମାଦ ଘଟେ । ଶତ୍ରୁଦ୍ୱାରା ପରାଜିତ ହେବାକୁ ପଡ଼େ ଏବଂ ଜନ୍ମମୃତ୍ୟୁ ଚକ୍ରରୁ ଉଦ୍ଧାର ପାଇବା ଅସମ୍ଭବ ହୋଇପଡ଼େ ।

ଦୁଶ୍ଚିତ୍ତ ମନୁଷ୍ୟ ସାଧନ, ଭକ୍ତି, ଜ୍ଞାନର ଅଧିକାରୀ ହୋଇପାରେନା । ସେ କୌଣସି ସିଦ୍ଧାନ୍ତରେ ଉପଗତ ହୋଇପାରେନା । ଫଳରେ ସେ ଆତ୍ମ-କଲ୍ୟାଣରୁ ବଞ୍ଚିତ ହୋଇପଡ଼େ । ତାର ଶ୍ରବଣ, ମନନ କିଛି ହୋଇପାରେନା । ଦୁଶ୍ଚିତ୍ତ ମନୁଷ୍ୟ ଅବଶ୍ୟ ବାହାରକୁ ଶାନ୍ତଶିଷ୍ଟ ଭାବରେ ବସିଥିବା ଦେଖାଯାଏ, କିନ୍ତୁ ତାର ଚିତ୍ତ ସର୍ବଦା ଚଞ୍ଚଳ ରହିଥାଏ । ଅନ୍ଧ, ଘୁଙ୍ଗା ଓ ପାଗଳଙ୍କ ଭଳି ତାର ଜୀବନ ନଷ୍ଟ ହୋଇଯାଏ । ସେ ଯେତେ ସାବଧାନ ହେଲେ ମଧ୍ୟ ନିଜ ହିତ କ'ଣ ଅହିତ କ'ଣ ଜାଣିପାରେନା । ସେ ସଦ୍‌ଗ୍ରନ୍ଥ ଶୁଣିବା ଲାଗି ବସି ରହିଲେ ମଧ୍ୟ ଶ୍ରବଣ କରିନଥାଏ । ସାର ଅସାର ବିଚାର କରିବାର ବୁଦ୍ଧି ତାର ନଥାଏ । ଏଭଳି ଦୁଶ୍ଚିତ୍ତ ବ୍ୟକ୍ତି ପରମାର୍ଥ ଲାଭ କରିବ କିପରି ?

ଦୁଶ୍ଚିତ୍ତ ମନୁଷ୍ୟର ମନ କେବେ କେବେ ଶାନ୍ତ ରହିଲେ ମଧ୍ୟ, ସେ ଏଭଳି ଅଳସୁଆ ହୋଇ ପଡ଼ିଥାଏ ଯେ ତାର କୌଣସି କାର୍ଯ୍ୟ କରିବାକୁ ଇଚ୍ଛା ହୋଇ ନଥାଏ । ଆଳସ୍ୟ ହେତୁ ତାର ଆଚାର ବିଚାର ଭ୍ରଷ୍ଟ ହୋଇଯାଏ । ଭଲ କଥାସବୁ ପାସୋର ଯାଏ । କୌଣସି କଥା ଶୁଣିବାକୁ ମନ ଲାଗେ ନାହିଁ । ପରମାର୍ଥ ପ୍ରତି ରୁଚି ରହେ ନାହିଁ । ନିତ୍ୟନିୟମ, ଅଧ୍ୟୟନ ଆଦି କିଛି ହୋଇ ପାରେନା । ଆଳସ୍ୟ ଦିନୁଦିନ ବଢ଼ିବାରେ ଲାଗେ । ଏଭଳି ବ୍ୟକ୍ତିର ବିବେକ ନଷ୍ଟ ହୋଇଯାଏ । କାମନା ବାସନା ବଢ଼ିବାରେ ଲାଗେ । ବୁଦ୍ଧି ସ୍ଥିର ରହେନା । ନିଦ୍ରା ବଳବାନ ହୋଇ ଉଠେ । ଆୟୁଷ କମିଯାଏ । ନିଦ୍ରା ଓ ଆଳସ୍ୟ ହେଉଚି ଦୁଶ୍ଚିତ୍ତ ତଥା ମୂର୍ଖମନୁଷ୍ୟର ଲକ୍ଷଣ । ଯାହାଠି ଏହି ତିନୋଟିଯାକ ଲକ୍ଷଣ ରହିଥାଏ ଶ୍ରବଣ-ନିରୂପଣ ହେବ କିପରି ? ଏଭଳି ବ୍ୟକ୍ତି ଭୋକ ଲାଗିବାମାତ୍ରେ ପେଟେ ଖାଇ ସଙ୍ଗେ ସଙ୍ଗେ ଶେଯରେ ଗଡ଼ିପଡ଼େ । ଚାହୁଁ ଚାହୁଁ ତା ଆଖିକୁ ନିଦ ମାଡ଼ି ଆସେ । ନିଦରୁ ଉଠିଲେ ପୁଣି ଦୁଶ୍ଚିନ୍ତାର ଶିକାର ହୋଇପଡ଼େ । ସେ ହେବେହେଲେ ଶାନ୍ତମନରେ ସଦ୍‌ସଙ୍ଗରେ ବସି ଶ୍ରବଣ କରିପାରେନା । ଫଳରେ ଆତ୍ମ-ହିତରୁ ବଞ୍ଚିତ ହୋଇପଡ଼େ । ମାଙ୍କଡ଼ ହାତରେ ଅଳଙ୍କାର କିମ୍ବା ପାଗଳ ହାତରେ ଧନ ପଡ଼ିଲେ ଯେପରି ତାହାର ଉପଯୋଗ ହୋଇନପାରେ, ସେହିଭଳି ଦୁଶ୍ଚିତ୍ତ ମଣିଷ ପକ୍ଷରେ ଶ୍ରବଣ-ନିରୂପଣ ନିରୂପଯୋଗୀ ।

ସଦ୍‌ସଙ୍ଗଦ୍ୱାରା କେତେ ସମୟରେ ମୁକ୍ତିମିଳି ପାରିବ ସେହିକଥା କହୁଚି ସାବଧାନ ହୋଇ ଶୁଣ । ସ୍ପର୍ଶମଣିର ସ୍ପର୍ଶରେ ଲୁହାକୁ ସୁନା ହେବା ପାଇଁ ଏବଂ

ବର୍ଷାପାଣି ସାଗର ବା ଗଙ୍ଗା ଦେହରେ ବିଲୀନ ହେବା ପାଇଁ ଯେତିକି ସମୟ ଲାଗିଥାଏ, ଯିଏ ଆତ୍ମହିତ ଲାଗି ତତ୍‌ପର, ଯାହାର ହୃଦୟ ନିର୍ମଳ, ସେଭଳି ସାଧକକୁ ସତ୍‌ସଙ୍ଗରେ ବସିବା ପରେ ମୋକ୍ଷ ଲାଭ ଲାଗି ସେତିକି ସମୟ ଲାଗିଥାଏ । ସତ୍‌ସଙ୍ଗର ପ୍ରକୃତ ଅଧିକାରୀ ବ୍ୟକ୍ତିକୁ ତତ୍‌କାଳ ମୋକ୍ଷ ମିଳିଥାଏ । କିନ୍ତୁ ଅନ୍ୟ ଅଜ୍ଞାନୀ ଦୁଷ୍ଟିତ୍ତ ବ୍ୟକ୍ତି ମୋକ୍ଷର ପରିଚୟ ସୁଦ୍ଧା ପାଇପାରେନା ।

ମୁମୁକ୍ଷୁ ଶିଷ୍ୟର ପ୍ରଜ୍ଞା (ବିବେକ) ହିଁ ମୁଖ୍ୟବସ୍ତୁ । ପ୍ରଜ୍ଞାବାନ୍ ଅନନ୍ୟ ଶିଷ୍ୟ ପକ୍ଷରେ ମୋକ୍ଷପ୍ରାପ୍ତି ଲାଗି ମୁହୂର୍ତ୍ତେ ବି ବିଳମ୍ବ ଘଟିନଥାଏ । ବିନା ପ୍ରଜ୍ଞାରେ କୌଣସି ବିଷୟର ଅର୍ଥ ସମ୍ପର୍କରେ ଜ୍ଞାନ ହୋଇନଥାଏ ଏବଂ ଅନନ୍ୟ ଭାବ ବିନା କୌଣସି ବସ୍ତୁର କଳନା ସମ୍ଭବ ହୋଇନଥାଏ । ଯାହାର ପ୍ରଜ୍ଞାନ ଏବଂ ସମସ୍ତଙ୍କ ପ୍ରତି ଶ୍ରଦ୍ଧାଭାବ ଥାଏ, ତାର ଦେହାଭିମାନ ନଷ୍ଟ ହୋଇ ଯାଇଥାଏ ଏବଂ ତାର ସଙ୍ଗେ ସଙ୍ଗେ ବ୍ରହ୍ମପ୍ରାପ୍ତି ଘଟିଥାଏ । ସତ୍‌ସଙ୍ଗଦ୍ୱାରା ସଦ୍‌ଗତି ଲାଭ ଲାଗି ସାମାନ୍ୟ ବିଳମ୍ବ ହୋଇ ନ ଥାଏ । ଏହା ଅନାୟାସରେ ହୋଇଯାଏ । ପ୍ରକୃତ ଭକ୍ତ ସାମାନ୍ୟ ସାଧନାଦ୍ୱାରା ମଧ୍ୟ ମୋକ୍ଷ ଲାଭ କରିଥାଏ । ସତ୍‌ସଙ୍ଗ ଦ୍ୱାରା ବିବେକ-ଦୃଷ୍ଟି ଲାଭ ହୁଏ । ତଥାପି ସାଧନାକୁ ଛାଡ଼ିବା ଉଚିତ ନୁହଁ ।

ଆଗାମୀ ସମାସରେ ମୋକ୍ଷ କ'ଣ, ବ୍ରହ୍ମ କ'ଣ, ଏହା ଲାଭ କରିବା ଲାଗି କିପରି ସତ୍‌ସଙ୍ଗ ଆବଶ୍ୟକ— ସେହିକଥା ବର୍ଣ୍ଣନା କରାଯିବ ।

## ସପ୍ତମ ସମାସ
## ।। ମୋକ୍ଷ ବିବେଚନ ।।

ମନୁଷ୍ୟ ନାନା ସଙ୍କଳ୍ପ ଓ ଦେହଭାବନାରେ ଆବଦ୍ଧ । ସନ୍ଥ ଓ ସଜ୍ଜନମାନେ ଏହି ମନୁଷ୍ୟକୁ ସାର କ'ଣ ଅସାର କ'ଣ ବୁଝେଇ ଏହି ବନ୍ଦୀଶାଳାରୁ ତାକୁ ମୁକ୍ତ କରିଥାଏ । ମନୁଷ୍ୟ କଳ୍ପ କଳ୍ପାନ୍ତର ଧରି ମାନି ଆସିଛି "ମୁଁ ଜୀବ" । ଏଭଳି ମାନିବା ଫଳରେ ଦେହବୁଦ୍ଧିରୁ ନିଜେ ବଦ୍ଧ ହୋଇ ପଡ଼ିଥାଏ । "ମୁଁ ଜୀବ" ଅର୍ଥାତ୍ ସାଂସାରିକ ବନ୍ଧନରେ ମୁଁ ଜଡ଼ିତ, ମୋର ଜନ୍ମ ଅଛି, ମୃତ୍ୟୁ ମଧ୍ୟ ଅଛି, ମତେ ମୋର ଭଲ ମନ୍ଦ କର୍ମଫଳ ଭୋଗ କରିବାକୁ ପଡ଼ିବ । ଯାହା ମନରେ

ଏହି ଦୃଢ଼ଭାବନା ରହିଥାଏ, ସେଭଳି ବ୍ୟକ୍ତି କର୍ମଭୋଗରୁ ତ୍ରାହି ପାଏନା କିମ୍ବା ଜନ୍ମମରଣ ଚକ୍ରରୁ ମୁକ୍ତି ପାଇପାରେନା । ଏହି ବ୍ୟକ୍ତି ହିଁ ବଦ୍ଧ ବା ବନ୍ଦୀ ।

ରେଶମପୋକ ଯେପରି ନିଜକୃତ ରେଶମସୂତାର ଜାଲ ଭିତରେ ବନ୍ଦ ହୋଇ ମରିଯାଏ, ସେଭଳି ମନୁଷ୍ୟ ବା ପ୍ରାଣୀ ଜୀବ ଭାବରେ ବଦ୍ଧ ହୋଇ ପଡ଼ିଥାଏ । ଅଜ୍ଞାନୀ ବ୍ୟକ୍ତି ପରମାତ୍ମା ସ୍ୱରୂପକୁ ଜାଣି ନ ପାରି ଭାବିଥାଏ ଯେ ''ମୋ ଜନ୍ମମରଣ ଅଟଳ । ତେଣୁ ମୁଁ ଏହି ଜନ୍ମରେ କିଛି ଦାନ ପୁଣ୍ୟ କରି ପରବର୍ତ୍ତୀ ଜୀବନରେ ସୁଖୀ-ଜୀବନଯାପନ କରି ପାରିବି । ମୁଁ ପୂର୍ବ ଜନ୍ମରେ ଦାନପୁଣ୍ୟ କରି ନଥିବାରୁ ଏବେ ଦରିଦ୍ରକୂଳରେ ଜନ୍ମ ହୋଇଛି । ତେଣୁ ଏ ଜନ୍ମରେ କିଛି ଦାନ ପୁଣ୍ୟ କରିବା ଉଚିତ ।''

ଏହାଭାବି ସେ କେତୋଟି ପୁରୁଣା ଲୁଗା କିମ୍ବା କେତେକ ପଇସା ଦାନ କରିଥାଏ ଏବଂ ଆସନ୍ତା ଜନ୍ମରେ ଏସବୁ ସେ କୋଟିଗୁଣରେ ପାଇବ ବୋଲି ଆଶା କରିଥାଏ । ସେ କୁଶାବର୍ତ୍ତ ଓ କୁରୁକ୍ଷେତ୍ର ଆଦି ତୀର୍ଥସ୍ଥାନକୁ ଯାଇ ଦାନପୁଣ୍ୟ କରି ମନେ ମନେ ହେଣ୍ଡିମାରେ ଯେ ଯାହା ଦେଲା ତାକୁ କୋଟିଗୁଣରେ ପାଇ ପାରିବ । ସେ ଅଚଳ ପଇସା ଦାନକରି, ଅତିଥି ଅଭ୍ୟାଗତକୁ କେତୋଟି ବାସି ରୁଟି ଖାଇବାକୁ ଦେଇ ପରଜନ୍ମରେ ଅଧିକ ଲାଭ ପାଇବାର କାମନା କରିବାରେ ଲାଗେ । ଏହି ପ୍ରକାରର ଭାବନା ତଥା ବାସନା ହିଁ ମନୁଷ୍ୟକୁ ଜନ୍ମକର୍ମ ବନ୍ଧନରେ ବାନ୍ଧି ରଖିଥାଏ । ତାକୁ ଥରକୁ ଥର ଜନ୍ମ ଗ୍ରହଣ କରିବାକୁ ପଡ଼ିଥାଏ ।

ଏହି ଜନ୍ମରେ ଯାହା ଦେଲି, ପରଜନ୍ମରେ ବହୁଗୁଣରେ ପାଇବି ବୋଲି ଯିଏ ଆଶା କରିଥାଏ ସେ ହେଉଚି ଅଜ୍ଞାନୀ, ନିର୍ବୋଧ । ଅନେକ ଜନ୍ମ ପରେ ସୁର-ଦୁର୍ଲ୍ଲଭ ନରଦେହ ମିଳିଥାଏ । ଯଦି ଏହି ଦେହରେ ସଦ୍‌ଗତି ଲାଭ ଲାଗି ଉଦ୍ୟମ ନ କରୁ ତାହାହେଲେ ଜନ୍ମମରଣରୁ ତ୍ରାହି ପାଇବା ଅସମ୍ଭବ । ଏହି ଚକ୍ର ଲାଗି ରହିଥିବ । ଯିଏ ଥରେ ନରଦେହ ଲାଭକରି ସାରିଚି ସେ ପୁଣି ଯେ ନରଦେହ ଲାଭ କରିବ ତାହା କୁହାଯାଇ ନପାରେ । କେତେ ନା କେତେ ନୀଚ୍ଚ ଯୋନିରେ ଜନ୍ମଗ୍ରହଣ କରିବାପରେ ଜୀବ ନରଦେହ ଲାଭ କରିଥାଏ । ସବୁଶାସ୍ତ୍ରରେ ନରଦେହକୁ ପରମଦୁର୍ଲ୍ଲଭ କୁହାଯାଇଛି । ଜୀବର ପାପ ପୁଣ୍ୟ ସମାନ ହେଲେ ଯାଇ ଜୀବ ନରଦେହ ଲାଭ କରିଥାଏ ।

ବ୍ୟାସଦେବ ଭାଗବତରେ କହିଛନ୍ତି—

ନରଦେହମାଦ୍ୟଂ ସୁଲଭଂ ସୁଦୁର୍ଲ୍ଲଭଂ ।
ପ୍ଲବଂ ସୁକଳ୍ପଂ ଗୁରୁକର୍ଣ୍ଣଧାରମ୍ ।
ଭୟାନୁକୁଳେନ ନମସ୍ୱତେରିତମ୍ ।
ପୁମାନ୍‌ଭବାବିଂଧ ନ ତରେସ୍ସ ଆତ୍ମହା ॥

ଅର୍ଥାତ୍ ପରମ ଦୁର୍ଲ୍ଲଭ ନରଦେହରୂପକ ସୁଦୃଢ଼ ନୌକା, ସଦ୍‌ଗୁରୁରୂପୀ କର୍ଣ୍ଣଧାର, ପ୍ରଭୁକୃପାରୂପୀ ଅନୁକୂଳ ବାୟୁ ପାଇ ମଧ ମନୁଷ୍ୟ ଯଦି ଭବ-ସାଗର ପାର ହେବା ଲାଗି ଉଦ୍ୟମ ନ କରେ ସେ ଆତ୍ମହତ୍ୟା କରିବା ଶ୍ରେୟସ୍କର । ଜ୍ଞାନଲାଭ ବିନା ମନୁଷ୍ୟ ବିଭିନ୍ନ ଯୋନିରେ ଜନ୍ମ ହୋଇ ଯେତେ ଦୁଃଖ ଭୋଗ କରିଥାଏ, ଆତ୍ମହତ୍ୟା କଲେ ମଣିଷ ସେତିକି ଦୋଷରେ ଦୋଷୀ ହୋଇ ଦୁଃଖ ଭୋଗିଥାଏ । ଭାଲୁ, ମାଙ୍କଡ଼, କୁକୁର, କୁଆ, ମୃଗ, ଘୋଡ଼ା, ବଳଦ, ମଇଁଷି, ଘୁଷୁରୀ ଆଦି ନୀଚଯୋନିରେ ଜନ୍ମ ହେଲେ ଜୀବ କେବେହେଲେ ଜ୍ଞାନ ଲାଭ କରିନପାରେ— ଏକଥା ଜାଣି ମଧ ମୂର୍ଖ ମନୁଷ୍ୟ ଭାବିଥାଏ ଯେ ଏ ନରଦେହ ଚାଲିଗଲେ ପୁଣି ସେ ସେହି ନରଦେହରେ ଜନ୍ମ ଗ୍ରହଣ କରିପାରିବ । ଏ ଜନ୍ମରେ ସେ କ'ଣ ବା ପୁଣ୍ୟ କରିଚି ଯେ ପୁଣି ନରଦେହରେ ଜନ୍ମଲାଭ କରିବା ଲାଗି ଦାବୀ କରିବ ? ଦାବୀ କଲେ ମଧ ତା କଥା କିଏ ଶୁଣୁଚି ?

ଜୀବ ମାତ୍ରେ ନିଜ ସଙ୍କଳ୍ପ ତଥା କାମନା ବାସନା ଯୋଗୁଁ ନିଜକୁ ସଂସାର-ବନ୍ଦୀଶାଳାରେ ବାନ୍ଧିରଖି ନିଜକୁ ନିଜର ଶତ୍ରୁ କରିଥାଏ । ଏହି କାମନାରୂପୀ ବନ୍ଧନକୁ ସତ୍‌ସଙ୍ଗ ମାଧ୍ୟମରେ ଜ୍ଞାନ ବିବେକ ଦ୍ୱାରା ହିଁ ଛିନ୍ନ କରାଯାଇପାରେ । ଗୀତାରେ କୁହାଯାଇଚି—

ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥

ଅର୍ଥାତ୍ ମନୁଷ୍ୟ ନିଜେ ହିଁ ନିଜର ମିତ୍ର ଏବଂ ନିଜେ ନିଜର ଶତ୍ରୁ । ସମଗ୍ର ଚରାଚର ସୃଷ୍ଟି ପଞ୍ଚଭୌତିକ । ପ୍ରକୃତି ନିଜ ସ୍ୱଭାବ ଅନୁଯାୟୀ ନାନା ରୂପ ଧାରଣ କରିଛି । ଦେହ, ଅବସ୍ଥା, ଅଭିମାନ, ସ୍ଥାନ, ଭୋଗ, ମାତ୍ରା, ଗୁଣ ଓ ଶକ୍ତି— ଏହି ଆଠଟି ସତ୍ତ୍ୱ ପ୍ରତ୍ୟେକ ପ୍ରତ୍ୟେକ ଜୀବଠାରେ ରହିଛି । ସେହିଭଳି ସ୍ଥୂଳ, ସୂକ୍ଷ୍ମ,

କାରଣ ଓ ମହାକାରଣ— ଏହି ଚାରୋଟି ଶରୀରରେ ଆଠତତ୍ତ୍ୱ ଚାରିଗୁଣରେ ରହିଥାଏ । ପିଣ୍ଡ ଓ ବ୍ରହ୍ମାଣ୍ଡରେ ଏଗୁଡ଼ିକର ବିସ୍ତାର ଫଳରେ ଅନେକ କଳ୍ପନା ଜାତ ହୋଇଥାଏ ଏବଂ ତତ୍ତ୍ୱ-ଜ୍ଞାନର ବିବେଚନ ଦ୍ୱାରା ବହୁ ଭ୍ରାନ୍ତି ମଧ୍ୟ ସୃଷ୍ଟି ହୋଇଥାଏ ।

ଏସବୁ ମତମତାନ୍ତର ମଧ୍ୟରେ ସାଧୁ ସନ୍ଥମାନେ ଏକତାର ରହସ୍ୟ ବୁଝିଥାଆନ୍ତି । ଦେହ ଯେ ପଞ୍ଚଭୂତର ଏକ ପୁଟୁଳି ଏବଂ ଆତ୍ମା ଏସବୁ ସହିତ ଲିପ୍ତ ନୁହେଁ, ଅଲିପ୍ତ—ସାଧୁସନ୍ଥମାନେ ଏହି କଥାକୁ ସ୍ୱୀକାର କରିଥାଆନ୍ତି ।

ଦେହ ନଷ୍ଟ ହୋଇଯାଏ, ତେଣୁ ଏହା ନଶ୍ୱର । କିନ୍ତୁ ଆତ୍ମା ଶାଶ୍ୱତ, ଅବିନାଶୀ । ଦେହ ପଞ୍ଚତତ୍ତ୍ୱର ଏକ ସମ୍ମିଶ୍ରଣ । ଅନ୍ତଃକରଣ, ପଞ୍ଚପ୍ରାଣ, ପଞ୍ଚବିଷୟ ଏବଂ ଦଶ ଇନ୍ଦ୍ରିୟର ମିଳନରେ ସୂକ୍ଷ୍ମ ଦେହର ବିକାଶ ଘଟିଥାଏ । ଏହି ସୂକ୍ଷ୍ମ ଦେହ ମଧ୍ୟ ଆତ୍ମା ନୁହଁ । ସ୍ଥୂଳ, ସୂକ୍ଷ୍ମ, କାରଣ ଓ ମହାକାରଣ ଏହି ଚାରିଦେହକୁ ନେଇ ପିଣ୍ଡ ବା ଶରୀର ଏବଂ ବିରାଟ, ହିରଣ୍ୟ, ଅବ୍ୟାକୃତ ଏବଂ ମୂଳପ୍ରକୃତିକୁ ନେଇ ଚାରି ବ୍ରହ୍ମାଣ୍ଡ । ଚାରିଦେହ ଓ ଚାରିବ୍ରହ୍ମାଣ୍ଡକୁ ନେଇ ଅଷ୍ଟଦେହ । ପ୍ରକୃତି ଓ ପୁରୁଷକୁ ମିଶେଇଲେ ଦେହ ସଂଖ୍ୟା ଦଶ । କିନ୍ତୁ ଏସବୁ ତତ୍ତ୍ୱ ବିନାଶଶୀଳ । ଆତ୍ମା ଏ ସବୁର ସାକ୍ଷୀ, କିନ୍ତୁ ଏସବୁଠାରୁ ପୃଥକ୍ । ଯଦି କର୍ତ୍ତା, କର୍ମ ଓ କାରଣ ଏହାର ଦୃଶ୍ୟରୂପ ତଥାପି ଏସବୁଠାରୁ ଅଲିପ୍ତ । ଜୀବ-ଶିବ, ପିଣ୍ଡ-ବ୍ରହ୍ମାଣ୍ଡ, ମାୟା-ଅବିଦ୍ୟା ସମ୍ପର୍କରେ ବହୁତ କିଛି କୁହାଯାଇପାରେ କିନ୍ତୁ ଏସବୁ ପଞ୍ଚୀକରଣ ବିଷୟ ।

ଆତ୍ମା ଚାରିପ୍ରକାରର । ଜୀବତ୍ମା, ଶିବାତ୍ମା, ପରମାତ୍ମା ଅର୍ଥାତ୍ ବିଶ୍ୱାତ୍ମା ଓ ନିର୍ମଳାତ୍ମା । ଉପାଧି-ଭେଦ ଯୋଗୁଁ ଏହି ଚାରିଆତ୍ମା ମଧ୍ୟରୁ ଇଏ କନିଷ୍ଠ, ସିଏ ଶ୍ରେଷ୍ଠ ଆଦି କଥା କୁହାଯାଇଥିଲେ ମଧ୍ୟ ଯଥାର୍ଥରେ ଏହି ଚାରୋଟି ଯାକ ଏକ । ଯାହା ଘଟରେ ପୂର୍ଣ୍ଣ ତାହା ଘଟାକାଶ, ମଠରେ ଯାହା ବ୍ୟାପକ ତାହା ମଠାକାଶ, ମଠଠାରୁ ଯିଏ ବାହାରେ ତାକୁ ମହଦାକାଶ ତଥା ଉପାଧିମୁକ୍ତ ଆକାଶ ବା ଚିଦାକାଶ କୁହାଯାଇଥାଏ । ଆକାଶକୁ ଏହିଭଳି ଭାବେ ଚାରିଭାଗରେ ବିଭକ୍ତ କରାଯାଉଥିଲେ ମଧ୍ୟ ଆକାଶ ଏକ । ସେହିଭଳି ପିଣ୍ଡରେ ବ୍ୟାପକ ବ୍ରହ୍ମର ଅଂଶକୁ ଜୀବ ଏବଂ ବ୍ରହ୍ମାଣ୍ଡରେ ବ୍ୟାପକ ବ୍ରହ୍ମାଂଶକୁ ଶିବାତ୍ମା କୁହାଯାଏ । ବ୍ରହ୍ମାଣ୍ଡ

ବାହାରେ ବ୍ରହ୍ମାଣ୍ଡକୁ ପରମାତ୍ମା ଏବଂ ସମସ୍ତ ଉପାଧି ବିରହିତ ବ୍ରହ୍ମକୁ ନିର୍ମଳାତ୍ମା କୁହାଯାଏ । ଏକ ବ୍ରହ୍ମକୁ ଚାରି ଭାଗରେ ବିଭକ୍ତ କରାଯାଇ କୁହାଗଲେ ମଧ୍ୟ ଆତ୍ମା ଏକ । ଯେପରି ଉପାଧିଭେଦରୁ ଆକାଶ ଅଭିନ୍ନ ହୋଇଥିଲେ ମଧ୍ୟ ଭିନ୍ନ ଭିନ୍ନ ମନେ ହୋଇଥାଏ, ସେହିଭଳି ଲୋକଙ୍କୁ ବୁଝାଇବାପାଇଁ ଚାରିପ୍ରକାରର ଆତ୍ମାର ବର୍ଣ୍ଣନା କରାଯାଉଥିଲେ ମଧ୍ୟ ଆତ୍ମା ଏକ, ଏହା ସ୍ୱାନନ୍ଦ-ସ୍ୱରୂପ ଏବଂ ସବୁତତ୍ତ୍ୱଠାରୁ ପୃଥକ୍ । ଉପାଧିଗୁଡ଼ିକୁ ଛାଡ଼ି ଦେଲେ ଆତ୍ମା ଏକ, ଅଭିନ୍ନ ।

ଜୀବାତ୍ମା ନିଜ ଭାବନା ଦ୍ୱାରା ଅହଂକାରଯୁକ୍ତ ହୋଇ ଜନ୍ମମରଣ ଚକ୍ରରେ ଘୂରିବାରେ ଲାଗିଥାଏ । କିନ୍ତୁ ବିବେକ-ଦୃଷ୍ଟିରେ ଦେଖିଲେ ଆତ୍ମାର ଜନ୍ମ ନାହିଁ କି ମରଣ ନାହିଁ । ଜନ୍ମମୃତ୍ୟୁରହିତ ନିରଞ୍ଜନ ଆତ୍ମାକୁ ଚିହ୍ନିବା ଏବଂ ମୁଁ ସେହି ଆତ୍ମାବ୍ୟତୀତ କିଛି ନୁହଁ ବୋଲି ନିଃସନ୍ଦେହ ଭାବେ ନିଶ୍ଚିତ ହେବା ହେଉଚି ମୋକ୍ଷ । ସନ୍ଥମାନେ ସାଧକମାନଙ୍କୁ ଏହି କଥାଟିକୁ ହିଁ ବୁଝାଇଥାଆନ୍ତି । ସନ୍ଥ ତଥା ସଦ୍‌ଗୁରୁଙ୍କ ଅନୁଗ୍ରହରୁ ମଣିଷ ଯେତେବେଳେ ଏହି କଥାକୁ ବୁଝିପାରେ, ସେତେବେଳେ ସେ ମୋକ୍ଷ କ'ଣ ଉପଲବ୍ଧି କରିପାରେ । ଆତ୍ମା ବନ୍ଧନମୁକ୍ତ ବା ବଦ୍ଧ— ଏଭଳି ବିଚାର କେବେହେଲେ କରିବା ଅନୁଚିତ । ଯେପରି ସ୍ୱପ୍ନରେ ନିଜକୁ ବନ୍ଧାହୋଇଥିବା ଦେଖି ମନୁଷ୍ୟ ଭୟରେ ଚିତ୍‌କାର କରି ଉଠିବାମାତ୍ରେ ପାଖରେ ଶୋଇଥିବା ଲୋକ ତାକୁ ନିଦରୁ ଉଠେଇ ଦେଇଥାଏ, ସେହିଭଳି ସନ୍ଥମାନେ ସଂସାର-ରୂପକ ସ୍ୱପ୍ନରୁ ମନୁଷ୍ୟକୁ ଜ୍ଞାନ-ବିବେକ ଦ୍ୱାରା ନିଜ ସ୍ୱରୂପକୁ ଜାଗ୍ରତାବସ୍ଥାକୁ ନେଇ ଆସିଥାଆନ୍ତି । ଏହି ସ୍ୱରୂପ-ଜାଗୃତିକୁ ହିଁ ମୋକ୍ଷ କୁହାଯାଇଥାଏ । ଅଜ୍ଞାନରୂପକ ଘନଘୋର ନିଶାର ଅବସାନ ଘଟିଲେ ହିଁ ପ୍ରାଣୀ ସଂକଳ୍ପ-ଦୁଃଖରୁ ମୁକ୍ତ ହୋଇଥାଏ । ସ୍ୱପ୍ନ-ବନ୍ଧନରୁ ମୁକ୍ତି ଲାଗି ଜାଗୃତି ବ୍ୟତୀତ ଅନ୍ୟ କୌଣସି ସାଧନ ନାହିଁ । ସଙ୍କଳ୍ପରେ ଆବଦ୍ଧ ଜୀବକୁ ବିବେକଦ୍ୱାରା ହିଁ ମୁକ୍ତ କରାଯାଇପାରେ ଏବଂ ଏହି କାର୍ଯ୍ୟ କେବଳ ନିଜେ ମୁକ୍ତ ହୋଇଥିବା ସନ୍ଥଜନଙ୍କଦ୍ୱାରା ସମ୍ଭବ । ଆତ୍ମ-ଜ୍ଞାନ ବିନା ଅନ୍ୟସବୁ ଉପାୟ ବ୍ୟର୍ଥ । ଆତ୍ମା ବଦ୍ଧ ନୁହଁ କି ମୁକ୍ତ ନୁହଁ । ଏହା ଜନ୍ମମରଣର ଊର୍ଦ୍ଧ୍ୱରେ । ବନ୍ଧନ ଓ ମୁକ୍ତିର କଳ୍ପନା ଆମ ମନର ଭାବନା ମାତ୍ର । ତେଣୁ କୁହାଯାଇଛି—

ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ ।

## ଅଷ୍ଟମ ସମାସ
## ।। ଆତ୍ମଦର୍ଶନ ।।

ପୂର୍ବ ସମାସରେ କୁହାଯାଇଛି ଯେ ଜୀବ ଓ ପରମାତ୍ମା ଏକ । ପରମାତ୍ମାଙ୍କର ଜନ୍ମ-ମୃତ୍ୟୁ, ବନ୍ଧନ-ମୋକ୍ଷ ବୋଲି କିଛି ନାହିଁ । ଏହା ନିରନ୍ତର ଏବଂ ଅନେକ ମଧ୍ୟରେ ଏକ । ଏହି ପରମାତ୍ମାଙ୍କୁ କେବଳ ଭକ୍ତିବଳରେ ଲାଭ କରାଯାଇଥାଏ । ଭକ୍ତି ନଅ ପ୍ରକାରର । ସେଥି ମଧ୍ୟରୁ ମୁଖ୍ୟ ହେଉଚି ଆତ୍ମ-ନିବେଦନ-ଭକ୍ତି । ଆତ୍ମ-ନିବେଦନର ବିଚାର ସ୍ୱୟଂ ନିଜ ଅନୁଭବ ଦ୍ୱାରା କରାଯିବା ଉଚିତ ଅର୍ଥାତ୍ ନିଜେ ନିଜକୁ ନିବେଦନ କରିବା ଉଚିତ ।

ଆତ୍ମ-ନିବେଦନର ବିଚାର ଏହିଭଳି ଭାବେ କରିବା ଆବଶ୍ୟକ । ପ୍ରଥମେ ବିଚାର କର ''ମୁଁ କିଏ ?'' ତା ପରେ ନିର୍ଗୁଣ ପରମାତ୍ମାଙ୍କୁ ଚିହ୍ନ । ଏହିଭଳି ଭାବେ ଆତ୍ମା ଓ ପରମାତ୍ମାଙ୍କୁ ଅନୁସନ୍ଧାନ କରିବାଦ୍ୱାରା ଜୀବ ତଦ୍ରୂପତା ଲାଭ କରିଥାଏ ଏବଂ ''ପରମାତ୍ମାଠାରୁ ମୁଁ ଅଭିନ୍ନ'' ଏହି ପ୍ରତ୍ୟୟ ବା ଦୃଢ଼ବିଶ୍ୱାସ ଆସିଥାଏ । ବାସ୍ତବରେ ଭକ୍ତ ଓ ଭଗବାନ ପୃଥକ୍ ନୁହଁନ୍ତି— ଏହି ଭାବକୁ ହିଁ ଅଭେଦ-ଭକ୍ତି କୁହାଯାଇଥାଏ । ସନ୍ଥଙ୍କ ଶରଣ ନେବା ପରେ ଏହି ଅଦ୍ୱୈତଭାବ ଆସିଥାଏ ଏବଂ ଦ୍ୱୈତଭାବ ସମୂଳେ ନଷ୍ଟ ହୋଇଥାଏ । ନଦୀ ସାଗରରେ ମିଶିବା ପରେ ଯେପରି ନିଜେ ବିଲୀନ ହୋଇଯାଇଥାଏ, ସେହିଭଳି ଭକ୍ତ ଓ ଭଗବାନଙ୍କ ମଧ୍ୟରେ କୌଣସି ଭେଦଭାବ ଓ ଅଲଗାଭାବ ରହିନଥାଏ ।

ଭଗବାନଙ୍କୁ ନିଜଠାରୁ ଅଭିନ୍ନ ମାନିବା ଉଚିତ । ଏହାଦ୍ୱାରା ଭଗବାନଙ୍କ ଐଶ୍ୱର୍ଯ୍ୟପ୍ରାପ୍ତି ଘଟିଥାଏ । ଦେହ-ବୋଧ ଯୋଗୁଁ ହିଁ ଦେହ-ଦଣ୍ଡ ଭୋଗ କରିବାକୁ ପଡ଼ିଥାଏ । ଏହି ଦେହ-ବୁଦ୍ଧିକୁ ତ୍ୟାଗ କଲେ ହିଁ ବ୍ରହ୍ମପ୍ରାପ୍ତି ହୋଇଥାଏ । ଏ ସମ୍ପର୍କରେ ଆହୁରି ସ୍ପଷ୍ଟୀକରଣ ଆବଶ୍ୟକ ।

ତୁମେ ନିଜେ ହିଁ ଦେହାତୀତ ପରବ୍ରହ୍ମ । ତୁମେ ନିଜେ ବିଦେହ । ଦେହ ତୁମର ସଙ୍ଗୀ ନୁହଁ । ''ସୋଽହଂ'' ଆତ୍ମା ସ୍ୱାନନ୍ଦ-ଧନ । ''ଅଜନ୍ମା ହିଁ ସ୍ୱୟଂ ଜ୍ଞାନ''— ଏହି ସନ୍ଥ-ବଚନ ଉପରେ ଦୃଢ଼ ଆସ୍ଥା ରଖ । ''ତୁମେ ହିଁ ବ୍ରହ୍ମ'' ଏହି ମହାବାକ୍ୟର ରହସ୍ୟକୁ କଦାପି ଭୁଲ ନାହିଁ । ''ଦେହାନ୍ତ ପରେ ମୁଁ ଅନନ୍ତ ପଦ

ଲାଭ କରି ମୁକ୍ତ ହୋଇଯିବି''— ଏଭଳି ମନେ କରିବା ମିଥ୍ୟା । କଳ୍ପାନ୍ତରରେ ମାୟା ନଷ୍ଟ ହୋଇଯିବାପରେ ହିଁ ମୁଁ ବ୍ରହ୍ମଲାଭ କରିପାରିବି, ଏହା ପୂର୍ବରୁ ନୁହଁ- ଏଭଳି ଭାବିବା ମଧ ମୂର୍ଖତା । ଯେତେବେଳେ ମାୟା ଓ ଶରୀରର ବିନାଶ ଘଟିବ, ସେତେବେଳେ ଯାଇ ବ୍ରହ୍ମପ୍ରାପ୍ତି ଘଟିବ— ଏଭଳି ବିଚାର କରିବା ଦ୍ୱାରା ସମାଧାନ ହୋଇ ନପାରେ । ଇଏସବୁ ମୂର୍ଖ ମନୁଷ୍ୟର କଳ୍ପନା । ସବୁ ସୈନ୍ୟ ମରିଯିବା ପରେ ମତେ ରାଜପଦ ମିଳିବ, ଏଭଳି କଳ୍ପନା ଠିକ୍ ନୁହଁ । ଭାବିବା ଉଚିତ ଯେ ସୈନ୍ୟ ରହିଲେ ଯାଇ ରାଜ୍ୟ ରହିବ, ରାଜପଦ ମିଳିବ, ଅନ୍ୟଥା ନୁହଁ ।

ଏହିଭଳି ଭାବେ ଆତ୍ମ-ଜ୍ଞାନର ବୈଠକ ସ୍ଥିର ହୋଇଯିବା ପରେ ସାଂସାରିକ ଦୃଶ୍ୟ ଆମର କିଛି ବିଗାଡ଼ି ପାରିବ ନାହିଁ । ସେଥିରେ ଆମର ଆତ୍ମ- ସମାଧାନ ଭଙ୍ଗ ହେବ ନାହିଁ । ରାସ୍ତାରେ ସାପଭଳି ଚକାବାନ୍ଧି ପଡ଼ିଥିବା ଦଉଡ଼ିକୁ ଦେଖି ଆମେ ଭୟରେ କମ୍ପିଉଠୁ, କିନ୍ତୁ ଯେତେବେଳେ ଜାଣୁ ଯେ ଏହା ସାପ ନୁହଁ ଖଣ୍ଡେ ଦଉଡ଼ି, ସେତେବେଳେ ନିର୍ଭୟ ହୋଇ ଉଠୁ । ସେହିଭଳି ମାୟା ଯଦିଓ ଭୟାନକ ପ୍ରତୀତ ହୋଇଥାଏ, କିନ୍ତୁ ଏହା ମିଥ୍ୟା ବୋଲି ହୃଦ୍‌ବୋଧ ହୋଇଯିବା ପରେ ଆଉ ଭୟ ରହେ ନାହିଁ । ମରୀଚିକା ବାସ୍ତବରେ ଜଳ ନୁହଁ— ଏହି ବିଶ୍ୱାସ ହୋଇ ଯିବାପରେ ସେଥିରେ ବୁଡ଼ିଯିବାର ଆଶଙ୍କା ରହିବ କି ? ଭୟାନକ ସ୍ୱପ୍ନରେ ଭୟଭୀତ ହୋଇ ଉଠିଥିବା ବ୍ୟକ୍ତି ଜାଗ୍ରତ ହେବା ମାତ୍ରେ ଭୟରୁ ମୁକ୍ତ ହୋଇପଡ଼େ । ମାୟା ଆତ୍ମାର କଳ୍ପନା ମାତ୍ର । ଆମେ କଳ୍ପନାତୀତ ନିର୍ବିକଳ୍ପ— ଏହି ଧାରଣା ଦୃଢ଼ ହୋଇଯିବାପରେ କଳ୍ପନାକୁ ଡରିବା ଅନାବଶ୍ୟକ । ଶାସ୍ତ୍ରରେ କୁହାଯାଇଛି— ''ଅନ୍ତେ ମତିଃ ସା ଗତିଃ'' ଜୀବଦ୍ଦଶା ତଥା ଅହଂକାରର ବିନାଶ ଘଟିଲେ ସଦ୍‌ଗତି ତଥା ତତ୍‌ପଦ ପ୍ରାପ୍ତି ସୁଲଭ ହୋଇଉଠିଥାଏ ।

ସ୍ଥୂଳ, ସୂକ୍ଷ୍ମ ଆଦି ଚାରିଦେହର ଅବସାନ ଓ ଜନ୍ମର କାରଣ ଯେ ଅହଂକାର ଏବଂ ଏହି ସଦ୍‌ଜ୍ଞାନ ହେଲେ ଯେ ମନୁଷ୍ୟ ମୁକ୍ତି ବା ମୋକ୍ଷ ଲାଭ କରିଥାଏ — ଏସବୁ ବିଚାର ହେଉଚି କଳ୍ପନା । ବସ୍ତୁତଃ ମୋକ୍ଷ ଓ ବନ୍ଧନ ସହିତ ଆତ୍ମାର କୌଣସି ସମ୍ପର୍କ ନାହିଁ । ଏହା ଅଲିପ୍ତ । ସଦ୍‌ଗୁରୁଙ୍କ ଦ୍ୱାରା ମନୁଷ୍ୟ ଏହି କଥାଟିକୁ ଭଲଭାବେ ବୁଝିଗଲେ ସେ ଧ୍ୟେୟବସ୍ତୁ ଅର୍ଥାତ୍ ବ୍ରହ୍ମରୂପ ହୋଇଯାଏ ।

ସୂକ୍ଷ୍ମ ଦୃଷ୍ଟିରୁ ଦେଖିଲେ ଜଣାପଡ଼ିଥାଏ ଯେ ଆତ୍ମା ଶାଶ୍ୱତ ଏବଂ ଦୃଶ୍ୟର କୌଣସି ଅସ୍ତିତ୍ୱ ନାହିଁ । ମିଥ୍ୟା ମାୟାକୁ ଚିହ୍ନିବା ଏବଂ ତାକୁ ମିଥ୍ୟା ବୋଲି ଅନୁଭବ

କରିବା ହିଁ ମୋକ୍ଷ । ସଦ୍‌ଗୁରୁଙ୍କ ବାଣୀକୁ ହୃଦୟଙ୍ଗମ କରି ତାକୁ ଶ୍ରବଣ-ମନନ ଓ ଅଭ୍ୟାସ କରିବାଦ୍ୱାରା ମୋକ୍ଷର ଅଧିକାର ସହଜରେ ମିଳିଥାଏ । ବଦ୍ଧ-ମୋକ୍ଷ, ମାୟା-ବ୍ରହ୍ମ, ଲକ୍ଷ୍ୟ-ଅଲକ୍ଷ୍ୟ, ଧ୍ୟାନ-ଧ୍ୟାତାଆଦିର ଦ୍ୱୈତଭାବ ଯାହା ମନରୁ ଏକାବେଳକେ ତୁଟି ଯାଇଥାଏ ଏବଂ କେବଳ ସ୍ୱରୂପ ବ୍ରହ୍ମ ହିଁ ରହିଥାଏ, ସେ ଜନ୍ମ-ଦୁଃଖରୁ ତଥା ଅଦ୍ୱୈତ ଭାବନାରୁ ମୁକ୍ତ ନିଷ୍ପ୍ରପଞ୍ଚ ହୋଇ ଅନନ୍ତ ସହିତ ଏକାକାର ହୋଇ ଉଠେ । ଯାହା ସନ୍ନିକଟ ହୋଇ ମଧ୍ୟ ଦୂରରେ ଥିବାଭଳି ମନେ ହୋଇଥାଏ ତାହା ସଙ୍ଗେ ସଙ୍ଗେ ମିଳିଥାଏ । କୌଣସି ବ୍ରାହ୍ମଣ ଯେପରି ସ୍ୱପ୍ନରେ ସେ ନୀଚଜାତିର ଲୋକ ମନେ କରି ଜାଗ୍ରତ ହେବାପରେ ଜାଣେ ଯେ ସେ ଯାହାଥିଲା ତାହା ହିଁ ରହିଛି, ଆତ୍ମଜ୍ଞାନୀର ଅବସ୍ଥା ଠିକ୍ ସେହିଭଳି ହୋଇଥାଏ ।

ପରବର୍ତ୍ତୀ ସମାସରେ ମୁକ୍ତ ଆତ୍ମ-ଜ୍ଞାନୀର ଲକ୍ଷଣ କ'ଣ ବର୍ଣ୍ଣନା କରାଯିବ ।

## ନବମ ସମାସ
## ।। ସିଦ୍ଧ-ଲକ୍ଷଣ ।।

ଯେପରି ଅମୃତ-ପ୍ରାଶନ (ଭକ୍ଷଣ) କରିଥିବା ପୁରୁଷର ଶରୀରରେ ଅମୃତର ଲକ୍ଷଣ ପରିଲକ୍ଷିତ ହୋଇଥାଏ, ତାର କାୟା ଦିବ୍ୟରୂପ ଧାରଣ କରିଥାଏ, ସେହିଭଳି ସିଦ୍ଧ ତଥା ଆତ୍ମଜ୍ଞାନୀ ପୁରୁଷର ଅଙ୍ଗ ପ୍ରତ୍ୟଙ୍ଗ ସତେଜ ଦେଖାଯାଇଥାଏ । ସିଦ୍ଧ ଅର୍ଥାତ୍ ବ୍ରହ୍ମସ୍ୱରୂପ । ଏହି ଦୁଇଟି ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଏହାର ବର୍ଣ୍ଣନା କରାଯାଇ ନ ପାରେ, ତଥାପି କଳ୍ପନା ଲାଗି କେତେକ କଥା କହିବି । ଅଖଣ୍ଡସ୍ୱରୂପର ଅନୁସନ୍ଧାନ ହେଉଚି ସିଦ୍ଧପୁରୁଷର ମୁଖ୍ୟ ଲକ୍ଷଣ । ସେ ଜନସମାଜ ସହିତ ସମ୍ପର୍କ ରକ୍ଷା କରୁଥିଲେ ମଧ୍ୟ ସମସ୍ତଙ୍କଠାରୁ ଅଲଗା ରହିଥାଏ । ଏହାର ସାଂସାରିକ-ଚିନ୍ତା ବୋଲି କିଛି ନଥାଏ । ଆତ୍ମ-ନିରୂପଣ ପ୍ରତି ସେ ଆଗ୍ରହୀ । ସିଦ୍ଧ-ପୁରୁଷର ବାହ୍ୟ-ଆଚାର ସାଧକଙ୍କ ଭଳି ମନେ ହେଉଥିଲେ ମଧ୍ୟ ତା ଭିତରେ କେବଳ ଅଖଣ୍ଡ ସ୍ୱରୂପକାର ହିଁ ରହିଥାଏ । ତାର ସମସ୍ତ ଚଞ୍ଚଳ-ପ୍ରବୃତ୍ତି ସ୍ୱରୂପକାରରେ ଲୀନ ହୋଇଯାଇଥାଏ । ତେଣୁ ସେ ନିଶ୍ଚଳ ରହିଥାଏ । ଯଦିଓ ତା ଶରୀରରେ ଅନେକ ପ୍ରବୃତ୍ତି ଯୋଗୁଁ ଚାଞ୍ଚଲ୍ୟ

ଦେଖାଯାଇଥାଏ, ତଥାପି ଅନ୍ତର ଭିତରେ ସେ ସମ୍ପୂର୍ଣ୍ଣ ନିଶ୍ଚଳ । ଭିତରର ବୃତ୍ତି ହିଁ ମୁଖ୍ୟ । ଯାହାର ଚିତ୍ତ ଭଗବାନଙ୍କ ପ୍ରତି ନିବିଷ୍ଟ, ଏଭଳି ବ୍ୟକ୍ତି ବାହାରେ ସାଧାରଣ ଲୋକଙ୍କ ଭଳି ବ୍ୟବହାର କଲେ ମଧ୍ୟ ସେ ଭିତରେ ଆତ୍ମ ସ୍ୱରୂପରେ ମଗ୍ନ ରହିଥାଏ । ରାଜା ଯେପରି ରାଜପଦାରୂଢ଼ ଥିବାହେତୁ ରାଜସୂୟ-ଐଶ୍ୱର୍ଯ୍ୟ ସହିତ ଜଡ଼ିତ ରହିଥାଏ, ସେହିଭଳି ସିଦ୍ଧପୁରୁଷର ଶରୀରରେ ନାନା ଦିବ୍ୟଲକ୍ଷଣ ପ୍ରକଟିତ ହୋଇଥାଏ ।

ସ୍ୱରୂପାନୁସନ୍ଧାନ ବ୍ୟତୀତ ଅନ୍ୟ ସାଧନା ଅଭ୍ୟାସ କରି କେହି ଏହିସବୁ ଲକ୍ଷଣର ଅଧିକାରୀ ହେବା ଅସମ୍ଭବ । ଅଭ୍ୟାସର ମୁକୁଟମଣି ହେଉଚି ନିର୍ଗୁଣ ସ୍ୱରୂପରେ ଅବସ୍ଥିତ ହେବା । ଏହା ହିଁ ମୁଖ୍ୟ ଅଭ୍ୟାସ । ସାଧକମାତ୍ରେ ଶ୍ରବଣମନନ ଆଦି ଦ୍ୱାରା ସ୍ୱରୂପକାରରେ ପ୍ରତିଷ୍ଠିତ ହେବାକୁ ଅଭ୍ୟାସ କରିବା ଉଚିତ ।

ସିଦ୍ଧ-ପୁରୁଷର ଅନ୍ୟ ସବୁ ଲକ୍ଷର ଶୁଣନ୍ତୁ । ସାଧୁ ସନ୍ଥମାନଙ୍କର ଧ୍ୟାନ ସର୍ବଦା ସ୍ୱ ସ୍ୱରୂପ ଆଡ଼କୁ ହୋଇଥିବା ଯୋଗୁଁ ସେମାନଙ୍କ ମନରେ କୌଣସି କାମନା ବାସନା ନଥାଏ । ମଣିଷ ଯାହା ଇଚ୍ଛା କରେ ତାହା ପାଇ ନ ପାରିଲେ, ତା ମନରେ କ୍ରୋଧ ଜାତ ହୋଇଥାଏ । କିନ୍ତୁ ସିଦ୍ଧ ପୁରୁଷର ମନ ମୁତାବକ ଅକ୍ଷୟ ସମ୍ପଦର କେବେହେଲେ ଅଭାବ ନ ଘଟିବା ଯୋଗୁଁ ତା ମନରେ କେବେହେଲେ କ୍ରୋଧ ଜାତ ହୋଇ ନ ଥାଏ । ସେ ନିଜକୁ ସ୍ୱାନନ୍ଦ-ସ୍ୱରୂପ ମନେ କରିଥାଏ । ତେଣୁ କାହା ଉପରେ ବିରକ୍ତି କିମ୍ବା କ୍ରୋଧ ପ୍ରକାଶର କୌଣସି ଅବକାଶ ନଥାଏ । ତାର ଶତ୍ରୁ ବୋଲି କେହି ନଥାଏ, ସମସ୍ତେ ତାର ମିତ୍ର, ଆତ୍ମୀୟ । ତେଣୁ ବାଦ ବିବାଦର ବ୍ୟୁହ ଭିତରେ ସେ ପଡ଼ିନଥାଏ । ସାଧୁସନ୍ଥ ମାତ୍ରେ ନିର୍ବିକାର । ତେଣୁ ତା ମନରେ ତିରସ୍କାର, ମତ୍ସର, ଦମ୍ଭ ଆଦି ବିକାର ନ ଥାଏ । ତା ଦୃଷ୍ଟିରେ ସମଗ୍ର ଦୃଶ୍ୟ ସଂସାର ମିଥ୍ୟା ପ୍ରତୀତ ହୋଇଥାଏ ଏବଂ ସମଗ୍ର ବ୍ରହ୍ମାଣ୍ଡକୁ ନିଜର ଘର ମନେ କରିଥାଏ । ତେଣୁ ସେ ପ୍ରପଞ୍ଚ ତଥା ପଞ୍ଚ ଭୌତିକ ଝମେଲାରେ ପଡ଼େ ନାହିଁ ।

ସମଗ୍ର ସଂସାରକୁ ମିଥ୍ୟା ବୋଲି ଉପଲବ୍ଧି କରିବାରେ ତାର ହୃଦୟ ସ୍ୱଚ୍ଛ ନିର୍ମଳ ହୋଇପଡ଼ିଥାଏ । ଯିଏ ସ୍ୱରୂପରେ ରୂପ ରସ ସହିତ ନିଜକୁ ମିଳେଇ

ନେଇଥାଏ, ତାର କୌଣସି ଜିନିଷ ପ୍ରତି ଆଉ ଲୋଭ ହେବ କିପରି ? ସେ ନିଜ ଭିତରେ ନିଜେ ପୂର୍ଣ୍ଣ ସନ୍ତୁଷ୍ଟ । ତାର କୌଣସି ସ୍ୱାର୍ଥଚିନ୍ତା ନଥାଏ । ଯିଏ ବିବେକ ଦୃଷ୍ଟିକୁ ଭୁଲି ସ୍ୱରୂପରେ ପ୍ରତିଷ୍ଠିତ, ତାର ଦୁଃଖ-ଶୋକ ଆସିବ କେଉଁଠୁ ? ତାର ଆଶା ନାହିଁ କି ଦୁରାଶା ନାହିଁ । ଗଗନ ଯେପରି ପ୍ରଶାନ୍ତ, କୋମଳ, ସାଧୁସନ୍ଥର ଚିତ୍ତ ସେହିଭଳି କୋମଳ ଓ ପ୍ରଶାନ୍ତ । ମୋହ ଫଳରେ ହିଁ ମନ ଉଦ୍‌ବିଗ୍ନ ହୋଇଥାଏ । କିନ୍ତୁ ସିଦ୍ଧ ପୁରୁଷମାତ୍ରେ ନିର୍ମୋହୀ । ସେ ଅଦ୍ୱୈତ ନିଷ୍ଠ । ତେଣୁ ତାର କୌଣସି ଦ୍ୱୈତ-ଭାବ ନଥାଏ । ଏହାର ମାନଅପମାନ ବୋଲି କିଛି ନଥାଏ । ସେ ସର୍ବଦା ନିଃଶଙ୍କ, ନିର୍ଭୟ । ସମସ୍ତ ଚର ଅଚର ସୃଷ୍ଟିର ଆଦି ନ ହେଲେ ଅନ୍ତ ହୋଇଯାଇପାରେ, କିନ୍ତୁ ପରବ୍ରହ୍ମ ଅନନ୍ତ, ଅମର, ଅବିନାଶୀ । ସେହିଭଳି ସିଦ୍ଧ ସାଧୁସନ୍ଥ ଅନନ୍ତ ସ୍ୱରୂପରେ ଲୀନ ହୋଇଥିବାରୁ ସେ ମଧ୍ୟ ଅନନ୍ତ ।

ସାଧୁ ପୁରୁଷର କୌଣସି ଭେଦଭାବ ନ ଥାଏ । କୌଣସି କଥାରେ ସେ ଦୁଃଖିତ ହୋଇପଡ଼େ ନାହିଁ । ତାର ଦେହ-ବୁଦ୍ଧି ନିର୍ଗୁଣ ସହିତ ସଂଲଗ୍ନ ହୋଇଥିବାରୁ, ସେ ତ୍ରିଗୁଣାତୀତ । ନିଜ ସ୍ୱରୂପରେ ଲୀନ ଥିବା ହେତୁ ତାର ସ୍ୱାର୍ଥ, ଦୁଃଖ, କ୍ଳେଶ, ଶୋକ, ସନ୍ତାପ, ଅବିବେକିତା ବୋଲି କିଛି ନଥାଏ । ବୈରାଗ୍ୟ ହେଉଚି ସାଧୁର ଲକ୍ଷଣ । ସ୍ୱରୂପ ସହିତ ସେ ସଂଯୁକ୍ତ ରହିଥିବାରୁ ସେ ସର୍ବଦା ବାହ୍ୟବିଷୟ ପ୍ରତି ଉଦାସୀନ (ବିତରାଗ) । ସେ ନିରୁପାଧି । ପଦପଦବୀ ରହିତ । ତା ଭଳି ସୁଦକ୍ଷ ଓ ସାବଧାନ କେହି ହୋଇ ନ ପାରନ୍ତି । ପରମାର୍ଥ-ପ୍ରଧାନ ସାଧୁର ପ୍ରଧାନ ଲକ୍ଷଣ ହେଉଛି ଏହାର ନିର୍ମଳ-ବୃତ୍ତି ।

ଏଭଳି ସାଧୁଙ୍କ ସତ୍‌ସଙ୍ଗ ଦ୍ୱାରା ଯେକୌଣସି ସାଧକ ସହଜରେ ଆତ୍ମସାକ୍ଷାତ୍‌କାର ଲାଭ କରିପାରେ । ଶ୍ରବଣ-ନିରୂପଣ ଓ ମନନର ଅଭ୍ୟାସ ଦ୍ୱାରା ସାଧକଠାରେ ଉପରୋକ୍ତ ଲକ୍ଷଣସବୁ ପ୍ରକଟିତ ହୋଇଥାଏ । ଆଧ୍ୟାତ୍ମିକ-ଚର୍ଚ୍ଚା ପ୍ରତି ସାଧକର ଆଗ୍ରହ ରହିଲେ , କ୍ରମଶଃ ବ୍ରହ୍ମସ୍ୱରୂପର ଅନୁସନ୍ଧାନ ଦିଗରେ ସେ ଲାଗି ରହେ ଏବଂ ପରେ ଆତ୍ମସାକ୍ଷାତ୍‌କାର ଲାଭ କରେ । ତାର ସମସ୍ତ ଦୁର୍ଗୁଣ ଲୋପ ପାଏ । ତେଣୁ ସାଧୁମାନଙ୍କ ସତ୍‌ସଙ୍ଗ କରିବା ଶ୍ରେୟସ୍କର ।

ସମଗ୍ର ସୃଷ୍ଟିରେ ସମସ୍ତଙ୍କର ଅନୁଭବ ସମାନ ହୋଇନଥାଏ । ତେଣୁ ପରବର୍ତ୍ତୀ ସମାସରେ ମୁଁ ଭିନ୍ନ ଭିନ୍ନ ଲୋକଙ୍କ ଅନୁଭବ ସମ୍ପର୍କରେ ବିସ୍ତୃତ ଭାବେ ବର୍ଣ୍ଣନା କରିବି ।

## ଦଶମ ସମାସ
## ॥ ଶୂନ୍ୟତା-ନିରସନ ॥

ଲୋକଙ୍କ ନିଜ ନିଜର ଅନୁଭବ ତଥା ଚିନ୍ତାଧାରାର ବିଚାର କରାଯାଉଥିବାରୁ ଜଗତରେ ବହୁତ ଜଞ୍ଜାଳ ଦେଖାଦେଇଥାଏ । କେହି କେହି କହିଥାଆନ୍ତି ଯେ ଗୃହସ୍ଥ-କାର୍ଯ୍ୟ କରି ମଧ୍ୟ ମନୁଷ୍ୟ ସଂସାର-ସାଗରରୁ ପାରି ହୋଇପାରେ । କାରଣ ସାଂସାରିକ ଜଞ୍ଜାଳ ବୋଲି ଯାହା କୁହାଯାଇଚି, ସେସବୁ ମନୁଷ୍ୟ ତିଆରି କରିନାହିଁ, ତିଆରି କରିଛନ୍ତି ସ୍ୱୟଂ ଭଗବାନ । କେହି କେହି କହିଥାଆନ୍ତି ଜୀବନ ନିର୍ବାହ କରିବାକୁ ହେଲେ ନିଜର ଓ ପରିବାରର ସେବା କରିବାକୁ ହିଁ ପଡ଼ିବ । ସେଥିରେ ଲୋଭ ଓ ମୋହ ଦେଖାଯିବା ସ୍ୱାଭାବିକ । ଆଉ କେତେକଙ୍କ ଯୁକ୍ତି ହେଉଚି ସୁଖଶାନ୍ତିରେ ଘର ସଂସାର ଚଳାଇବା ସଙ୍ଗେ ସଙ୍ଗେ ପରଲୋକ ଓ ପରମାର୍ଥ ଲାଗି ଦାନ ପୁଣ୍ୟ କରିଦେଲେ ଯଥେଷ୍ଟ ହେଲା । କେତେକ ଲୋକଙ୍କ ଧାରଣା ଯେ ସଂସାର ହେଉଚି ମିଥ୍ୟା । ତେଣୁ ବୈରାଗ୍ୟ ଅବଲମ୍ବନ କରି ତୀର୍ଥାଟନ କରିବା ଉଚିତ ଏବଂ ତଦ୍ୱାରା ସ୍ୱର୍ଗପ୍ରାପ୍ତି ସୁଲଭ ହୋଇଉଠିବ । ଏହି କଥାକୁ ଖଣ୍ଡନ କରି ଆଉ କେହି କେହି କହିଥାଆନ୍ତି ଯେ ଏଠିକି ସେଠିକି ଘୂରି ବୁଲିବାର କୌଣସି ଆବଶ୍ୟକତା ନାହିଁ । ନିଜର ଗୃହସ୍ଥାଶ୍ରମଧର୍ମକୁ ଯଥାର୍ଥ ପାଳନ କରିବା ହିଁ ସାରକଥା ଏବଂ ତାହା ହିଁ ପ୍ରକୃତ ଧର୍ମ ।

ଜଗତରେ ନିରାଶବାଦୀ ଲୋକଙ୍କ ସଂଖ୍ୟା ମଧ୍ୟ ବହୁତ । ସେମାନେ କହିଥାଆନ୍ତି ''ଧର୍ମକୁ ଧରି ବସିଲେ ଲାଭ କ'ଣ ? ଚାରିଆଡ଼େ ତ ଅଧର୍ମ ଛାଇ ହୋଇ ରହିଛି । ଏ ସଂସାରରେ ସବୁ ପ୍ରକାରର କାମ କରିବାକୁ ପଡ଼ିଥାଏ । ତେଣୁ ନୀତି ଅନୀତି ବୋଲି କିଛି ନାହିଁ । ସେସବୁ ବୃଥା କଥା ।''

ଆଉ କେହି କହି ଥାଆନ୍ତି—ନିଜର ବାସନା ଶୁଦ୍ଧ କରିବା ଉଚିତ, ତାହାହେଲେ ସହଜରେ ଭବ-ସାଗର ପାର ହୋଇ ପାରିବ । କେହି କେହି

କହିଥାଆନ୍ତି ଯେ ମନର ଭାବ ଭଲ ହେବା ଆବଶ୍ୟକ । ଭାବରେ ହିଁ ଭଗବାନଙ୍କୁ ପାଇବ । ଆଉ ସବୁ ସାଧନା ବ୍ୟର୍ଥ ।

ଆଉ କେତେକଙ୍କ ମତ ହେଉଚି ମାତା ପିତା ଓ ଗୁରୁଜନମାନଙ୍କୁ ଭକ୍ତି ଓ ଶ୍ରଦ୍ଧା କରିବା ଆବଶ୍ୟକ । ସେମାନଙ୍କୁ ଭଗବାନ ମନେ କରି ପୂଜା କରିବା ଉଚିତ । କେହି କେହି କହିଥାଆନ୍ତି ଦେବତା, ବ୍ରାହ୍ମଣ ଓ ପିତାମାତା ହେଉଚନ୍ତି ନାରାୟଣ ସ୍ୱରୂପ । ସେମାନଙ୍କୁ ନାରାୟଣ ମନେ କରି ପୂଜା କରିବା ଉଚିତ ।

କେହି କେହି ବହୁ ଶାସ୍ତ୍ର ଅଧ୍ୟୟନ କରି ଶାସ୍ତ୍ରାନୁମୋଦିତ ଉପାୟରେ ସାଧନ ଭଜନ କରିବା ଶ୍ରେୟସ୍କର ବୋଲି ଅନ୍ୟକୁ ପରାମର୍ଶ ଦେଇଥାଆନ୍ତି । କିନ୍ତୁ ଏହି ମତକୁ ଖଣ୍ଡନ କରି କେତେକ କହିଥାଆନ୍ତି ଯେ କେବଳ ଶାସ୍ତ୍ର ଅଧ୍ୟୟନ ତଥା ପରିଶୀଳନ ଦ୍ୱାରା କୌଣସି କାମ ହୋଇ ପାରିବ ନାହିଁ । ତେଣୁ ସଦ୍‌ଗତି ଓ ପରମାର୍ଥ ସାଧନ ଲାଗି ସାଧୁସନ୍ଥଙ୍କ ଶରଣ ନେବା ଉଚିତ ।

ଏହି ମତକୁ ଖଣ୍ଡନ କରିବାକୁ ବହୁଲୋକ ଅଛନ୍ତି । ସେମାନେ କହନ୍ତି, ଏସବୁ ଝିଞ୍ଜଟରେ କିଏ ପଶୁଚି ? ସବୁଠୁ ଉତ୍କୃଷ୍ଟ ମାର୍ଗ ହେଉଚି ''ଜୀବେଦୟା'' ଅର୍ଥାତ୍ ପ୍ରତ୍ୟେକ ପ୍ରାଣୀପ୍ରତି ପ୍ରେମ ଓ ଦୟାଭାବ ରଖିବା । ଏହାଦ୍ୱାରା ପରମପିତା ପରମାତ୍ମା ପ୍ରସନ୍ନ ହୋଇଥାଆନ୍ତି । ଆଉ କେହି କେହି କହିଥାଆନ୍ତି ନିଜର ଆଚାର ବିଚାରକୁ ନିର୍ମଳ ରଖି ଭଗବାନଙ୍କ ଭଜନ କରିବା ଦ୍ୱାରା ଜୀବନ ସାର୍ଥକ ହୋଇଥାଏ । ତୀର୍ଥରେ କ'ଣ ବା ଅଛି ? ସେଠାରେ ରହିଛି କେବଳ ପାଣି ଆଉ ପାଷାଣ । ତୁଚ୍ଛାଟାରେ ପାଣିରେ ବୁଡ଼ି ବୁଡ଼ି, ପଥର ଆଗରେ ମୁଣ୍ଡ ବାଡ଼େଇ ବାଡ଼େଇ ଜାଣିଶୁଣି କଷ୍ଟ ଭୋଗିବ କାହିଁକି ?

ଏହି ମତକୁ ମଧ୍ୟ ଖଣ୍ଡନ କରିବା ଲାଗି କମ ଲୋକ ନାହାଁନ୍ତି । ସେମାନେ କହନ୍ତି ତୀର୍ଥସ୍ଥାନର ମହିମା ଅପାର । ତୀର୍ଥ ଦର୍ଶନ ମାତ୍ରେ ମହାପାତକ ନାଶ ହୋଇଥାଏ ।

ଅନେକ ତତ୍ତ୍ୱବାଦୀ କହିଥାଆନ୍ତି ଯେ ସବୁ ଖରାପ କଥାର ମୂଳ ହେଉଚି ମନ । ଏହାକୁ ସଂଯତ ରଖାଗଲେ ତାହାହିଁ ତୁମରି ତୀର୍ଥ । ମନ ନିର୍ମଳ ତ ଗଙ୍ଗା ତୁମ ହୃଦୟ ଭିତରେ । ଆଉ କେହି କେହି କହିଥାଆନ୍ତି ଯେ ସର୍ବଦା ଭଜନ କୀର୍ତ୍ତନରେ

ମଗ୍ନ ରହିବା ଉଚିତ । ଆଉ କେହି କେହି କହିଥାଆନ୍ତି ଯେ ଯୋଗାଭ୍ୟାସଦ୍ୱାରା ଶରୀରକୁ ଅମର କରାଯାଇପାରେ । କେହି ଭକ୍ତିମାର୍ଗକୁ ତ କେହି ଜ୍ଞାନମାର୍ଗକୁ ଶ୍ରେଷ୍ଠ ସାଧନ ବୋଲି କହିଥାଆନ୍ତି ।

କେତେକଙ୍କ ମତ ହେଉଚି ମନୁଷ୍ୟ ସର୍ବଦା ମୁକ୍ତାବସ୍ଥାରେ ରହିବା ଉଚିତ । ଆଉ କେହି କେହି କହିଥାଆନ୍ତି ଯେ ପାପରୁ ରକ୍ଷା ପାଇବା ଲାଗି କାହାର ନିନ୍ଦା କରିବା କିମ୍ବା କାହା ପ୍ରତି ଦ୍ୱେଷଭାବ ପୋଷଣ କରିବା ଅନୁଚିତ । କେହି କେହି କୁସଙ୍ଗ ପରିତ୍ୟାଗ କରିବାକୁ ଉପଦେଶ ଦେଉଥିବା ସ୍ଥଳେ ଆଉ କେହି କେହି ଯୁକ୍ତି କରିଥାଆନ୍ତି ଯେ ସାରାଜୀବନ ଭୋଗବିଳାସରେ ମାତି ରହିବା ଉଚିତ । କେହି କେହି ତପସ୍ୟାଦ୍ୱାରା ସବୁ ସିଦ୍ଧି ଲାଭ କରିବା ଉଚିତ ବୋଲି କହିଥାଆନ୍ତି ଏବଂ ଇନ୍ଦ୍ରପଦ ଲାଭ କରିବାର ଅଭିଳାଷ ପୋଷଣ କରିଥାଆନ୍ତି । କେହି କେହି ତନ୍ତ୍ର ମନ୍ତ୍ର ଦ୍ୱାରା ସିଦ୍ଧିଲାଭ କରିବାକୁ ଚାହିଁଥାଆନ୍ତି । କେହି କେହି କହିଥାଆନ୍ତି ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ କରିବାଦ୍ୱାରା ସବୁ ସଂକଳ୍ପ ପୂର୍ଣ୍ଣ ହୋଇଥାଏ । କେହି କେହି କୌଣସି ଦେବୀଙ୍କୁ ପ୍ରସନ୍ନ କରିବାକୁ ଚାହିଁଥାଆନ୍ତି ତ କେହି କେହି କୌଣସି ଦେବତାକୁ ପ୍ରସନ୍ନ କରିବାକୁ ଚାହିଁଥାଆନ୍ତି । କେହି କେହି କହିଥାଆନ୍ତି ମନୁଷ୍ୟକୁ ଏହି ଜନ୍ମରେ ପୂର୍ବ ଜନ୍ମର କର୍ମ ଫଳ ହିଁ ଭୋଗ କରିବାକୁ ପଡ଼ିଥାଏ । ସେ ପ୍ରାରବ୍ଧ (ପୂର୍ବ ଜନ୍ମର କର୍ମ) ଅନୁଯାୟୀ ସୁଖ ଦୁଃଖ ଭୋଗ କରିଥାଏ । କେହି କେହି ଦାବୀ କରିଥାଆନ୍ତି ଯେ ମୁଁ ଉଦ୍ୟମ କରି ଭଗବାନଙ୍କୁ ପାଇ ପାରିଚି । ଅନ୍ୟ କେହି କେହି ଭଗବାନଙ୍କ ଉପରେ ସବୁ କିଛି ଛାଡ଼ି ଦେବାକୁ କହି ଥାଆନ୍ତି ।

କେହି କେହି କହିଥାଆନ୍ତି ଏହି କଳିଯୁଗରେ ପରମେଶ୍ୱର ସଜ୍ଜନମାନଙ୍କୁ କଷ୍ଟ ଦେଇ ସେମାନଙ୍କୁ ପରୀକ୍ଷା କରିବାରେ ଲାଗିଛନ୍ତି । ଆଉ କେହି କେହି କହିଥାଆନ୍ତି ଯେ ଯେତେବେଳେ ଯେଉଁ ପରିସ୍ଥିତି ଉପୁଜୁଛି ତାହା ହେଉଛି ଯୁଗଧର୍ମ । କିନ୍ତୁ ଅନ୍ୟମାନେ ପରିସ୍ଥିତିକୁ ଦେଖି ଭୟଭୀତ ଓ ବିସ୍ମିତ ହୋଇ ପଡ଼ିଥାଆନ୍ତି । ଏଭଳି କେତେକ ଲୋକ ଅଛନ୍ତି ସେମାନଙ୍କର କୌଣସି କଥାକୁ ଖାତିର ନ ଥାଏ । ସେମାନେ କହନ୍ତି, ଯାହାକିଛି ହେବ ଦେଖାଯିବ, ସେଥିଲାଗି ବ୍ୟସ୍ତ ହେବାର କ'ଣ ଅଛି ?

ଏହଭଳି ଭାବେ ସଂସାରରେ ଲୋକଙ୍କ ବିଚାର ବିଭିନ୍ନ ପ୍ରକାରର । ଏଠିତ ଅଳ୍ପ କେତୋଟି କଥା କୁହାଗଲା । କିନ୍ତୁ ମନେରଖ ଏପର୍ଯ୍ୟନ୍ତ ଯେତେସବୁ ଲକ୍ଷଣ କୁହାଗଲା ସେସବୁ ହେଉଛି ଅଜ୍ଞାନୀମାନଙ୍କର । ବର୍ତ୍ତମାନ ପ୍ରକୃତ ଜ୍ଞାନୀର ଲକ୍ଷଣ କ'ଣ ଶୁଣନ୍ତୁ । ଜ୍ଞାନୀମାନଙ୍କ ବିଚାର ମଧ୍ୟ ବିଭିନ୍ନ ପ୍ରକାରର । କେହି କେହି କହିଥାଆନ୍ତି, ଭଗବାନଙ୍କ ପ୍ରତି ଅନନ୍ୟ ଭକ୍ତି ରହିବା ଉଚିତ । ତଦ୍ୱାରା ସଦ୍‌ଗତିପ୍ରାପ୍ତି ହୋଇଥାଏ । ଆଉ କେହି କେହି କହିଥାଆନ୍ତି, କର୍ମମାର୍ଗରେ ହିଁ ବ୍ରହ୍ମପ୍ରାପ୍ତି ସମ୍ଭବ । ତେଣୁ ସତ୍‌କର୍ମ କରିବା ଆବଶ୍ୟକ । କେହି କେହି କହିଥାଆନ୍ତି, ମଣିଷ ରୋଗରୁ ତ୍ରାହି ପାଇପାରିବ ନାହିଁ କିମ୍ବା ଜନ୍ମମରଣରୁ ମୁକ୍ତ ହୋଇପାରିବ ନାହିଁ । ତେଣୁ କିଛି ନକରି ଶାନ୍ତ ରହିବା ଉଚିତ । ସବୁ ହେଉଛି ପରଂବ୍ରହ୍ମ । ଅନ୍ୟ କେହି କେହି କହିଥାଆନ୍ତି ଯେ ଚୁପ୍ ରହ, ଏଭଳି ଅଧର୍ମ କଥା କହ ନାହିଁ ।

କେହି କେହି କହିଥାଆନ୍ତି ଯେ ସମଗ୍ର ସୃଷ୍ଟି ବିନାଶଶୀଳ, ଯାହା ଶେଷ ରହେ ତାହା ହିଁ ବ୍ରହ୍ମ । ଏହାର ଜବାବ ଦେଇ ଆଉ କେହି କେହି କହିଥାଆନ୍ତି, ଯାହା କହୁଚ ତାହା ସମାଧାନର ମାର୍ଗ ନୁହଁ ।  ସେମାନଙ୍କ ଯୁକ୍ତି ହେଉଛି ସବୁକିଛି ଯେ ବ୍ରହ୍ମ ଏହା ତ ପୂର୍ବପକ୍ଷର ନିରୂପଣ, କିନ୍ତୁ ମଣିଷ ଏହାର ବିପରୀତ କଥା ଅନୁଭବ କରିଥାଏ । ଆଉ କୌଣସି କୌଣସି ଜ୍ଞାନୀବ୍ୟକ୍ତି କହିଥାଆନ୍ତି ଯେ ଆମେ ସବୁ ଦେଖୁଥିଲେ ମଧ୍ୟ କୌଣସି ଦୃଶ୍ୟବସ୍ତୁ ସହିତ ସଂପୃକ୍ତ ନ ରହ ସର୍ବସାକ୍ଷୀ ରୂପେ ରହିବା ଉଚିତ । ଦୃଶ୍ୟଠାରୁ ଦ୍ରଷ୍ଟା ଅଲଗା  । ଆତ୍ମା ପଦାର୍ଥଠାରୁ ଊର୍ଦ୍ଧ୍ୱରେ । ଦେହ ଧାରଣ କରିଥିଲେ ମଧ୍ୟ ଦେହଠାରୁ ସେ ଅଲଗା—ଏ କଥା ଜାଣି ମନୁଷ୍ୟ ଅକର୍ତ୍ତା ଭାବରେ ବିଚରଣ କରିବା ଉଚିତ ।

ଅନ୍ୟ ଜ୍ଞାନୀଙ୍କ ପ୍ରଶ୍ନ ହେଉଚି ପରମାତ୍ମବସ୍ତୁ ତ ଏକ, ଏହାର ଦ୍ରଷ୍ଟାଭାବ ଆସିବ କୁଆଡୁ ? ସବୁକିଛି ବ୍ରହ୍ମ । ପ୍ରପଞ୍ଚ ଓ ପରଂବ୍ରହ୍ମ ଦୁହେଁ ଅଭିନ୍ନ । ଭେଦବାଦୀମାନେ ଏ ସମ୍ପର୍କରେ ଭେଦଭାବ ସୃଷ୍ଟି କରିଥାଆନ୍ତି ସତ; କିନ୍ତୁ ବସ୍ତୁତଃ ଆତ୍ମା ହିଁ ଜଗତ ରୂପରେ ବିସ୍ତାରିତ । ତରଳ ଘିଅ ହିଁ ଜମି ଜମି ଜମାଟ ବାନ୍ଧିଥାଏ । ସେହିଭଳି ନିର୍ଗୁଣ ହିଁ ସଗୁଣ ତଥା ସାକାର ରୂପରେ ପ୍ରକଟିତ । ଦ୍ରଷ୍ଟା ଓ ଦୃଶ୍ୟ ସବୁ ସେହି ଏକ ପରଂବ୍ରହ୍ମ । କେହି କେହି କହିଥାଆନ୍ତି ସବୁ ପ୍ରପଞ୍ଚଠାରୁ ଅଲଗା । ତେଣୁ ଶୂନ୍ୟବତ୍ ହୋଇଯାଅ କାରଣ ପରଂବ୍ରହ୍ମ ଶୂନ୍ୟବତ୍ ।

କିନ୍ତୁ ଅନ୍ୟ ଜ୍ଞାନୀଙ୍କ ପ୍ରଶ୍ନ— ଶୂନ୍ୟକୁ ବ୍ରହ୍ମ କୁହାଯିବ କିପରି ? ଶୂନ୍ୟତ୍ୱର ସୂକ୍ଷ୍ମ ପ୍ରତିବିମ୍ବକୁ ବିବେକ ଦ୍ୱାରା ଦୂର କରି ପ୍ରକୃତ ସିଦ୍ଧଜ୍ଞାନୀ ପୁରୁଷ, ରାଜହଂସ କ୍ଷୀରରୁ ପାଣିକୁ ଅଲଗା କରିଦେଇ କେବଳ କ୍ଷୀର ଖାଇବା ଭଳି ଅମୃତ ଭକ୍ଷଣ କରିଥାଏ । ପ୍ରଥମେ ଶୂନ୍ୟକୁ ଭୁଲି ପରେ ଶୂନ୍ୟକୁ ଅତିକ୍ରମ କରି ମାୟାଶୂନ୍ୟ ପରବ୍ରହ୍ମକୁ ଦର୍ଶନ କର । ଅର୍ଥାତ୍ ବ୍ରହ୍ମସ୍ୱରୂପ ହୋଇଯାଅ । ବସ୍ତୁଠାରୁ ଅଭିନ୍ନ ହେବା ପରେ ଶୂନ୍ୟ ରହିବ କିପରି ? ବସ୍ତୁରୂପ ହୋଇ ସ୍ୱାନୁଭବ ଦ୍ୱାରା ନିଜର ଅଭିନ୍ନତାକୁ ସ୍ଥିର କରିନେବା ଉଚିତ ।

ଆମ ମନ ହିଁ 'ଆମେ'— ଏହି କଳ୍ପନା ମିଥ୍ୟା । ଜ୍ଞାନୀ ମାତ୍ରେ କହିଥାଆନ୍ତି ଯେ ତୁମେ ଶରୀର କିମ୍ବା ମନ ନୁହଁ, ଆତ୍ମା । କୌଣସି ସନ୍ଥ କେବେହେଲେ ନିଜ ମନ ହିଁ 'ମୁଁ' ବୋଲି କହି ନ ଥାଆନ୍ତି । ସନ୍ଥବଚନ ଉପରେ ଦୃଢ଼ ବିଶ୍ୱାସ ରଖିବା ହିଁ ଶୁଦ୍ଧ ସ୍ୱାନୁଭବ । ମନ ସ୍ୱଭାବତଃ ଚଞ୍ଚଳ । ତେଣୁ ମନ 'ମୁଁ' କିମ୍ବା ଆତ୍ମା ହୋଇ ନ ପାରେ । ଆମେ ଯେଉଁ ନିରବୟବ ବସ୍ତୁକୁ ଅନୁଭବ କରୁ, ସେହି ବସ୍ତୁ ଆମେ ସ୍ୱୟଂ । ସମସ୍ତେ ଏହି ସୋଽହଂକୁ ହିଁ ଅନୁଭବ କରିଥାଆନ୍ତି ।

ଯେପରି ଧନୀ ବ୍ୟକ୍ତି ଧନ ସଂଗ୍ରହ ନିଶାରେ ନିଜେ ଧନରୂପ ହୋଇପଡ଼େ ସତ, ତା ଅର୍ଜିତ ଧନକୁ ଅନ୍ୟମାନେ ହିଁ ଭୋଗ କରିଥାଆନ୍ତି । ଦେହବୁଦ୍ଧି ତ୍ୟାଗ କରିବାରେ ସାଧକମାନେ ମଧ୍ୟ ଏହି ଦଶା ଭୋଗ କରିଥାଆନ୍ତି । ଏହି 'ଅନୁଭବ' ହିଁ ମୁଖ୍ୟ କଥା । ଜ୍ଞାନର ତାତ୍ପର୍ଯ୍ୟ ହେଉଛି ବ୍ରହ୍ମ ଓ ଆମେ ଏକ ଅଭିନ୍ନ ।

ଏହିଠାରେ ଜ୍ଞାନ-ଦଶକ ସଂପୂର୍ଣ୍ଣ ହେଲା । ଆତ୍ମ-ଜ୍ଞାନ ସମ୍ପର୍କରେ ମୋର କହିବାରେ ଯଦି କୌଣସି ତ୍ରୁଟି ରହିଯାଇଥାଏ ଶ୍ରୋତାଗଣ କ୍ଷମା କରିବାକୁ ନିବେଦନ ।



# ନବମ ଦଶକ

## ପ୍ରଥମ ସମାସ
## ।। ଆଶଙ୍କା ।।

ଶ୍ରୋତାମାନଙ୍କର ଅନୁରୋଧ—ନିରାଧାର, ନିରାକାର, ନିର୍ବିକଳ୍ପର ଅର୍ଥ କ'ଣ ଆମକୁ ବୁଝେଇ ଦିଅନ୍ତୁ ।

ସ୍ୱାମିଜୀ ଏହାର ଉତ୍ତର ଦେଇ କହୁଛନ୍ତି, ଯାହାର ଆକାର ନାହିଁ ସେ ନିରାକାର, ଯାହାର ଆଧାର ନାହିଁ ସେ ନିରାଧାର, ଯାହାକୁ କଳ୍ପନା କରି ହୁଏ ନାହିଁ ସେ ନିର୍ବିକଳ୍ପ । ଏହି ତିନୋଟିଯାକ ତଥ୍ୟ ପରବ୍ରହ୍ମଙ୍କ ପ୍ରତି ପ୍ରଯୁଜ୍ୟ । ଯାହାର ବିକାର ନାହିଁ ସେ ନିର୍ବିକାର, ନିରାମୟ । ଏହା ନିରାଭାସ କାରଣ ଏହାର ପ୍ରତ୍ୟକ୍ଷ କୌଣସି ଅବୟବ ନାହିଁ । ଏହା ନିରବୟବ କାରଣ ଏହାର କୌଣସି ଅବୟବ ନାହିଁ । ବ୍ରହ୍ମକୁ ନିଷ୍ପ୍ରପଞ୍ଚ, ନିଷ୍କଳଙ୍କ ଓ ନିରୂପାଧିକ ମଧ୍ୟ କୁହାଯାଇଥାଏ । ସେ ନିରୂପମ, ନିରବଲମ୍ବ ଓ ନିରାପେକ୍ଷ । କାରଣ ଏହାକୁ କୌଣସି ଉପମା ଦିଆଯାଇ ନ ପାରେ, ଏହାର କୌଣସି ଅବଲମ୍ବନ ନାହିଁ ଏବଂ ଏହା କାହାକୁ ଅପେକ୍ଷା କରିନଥାଏ । ବ୍ରହ୍ମ ନିରଞ୍ଜନ, ନିରନ୍ତର ଓ ନିର୍ଗୁଣ । ଅର୍ଥାତ୍ ଏଥିରେ କୌଣସି କଳୁଷ ନାହିଁ, ଏହା ଲାଗି କୌଣସି ଅନ୍ତର ନାହିଁ କିମ୍ବା ଏଥିରେ କୌଣସି ଗୁଣ ନାହିଁ । ଏହା ନିଃସଙ୍ଗ, ନିର୍ମଳ, ନିଶ୍ଚଳ ଓ ଅଚଳ ।

ପରବ୍ରହ୍ମ ନିଃଶବ୍ଦ, ନିର୍ଦ୍ଦୋଷ ଓ ନିବୃତ୍ତ । ତାତ୍ପର୍ଯ୍ୟ ହେଉଚି ପରମାତ୍ମାରେ କୌଣସି ଶବ୍ଦ— ଦୋଷ କିମ୍ବା ବୃତ୍ତିଭାବ ନାହିଁ । ଏହା ନିଷ୍କାମ, ନିର୍ଲେପ ଓ ନିଷ୍କର୍ମ । ଅର୍ଥାତ୍ ଏହାର କୌଣସି ଇଚ୍ଛା, ବାସନା କିମ୍ବା ମନୋରଥ ନାହିଁ, ଏହାର କୌଣସି ଲେପ ବା ଆବରଣ ନାହିଁ । ଏହା କର୍ମ କରୁଥିଲେ ମଧ୍ୟ ଅକର୍ତ୍ତା । ବ୍ରହ୍ମ ଅନାମୀ, ଅଜନ୍ମା ଓ ଅପ୍ରତକ୍ଷ । ଏହା ଚର୍ମ ଚକ୍ଷୁରେ ଅଦୃଶ୍ୟ । ଏହା ଅଗଣିତ, ଅକର୍ତ୍ତବ୍ୟ ଓ ଅକ୍ଷୟ । ଅର୍ଥାତ୍ ଏହାର ଗଣନା କରାଯାଇ ନ ପାରେ । ଏହାର କୌଣସି କର୍ତ୍ତବ୍ୟ ଭାବନା ନାହିଁ । ଏହାର କ୍ଷୟ ନାହିଁ, ବିନାଶ ନାହିଁ । ଏହା ଅରୂପ, ଅଲକ୍ଷ୍ୟ ଓ ଅନନ୍ୟ । ଏହା

ଅପାର, ଅଟଳ ଏବଂ ଅତର୍କ୍ୟ ଅର୍ଥାତ୍ ତର୍କ ଦ୍ୱାରା ଏହାକୁ ଜାଣି ହୁଏ ନାହିଁ । ଏହା ଅଦ୍ୱୈତ, ଅଦୃଶ୍ୟ, ଅଚ୍ୟୁତ, ଅଛେଦ୍ୟ, ଅଦାହ୍ୟ ଏବଂ ଅକ୍ଳେଦ୍ୟ ଓ ଅଦ୍ୱିତୀୟ । ଅର୍ଥାତ୍ ଏହାକୁ ଦେଖି ହୁଏନା, ଏହାକୁ ଛେଦନ କରାଯାଇ ପାରେନା, ଜଳାଯାଇ ପାରେନା, ଏହାକୁ ଧୋଇ ହୁଏନା । ଏହା ସବୁର ଊର୍ଦ୍ଧ୍ୱରେ । ନିଜେ ଅନୁଭବ କଲେ କିମ୍ବା ସଦ୍‌ଗୁରୁଙ୍କ କୃପାପ୍ରସାଦ ମିଳିଲେ ଯାଇ ଏହାକୁ ଜାଣି ହୁଏ । କିନ୍ତୁ ଜାଣିବ କ'ଣ ? ଏହାକୁ ଜାଣିବା ହେଉଚି ତୁମେ ନିଜେ ହିଁ ପରଂବ୍ରହ୍ମ ।

## ଦ୍ୱିତୀୟ ସମାସ
## ।। ବ୍ରହ୍ମ ନିରୂପଣ ।।

ଯେତେ ଜିନିଷ ଆମକୁ ସାକାର ଦେଖାଯାଉଛି, ସେସବୁ କଳ୍ପାନ୍ତରେ ନଷ୍ଟ ହୋଇଥାଏ । କିନ୍ତୁ ବ୍ରହ୍ମ ସ୍ୱରୂପ ଏବେ ଯାହା ସବୁବେଳେ ତାହା । ଏହାର କୌଣସି ପରିବର୍ତ୍ତନ ନାହିଁ କିମ୍ବା ଏହା କେବେ ନଷ୍ଟ ହୁଏ ନାହିଁ । ଯାହା ସବୁଠାରୁ ସାର ବସ୍ତୁ, ଯାହା କେବେ ମିଥ୍ୟା ନୁହଁ, ଯାହା ସଦାସର୍ବଦା ଏକାଭଳି ରହିଥାଏ ତାହାହିଁ ଭଗବାନଙ୍କ ସ୍ୱରୂପ । ଏହି ସତ୍‌ପୁରୁଷର ଅନନ୍ତ ନାମ । କେବଳ ଦୃଷ୍ଟାନ୍ତ ଲାଗି ବିଭିନ୍ନ ନାମଦ୍ୱାରା ଏହାକୁ ପରିଚିତ କରାଯାଇଥାଏ । କିନ୍ତୁ ବସ୍ତୁତଃ ଏହା ନାମାତୀତ, ଏହା ନାମର ଊର୍ଦ୍ଧ୍ୱରେ । ଏହା ପ୍ରତ୍ୟେକ ଦୃଶ୍ୟ ବସ୍ତୁର ଭିତର ଓ ବାହାରେ ବ୍ୟାପି ରହିଥିଲେ ମଧ୍ୟ ଲୌକିକ ଦୃଷ୍ଟିରେ ଏହାକୁ ଦେଖି ହୁଏନାହିଁ । ଏହା ଅତି ନିକଟରେ ଥାଇ ମଧ୍ୟ ଦୃଷ୍ଟିଗୋଚର ହୁଏନାହିଁ । ପରମେଶ୍ୱରଙ୍କ ବର୍ଣ୍ଣନା ଶୁଣି ମନରେ ଇଚ୍ଛା ଜାଗ୍ରତ ହେବା ସ୍ୱାଭାବିକ ଯେ ଏହା ସହିତ ସାକ୍ଷାତ୍‌କାର ହୁଅନ୍ତା କି ! କିନ୍ତୁ ମଣିଷ ଇଚ୍ଛା କଲେ କ'ଣ ହେବ, ଏହାକୁ ଦେଖିବାକୁ ଚେଷ୍ଟା କରିବା ମାତ୍ରେ ବାହାର ଦୃଶ୍ୟ ସବୁ ଆସି ଆଖି ଆଗରେ ଝଲ୍‌ସି ଉଠେ । ଏହି ବାହାରର ଦୃଶ୍ୟଗୁଡ଼ିକ ହେଉଚି ଲୌକିକ ଦୃଷ୍ଟିର ବିଷୟ ।

ଏସବୁ ଦେଖିବାମାତ୍ରେ ମନରେ ଅବଶ୍ୟ ସନ୍ତୋଷ ଲାଭ ହୋଇଥାଏ, କିନ୍ତୁ ଏହି ଦର୍ଶନ ବାସ୍ତବିକ ନୁହେଁ । ଆଖିକୁ ଦେଖାଯାଉଥିବା ପ୍ରତ୍ୟେକ ବସ୍ତୁ ନଶ୍ୱର । ଏ ସମ୍ପର୍କରେ ଶ୍ରୁତିରେ କୁହାଯାଇଚି– ''ଯାହା ଦେଖାଯାଇଥାଏ, ଏହା ପରବ୍ରହ୍ମ ନୁହଁ । ପରବ୍ରହ୍ମ, ପରମାତ୍ମା ନିରାଭାସ, କିନ୍ତୁ ଦୃଶ୍ୟର ତ ଆଭାସ

ରହିଛି ।'' ବେଦାନ୍ତ ଅନୁଯାୟୀ ଯେଉଁ ବସ୍ତୁ ଭାସମାନ ତାହା ନାଶବାନ୍ । ଦେଖିବାରେ କେବଳ ଦୃଶ୍ୟର ଅଭାସ ହୋଇଥାଏ । କିନ୍ତୁ ମୂଳବସ୍ତୁ ଦୃଶ୍ୟଠାରୁ ଅଲଗା । କେବଳ ନିଜର ଅନୁଭବ ଦ୍ୱାରା ଏହି ଶାଶ୍ୱତ ବସ୍ତୁର (ଦୃଶ୍ୟର) ଭିତର ବାହାରର ଦର୍ଶନ ମିଳିଥାଏ । ନିରାଭାସ ଓ ନିର୍ଗୁଣ ବସ୍ତୁକୁ ବୁଝେଇବ କିପରି ? କିନ୍ତୁ ମନେରଖ ଯେ ଏହି ଚିଦ୍‌ସ୍ୱରୂପ ତୁମର ଅତି ନିକଟରେ । ଆକାଶ ଯେପରି ସର୍ବତ୍ର ପରିବ୍ୟାପ୍ତ, ସେହିଭଳି ପରମାତ୍ମା ସବୁଠାରେ ଓତଃପ୍ରୋତଃ ଭାବେ ରହିଛି । ଈଶ୍ୱର-ତତ୍ତ୍ୱ ଜଳରେ ଭିଜେ ନାହିଁ, ଅଗ୍ନିରେ ପୋଡ଼େ ନାହିଁ, ବାୟୁରେ ଉଡ଼େ ନାହିଁ । ଏହା ସର୍ବଦା ସବୁକିଛି ସହିତ ସଂଲଗ୍ନ ରହିଲେ ମଧ୍ୟ ଏହାକୁ କଳନା କରାଯାଇ ପାରେନା । ଏହାକୁ କଳନା କରି ନ ପାରିବାର କାରଣ ହେଉଚି ଆମର ଦେହାଭିମାନ ଅର୍ଥାତ୍ ଅହଂକାର ।

ଏହି ଅହଂଭାବ କ'ଣ ତାର ବର୍ଣ୍ଣନା ପ୍ରଥମେ ଆବଶ୍ୟକ । ଯିଏ ସ୍ୱରୂପ ଆଡ଼କୁ ଆକୃଷ୍ଟ ହୋଇ ''ମୁଁ ହିଁ ସ୍ୱରୂପ'' (ଅହଂ ବ୍ରହ୍ମୋଽସ୍ମି) ବୋଲି କହିଥାଏ, ସେ ସ୍ୱରୂପରେ ଲୀନ ହୋଇଯାଏ । ''ମୁଁ ବ୍ରହ୍ମ'' ଏଭଳି ମାନିବା ଯେ ଅହଂକାର ଏକଥାଟିକୁ ଆମେ ସୂକ୍ଷ୍ମଭାବରେ ଜାଣିବା ଉଚିତ । ''ମୁଁ ବ୍ରହ୍ମ'' ଏହି ସିଦ୍ଧାନ୍ତ ହେଉଚି କଳ୍ପନା; କିନ୍ତୁ ପରବ୍ରହ୍ମ କଳ୍ପନାତୀତ । ଶବ୍ଦଦ୍ୱାରା ଯାହା କୁହାଯାଏ ତାହା ବାଚ୍ୟାଂଶ । ଲକ୍ଷ୍ୟାଂଶର ରହସ୍ୟକୁ ଜାଣିଗଲେ ଆଉ ବାଚ୍ୟାଂଶ ବୋଲି କିଛି ରହେନା । ତା ଅର୍ଥ ବ୍ରହ୍ମସ୍ୱରୂପ ହୋଇଯିବାପରେ ଆଉ କହିବାର କୌଣସି ଆବଶ୍ୟକତା ରହେ ନାହିଁ । ଅନୁଭବର ଲକ୍ଷଣ ବୁଝେଇବାଲାଗି ଶବ୍ଦ ଅସମର୍ଥ । ଯାହାକୁ ବର୍ଣ୍ଣନା କରିବା ଲାଗି ପରା, ପଶ୍ୟନ୍ତି, ମଧ୍ୟମା ଓ ବୈଖାରୀ— ଏହି ଚାରି ପ୍ରକାରର ବାଣୀ କୁଣ୍ଠିତ ହୋଇ ପଡ଼େ, ସେଠାରେ ଶବ୍ଦର କଳା-କୌଶଳ କି କାମ ଦେବ ? ଶବ୍ଦ ତ ନାଶବାନ୍ । ଏହା ଶାଶ୍ୱତ ବସ୍ତୁକୁ ପ୍ରକଟିତ କରିପାରିବ କିପରି ? ଏହା ଶବ୍ଦାତୀତ, କେବଳ ଅନୁଭବଗମ୍ୟ । ଉପଲବ୍ଧି କରାଯାଇ-ପାରେ, କିନ୍ତୁ କୁହାଯାଇ ପାରେନା । ଏହା ଅବ୍ୟକ୍ତ ।

ସଦ୍‌ସ୍ୱରୂପକୁ ଅନୁଭବ କରିବା ଅର୍ଥ ତା ସହିତ ତନ୍ମୟଭାବରେ ଅନନ୍ୟ ହୋଇପଡ଼ିବା ।

ଅନନ୍ୟର ଅର୍ଥ ହେଉଚି ତା'ଭଳି ଆଉ କେହି ନୁହଁ । ଏହାହିଁ ଆତ୍ମ-ନିବେଦନ । ସଙ୍ଗରହିତ ହେବା ପରେ ଅର୍ଥାତ୍ ଦ୍ୱୈତଭାବ ନଷ୍ଟ ହେବାପରେ କେବଳ ଆତ୍ମା ହିଁ ନିଃସଙ୍ଗ ରହିଥାଏ । ଏହାହିଁ ନିଗୂଢ଼ତତ୍ତ୍ୱ । ଏ ସମ୍ପର୍କରେ କିଛି ନ କହି ନ ଶୁଣି ଏହି ତତ୍ତ୍ୱ ଉପରେ ମନନ ଚିନ୍ତନ କରିବା ଉଚିତ । ତେଣୁ ମହାପୁରୁଷ ତଥା ସାଧୁସନ୍ଥମାନେ ମୌନ ରହିବା ଶ୍ରେୟସ୍କର ମନେ କରି-ଥାଆନ୍ତି ।

ଯାହାକୁ ବେଦ ଓ ଶ୍ରୁତି ମଧ ନେତି ନେତି (ଏତିକି ନୁହଁ, ଏତିକି ନୁହଁ) କହି କହି ନିଜର ଅସାମର୍ଥ୍ୟ ହିଁ ପ୍ରକାଶ କରି ଆସିଚି, ତାକୁ ଆମେ ଶବ୍ଦଦ୍ୱାରା ବର୍ଣ୍ଣନା କରିବା କିପରି ? ମନରେ ପ୍ରତୀତି ହୋଇଯିବା ପରେ ମଧ ସନ୍ଦେହ କରିବା ହେଉଚି ଦୁରାଭିମାନ । ଏହି ଅବସ୍ଥାରେ ନିଜ ଅଜ୍ଞାନକୁ ଦମନ କରିବା ଉଚିତ । ଏହିଭଳି ଭାବେ ମନୁଷ୍ୟ ନିଜର ଅହଂଭାବକୁ ଦୂର କରିପାରେ । ବୁଝିନେବା ଉଚିତ ଯେ ନିଜର କହିବା, ଚାଲିବା ସବୁ ହେଉଚି ମିଥ୍ୟା, କାଳ୍ପନିକ । ଭାଷଣ କରିବା ତ ପ୍ରକୃତିର ସ୍ୱଭାବ ଏବଂ ପ୍ରକୃତି ହେଉଚି ମିଥ୍ୟା । ଯେଉଁଠି ପ୍ରକୃତି ଓ ପୁରୁଷ ଉଭୟର ନିରସନ ଘଟିଥାଏ, ସେଠାରେ ଅହଂ ଭାବ ରହିବା କିପରି ? କୌଣସି ବ୍ୟକ୍ତି ଧ୍ୟାନସ୍ଥ ଥିବାବେଳେ ଯଦି କହେ "ମୁଁ ଧ୍ୟାନ କରୁଛି", ମୌନ ରହି ଯଦି କହେ "ମୁଁ ମୌନ ରହିଛି" ତାହାହେଲେ ଧ୍ୟାନ ଓ ମୌନାବସ୍ଥା ରହିବ କିପରି ? ମୌନୀ ଯଦି ମୁଁ ମୌନ ଅଛି ବୋଲି କହି ପକାଏ ତାହାହେଲେ ତ ତାର ମୌନଭଙ୍ଗ ହୋଇଗଲା । ସେହିଭଳି ଯଦି କୌଣସି ଅନୁଭବୀ ବ୍ୟକ୍ତି ନିଜ ଅନୁଭୂତିକୁ ଶବ୍ଦଦ୍ୱାରା କହିବା ଆରମ୍ଭ କରେ ତ ତାହାହେଲେ ବୁଝିବାକୁ ହେବ ଯେ ତାର ଅନୁଭବ କିଛି ହୋଇନାହିଁ । ଯିଏ ପ୍ରକୃତ ଆତ୍ମଜ୍ଞାନୀ ସେ ତାର ଅନୁଭବକୁ ବଖାଣି ନଥାଏ, ସେ ସର୍ବଦା ମୌନ ରହିଥାଏ । ତେଣୁ ସବୁକିଛି କରି ମଧ ଅକର୍ତ୍ତା ରହିବା ଉଚିତ ।

## ତୃତୀୟ ସମାସ
## ।। ନିଃସନ୍ଦେହ ନିରୂପଣ ।।

ଶ୍ରୋତାଙ୍କ ପ୍ରଶ୍ନ— ଆପଣ କହୁଛନ୍ତି ଯେ ବ୍ରହ୍ମଜ୍ଞାନୀମାତ୍ରେ କାର୍ଯ୍ୟ କରି ମଧ ଅକର୍ତ୍ତା, ଭୋଗ କରି ମଧ ଅଭୋକ୍ତା, ସଂସାରଧର୍ମ ପାଳନ କରୁଥିଲେ

ମଧ୍ୟ ସଂସାର ସହିତ ଲିପ୍ତ ନୁହଁ । ତାହାହେଲେ ତ ପାପାଚରଣ କରିବାରେ କୌଣସି ଆପତ୍ତି ନାହିଁ । କାରଣ ଆପଣଙ୍କ କହିବାନୁଯାୟୀ ବ୍ରହ୍ମଜ୍ଞାନୀ ଜନ୍ମମୃତ୍ୟୁ ଭୋଗ କରୁଥିଲେ ମଧ୍ୟ ଭୋଗ ନ କରିବା ସହିତ ସମାନ, ପାପ କଲେ ମଧ୍ୟ ନ କରିବା ସଙ୍ଗେ ସମାନ, ସ୍ୱର୍ଗ ଓ ନରକଦଶା ଭୋଗ କଲେ ମଧ୍ୟ ଭୋଗ ନ କରିବା ସହିତ ସମାନ ।

ବକ୍ତା—ତୁମେମାନେ ବାକ୍ୟକୁ ସମ୍ପୂର୍ଣ୍ଣଭାବରେ ନ କହି ଖଣ୍ଡ ଖଣ୍ଡ କରି କହିବା ଦ୍ୱାରା ବାଲ୍ୟଚପଳତା ପ୍ରକାଶ କରୁଛ ମାତ୍ର । ବ୍ରହ୍ମଜ୍ଞାନର ଅନୁଭବ କ'ଣ ତାହା କେବଳ ଅଲିପ୍ତ ଓ ବିଦେହୀ ପୁରୁଷ ହିଁ ଜାଣନ୍ତି । ବିଦେହୀର ଅର୍ଥ ଯାହାର ଦେହବୋଧ ନ ଥାଏ । ଯେଉଁ ବ୍ୟକ୍ତି ଜ୍ଞାନ ସମ୍ପଦରେ ସମ୍ପଦଶାଳୀ, ସେହି ପୁରୁଷର ମର୍ମକୁ ଅଜ୍ଞାନୀ ଦରିଦ୍ର ବ୍ୟକ୍ତି ଜାଣିବ କିପରି ? ଯୋଗୀକୁ ଯୋଗୀ, ଜ୍ଞାନୀକୁ ଜ୍ଞାନୀ, ଚତୁରକୁ ଚତୁର ବ୍ୟକ୍ତି ଚିହ୍ନିପାରେ । ବଦ୍ଧ ଓ ସିଦ୍ଧକୁ ଯିଏ ସମାନ ମନେ କରିଥାଏ, ସେ ଅଜ୍ଞାନୀ । ଯିଏ ପତିତ ଓ ଜୀବନ୍ମୁକ୍ତକୁ ସମାନ ଭାବିଥାଏ ତାର ବୁଦ୍ଧିକୁ କେତେ ବା ପ୍ରଶଂସା କରାଯିବ ? ଯାହାକୁ ଭୂତ ଲାଗିଥାଏ ଏବଂ ଯିଏ ଭୂତ ଛଡ଼ାଇଥାଏ ଦୁହେଁ ମନୁଷ୍ୟ ହୋଇଥିଲେ ମଧ୍ୟ ଏକ ଶ୍ରେଣୀର ନୁହଁନ୍ତି ।

ଏବେ ଅନୁଭବ ସମ୍ପର୍କରେ କେତେକ କଥା କୁହାଯିବ । ଯିଏ ଜ୍ଞାନ ସମୁଦ୍ରରେ ବୁଡ଼ିରହିଥାଏ, ବିବେକଦ୍ୱାରା ଆତ୍ମସ୍ୱରୂପରେ ବିଲୀନ ହୋଇଯାଇଥାଏ ଏବଂ ଅନନ୍ୟ ହୋଇ ପଡ଼ିଥିବାରୁ ନିଃଶେଷ ହୋଇ ଯାଇଥାଏ ତାକୁ ଆମେ ଚିହ୍ନିବା କିପରି ? କାରଣ ଯିଏ ତାକୁ ଚିହ୍ନିବା ପାଇଁ ଉଦ୍ୟମ କରିଥାଏ, ସେ ସ୍ୱୟଂ ତଦ୍ରୂପ ହୋଇ ପଡ଼ିଥିବାରୁ ଆଉ କୌଣସି କହିବା ବା ଶୁଣିବାର ଆବଶ୍ୟକତା ନଥାଏ । ଏଭଳି ଜ୍ଞାନୀପୁରୁଷ ନିତ୍ୟ ନିରନ୍ତର ସ୍ୱରୂପରେ ରମଣ କରିଥାଏ । ଏହାଙ୍କ ସମ୍ପର୍କରେ ଆସିଲେ ବିକାରଗ୍ରସ୍ତ ଲୋକ ମଧ୍ୟ ନିର୍ବିକାର ହୋଇ ଉଠିଥାଏ । ସେ କେବଳ ପରମାତ୍ମା ସ୍ୱରୂପ ହୋଇପଡ଼ିଥାଏ ଯେଉଁଥିରେ କି ଲେଶମାତ୍ର ମାୟାର କଳଙ୍କ ରହିନଥାଏ । ଏଭଳି ଯୋଗୀରାଜ ସ୍ୱାଭାବିକ ଭାବେ ଶୁଦ୍ଧଆତ୍ମା । ଏହାଙ୍କୁ ଦେହବୁଦ୍ଧିରୁ ଦେଖିଲେ କେବଳ ଦେହଟି ହିଁ ଦେଖାଯାଇଥାଏ କିନ୍ତୁ ଗଭୀର ଭାବେ ଦେଖିଲେ ତୁମେ ସେହିଭଳି ହୋଇଯିବ ଏବଂ ତୁମର ଜନ୍ମମରଣ ବୋଲି ଆଉ କିଛି ରହିବ ନାହିଁ । ଯଦିବା ତାର ଜନ୍ମମରଣ ହୋଇଥାଏ, ତେବେ ସେ ଯେଉଁ ଦେହ ଗ୍ରହଣ କରିଥାଏ ତାହା ତାର ବାସ୍ତବିକ ସ୍ୱରୂପ ହୋଇନଥାଏ, ଏହା

ନିର୍ଗୁଣ ବ୍ରହ୍ମସ୍ୱରୂପ । ତେଣୁ ତାର କ'ଣ ହୋଇଥାଏ ସେ ସମ୍ପର୍କରେ ଆମେ କଳ୍ପନା କରିପାରିବା କିପରି ? ଜ୍ଞାନୀମାତ୍ରେ ସତ୍ୟସ୍ୱରୂପ । କିନ୍ତୁ ଅଜ୍ଞାନୀ ଏହାଙ୍କୁ ସାଧାରଣ ମନୁଷ୍ୟ ମନେ କରି ଥାଆନ୍ତି । ଯାହାଙ୍କର ଯେଉଁଭଳି ଭାବନା ହୋଇଥାଏ, ପରମାତ୍ମା ତାକୁ ସେହିଭଳି ରୂପରେ ଦେଖା ଦେଇଥାଆନ୍ତି । ପରମାତ୍ମା ଅକ୍ଷୟ, ଅନନ୍ତ, ଅଫଟା, ଅଭଙ୍ଗା । ପରମାତ୍ମା ଏକ । ଅବଶ୍ୟ ଲୋକେ ତାର ବହୁ ନାମକରଣ କରିଥାଆନ୍ତି ।

କାଠକୁ ଜଳେଇଲେ ଅଗ୍ନି କାଠର ଆକାର ଧାରଣ କରିବାଭଳି ଦେଖାଗଲେ ମଧ୍ୟ ଅଗ୍ନିକୁ କାଠ କୁହାଯାଇ ନପାରେ । ଜ୍ଞାନୀର ଶରୀର କର୍ପୂର ଭଳି । କର୍ପୂର ଜଳିଯିବା ପରେ ପୁଣି କର୍ପୂର ରୂପ ଧାରଣ କରି ପାରେନା । ସେହିଭଳି ଜ୍ଞାନୀ ପୁରୁଷ ଆଉ ଦେହଧାରଣ କରିନଥାଏ । ମଞ୍ଜି ଭାଜି ହୋଇସାରିବା ପରେ ପୁଣି ମଞ୍ଜି ପଦବାଚ୍ୟ ହୋଇ ନପାରେ କିମ୍ବା ତଦ୍ୱାରା ଆଉ ଗଛ ହୋଇ ନପାରେ । ନଦୀନାଳର ଜଳ ସମୁଦ୍ରରେ ପ୍ରବେଶ କରିବାପରେ ଆଉ ନଦୀଜଳକୁ ଫେରି ଆସିପାରେନା । ନଦୀ ସମୁଦ୍ର ସହିତ ଏକାକାର ହୋଇଯାଏ । ସେହିଭଳି ବ୍ରହ୍ମଜ୍ଞାନୀ ଆତ୍ମସ୍ୱରୂପକାର ହୋଇଯିବା ପରେ ସେ ବିଦେହ ହୋଇଯାଇଥାଏ । କିନ୍ତୁ ଅଜ୍ଞାନୀ ଓ ମୂଢ଼ଲୋକ ଏହା ବୁଝି ପାରି ନଥାଆନ୍ତି । ସଦ୍‌ଜ୍ଞାନ ଅଭାବରୁ ହିଁ ମନୁଷ୍ୟ ବିଭ୍ରାନ୍ତ ହୋଇ ପଡ଼ିଥାଏ ଏବଂ ଦଉଡ଼ିକୁ ସାପ ମନେ କରିଥାଏ । ଅଜ୍ଞାନ ଯୋଗୁଁ ହିଁ ବହୁଲୋକଙ୍କ ପତନ ଘଟିଥାଏ ଏବଂ ସେମାନଙ୍କୁ ଜନ୍ମ ମରଣ କଷ୍ଟ ଭୋଗ କରିବାକୁ ପଡ଼ିଥାଏ ।

## ଚତୁର୍ଥ ସମାସ
## ।। ଅଜ୍ଞାନ ଓ ସୁଜ୍ଞାନର ଲକ୍ଷଣ ।।

ଶ୍ରୋତାମାନଙ୍କ ପ୍ରଶ୍ନ– ସଂସାରରେ କିଏ ଦୁଃଖୀ ତ କିଏ ସୁଖୀ; କିଏ ଦୁର୍ବଳ ତ କିଏ ସବଳ; କିଏ ନିର୍ମଳ ତ କିଏ ମଳିନ; କିଏ ଧନୀ ତ କିଏ ନିର୍ଦ୍ଧନ; କିଏ ଉତ୍ତମ ତ କିଏ ଅଧମ– ଏଭଳି ଭେଦ ହେଲା କାହିଁକି ?

ବକ୍ତାଙ୍କ ଉତ୍ତର– ଏସବୁ ଭେଦ ବା ପାର୍ଥକ୍ୟ ଗୁଣ ଯୋଗୁଁ ହିଁ ହୋଇଥାଏ । ଯାହାର ଭଲ ଗୁଣ ସେ ଭାଗ୍ୟଶାଳୀ ହୋଇ ସୁଖ ଭୋଗ କରିଥାଏ

ଏବଂ ଯାହାର ଖରାପ ଗୁଣ ସେ ଦରିଦ୍ର ଅବସ୍ଥାରେ ଦୁଃଖ କଷ୍ଟ ଭୋଗ କରିଥାଏ । ଯିଏ ନିଜର ସ୍ୱାଭାବିକ କର୍ତ୍ତବ୍ୟ କର୍ମ କୁଶଳତାପୂର୍ବକ କରିଥାଏ, ଲୋକେ ତାକୁ ଭଲ ଲୋକ କହିଥାଆନ୍ତି । ଯିଏ ସୁଜ୍ଞାନୀ ସିଏ ନିଜର କାମ ଠିକ୍ ମାର୍ଗରେ ମନ ଲଗାଇ କରିଥାଏ, ତେଣୁ ସେ ଜ୍ଞାନ ସମ୍ପନ୍ନ ରହିଥାଏ । ଅଜ୍ଞାନୀ ତଥା ମୂର୍ଖବ୍ୟକ୍ତି ଆଳସ୍ୟ-ପରାୟଣ ହେତୁ ସବୁବେଳେ ଅଭାବଗ୍ରସ୍ତ ରହିଥାଏ । ପରିଶେଷରେ ଭିକାରୀ ହୋଇଥାଏ । ଜ୍ଞାନୀ ତଥା ବିଦ୍ୱାନ ବ୍ୟକ୍ତି ସର୍ବତ୍ର ସମ୍ମାନିତ ହୋଇଥାଆନ୍ତି, କିନ୍ତୁ ବିଦ୍ୟାହୀନବ୍ୟକ୍ତିଙ୍କୁ କେହି ଆଦର କରି ନ ଥାଆନ୍ତି । ଉଦ୍ୟୋଗହୀନ, ଆଳସ୍ୟ ପରାୟଣ ହେବା ଫଳରେ  ଧନୀ, ସମ୍ପନ୍ନ ବ୍ୟକ୍ତିର ପୁଅ ମଧ ଭିକାରୀ ହୋଇ ପଡ଼ିଥାଏ । ବିଦ୍ୟାନୁଯାୟୀ ସମ୍ମାନ ଏବଂ ଉଦ୍ୟୋଗକୁଶଳତା ଅନୁଯାୟୀ ବୈଭବ ଲାଭ ହୋଇଥାଏ । ଯାହାଠି ବିଦ୍ୟା, ବିବେକ, ବୁଦ୍ଧି, ଉଦ୍ୟୋଗକୁଶଳତା ଆଦି ନଥାଏ ସେ ଅଭାଗା ହୋଇପଡ଼ିଥାଏ । ତାକୁ କେହି ପଚାରନ୍ତି ନାହିଁ । କିନ୍ତୁ ଯିଏ ଏସବୁ ଗୁଣସମ୍ପନ୍ନ ତାକୁ ଐଶ୍ୱର୍ଯ୍ୟଶାଳୀ ହେବା ଲାଗି ରୋକିବ କିଏ ? ସେ ନ ଚାହିଁଲେ ମଧ ସୁଖ ସମୃଦ୍ଧି ତାର ପିଛା କରିଥାଆନ୍ତି ।

ଏଭଳି ବ୍ୟକ୍ତିକୁ ମନୁଷ୍ୟ କ'ଣ ପଶୁପକ୍ଷୀମାନେ ମଧ ଆଦର କରିଥାଆନ୍ତି । ଗୁଣହୀନ ପ୍ରାଣୀର ଜୀବନ ବ୍ୟର୍ଥ । ଗୁଣ ନାହିଁ ତ ଆଦର ନାହିଁ । ଏଭଳି ବ୍ୟକ୍ତିର ମନରେ ସାହସ ନ ଥାଏ । ଚତୁରତା ନ ଥାଏ । ଯାହାର ଯେତିକି ଉତ୍ତମ ଗୁଣ, ସେ ସେତିକି ସୌଭାଗ୍ୟଶାଳୀ, ଭଦ୍ର ଓ ସଭ୍ୟ । ଲୋକେ ସୁଜ୍ଞାନୀ ଅର୍ଥାତ୍ ଗୁଣୀବ୍ୟକ୍ତିକୁ ହିଁ ଶ୍ରଦ୍ଧା, ଭକ୍ତି କରି ଥାଆନ୍ତି । ମନୁଷ୍ୟ କୌଣସି ଗୋଟିଏ ଉତ୍ତମ ଗୁଣରେ ଗୁଣୀ ଥିଲେ ମଧ ସମ୍ମାନ ଲାଭ କରିଥାଏ ।

ସାଂସାରିକ କାର୍ଯ୍ୟ ହେଉ କିମ୍ବା ପାରମାର୍ଥିକ, ଆଧାତ୍ମିକ କାର୍ଯ୍ୟ ହେଉ ସବୁକ୍ଷେତ୍ରରେ ସୁଜ୍ଞାନୀ ବ୍ୟକ୍ତି ଜୀବନକୁ ସାର୍ଥକ କରିପାରେ । ଅଜ୍ଞାନୀ ବ୍ୟକ୍ତି ମାୟାର ଜଞ୍ଜାଳ ଭିତରେ ନିଜକୁ ବାନ୍ଧି ରଖିବା ଫଳରେ ନାନା ଦୁଃଖକଷ୍ଟ ଭୋଗ କରିଥାଏ । ଏହିଭଳି ଭାବେ ତାର ଜୀବନ ବରବାଦ ହୋଇଥାଏ । ନିଜର ପ୍ରକୃତ ହିତ କ'ଣ ଜାଣି ନ ପାରିବା ଫଳରେ ଲୋକ ନାନା ଯାତନା ଭୋଗ କରିଥାଏ । ଜ୍ଞାନ ନ ହେବାରେ ମୂର୍ଖ ତଥା ମୂଢ଼ ବ୍ୟକ୍ତିର ଅଧୋଗତି ଘଟିଥାଏ ।

ମାୟା ଓ ବ୍ରହ୍ମ; ଜୀବ ଓ ଶିବ; ସାର ଓ ଅସାର ଭାବ ଓ ଅଭାବ ଏହାର ରହସ୍ୟ ଜାଣିବା ପରେ ହିଁ ମନୁଷ୍ୟ ଜନ୍ମ ମରଣ ଚକ୍ରରୁ ମୁକ୍ତ ହୋଇଥାଏ । କର୍ତ୍ତା କିଏ; ବଦ୍ଧ ଓ ମୁକ୍ତର ସ୍ୱରୂପ କ'ଣ; ନିର୍ଗୁଣ ପରମାତ୍ମା କ'ଣ; ଏହାକୁ ଜାଣିବାବାଲା 'ମୁଁ' କିଏ, ଆତ୍ମା ଓ ପରମାତ୍ମା କିପରି ଅନନ୍ୟ, ଅଭିନ୍ନ— ଏସବୁ ବିଷୟରେ ଜ୍ଞାନ ହେବାରେ ହିଁ ମନୁଷ୍ୟ ମୁକ୍ତି ଲାଭ କରିଥାଏ । ଏସବୁ ବିଷୟକୁ ଜାଣିବା ଦିଗରେ ମନୁଷ୍ୟ ଯେତିକି ଯେତିକି ଅଗ୍ରସର ହୁଏ, ତାର ବନ୍ଧନ ସେତିକି ଫିଟିବାରେ ଲାଗିଥାଏ । ପରିଶେଷରେ ସେ ପରମତତ୍ତ୍ୱକୁ ଜାଣି ସାରିବା ପରେ ମନରୁ ତାର ଅହଂକାର ତୁଟିଯାଏ । କୋଟି କୋଟି ସାଧନା କଲେ ମଧ୍ୟ ମୂଳତତ୍ତ୍ୱକୁ ଜାଣି ନ ପାରିଲେ କେହି କେବେ ହେଲେ ମୋକ୍ଷର ଅଧିକାରୀ ହୋଇ ନ ପାରେ । ମାୟା ଓ ବ୍ରହ୍ମକୁ ଚିହ୍ନିବା ଏବଂ ନିଜ ସ୍ୱରୂପକୁ ଜାଣିବା ଦ୍ୱାରା ହିଁ ଜନ୍ମମୃତ୍ୟୁ ଚକ୍ରରୁ ଉଦ୍ଧାର ପାଇବା ସମ୍ଭବ । ଜ୍ଞାନୀ ଓ ଅଜ୍ଞାନୀ ମଧ୍ୟରେ ଏହା ହିଁ ପାର୍ଥକ୍ୟ ।

ଅଜ୍ଞାନୀ କୌଣସି ପଦାର୍ଥକୁ ଦେଖି ଭୂତ ହୋଇଥିବ ପରା ଭାବି ଭୟରେ କମ୍ପି ଉଠେ । କିନ୍ତୁ ଜ୍ଞାନୀ ପଦାର୍ଥର ବାସ୍ତବିକତାକୁ ବୁଝିପାରି ନିର୍ଭୟ ରହିଥାଏ । ଏହିଭଳି ଭାବେ ସତ୍ୟ ଓ ମିଥ୍ୟା, ଧର୍ମ ଓ ଅଧର୍ମ ଆଦି ସବୁ କଥାକୁ ଜିଜ୍ଞାସା ଦ୍ୱାରା ଜାଣି ପାରିବ । ଯିଏ ଏସବୁ ବିଷୟକୁ ଜାଣି ଗଭୀର ଭାବେ ମନକୁ ଲଗେଇ ଚିନ୍ତା କରିଥାଏ— ତା ଲାଗି ମୁକ୍ତି ବେଶି ଦୂର ନୁହେଁ । ଅଜ୍ଞାନ ଯୋଗୁଁ ହିଁ ମନୁଷ୍ୟ ବହୁ ସଙ୍କଟରେ ପଡ଼େ । ତେଣୁ ଅଜ୍ଞାନୀମାତ୍ରେ ହେୟ । ଜ୍ଞାନକୁ କେବେହେଲେ ଉପେକ୍ଷା କରିବା ଅନୁଚିତ ।

ଜ୍ଞାନ ହିଁ ସର୍ବଶ୍ରେଷ୍ଠ ସମ୍ପଦ । ଗୀତାରେ କୁହାଯାଇଛି— ''ନହିଁ ଜ୍ଞାନେନ ସଦୃଶ୍ୟଂ ପବିତ୍ରମିହ ବିଦ୍ୟତେ ।'' ଜ୍ଞାନଠାରୁ ବଳି ପବିତ୍ର କିଛି ନାହିଁ । ଜ୍ଞାନଦ୍ୱାରା ହିଁ ପରମାର୍ଥ ସିଦ୍ଧ ହୋଇଥାଏ । ଜ୍ଞାନ ଅର୍ଥାତ୍ ନିଜେ ଜାଣିବା ଅଜ୍ଞାନ ଅର୍ଥାତ୍ ନିଜକୁ ନିଜେ କ'ଣ ବୁଝି ନ ପାରିବା । ଜ୍ଞାନୀମାତ୍ରେ ସୁଚତୁର । ଅଜ୍ଞାନୀମାତ୍ରେ ପାଗଳ ଏବଂ ଦୀନହୀନ । ଜ୍ଞାନଦ୍ୱାରା ବିଜ୍ଞାନକୁ ଚିହ୍ନି ହୁଏ । କ୍ରମଶଃ ସେ ଏଭଳି ଅନୁଭବ କରେ ଯେ ଜ୍ଞାନ, ବିଜ୍ଞାନ ଆଉ କିଛି ରହେ ନାହିଁ । ଏଭଳି ବ୍ୟକ୍ତି କେବଳ ଆତ୍ମ-ତତ୍ତ୍ୱ ରୂପକ ମହାସାଗରରେ ବୁଡ଼ି ରହେ । ଏହାକୁ କୁହାଯାଏ ସହଜ-ସମାଧି । ଏଥିରେ ସେ ଅନିର୍ବଚନୀୟ ଆନନ୍ଦ ଅନୁଭବ କରିଥାଏ ।

ଶ୍ରୋତା ଏସବୁ ଶୁଣିବା ପରେ କହିଲେ— ଯାହାହେଉ ମନ ଭିତରେ ଥିବା ବହୁତ ସନ୍ଦେହ ଦୂର ହୋଇ ପାରିଲା । ଏଣିକି ଆମକୁ ପିଣ୍ଡ ଓ ବ୍ରହ୍ମାଣ୍ଡର ଏକତା ସମ୍ପର୍କରେ ପ୍ରାଞ୍ଜଳ ଭାବେ ବୁଝାଇ ଦିଅନ୍ତୁ । ଆମେ ଲୋକଙ୍କଠାରୁ ଶୁଣିଚୁ ଯାହା ଯାହା ବାହାର ବ୍ରହ୍ମାଣ୍ଡରେ ରହିଛି ସେସବୁ ପିଣ୍ଡ ବା ଏହି ଶରୀରରେ ରହିଛି । ଆପଣଙ୍କ ମୁହଁରୁ ଏ ବିଷୟରେ ଶୁଣିବା ପରେ ଯାଇ ମନରେ ଦୃଢ଼ବିଶ୍ୱାସ ହୋଇପାରିବ । ନଚେତ ସନ୍ଦେହ ପଙ୍କରେ ଲଟପଟ ହେବା ସାର ହେବ ।

## ପଞ୍ଚମ ସମାସ
## ।। ଅନୁପାତ-ନିରସନ ।।

ଯାହା ପିଣ୍ଡରେ (ଶରୀରରେ) ରହିଛି ତାହା ବ୍ରହ୍ମାଣ୍ଡରେ ରହିଛି, ଯାହା ବ୍ରହ୍ମାଣ୍ଡରେ ରହିଛି ତାହା ଏହି ଶରୀରରେ ରହିଛି— ଏକଥା ତ ବହୁ କାଳରୁ କୁହା ହୋଇ ଆସୁଛି । ଏହାର ରହସ୍ୟ କ'ଣ ମୁଁ ବୁଝାଉଚି, ଆପଣମାନେ ମନ ଦେଇ ଶୁଣନ୍ତୁ । ସ୍ଥୂଳ, ସୂକ୍ଷ୍ମ, କାରଣ, ମହାକାରଣ— ପିଣ୍ଡର ଏହି ଚାରି ଦେହ । ସେହିଭଳି ବ୍ରହ୍ମାଣ୍ଡର ଚାରୋଟି ଦେହ ଯଥା ବିରାଟ, ହିରଣ୍ୟ, ଅବ୍ୟାକୃତ ଓ ମୂଳ ପ୍ରକୃତି । ବ୍ରହ୍ମାଣ୍ଡରେ ଯାହାକୁ ବିଷ୍ଣୁ, ଚନ୍ଦ୍ର, ବ୍ରହ୍ମା ଓ ରୁଦ୍ର କୁହାଯାଇଥାଏ, ଏଗୁଡ଼ିକୁ ପିଣ୍ଡରେ ଯଥାକ୍ରମେ ଅନ୍ତଃକରଣ, ମନ, ବୁଦ୍ଧି, ଚିତ୍ତ ଓ ଅହଂକାର କୁହାଯାଇଥାଏ । ସିଂହ ପାଖରେ ଯେପରି କୁକୁର, ସେହିଭଳି ପରିଚିତ-ପ୍ରମାଣ ନିକଟରେ ଅନୁମାନ ନିତାନ୍ତ ହାସ୍ୟାସ୍ପଦ ।

ଆମେ ତ କଳ୍ପନା କରିଥାଉ ଯେ ପିଣ୍ଡ ଯାହା ବ୍ରହ୍ମାଣ୍ଡ ତାହା । କିନ୍ତୁ ଏହାକୁ ଅନୁଭବ ବା ଉପଲବ୍ଧି କରାଯିବ କିପରି ? ଏହାର ଉତ୍ତରରେ ଏତିକିମାତ୍ର କୁହାଯାଇପାରେ ଯେ କଳ୍ପନା ବା ଅନୁମାନ ହେଉଚି ଠିକ୍ ଅରଣ୍ୟ ଭଳି । ଏହାର ରାସ୍ତାଘାଟ କିଛି ନାହିଁ । ଚାରିଆଡ଼େ କଣ୍ଟା, ପଥର, ଗଛ ଲଟା । ସୁଜ୍ଞାନୀ ଜନ ଏହି ଅରଣ୍ୟରେ ବୁଲିନଥାଏ । ମନ୍ତ୍ର ଓ ଦେବତା ସବୁ କଳ୍ପିତ । ଏକଥା ଆଗରୁ କୁହାଯାଇଛି ଯେ ଦେବତା ମନ୍ତ୍ରର ଅଧୀନ । ଯିଏ ଯାହା ମନେ କଲା, ଯାହାକୁ ଯାହା ପ୍ରତୀତ ହେଲା, ସେ ସେହିଭଳି କହିଥାଏ, କିନ୍ତୁ ସତ୍ୟବସ୍ତୁର ନିର୍ଣ୍ଣୟ ବିବେକ ଓ ଅନୁଭବ ଦ୍ୱାରା ହେବା ଉଚିତ ।

ପୁଣି ଏକ ପ୍ରଶ୍ନ— ବ୍ରହ୍ମା ତ ବ୍ରହ୍ମାଣ୍ଡ ନିର୍ମାଣ କଲେ, କିନ୍ତୁ ବ୍ରହ୍ମାଙ୍କ ଜନକ କିଏ ? ବିଷ୍ଣୁଙ୍କୁ ତ୍ରିଲୋକର ପାଳନକର୍ତ୍ତା କୁହାଯାଉଚି । ତେବେ ବିଷ୍ଣୁଙ୍କର ପାଳନ କର୍ତ୍ତା କିଏ ? ଶିବ ଯଦି ଜଗତର ସଂହାରକର୍ତ୍ତା, ଶିବଙ୍କୁ (ରୁଦ୍ରଙ୍କୁ) ସଂହାର କରେ କିଏ ? ମହାକାଳ ତ ସମଗ୍ର ସଂସାରକୁ ନିୟନ୍ତ୍ରଣ କରିଥାଏ, ତେବେ ମହାକାଳର ନିୟନ୍ତ୍ରଣକାରୀ କିଏ ?

ଆମେମାନେ ଏସବୁ କଥାକୁ ଭଲଭାବେ ନ ବୁଝିବା ପର୍ଯ୍ୟନ୍ତ କେବଳ ଅନ୍ଧାର ଭିତରେ ବାଡ଼ି ବୁଲେଇବା ସାର ହେବ । ତେଣୁ ବିବେକଦ୍ୱାରା ସାର ଅସାର ବିଚାର କରିବା ଆବଶ୍ୟକ । ଅନେକେ କଳ୍ପନା କରିଥାଆନ୍ତି ଯେ ବ୍ରହ୍ମାଣ୍ଡର ନିର୍ମାଣ ତା ମନକୁ ହୋଇଯାଇଛି । କେହି କେହି କହିଥାଆନ୍ତି ଯେ ଶୁଣାଶୁଣି କଥାରେ ଯଦିବା ଆମେ ପିଣ୍ଡ ଓ ବ୍ରହ୍ମାଣ୍ଡ ଏକ ବୋଲି ମାନିନେଉଚୁ ତଥାପି ଏକଥା ଉପରେ ପୂରା ବିଶ୍ୱାସ ହୋଇ ପାରୁନି । ପିଣ୍ଡ ଓ ବ୍ରହ୍ମାଣ୍ଡ ଏକ ଓ ସମାନ ବୋଲି ବିଚାର କରିବାରେ ମନରେ ନାନା ସନ୍ଦେହ ଉପୁଜୁଛି । ସେମାନଙ୍କର ଯୁକ୍ତି ହେଉଚି— ବ୍ରହ୍ମାଣ୍ଡରେ ତ ନାନା ଦେବତା, ନାନା ଜୀବଜନ୍ତୁ, ନାନା ପଦାର୍ଥ, ନାନା ବନସ୍ପତି, ଏ ସବୁ ପିଣ୍ଡରେ ରହିବା ପାଇଁ ସ୍ଥାନ କାହିଁ ? କୁହାଯାଇଛି ଯେ ବ୍ରହ୍ମାଣ୍ଡରେ ସାଢ଼େ ତିନିକୋଟି ଭୂତପ୍ରେତ, ପିଶାଚ, ସାଢ଼େ ତିନିକୋଟି ତୀର୍ଥ, ସାଢ଼େ ତିନିକୋଟି ମନ୍ତ୍ର, କିନ୍ତୁ ପିଣ୍ଡରେ ଏ ସବୁ ଅଛି କି ? ବ୍ରହ୍ମାଣ୍ଡରେ ରହିଥିବା ଭଳି ତେତିଶକୋଟି ଦେବତା, ଅଠେଇଶ ହଜାର ଋଷି, ଚଉରାଶି ଲକ୍ଷ ପ୍ରାଣୀ, ନାନା ଔଷଧପତ୍ର, ଫଳ, ବୀଜ ଆଦି ପିଣ୍ଡରେ ଅଛି କି ? ତାହାହେଲେ ପିଣ୍ଡ ଓ ବ୍ରହ୍ମାଣ୍ଡ ସମାନ ବୋଲି କୁହାଯିବ କିପରି ?

ଏସବୁ କଥା କେବଳ ବିବେକ ଦ୍ୱାରା ଜାଣି ହେବ । ଏହାକୁ ବର୍ଣ୍ଣନା ଦ୍ୱାରା କୁହାଯାଇ ନପାରେ । ଯାହାକୁ ସ୍ଥୂଳ ବିଚାରରେ ବର୍ଣ୍ଣନା କରାଯାଇ ପାରିବ ନାହିଁ ତାକୁ ବିସ୍ତାରିତ ଭାବେ ବର୍ଣ୍ଣନା କରିବା ବୃଥା । ଆମେମାନେ ପ୍ରଥମେ ଜାଣିବା ଆବଶ୍ୟକ ଯେ ସମଗ୍ର ବ୍ରହ୍ମାଣ୍ଡ ପଞ୍ଚଭୂତରୁ ହିଁ ନିର୍ମିତ, ଏହି ପଞ୍ଚଭୂତରେ ହିଁ ପିଣ୍ଡର ନିର୍ମାଣ । ଏହା ବ୍ୟତୀତ ଯିଏ ଯାହା କହୁନା କାହିଁକି ସେ ସବୁ କେବଳ ଅନୁମାନ । ଅନୁମାନ ବାନ୍ତି ଭଳି ହେୟ, ଘୃଣ୍ୟ । ନିଶ୍ଚୟାତ୍ମକ ବିଚାର ହିଁ ବିଶ୍ୱାସ-ଯୋଗ୍ୟ ।

ଯଦିଓ ପିଣ୍ଡ ଓ ବ୍ରହ୍ମାଣ୍ଡ ଉଭୟ ପଞ୍ଚଭୂତଦ୍ୱାରା ନିର୍ମିତ, ତଥାପି ଏକଥା କହିବା ଠିକ୍ ନୁହେଁ ଯେ ଯାହାସବୁ ବ୍ରହ୍ମାଣ୍ଡରେ ରହିଛି ସେସବୁ ପିଣ୍ଡରେ ମଧ ରହିଛି । ଏହା କେବଳ ଅନୁମାନର କଥା । ପରମାର୍ଥ ଦିଗରୁ ବିଚାର କରାଗଲେ ପିଣ୍ଡ କିମ୍ୱା ବ୍ରହ୍ମାଣ୍ଡର କୌଣସି ମହତ୍ତ୍ୱ ନାହିଁ । ଏତିକି ମାତ୍ର ବିଶ୍ୱାସ କରିବା ଉଚିତ ଯେ ଦୁଇଟିଯାକର ନିର୍ମାଣ ହୋଇଚି ପଞ୍ଚଭୂତରେ ଏବଂ ଉଭୟ ନଶ୍ୱର ଓ ବିନାଶଶୀଳ ।

## ଷଷ୍ଠ ସମାସ
## ।। ଗୁଣ-ରୂପ ନିରୂପଣ ।।

ପୂର୍ବ ସମାସମାନଙ୍କରେ ସ୍ପଷ୍ଟଭାବରେ କୁହାଯାଇଛି ଯେ ନିରାକାର ଆକାଶରେ ଯେପରି ବାୟୁର ବିକାର ଉତ୍ପନ୍ନ ହୋଇଥାଏ, ସେହିଭଳି ନିର୍ଗୁଣ ବ୍ରହ୍ମରେ ମୂଳମାୟା ପ୍ରକଟିତ । ମୂଳମାୟା ହେଉଚି ପଞ୍ଚଭୂତର ଖେଳ । ଏହି ମୂଳମାୟାରେ ସତ୍ତ୍ୱଗୁଣ, ରଜୋଗୁଣ ଓ ତମୋଗୁଣ ସୂକ୍ଷ୍ମରୂପରେ ବିଦ୍ୟମାନ । ଯେପରି ପିଣ୍ଡର ମହାକାରଣ ଦେହ ହେଉଚି ସର୍ବସାକ୍ଷୀ ତୁରୀୟ ଅବସ୍ଥା, ସେହିଭଳି ବ୍ରହ୍ମାଣ୍ଡର ମହାକାରଣ-ଦେହ ହେଉଚି ମୂଳମାୟା । ତୁରୀୟ ଅବସ୍ଥା ଭଳି ମୂଳମାୟା ଜ୍ଞାନସଂପନ୍ନ । ମୂଳମାୟାରେ ତିନୋଟିଯାକ ଗୁଣ ଗୁପ୍ତ ଭାବେ ବାସ କରିଥାଆନ୍ତି । ଏଗୁଡ଼ିକ ଯେତେବେଳେ ପ୍ରକଟିତ ହୁଅନ୍ତି ତାକୁ 'ଗୁଣ-କ୍ଷୋମିନୀ' ଅର୍ଥାତ୍ ଗୁଣମାୟା କୁହାଯାଇଥାଏ । ଏହି ତିନି ଗୁଣରୁ ଅକାର, ଉକାର ଓ ମକାର ଅର୍ଥାତ୍ ଓଁ ଶବ୍ଦର ଧ୍ୱନି ଆକାଶରେ ଉତ୍ପନ୍ନ ହୋଇଛି । ଏହି ଶୁଦ୍ଧ ଗୁଣ ଆକାଶର ଏବଂ ଏହି ଶବ୍ଦଶକ୍ତିରୁ ବେଦଶାସ୍ତ୍ର ଆଦି ରଚିତ ହୋଇଚି । ଆଉ ଟିକିଏ ଆଗକୁ ଯାଇ ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥ୍ୱୀ— ଏହିଭଳି ଭାବେ ପଞ୍ଚଭୂତର ବିସ୍ତାର ଘଟିଛି । ତିନୋଟିଯାକ ଗୁଣର ମିଶ୍ରଣରୁ ପଞ୍ଚଭୂତ ଅର୍ଥାତ୍ ଅଷ୍ଟଧା ପ୍ରକୃତି । ବାୟୁର ହଲଚଲରୁ ଜ୍ଞାନ (ସଦ୍‌ଗୁଣ) ଓ ଅଜ୍ଞାନ (ତମୋଗୁଣ) ଏବଂ ଏହି ଦୁଇଟିର ମିଶ୍ରଣରେ ରଜୋଗୁଣ— ଏହିଭଳି ଭାବେ ତ୍ରିଗୁଣର ଉଦ୍‌ଭବ । ସେହିଭଳି ତ୍ରିଗୁଣବେଷ୍ଟିତ ପଞ୍ଚଭୂତର ମିଶ୍ରଣରେ

ମୂଳମାୟାର ସ୍ୱରୂପ । ଯେଉଁ ତତ୍ତ୍ୱ ବୀଜରେ ରହିଥାଏ, ସେହି ତତ୍ତ୍ୱ ବୃକ୍ଷର ପତ୍ର, ପୁଷ୍ପ ଓ ଫଳ ରୂପରେ ପ୍ରକଟିତ ହୋଇଥାଏ । ପଞ୍ଚଭୂତରେ ପାଞ୍ଚଟିଯାକ ଭୂତ ଗୋଟିଏ ଅନ୍ୟ ସହିତ ଊଣା ଅଧିକେ ମିଳିମିଶି ରହିଥାଆନ୍ତି । ପଞ୍ଚଭୂତରେ ମଧ୍ୟ ଜ୍ଞାନ ରହିଥାଏ— କେଉଁଠି ସ୍ଥୂଳ ଭାବରେ ତ କେଉଁଠି ସୂକ୍ଷ୍ମଭାବରେ । କାଠରେ ଅଗ୍ନି ଓ ଏହାର ନିରୋଧ ବାୟୁ ପ୍ରତ୍ୟକ୍ଷ ଦେଖାଯାଏ ନାହିଁ । କିନ୍ତୁ ଏଥିରେ ଦୁଇଟିଯାକ ରହିଛି, ନଚେତ କାଠ ଜଳି ନ ପାରେ । ତେଣୁ ବୁଝ ଯେ ପ୍ରତ୍ୟେକ ପଦାର୍ଥ ପଞ୍ଚଭୂତର ମିଶ୍ରଣରେ ହିଁ ପ୍ରସ୍ତୁତ ହୋଇଛି ।

ଶ୍ରୋତାଙ୍କ ପ୍ରଶ୍ନ— ଆପଣ କହୁଛନ୍ତି ଯେ ବ୍ରହ୍ମରୁ ମୂଳମାୟା, ମୂଳମାୟାରୁ ଗୁଣମାୟା, ଗୁଣମାୟାରୁ ତ୍ରିଗୁଣ ଏବଂ ତ୍ରିଗୁଣରୁ ପଞ୍ଚଭୂତ । ଯଦି ଗୁଣରୁ ପଞ୍ଚଭୂତର ଉଦ୍‌ଭବ, ତାହାହେଲେ ତ କୁହାଯାଇ ପାରିବ ଯେ ଆକାଶ ମଧ୍ୟ ଗୁଣରୁ ଉତ୍ପନ୍ନ । କିନ୍ତୁ ଏହା ଯୁକ୍ତିସଙ୍ଗତ ମନେ ହେଉନାହିଁ । କାରଣ ଶାସ୍ତ୍ର କହେ ଶବ୍ଦ ହେଉଚି ଆକାଶର ଗୁଣ । ତାହାହେଲେ ଶାସ୍ତ୍ର ବଚନ କ'ଣ ମିଥ୍ୟା ?

ସମର୍ଥ ବକ୍ତା ଏହି ପ୍ରଶ୍ନର ଉତ୍ତର ଦେଇ କହୁଛନ୍ତି "ମୁଁ ଯାହା ଯାହା କହିଛି ଆପଣମାନେ ତାର ଅର୍ଥକୁ ଠିକ୍ ଭାବେ ବୁଝି ପାରି ନ ଥିବାରୁ ମନରେ ଏହି ସନ୍ଦେହ ଉପୁଜୁଛି । ଆଗରୁ କହି ସାରିଛି ଯେ ପଞ୍ଚଭୂତ ମଧ୍ୟରୁ କିଏ କାହାଠୁ କମ ନୁହଁନ୍ତି । ଗୋଟିଏ ଅନ୍ୟଠୁ ବଳି । ସବୁ ଭୂତଠାରୁ ଶ୍ରେଷ୍ଠ ହେଉଚି ମୂଳମାୟା; କିନ୍ତୁ ଏହାର ଊର୍ଦ୍ଧ୍ୱରେ ରହିଛି ନିର୍ଗୁଣ ପରଂବ୍ରହ୍ମ । ବ୍ରହ୍ମରୁ ଉତ୍ପନ୍ନ ମୂଳମାୟା ତ ପଞ୍ଚଭୂତ ଓ ତ୍ରିଗୁଣରୁ ଉତ୍ପନ୍ନ । ଆକାଶ ବ୍ୟତୀତ ଅନ୍ୟ ଚାରୋଟିଯାକ ଭୂତ ସବିକାର । କେବଳ ଆକାଶ ନିର୍ବିକାର । କେବଳ ଉପାଧି ଯୋଗୁଁ ହିଁ ଆକାଶକୁ ଭୂତ ଶ୍ରେଣୀଭୁକ୍ତ କରାଯାଇଚି । ଯେପରି ପିଣ୍ଡରେ ବ୍ୟାପ୍ତ ବ୍ରହ୍ମର ଅଂଶକୁ 'ଜୀବ' ଏବଂ ବ୍ରହ୍ମାଣ୍ଡରେ ବ୍ୟାପ୍ତ ବ୍ରହ୍ମର ଅଂଶକୁ 'ଶିବ' କୁହାଯାଇଥାଏ, ସେହିଭଳି ଉପାଧି ଯୋଗୁଁ ଆକାଶକୁ ଭୂତ କୁହାଯାଇଥାଏ । ଉପାଧିରହିତ ଯେଉଁ ଆକାଶ ତାହା ପରଂବ୍ରହ୍ମ । ପ୍ରକୃତିର ବିସ୍ତାର ସଙ୍ଗେ ସଙ୍ଗେ ପଞ୍ଚଭୂତ ମଧ୍ୟରୁ ଗୋଟିକରୁ ଗୋଟିଏ ପ୍ରସ୍ତୁତ ହୋଇ ଆସିଚି । ତେଣୁ ଏସବୁ ସବିକାର ।

ଯେପରି ଭାବେ ରଙ୍ଗରେ ରଙ୍ଗ ମିଶାଯାଇ ବହୁ ନୂଆ ନୂଆ ରଙ୍ଗ ପ୍ରସ୍ତୁତ ହୋଇଥାଏ, ସେହିଭଳି ଭୂତର ମିଶ୍ରଣରେ ଅନେକ ପ୍ରକାରର ଦୃଶ୍ୟ, ବିକାର ଓ

ର୍‌ପର ଉତ୍ପନ୍ନ । ପାଣିରେ ଅନେକ ପ୍ରକାରର ରଙ୍ଗ ମିଶେଇଲେ ସେଥିରେ ଭିନ୍ନ ଭିନ୍ନ ରଙ୍ଗର ତରଙ୍ଗ ଉଠିଥାଏ । ସେହିଭଳି ପଞ୍ଚଭୂତର ମିଶ୍ରଣରେ ଏହି ବହୁରଙ୍ଗୀ ସଂସାର ଦୃଶ୍ୟମାନ ହୋଇଥାଏ । ଏହି ସୃଷ୍ଟିରେ ଦେଖାଯାଉଥିବା ଚଉରାଶି ଲକ୍ଷ ଯୋନିର ବିସ୍ତାର ଏହି ପଞ୍ଚଭୂତ ମିଶ୍ରଣର ଏକ ଖେଳ ।

ସବୁ ପ୍ରକାର ଶରୀରର ବୀଜ ହେଉଛି ଜଳ । ଜଳତତ୍ତ୍ୱରୁ ହିଁ ସୃଷ୍ଟିର ଉତ୍ପତ୍ତି । କୀଟ, ପତଙ୍ଗ, ଜନ୍ଦା, ପିମ୍ପୁଡ଼ି, ପଶୁ ପକ୍ଷୀ ସବୁ ଜଳରୁ ଉତ୍ପନ୍ନ । ଶୁଦ୍ଧ ଧାତୁ ଆଦି ହେଉଚି ସେହି ପାଣି ଏବଂ ଏହି ଧାତୁରୁ ଗଠିତ ହୋଇଚି ଶରୀର । ନଖ, ଦାନ୍ତ ଆଦି ସବୁ ପାଣିରୁ ତିଆରି । ବୃକ୍ଷରେ ମଧ୍ୟ ଭର୍ତ୍ତି ହୋଇଚି ଜଳ । ଜଳରୁ ହିଁ ବୃକ୍ଷର ବିସ୍ତାର, ପ୍ରସାର । ସବୁ ବନପତି ପାଣି ଯୋଗୁଁ ବଢ଼ିଥାଏ । କୌଣସି ଗଛର ଗଣ୍ଡିକୁ କାଟିଲେ ସେଥିରୁ ଫୁଲ ଫଳ ପାଇବ ନାହିଁ, ପାଇବ କେବଳ ଜଳ । ବୃକ୍ଷ ଭିତରେ ଥିବା ପାଣି ବାହାରୁ ଦେଖାଯାଏ ନାହିଁ । କିନ୍ତୁ ସୁଜ୍ଞଜନ ଜାଣେ ଯେ ଜଳରୁ ହିଁ ଗଛ ବଢ଼େ, ସେଥିରେ ଫୁଲ ଫଳ ହୁଏ ।

ଏହିଭଳି ଭାବେ ଅନ୍ୟସବୁ ଭୂତର ବିକାରରୁ ଏହି ସୃଷ୍ଟିରେ ଅଗଣିତ ପ୍ରାଣୀଙ୍କ ଉତ୍ପତ୍ତି । ଏହାକୁ କେତେଦୂର ବର୍ଣ୍ଣନା କରାଯାଇ ପାରିବ ? ଏହି ପ୍ରକୃତିକୁ ସୂକ୍ଷ୍ମଭାବରେ ବିଚାର କରି ଆମ୍ଭେମାନେ ଅନନ୍ୟ ଭାବରେ ପରମାତ୍ମାଙ୍କ ଭଜନ ଚିନ୍ତନ କରିବା ଉଚିତ ।

## ସପ୍ତମ ସମାସ
## ॥ ଜନ୍ମ-ମରଣ ରହସ୍ୟ ॥

ଶ୍ରୋତାଙ୍କ ପ୍ରଶ୍ନ— ପ୍ରଥମେ ସ୍ଥୂଳ ଦେହ ଏବଂ ଏଥିରୁ ପଞ୍ଚ ଅନ୍ତଃକରଣର ସୃଷ୍ଟି । ତେଣୁ ଏକଥା କୁହାଯାଇ ପାରେ ଯେ ସ୍ଥୂଳରୁ ହିଁ ସୂକ୍ଷ୍ମ (ଅନ୍ତଃକରଣ)ର ଉତ୍ପତ୍ତି । ବ୍ରହ୍ମାଣ୍ଡ ବ୍ୟତୀତ ବିନା ମୂଳମାୟାରୁ ଜ୍ଞାନ (ବିକାର)ର ସୃଷ୍ଟି ହୁଏ କିପରି ? କହିବାକୁ ହେବ ଯେ ସ୍ଥୂଳକୁ ଭିତ୍ତି କରି ସୂକ୍ଷ୍ମର କାର୍ଯ୍ୟ ହୋଇଥାଏ । ଯଦି ସ୍ଥୂଳ ଶରୀର ନ ରହେ ତ ଅନ୍ତଃକରଣ ରହିବ କେଉଁଠି ? ତେଣୁ ସ୍ଥୂଳ ପୂର୍ବରୁ ସୂକ୍ଷ୍ମ ଆସିଲା କିପରି ଆମକୁ ଦୟାକରି ଟିକିଏ ବୁଝେଇ ଦିଅନ୍ତୁ ।

ବକ୍ତା କହୁଛନ୍ତି— ରେଶମ ପୋକ ଯେପରି ନିଜର ବୁଦ୍ଧି ଓ ଶକ୍ତି ଅନୁସାରେ ନିଜ ଶରୀର ଉପରେ ହିଁ ନିଜ ଘର ତିଆରି କରିଥାଏ; ଯେପରି ଶାମୁକା, ଶଙ୍ଖ, ସୀପ ଆଦି ଜଳଚର ପ୍ରାଣୀ ପ୍ରଥମେ ଜନ୍ମଗ୍ରହଣ କରିବା ପରେ ଯାଇ ନିଜର ଘର ତିଆରି କରିଥାଆନ୍ତି, ସେହିଭଳି ପ୍ରଥମେ ସୂକ୍ଷ୍ମଜୀବ ଜନ୍ମଗ୍ରହଣ କରିବା ପରେ ସ୍ଥୂଳ ଶରୀର ନିର୍ମାଣ ହୋଇଥାଏ ।

ଶ୍ରୋତା— ତାହାହେଲେ ପ୍ରଥମେ ଆମକୁ ଜନ୍ମମୃତ୍ୟୁର ରହସ୍ୟ ବୁଝାନ୍ତୁ । ଜନ୍ମ ଦେବାବାଲା ଏବଂ ଜନ୍ମ ନେବାବାଲା କିଏ ? ଏ ସମ୍ପର୍କରେ ଜ୍ଞାନ ହେବ କିପରି ? ଲୋକେ କହନ୍ତି ବ୍ରହ୍ମା ହିଁ ସୃଷ୍ଟିର ନିର୍ମାଣ କର୍ତ୍ତା, ବିଷ୍ଣୁ ପାଳନ କର୍ତ୍ତା, ଶିବ (ରୁଦ୍ର) ପରିଶେଷରେ ସଂହାର କର୍ତ୍ତା । କିନ୍ତୁ ଏ କଥାରେ କାହିଁକି କେଜାଣି ବିଶ୍ୱାସ ଦୃଢ଼ ହୋଇପାରୁ ନାହିଁ । ଯଦି ବ୍ରହ୍ମା ସୃଷ୍ଟିର ନିର୍ମାତା, ତାହାହେଲେ ବ୍ରହ୍ମାଙ୍କୁ ସୃଷ୍ଟି କଲା କିଏ ? ସେହିଭଳି ବିଷ୍ଣୁଙ୍କ ପାଳନକର୍ତ୍ତା ଏବଂ ମହାପ୍ରଳୟ ବେଳେ ରୁଦ୍ରଙ୍କୁ ସଂହାରକର୍ତ୍ତା କିଏ ?

ତେଣୁ ମନେ ହେଉଛି ଏସବୁ ମାୟାର ଖେଳ । ଯଦି ନିର୍ଗୁଣ ପରମାତ୍ମାଙ୍କୁ କର୍ତ୍ତା ବୋଲି ଧରାଯାଏ ତ ସେ ହେଉଛନ୍ତି ନିର୍ବିକାର । ମାୟାକୁ ଯଦି କର୍ତ୍ତା ବୋଲି ମାନିନେଉ ତ ସିଏ ନିଜେ ନିଜ ଭିତରେ ବିସ୍ତାରିତ ଏବଂ ସେ ସ୍ଥିର କିମ୍ବା ଶାଶ୍ୱତ ନୁହଁ । ଏହାକୁ ମଧ୍ୟ ମୂଳକର୍ତ୍ତା ବୋଲି କୁହାଯାଇ ନ ପାରେ । ତେଣୁ ଦୟାକରି ଆମକୁ ବୁଝେଇ ଦିଅନ୍ତୁ କି ବାସ୍ତବରେ ଜନ୍ମ ଗ୍ରହଣ କଲା କିଏ ? ଏହାକୁ ଚିହ୍ନିବା ଲାଗି ଲକ୍ଷଣ କ'ଣ ? ପୁଣ୍ୟ ଓ ପାପର ସ୍ୱରୂପ କ'ଣ ? ସନ୍ଦେହ କରୁଥିବା 'ମୁଁ' ଟି କିଏ ?

ଆମେ ଏସବୁ କଥା ବୁଝିବାକୁ ଅସମର୍ଥ । କୁହାଯାଉଛି ଯେ ମଣିଷର ବାସନା ହିଁ ଜନ୍ମ ନେଇଥାଏ । କିନ୍ତୁ ଏହି ବାସନାକୁ ତ କେହି ଦେଖି ପାରନ୍ତି ନାହିଁ । ବାସନା ମଧ୍ୟ ଅନ୍ତଃକରଣର ଏକ ବୃତ୍ତି । ବାସନା, କାମନା, କଳ୍ପନା, ଭାବନା ଆଦି ବିକାର ଅନ୍ତଃକରଣର ବୃତ୍ତିସମୂହ । ଏସବୁ ହେଉଛି ଜ୍ଞାନର ଯନ୍ତ୍ର । ଜ୍ଞାନର ଅର୍ଥ ହେଉଛି କେବଳ ସ୍ମରଣ । ତେବେ ସ୍ମରଣ ମାତ୍ରକେ ଜନ୍ମର ସୂତ୍ର ବାହାରୁଛି କିପରି ? ଏହି ପଞ୍ଚଭୌତିକ ଶରୀରର ଚାଳକ ହେଉଛି ବାୟୁ ଏବଂ ଜାଣିବା ବା ଜ୍ଞାନ ହେଉଛି ମନରୂପକ ବାୟୁତତ୍ତ୍ୱର ଗୁଣ । ସ୍ମରଣ ମଧ୍ୟ ସ୍ୱାଭାବିକ

ଭାବେ ହୋଇଥାଏ । ତେଣୁ ଧାରଣା ହେବା ସ୍ୱାଭାବିକ ଯେ ଜନ୍ମ ମୃତ୍ୟୁ ସମସ୍ୟା ହେଉଚି କଳ୍ପନା ମାତ୍ର । ଯିଏ ଥରେ ଜନ୍ମ ନେଇ ମରିଯାଏ, ତାର ପୁଣି ଜନ୍ମ ହୋଇନଥାଏ । ଯଦି ପୁନର୍ଜନ୍ମ ନାହିଁ, ତାହେଲେ ସତ୍‌ସଙ୍ଗ ଆଦିର କ'ଣ ବା ଆବଶ୍ୟକତା ରହିଚି ?

ପୁଣି ଶ୍ରୋତାର ଯୁକ୍ତି— ଜନ୍ମ ପୂର୍ବରୁ ତ କାହାର କୌଣସି ସ୍ମରଣ କିମ୍ବା ବିସ୍ମରଣ ନ ଥାଏ । ଇଏ ହେଉଚି ମଧ୍ୟବର୍ତ୍ତୀ କାଳର ଏକ ମାମଲା । ଏହି ଅନ୍ତଃକରଣ ମଧ୍ୟ ଏକ କଳାମାତ୍ର । ଯେପର୍ଯ୍ୟନ୍ତ ଚେତନା ରହିଛି, ସେ ପର୍ଯ୍ୟନ୍ତ ରହିଚି ସ୍ମରଣ । ଚେତନାର ପରିସମାପ୍ତି ଘଟିବାମାତ୍ରେ ସବୁ କିଛି ବିସ୍ମରଣ ହୋଇଥାଏ ଏବଂ ପ୍ରାଣୀର ମୃତ୍ୟୁ ଘଟିଥାଏ । ତେବେ କିଏ କାହାକୁ ଜନ୍ମ ଦେବ ? ତେଣୁ ଜନ୍ମର କୌଣସି ଅସ୍ତିତ୍ୱ ନାହିଁ କିମ୍ବା ଯାତନାର କୌଣସି ଅସ୍ତିତ୍ୱ ନାହିଁ ବୋଲି କୁହାଯାଇପାରେ । ଶୁଖିଲା କାଠ ଯେପରି ଆଉ କଞ୍ଚା ହୋଇ ନ ପାରେ, ତଳକୁ ଖସି ପଡୁଥିବା ଫଳ ଯେପରି ଆଉ ଗଛରେ ଲାଖି ନ ପାରେ, ସେହିଭଳି ପ୍ରାଣୀର ମୃତ୍ୟୁ ଘଟିବା ପରେ ଆଉ ପୁନର୍ଜନ୍ମ ଘଟିନଥାଏ । ମାଠିଆ ଭାଙ୍ଗିଯିବାପରେ ପୁଣି ତିଆରି ହୋଇ ନପାରେ । ସେହିଭଳି ଜଣଙ୍କର ଥରେ ମୃତ୍ୟୁ ହୋଇଯିବାପରେ ସେ ଚିରଦିନ ଲାଗି ଚାଲିଯାଏ । ତାର ଚିରଦିନ ଲାଗି ଜନ୍ମମୃତ୍ୟୁ ଝମେଲା ତୁଟିଯାଏ ।

ବକ୍ତା କହୁଛନ୍ତି— ବୃଥା କଥାକୁ ବଢ଼ାଇବାରେ କୌଣସି ଲାଭ ନାହିଁ । ଯଦି କୌଣସି ସନ୍ଦେହ ହେଉଛି ବିବେକ ସହିତ ଚିନ୍ତା କରିବା ଉଚିତ । ଏସବୁ ସନ୍ଦେହ ଅଜ୍ଞାନର କାରଣ । ଯାହାର ପ୍ରକୃତ ଆତ୍ମଜ୍ଞାନ ହୋଇଥାଏ, ଯିଏ ସବୁକଥାକୁ ଗଭୀର ଭାବେ ବିଚାର କରେ, ପ୍ରକୃତ ତଥ୍ୟକୁ ଅନୁଭବ କରେ, ଆପେ ଆପେ ତାର ସମସ୍ତ ସନ୍ଦେହ ତୁଟିଯାଇଥାଏ । ଜ୍ଞାନ ଓ ଅଜ୍ଞାନ କେବେହେଲେ ସମାନ ନୁହଁ । ଜ୍ଞାନଦ୍ୱାରା ହିଁ ମଣିଷ ଜନ୍ମ ମରଣ ଚକ୍ରରୁ ଉଦ୍ଧାର ପାଏ । ଏହି ଜ୍ଞାନ ଲାଗି ହିଁ ବେଦଶାସ୍ତ୍ର ପୁରାଣ ଆଦି ରଚିତ ହୋଇଚି । ଆତ୍ମଜ୍ଞାନ ଦ୍ୱାରା ହିଁ ମଣିଷ ମୁକ୍ତ ହୋଇପାରେ । ଏକଥା ମଧ୍ୟ ସତ୍ୟ ଯେ ଆତ୍ମା ମାତ୍ରେ ସ୍ୱଭାବତଃ ମୁକ୍ତ । କିନ୍ତୁ ଏହି ବିଷୟଟିକୁ ଜ୍ଞାନଦ୍ୱାରା ହିଁ ଉପଲବ୍ଧ କରାଯାଇପାରେ । ଆତ୍ମଜ୍ଞାନଲାଭ ହୋଇଗଲେ ସମଗ୍ର ସଂସାର ମିଥ୍ୟା ମନେ ହେବ । କିନ୍ତୁ ଜ୍ଞାନ

ନ ହେବା ପର୍ଯ୍ୟନ୍ତ ମନେ ହେବ ଏହି ମିଥ୍ୟା ଦୃଶ୍ୟସୃଷ୍ଟି ହିଁ ସତ୍ୟ । ବିଜ୍ଞାନ ଅର୍ଥାତ୍ ବ୍ରହ୍ମଜ୍ଞାନ ଅଜ୍ଞାନ ସହିତ ସମାନ ନୁହଁ । ମୁକ୍ତ ଯିଏ, ବଦ୍ଧ ସିଏ ନୁହଁ । ନିଶ୍ଚୟ ଓ ଅନୁମାନ ସମାନ ନୁହଁ ।

ଏଥିରୁ ଏକଥା ସିଦ୍ଧ ହେଉଚି ଯେ ଜ୍ଞାନୀ ଜ୍ଞାନଯୋଗୁଁ ହିଁ ମୁକ୍ତ ରହିଥାଏ ଏବଂ ଅଜ୍ଞାନୀ ନିଜ କଳ୍ପନାଯୋଗୁଁ ବନ୍ଧନରେ ପଡ଼ି ରହିଥାଏ । ବନ୍ଧନମୁକ୍ତ ହେବା ଲାଗି ଜ୍ଞାନବ୍ୟତୀତ ଅନ୍ୟ କୌଣସି ଉପାୟ ନାହିଁ ।

ଏକଥା କୁହାଯିବାର ତାତ୍ପର୍ଯ୍ୟ ହେଉଚି ଜ୍ଞାନ ଲାଭ କରି ମନୁଷ୍ୟ ବନ୍ଧନମୁକ୍ତ ହେବା ଉଚିତ । ମୋକ୍ଷ ଲାଗି ସର୍ବପ୍ରଥମେ ଜ୍ଞାନ ଆବଶ୍ୟକ । ପ୍ରକୃତ ଜ୍ଞାନଲାଭ କଲେ ମନୁଷ୍ୟ ସମସ୍ତ କଳ୍ପିତ ବନ୍ଧନରୁ ମୁକ୍ତ ହୋଇଥାଏ । ଅଳ୍ପକିଛି ଜାଣିବା ଅଜ୍ଞାନ ଏବଂ ସବୁକିଛି ଜାଣିବା ହେଉଚି ଜ୍ଞାନ । ''ମୁଁ କିଛି ଜାଣିଚି''– ଏହି ଭାବନା ଲୋପ ହୋଇଯିବା ହେଉଚି ବିଜ୍ଞାନ ବା ବ୍ରହ୍ମଜ୍ଞାନ । ଏହି ଅବସ୍ଥାରେ ପହଞ୍ଚିବା ପରେ ମଣିଷ ଦେହବୁଦ୍ଧିରୁ ମୁକ୍ତି ପାଇ ଆତ୍ମସ୍ୱରୂପରେ ଲୀନ ହୋଇଯାଏ । ଯିଏ ଅମୃତ ସେବନ କରି ଅମୃତ ହୋଇ ସାରିଚି ସେ ଜୀବର ମୃତ୍ୟୁକୁ ଦେଖି ବିସ୍ମିତ ହୋଇପଡ଼େ । ସେହିଭଳି ବିବେକୀମୁକ୍ତ ପୁରୁଷ ବନ୍ଧନରେ ପଡ଼ିଥିବା ଜୀବକୁ ଦେଖି ଭାବେ, ଏହାକୁ ପୁଣି ଜନ୍ମ ନେବାକୁ ପଡ଼େ କାହିଁକି ? ଯଦି ମୁକ୍ତପୁରୁଷ ବନ୍ଧନରେ ପଡ଼ିଥିବା ପୁରୁଷ ସହିତ ସମାନ ହୋଇଥାଆନ୍ତା ତାହାହେଲେ ସେ ଏଭଳି ପ୍ରଶ୍ନ କରନ୍ତା ନାହିଁ ।

ତେଣୁ ଆମେମାନେ ଜ୍ଞାନ ସହିତ ଲିପ୍ତ ନ ରହି ବନ୍ଧନରେ ପଡ଼ିଥିବା ପୁରୁଷର ଲକ୍ଷଣ ସବୁ ବିଚାର କରିବା ଆବଶ୍ୟକ । ଜାଗ୍ରତ ଥିବା ବ୍ୟକ୍ତି ସ୍ୱପ୍ନରେ ବିଲିବିଲାଉଥିବା ବ୍ୟକ୍ତିକୁ ଦେଖି କହେ, ଆରେ ଇଏ ଇମିତି ହେଉଚି କାହିଁକି ? ଏହି ନିଦ୍ରିତ ମନୁଷ୍ୟର ସ୍ଥିତିକୁ ଅନୁଭବ କରିବାକୁ ହେଲେ ତାକୁ ନିଦ୍ରିତ ଅବସ୍ଥାରେ ରହିବାକୁ ପଡ଼ିବ । ଜ୍ଞାନୀ ପୁରୁଷ ସର୍ବଦା ଜାଗ୍ରତ ରହିଥାଏ । ତେଣୁ ବଦ୍ଧ-ପୁରୁଷ ଭଳି ବନ୍ଧନକାରୀ ଭାବନାଗୁଡ଼ିକୁ ସେ ଅନୁଭବ କରି ପାରେ ନାହିଁ ।

ଯିଏ ପେଟପୂରା ଖାଇ ସାରିଥାଏ, ସେ ଭୋକ ଅନୁଭବ କରିପାରେ ନାହିଁ । ସେହିଭଳି ଜ୍ଞାନୀ ପୁରୁଷର ଅଜ୍ଞାନୀ ଜୀବପରି ବାସନା, କାମନା ଆଦି

ନଥାଏ । ଅର୍ଥାତ୍ ସେ କୌଣସି ବନ୍ଧନ ଭିତରେ ରହିନଥାଏ । ଜ୍ଞାନଦ୍ୱାରା ହିଁ ମନୁଷ୍ୟ ମୁକ୍ତ ହୋଇପାରେ ଏବଂ ବିବେକଦ୍ୱାରା ହିଁ ଆତ୍ମାନୁଭବ ହୋଇଥାଏ ।

## ଅଷ୍ଟମ ସମାସ
## ।। ଦେହାନ୍ତ ନିରୂପଣ ।।

ଶ୍ରୋତାଙ୍କ ପ୍ରଶ୍ନ— ଜ୍ଞାନୀ ତ ଜ୍ଞାନ-ବିଚାର ଦ୍ୱାରା ମୁକ୍ତି ଲାଭ କରିଥାଏ, କିନ୍ତୁ ଅଜ୍ଞାନୀ ଅର୍ଥାତ୍ ଯେଉଁ ବ୍ୟକ୍ତି ବଦ୍ଧ ବା ସାଂସାରିକ ଜଞ୍ଜାଳ ଜାଲରେ ନିବଦ୍ଧ, ଅନ୍ତିମ କାଳରେ ତାହାର କି ଦଶା ହୋଇଥାଏ ? ତାର ଜ୍ଞାନଲାଭ କରିବାର ଶକ୍ତି ତ ମୃତ୍ୟୁ ପୂର୍ବରୁ ହିଁ ନଷ୍ଟ ହୋଇଯାଇଥାଏ, ତାହାହେଲେ ତାର ଦଶା କ'ଣ ହେବ ?

ବକ୍ତା ଉତ୍ତର ଦେଉଛନ୍ତି— କାମନାବାସନା ମିଶ୍ରିତ ପ୍ରାଣର ବିୟୋଗକୁ ଆମେ ମୃତ୍ୟୁ କହିଥାଉ । ପ୍ରାଣବାୟୁ ସହିତ ଚାଲିଯାଉଥିବା ବାସନା ବାୟୁର ରୂପରେ ଉପସ୍ଥିତ ରହିଥାଏ ଏବଂ ଏହାହିଁ ପୁନର୍ଜନ୍ମର କାରଣ ହୋଇଥାଏ । କେତେକ ପ୍ରାଣୀ ଅଚେତ ରହିଥିବା ଅବସ୍ଥାରେ ମରିଯାଇଥାଆନ୍ତି । କିନ୍ତୁ ବାସ୍ତବରେ ସେମାନଙ୍କ ମୃତ୍ୟୁ ଘଟି ନ ଥାଏ । ସେମାନେ ପରଲୋକରୁ ଧକ୍କାଖାଇ କ୍ଷତ ବିକ୍ଷତ ଅବସ୍ଥାରେ ପୁଣି ଏହି ମରଲୋକ ବା ଇହଲୋକରେ ଜନ୍ମଗ୍ରହଣ କରନ୍ତି । ହାତଗୋଡ଼ ଛୋଟା, ଅନ୍ଧ, ବିକଳାଙ୍ଗ ହୋଇ ଜନ୍ମ ହେବା ହିଁ ପରଲୋକରୁ ଧକ୍କା ଖାଇବାର ପ୍ରମାଣ । କୌଣସି କୌଣସି ବ୍ୟକ୍ତି ସର୍ପଦଂଶନ ଫଳରେ ତିନି ଚାରିଦିନ ପରେ ମଧ୍ୟ ବୈଦ୍ୟମାନଙ୍କ ଚିକିତ୍ସା ଦ୍ୱାରା ଯମଲୋକରୁ ଫେରି ଆସିଥାଆନ୍ତି । କେତେକ ଜୀବ ବରଦାନଦ୍ୱାରା ଅଭିଶାପମୁକ୍ତ ହୋଇ ପୂର୍ବ ଶରୀର ଲାଭ କରିଥାଆନ୍ତି । କୌଣସି କୌଣସି ଜୀବକୁ ଅନେକ ଜନ୍ମ ଗ୍ରହଣ କରିବାକୁ ପଡ଼ିଥାଏ । କେତେକ ପରକାୟା ପ୍ରବେଶ କରିଥାଆନ୍ତି । ଏହିଭଳି ଭାବେ କେତେକ ଜୀବଙ୍କର ବିଚିତ୍ର ପ୍ରକାରରେ ପ୍ରତ୍ୟାଗମନ ହୋଇଥାଏ । ଜଣେ କେହି ଫୁଙ୍କି ଦେବାଭଳି ବାୟୁ ଗୋଟିଏ ଦେହରୁ ଅନ୍ୟ ଦେହକୁ ପ୍ରବେଶ କରିଥାଏ । ଏହାଦ୍ୱାରା ବାୟୁସ୍ୱରୂପ ବାସନାର ହିଁ ଯେ ପୁନର୍ଜନ୍ମ ହୋଇଥାଏ ଏକଥା ପ୍ରମାଣିତ ।

ବାସନା ହେଉଚି ମନର ବହୁ ବୃତ୍ତି ମଧ୍ୟରୁ ଏକ ବୃତ୍ତି । ଯଦିଓ ଏହା ଦେଖାଯାଏ ନାହିଁ ତଥାପି ଏହାର ଅସ୍ତିତ୍ୱ ଶେଷ ପର୍ଯ୍ୟନ୍ତ ରହିଥାଏ । ବାସନା ହେଉଚି ଅନୁଭବର କାରଣ । ବାସନା ବାୟୁରୂପ ପ୍ରକୃତିର ଅଂଶ ଏବଂ ଜ୍ଞାନ ହେଉଚି ପୁରୁଷର ଅଂଶ । ମୂଳ ମାୟାର କାରଣ ହେଉଚି ଜ୍ଞାନ, ଯେଉଁ ଜ୍ଞାନ କି ମାୟାରେ ଲିପ୍ତ ରହିଥାଏ । ଏହି ଜ୍ଞାନର ଅନୁଭୂତି ବ୍ରହ୍ମାଣ୍ଡରେ କାରଣ ରୂପରେ ଏବଂ ପିଣ୍ଡରେ କାର୍ଯ୍ୟ ରୂପରେ କାମ କରିଥାଏ । ଏହାକୁ ଶୀଘ୍ର ଅନୁମାନ କରାଯାଇ ପାରେ ନାହିଁ । କାରଣ ଏହାର ସ୍ୱରୂପ ବାୟୁ ଭଳି ସୂକ୍ଷ୍ମ । ସବୁ ଦେବଦେବୀ ଏବଂ ପଞ୍ଚଭୂତ ହେଉଚନ୍ତି ବାୟୁରୂପ । ଯେପରି ବାୟୁକୁ କେନ୍ଦ୍ରକରି ହେଉଥିବା ଅନେକ ପ୍ରକାରର ବିଚାର ପ୍ରତ୍ୟକ୍ଷ ଦେଖାଯାଇ ନ ଥାଏ, ସେହିଭଳି ସୂକ୍ଷ୍ମ ବାସନା ମଧ୍ୟ ଅଦୃଶ୍ୟ । ବାୟୁ ହେଉଚି ତ୍ରିଗୁଣ ଓ ପଞ୍ଚଭୂତର ମିଶ୍ରଣ । ଯଦିଓ ଆମେ ଏସବୁ ଅନୁମାନ କରି ନ ପାରୁ ତଥାପି ଏହାକୁ ମିଥ୍ୟା କୁହାଯାଇ ନ ପାରେ । ବାୟୁ ଯୋଗୁଁ ହିଁ ସୁଗନ୍ଧ, ଦୁର୍ଗନ୍ଧ, ଶୀତଳ, ଉଷ୍ଣ ଆଦିର ଅନୁଭବ ହୋଇଥାଏ । ବାୟୁଯୋଗୁ ହିଁ ମେଘ ଜଳବୃଷ୍ଟି କରିଥାଏ ଏବଂ ବାୟୁଯୋଗୁଁ ହିଁ ନକ୍ଷତ୍ର ଗତିଶୀଳ । ସମଗ୍ର ସୃଷ୍ଟିର ସଞ୍ଚାଳକ ଏହି ବାୟୁ । ବିଭିନ୍ନ ଦେବଦେବୀ, ଭୂତ ପିଶାଚ ଆଦି ବାୟୁରୂପ ହୋଇଥିବା ଯୋଗୁଁ ହିଁ କୌଣସି କୌଣସି ଶରୀରରେ ପ୍ରବେଶ କରିଥାଆନ୍ତି ଏବଂ ମନ୍ତ୍ରର ପ୍ରଭାବରେ ସେ ସବୁକୁ ହଟାଯାଇଥାଏ । ବାୟୁ ସ୍ୱତନ୍ତ୍ର ଭାବେ କିଛି କହିପାରେ ନାହିଁ । ଏହା ଶରୀରର ଆଶ୍ରୟ ଗ୍ରହଣ କରି କଥା କହେ, ହଳଚଳ ହୁଏ ଏବଂ କାମନା ବାସନାକୁ ନେଇ ପୁନର୍ଜନ୍ମ ଗ୍ରହଣ କରେ । ବାସନାର ଏହି କାର୍ଯ୍ୟକୁ ଦେଖି ଏହା ଯେ ବାୟୁରୂପ ହୋଇଥାଏ ଏହା ପ୍ରମାଣିତ ।

ବାୟୁ ଚଳଚଞ୍ଚଳରୂପରେ ସୃଷ୍ଟିକର୍ତ୍ତା (ବ୍ରହ୍ମା) । ସ୍ତବ୍ଧ ଓ ନିଶ୍ଚଳ ରୂପରେ ଏହା ସୃଷ୍ଟି ସଂଚାଳନ (ବିଷ୍ଣୁ) । ମୂଳ ମାୟାଠୁ ଆରମ୍ଭ କରି ଅନ୍ତିମ ସ୍ଥୂଳ ବସ୍ତୁ ପର୍ଯ୍ୟନ୍ତ ସବୁ ହେଉଚି ବାୟୁର ଖେଳ । ବାୟୁ ବିନା କୌଣସି କର୍ତ୍ତୃତ୍ୱ ନାହିଁ । ଯଦି ଏକଥା ସତ ନୁହଁ, ଚତୁର ଲୋକେ ସତ୍ୟ କ'ଣ ମତେ ବୁଝାନ୍ତୁ ।

ଜ୍ଞାତବ୍ୟ ବସ୍ତୁ ହିଁ ମୂଳ ମାୟାର ସ୍ୱରୂପ । ଏହି ଜ୍ଞାତବ୍ୟ ହିଁ ଆମ ସମସ୍ତଙ୍କଠାରେ ରହିଛି । ଏହା କେଉଁଠି ଗୁପ୍ତରେ ତ କେଉଁଠି ପ୍ରକାଶ୍ୟ ଭାବରେ

ବିଚରଣ କରିଥାଏ । ଯେପରି ଜଳ ପ୍ରଥମେ ବାଷ୍ପ ରୂପରେ ଗୁପ୍ତ ରହିଥାଏ ଏବଂ ପରେ ବର୍ଷା ରୂପରେ ପ୍ରକଟିତ ହୋଇଥାଏ, ସେହିଭଳି ଜ୍ଞାତବ୍ୟ ମଧ୍ୟ ବାୟୁରେ ମିଶି ରହିଥାଏ ଏବଂ କେତେବେଳେ ଗୁପ୍ତ ରୂପରେ ତ କେତେବେଳେ ପ୍ରକାଶିତ ଭାବରେ ଅନୁଭୂତ ହୋଇଥାଏ ।

କେତେବେଳେ କେତେବେଳେ ଏଥିରେ ବିକାର ଦେଖାଯାଏ ଏବଂ ସେତେବେଳେ ହିଁ ଏହା ପ୍ରକଟିତ ରୂପରେ ଦେଖା ଦେଇଥାଏ । କେବେ କେବେ ଏହା ବାୟୁ ରୂପରେ ହିଁ ଅଦୃଶ୍ୟ ରହିଥାଏ । ବେଳେବେଳେ ବାୟୁର ପ୍ରଭାବରେ ମଣିଷ ଦେହରେ ରକ୍ତ ପଶିଯାଏ ଏବଂ ବାୟୁର ପ୍ରକୋପରେ ଠିଆ ହୋଇଥିବା ଫସଲ ମଧ୍ୟ ଉଜୁଡ଼ିଥାଏ । ବାୟୁର ବିଭିନ୍ନ ବିକାର ଯୋଗୁଁ ଦେହରେ ନାନାପ୍ରକାରର ରୋଗ ଦେଖା ଦେଇଥାଏ । ବାୟୁ ଯୋଗୁଁ ଆକାଶରେ ବିଜୁଳି ଚମକେ । ଏହି ବାୟୁ ଯୋଗୁଁ ଅନେକ ପ୍ରକାର ରାଗ ଓ ସ୍ୱର ସୃଷ୍ଟି ହୋଇଥାଏ । ବାୟୁ ଯୋଗୁଁ ଦୀପକ ରାଗ ଦ୍ୱାରା ପ୍ରଦୀପ ଜଳି ଉଠିଥାଏ ଏବଂ ମେଘମହ୍ଲାର ରାଗ ଯୋଗୁଁ ବର୍ଷା ହୋଇଥାଏ । ବାୟୁ ହେତୁ ଅନେକ ଲୋକଙ୍କ ମତିଭ୍ରମ ଘଟିଥାଏ, କେହି କେହି ପାଗଳ ହୋଇ ପଡ଼ିଥାଆନ୍ତି । ଗଛପତ୍ର ସବୁ ଶୁଖିଯାଏ । ମନ୍ତ୍ରର ପ୍ରଭାବ ମଧ୍ୟ ବାୟୁ ଯୋଗୁଁ ହୋଇଥାଏ । ସ୍ତମ୍ଭନ, ମୋହନ, ଉଚ୍ଚାଟନ ଆଦି ନାନା ବିଚିତ୍ର କାର୍ଯ୍ୟ ବାୟୁ ଦ୍ୱାରା ସମ୍ପନ୍ନ ହୋଇଥାଏ । ମନ୍ତ୍ରର ସମସ୍ତ ଲୀଳା ବାୟୁର ପ୍ରକୋପରେ ସମ୍ଭବ ହୋଇଥାଏ । ମନ୍ତ୍ରର ଶକ୍ତିକୁ କିଏ ନ ଜାଣେ ? ମନ୍ତ୍ରଦ୍ୱାରା ବହୁ ପ୍ରାଣୀକୁ ବଶ କରାଯାଇପାରେ । ମନ୍ତ୍ରସିଦ୍ଧି ଦ୍ୱାରା ଧନଲାଭ ମଧ୍ୟ ସମ୍ଭବ ହୋଇଥାଏ ।

ଏ ସମ୍ପର୍କରେ ବହୁତ କିଛି କୁହାଗଲାଣି । ଏହାଦ୍ୱାରା ବଦ୍ଧପ୍ରାଣୀର ପୁନର୍ଜନ୍ମର ରହସ୍ୟ ଜାଣିବା ସମ୍ଭବ ।

## ନବମ ସମାସ
## ।। ସନ୍ଦେହ ନିବାରଣ ।।

ଶ୍ରୋତାଙ୍କ ପ୍ରଶ୍ନ— ବ୍ରହ୍ମ ଏପରି ଯେ ଏହାକୁ ରୋକିଲେ ମଧ୍ୟ ରୋକା ଯାଇ ପାରେନା, ହଟାଇବାକୁ ଚାହିଲେ ମଧ୍ୟ ହଟେନା, ପୃଥକ କରିବାକୁ ଚାହିଁଲେ

ପୃଥକ କରି ହୁଏନା । ବ୍ରହ୍ମ ଅଖଣ୍ଡ, ଏଥିରେ ଅନ୍ୟ କିଛି ପ୍ରବେଶ କରିପାରେନା । ବ୍ରହ୍ମ ଯଦି ଏପରି ବସ୍ତୁ, ବ୍ରହ୍ମାଣ୍ଡ ଏହା ଭିତରେ ପ୍ରବେଶ କଲା କିପରି ? ପର୍ବତ, ପାଷାଣ ଏବଂ ଅନେକ ସ୍ଥଳ ଓ ଜଳଭାଗ ଆଦି ପରବ୍ରହ୍ମ ଭିତରେ ରହିଲା କିପରି ? ଭୂଗୋଳ ଯେ (ସମଗ୍ର ସୃଷ୍ଟି) ରହିଚି ବ୍ରହ୍ମରେ ଏବଂ ବ୍ରହ୍ମ ଯେ ଭୂଗୋଳ ଦେହରେ ପ୍ରତ୍ୟକ୍ଷ ଭାବେ ଦେଖା ଯାଇଥାଏ ଏକଥା ବିଚାର କଲେ ସତ୍ୟ ମନେ ହୋଇଥାଏ । ଏକଥା ବୁଝି ହେଉଚି ଯେ ବ୍ରହ୍ମାଣ୍ଡ ଭିତରେ ବ୍ରହ୍ମର ପ୍ରବେଶ ହୋଇଚି, କିନ୍ତୁ ବ୍ରହ୍ମ ଭେଦ କରି ବ୍ରହ୍ମାଣ୍ଡ କିପରି ତା ଭିତରେ ପ୍ରବେଶ କଲା ତାହା ବଡ଼ ବିଚିତ୍ର ମନେ ହେଉଚି । ଯଦି ଏହା କୁହାଯିବ ଯେ ବ୍ରହ୍ମାଣ୍ଡ ବ୍ରହ୍ମରେ ପ୍ରବେଶ କରି ନାହିଁ ତେବେ ଏକଥା କୁହାଯାଇପାରେ ଯେ ବ୍ରହ୍ମରେ ବ୍ରହ୍ମାଣ୍ଡ ରହିଛି । ତେଣୁ ଅନୁରୋଧ, କୃପାପୂର୍ବକ ଆପଣ ଆମକୁ ଏହି ରହସ୍ୟ ବୁଝେଇ ଦିଅନ୍ତୁ ।

ଏହାପରେ ବକ୍ତା କହୁଛନ୍ତି— ଶ୍ରୋତାଙ୍କ ସନ୍ଦେହ ହେଉଚି ଯେ ବ୍ରହ୍ମାଣ୍ଡ ବୋଲି କିଛି ନାହିଁ । କିନ୍ତୁ ଏହା ତ ଆଖିରେ ଦେଖିବାକୁ ମିଳୁଚି । ଯଦି କୁହାଯାଏ ଯେ ବ୍ରହ୍ମାଣ୍ଡ ରହିଛି ତା'ହେଲେ ଏହି ବ୍ରହ୍ମାଣ୍ଡ ତ ମିଥ୍ୟା ।

ପ୍ରକୃତ ରହସ୍ୟ କ'ଣ ଶ୍ରୋତାଗଣ ସାବଧାନ ହୋଇ ଶୁଣନ୍ତୁ । ଯଦି ଆମେ ଆକାଶ (ଅବକାଶ)ରେ ଦୀପ ଜଳେଇ ରଖୁ ତାହାହେଲେ ଏହା ଆକାଶରୁ ଅଲଗା ରହିପାରିବ କିପରି ? ଜଳ, ଅଗ୍ନି (ତେଜ) କିମ୍ବା ବାୟୁ କେବେହେଲେ ଆକାଶକୁ ହଟେଇ ନ ପାରେ । କାରଣ ଆକାଶ ସବୁଠି ପୂରି ରହିଛି । ଏହା ସର୍ବବ୍ୟାପୀ । ଯଦିଓ ପୃଥିବୀ କଠିନ ତଥାପି ଆକାଶତତ୍ତ୍ୱ ଏହାକୁ ଚାଲୁଣି କରି ଦେଇଛି । ଅର୍ଥାତ୍ ଆକାଶ ଏହାର ସର୍ବାଙ୍ଗରେ ପ୍ରବେଶ କରିସାରିଛି । ସବୁ ଜଡ଼ ପଦାର୍ଥ ବିନାଶଶୀଳ । ଆକାଶ ଅବିନାଶୀ ଏବଂ ଅଚଳ । ଆକାଶରୁ ଅଲଗା ରହି ଦେଖିଲେ ମଧ୍ୟ ସେହି ଆକାଶ ହିଁ ଦେଖିବାକୁ ମିଳେ । ଯଦି ଏହାଠାରୁ ନିଜକୁ ଅଭିନ୍ନ ମନେ କରି ବିଚାର କରାଯାଏ ତ ଆକାଶ ପରବ୍ରହ୍ମ ପ୍ରତୀତ ହେବ । ଆକାଶ ଅବିଚଳ ଓ ଅଭେଦ । ଯାହା ବ୍ରହ୍ମ ଭଳି ମନେ ହୁଏ ତାହାକୁ ଆକାଶତତ୍ତ୍ୱ କୁହାଯିବା ଉଚିତ । ଆକାଶ ବ୍ରହ୍ମଭଳି ନିର୍ଗୁଣ ନିରାକାର ମନେହୁଏ । କେବଳ କଳ୍ପନା ଦ୍ୱାରା ଏହା ଅନୁମାନ କରାଯାଇଥାଏ । କଳ୍ପନା ଯେତେଦୂର ଯାଇପାରେ ସେ ପର୍ଯ୍ୟନ୍ତ ସବୁ ଆକାଶମୟ । କିନ୍ତୁ ପରବ୍ରହ୍ମ ନିରାଭାସ ତଥା ନିର୍ବିକଳ୍ପ,

କଳ୍ପନାଠାରୁ ଆହୁରି ଊର୍ଦ୍ଧ୍ୱରେ । ଆକାଶ ପଞ୍ଚଭୂତର ସମାବେଶ । ଭୂତରେ ବ୍ରହ୍ମର ଯେଉଁ ଅଂଶ ନିହିତ ତାହା ହିଁ ଆକାଶତତ୍ତ୍ୱ । ଯାହା ପ୍ରତ୍ୟକ୍ଷ ଭାବେ ଉତ୍ପନ୍ନ ହେଉଥିବା ଏବଂ ବିନାଶ ହେଉଥିବା ଦେଖାଯାଏ, ତାହା ଅଚଳ ରହି ନ ପାରେ । ପୃଥିବୀର ବିନାଶ ଘଟିଲେ ଅବଶେଷ ରହେ କେବଳ ଜଳ । ଜଳ ଶେଷ ହୋଇଯିବା ପରେ ଅବଶିଷ୍ଟ ରହେ ଅଗ୍ନି । ଅଗ୍ନି ଶାନ୍ତ ହେବା ପରେ ଅବଶେଷ ରହେ ବାୟୁ । ପରିଶେଷରେ ବାୟୁର ମଧ୍ୟ ବିନାଶ ଘଟେ । ଯାହା ମିଥ୍ୟା ତାହା ପ୍ରତ୍ୟକ୍ଷରେ ମଧ୍ୟ ଦେଖା ଯାଇଥାଏ ଏବଂ ତାହା ନଷ୍ଟ ହୋଇ ଚାଲିଥାଏ । କିନ୍ତୁ ପରବ୍ରହ୍ମରୂପୀ ସତ୍ୟର କେବେହେଲେ ବିନାଶ ନାହିଁ । ବାସ୍ତବରେ ଏହି ବ୍ରହ୍ମାଣ୍ଡ ଭ୍ରମବଶତଃ ଦୃଶ୍ୟମାନ ହୋଇଥାଏ । ବିଚାରପୂର୍ବକ ଦେଖିଲେ ଏହା ସର୍ବଦା ମିଥ୍ୟା । ତେଣୁ ଏହି ଭ୍ରମମୂଳକ ଜଗତକୁ ସତ୍ୟ ବୋଲି କୁହାଯିବ କିପରି ? ଭ୍ରମ କ'ଣ ଜାଣିବା ପରେ ଆଉ ଭ୍ରମ ବୋଲି କିଛି ରହେନା । ତାହାହେଲେ କିଏ କାହାକୁ ଭେଦ କଲା ? ଯିଏ ସ୍ୱୟଂ ମିଥ୍ୟା ଏହାର କାର୍ଯ୍ୟକୁ ମଧ୍ୟ ମିଥ୍ୟା ମାନିବା ଆବଶ୍ୟକ ।

ଯେପରି ସାଗର ଭିତରେ ତୃଣ ନଗଣ୍ୟ, ସେହିଭଳି ବ୍ରହ୍ମରେ ସାରା ଦୃଶ୍ୟ ଜଗତ ତୁଚ୍ଛ । ଯାହାର ଯେପରି ଭାବ, ତାକୁ ସେହିଭଳି ଦେଖାଯାଏ । ବିଶାଳ ବୁଦ୍ଧି ଦ୍ୱାରା ଦେଖିଲେ ସାରା ବ୍ରହ୍ମାଣ୍ଡ କଇଥ ଭଳି ଗୋଲ । ଅଧିକ ସୂକ୍ଷ୍ମଦୃଷ୍ଟିରେ ଦେଖିଲେ ଏହା ବରକୋଳି ଭଳି ଦେଖାଯାଏ । ଜୀବ ଯେତେବେଳେ ବ୍ରହ୍ମସ୍ୱରୂପ ହୋଇଯାଏ, ବ୍ରହ୍ମାଣ୍ଡର ଆଉ କୌଣସି ସତ୍ତା ରହେ ନାହିଁ । କିଛି ହେଲେ ଦେଖାଯାଏ ନାହିଁ । ଯେଉଁ ମନୁଷ୍ୟ ନିଜକୁ ଭ୍ରମବଶତଃ କ୍ଷୁଦ୍ର ଶରୀରଧାରୀ ଜୀବ ମନେ କରିଥାଏ, ବ୍ରହ୍ମାଣ୍ଡର ପ୍ରକୃତ ସ୍ୱରୂପ ସମ୍ପର୍କରେ ତାର ଜ୍ଞାନ ହେବ କିପରି ?

ତେଣୁ ଆମେମାନେ ନିଜ ବୃତ୍ତିକୁ ଏପରି ବିସ୍ତାରିତ କରିବା ଉଚିତ ଯାହାଦ୍ୱାରା ପରିଶେଷରେ ସାଗରର ଲହଡ଼ି ଭଳି ପୂର୍ଣ୍ଣବ୍ରହ୍ମକୁ ସବୁଆଡୁ ନିଜ ଭିତରେ ମିଶେଇ ଦେଇ ପାରିବା । ଯଦି ବୃତ୍ତିକୁ ଏଭଳି ବିସ୍ତାର କରାଯାଏ ତ ଏହି ବୃତ୍ତି ମଧ୍ୟ ଲୋପ ପାଇଯିବ ଏବଂ କେବଳ ନିର୍ଗୁଣ ଆତ୍ମା ବ୍ରହ୍ମରୂପରେ ଅବଶିଷ୍ଟ ରହିବ ।

ଏହାପରେ ଶ୍ରୋତାମାନଙ୍କର ସନ୍ଦେହ ନିଶ୍ଚିତ ଭାବରେ ଦୂର ହୋଇପାରିଥିବ ବୋଲି ମୋର ବିଶ୍ୱାସ । ବିବେକପୂର୍ବକ ବିଚାର କଲେ ଯାଇ

ସନ୍ଦେହ ନଷ୍ଟ ହୋଇଥାଏ । ସାର ଅସାର ବିଚାର କରିବା ଦ୍ୱାରା ହିଁ ପ୍ରତୀତି ଉତ୍ପନ୍ନ କରି ପାରୁଥିବା ଏହି ଉତ୍ତର ଶ୍ରୋତାମାନଙ୍କ ସନ୍ଦେହ ଦୂର କରିପାରେ ।

ଏ ସମ୍ପର୍କରେ ସତତ ମନନ, ଚିନ୍ତନ କରିବା ଦ୍ୱାରା ମନୁଷ୍ୟ ସାକ୍ଷାତ୍‌କାର ଲାଭ କରି ପବିତ୍ର ହୋଇ ଉଠିଥାଏ ଏବଂ ସେ ପରମାନନ୍ଦ ଲାଭ କରିଥାଏ ।

## ଦଶମ ସମାସ
## ।। ସ୍ଥିତି ନିରୂପଣ ।।

ଶ୍ରୋତା— ବହିଃରଙ୍ଗ ସାଧନ ଅପେକ୍ଷା ଅନ୍ତରଙ୍ଗ ସାଧନଦ୍ୱାରା ଅନ୍ତର୍ନିଷ୍ଠ ହେବାରେ ଏବଂ ନିର୍ଗୁଣ ବ୍ରହ୍ମାନୁଭୂତି ଲାଭ କରିବାରେ ହିଁ ଜୀବନର ସଫଳତା ଓ ସାର୍ଥକତା । ବାହ୍ୟିକ ଲୌକିକତାର ବୃଦ୍ଧି ଭଲଭାବରେ ଘଟିପାରେ, କିନ୍ତୁ ତାହା ଅନ୍ତର୍ନିଷ୍ଠା ସହିତ ସମାନ କି ?

ବକ୍ତା— ମନ୍ଦିର ଭିତରେ ରହିଛନ୍ତି ବଡ଼ ଠାକୁର ଜଗନ୍ନାଥ । ମନ୍ଦିରର ଚୂଡ଼ାରେ କୁଆ ବସିଲେ କୁଆ ଜଗନ୍ନାଥଙ୍କଠାରୁ ବଡ଼ ବୋଲି ବୁଝାଯିବ କି ? ରାଜାଙ୍କ ସଭା ରାଜଦରବାରରେ ହୋଇଥାଏ । ସେହି ସମୟରେ ଗୋଟାଏ ମାଙ୍କଡ଼ ଯଦି ସଭାମଞ୍ଚରେ ଖମ୍ଭ ଉପରେ ବସିପଡ଼େ, ମାଙ୍କଡ଼କୁ ସଭାସଦ୍‌ଙ୍କଠାରୁ ଉଚ୍ଚସ୍ତରର ବୋଲି କୁହାଯିବ କି ? ବ୍ରାହ୍ମଣ ଗଙ୍ଗାରେ ସ୍ନାନ ସାରି ବାହାରକୁ ଚାଲିଆସେ । କିନ୍ତୁ ବଗ ଜଳରେ ହିଁ ବସି ରହିଥାଏ । ତା ବୋଲି ବଗ କ'ଣ ବ୍ରାହ୍ମଣଠାରୁ ଶ୍ରେଷ୍ଠ ? ଧର କୌଣସି ବ୍ରାହ୍ମଣ ଧ୍ୟାନ କରି ପାରୁନି, କିନ୍ତୁ ବିରାଡ଼ି ନିଜ ଶିକାର ଲାଗି ଧ୍ୟାନରେ ନିପୁଣ, ତା'ବୋଲି ବ୍ରାହ୍ମଣଠାରୁ ବିରାଡ଼ି ଶ୍ରେଷ୍ଠ ବୋଲି କୁହାଯିବ କି ? ବ୍ରହ୍ମଜ୍ଞ ବ୍ରାହ୍ମଣ ଭେଦ ଅଭେଦ ବିଚାର କରି ଥାଏ, କିନ୍ତୁ ମାଛିର କୌଣସି ଭେଦ ଅଭେଦ ଭାବ ନ ଥାଏ । ତା'ବୋଲି ମାଛି ଜ୍ଞାନ ଲାଭ କରିପାରିଚି ବୋଲି କୁହାଯାଇ ପାରିବ କି ? ଧର କୌଣସି ଦୀନଦରିଦ୍ର ଲୋକ ରାଜପୋଷାକ ପିନ୍ଧି ବସିଚି କିନ୍ତୁ ରାଜା ଫୁଙ୍ଗୁଳା ଦେହରେ ବସିଛନ୍ତି, ଏ ଦୁହିଁଙ୍କ ମଧ୍ୟରେ କିଏ ରାଜା କିଏ ଗରବି ତାହା ଯେ କୌଣସି ବୁଦ୍ଧିମାନ ଲୋକ ଜାଣି ପାରିବ ।

ଏସବୁ ଉଦାହରଣର ସାରାଂଶ ହେଉଚି— ଆଡ଼ମ୍ବର ଯେତେ ହେଉନା କାହିଁକି, ତାହା ମୂର୍ଖତା ବ୍ୟତୀତ କିଛି ନୁହଁ । ପ୍ରକୃତ ଜିନିଷ ଅନ୍ୟକିଛି । ଲୌକିକ ମାନ ସମ୍ମାନ ଯିଏ ଯେତେ ପାଉନା କାହିଁକି, ଯିଏ ଆନ୍ତରିକ ଭାବେ ସାବଧାନ ନୁହଁ, ତା ପକ୍ଷରେ ଈଶ୍ୱରପ୍ରାପ୍ତି ସମ୍ଭବ ନୁହଁ । ସମସ୍ତ ଆଡ଼ମ୍ବର ବା ଲୌକିକ ମାନସମ୍ମାନକୁ ଆତ୍ମଘାତୀ କାର୍ଯ୍ୟ ବୋଲି ବୁଝିବା ଉଚିତ । ଦେବତାମାନଙ୍କ ଭଜନ ପୂଜନରେ ଦେବଲୋକ ଲାଭ ହୋଇଥାଏ । ପିତୃପୁରୁଷଙ୍କ ପ୍ରତି ଶ୍ରଦ୍ଧା ଜ୍ଞାପନ ଦ୍ୱାରା ପିତୃଲୋକ ଏବଂ ଭୂତଙ୍କ ପୂଜା କରିବା ଦ୍ୱାରା ଭୂତଲୋକ ଲାଭ ହୋଇଥାଏ । ଯିଏ ଯାହାକୁ ଭଜନ କରିଥାଏ, ସେ ସେହିଭଳି ହୋଇଥାଏ । ମୁଖ୍ୟ ଦେବ ଅର୍ଥାତ୍ ନିର୍ଗୁଣ ବ୍ରହ୍ମ ପରମାତ୍ମାଙ୍କ ଉପାସନା ଦ୍ୱାରା ନିର୍ଗୁଣ ପରମପଦ ଲାଭ ହୋଇଥାଏ । ନିର୍ଗୁଣର ଉପାସନାର ଅର୍ଥ ହେଉଛି ନିର୍ଗୁଣ ପରବ୍ରହ୍ମ ସହ ଅନନ୍ୟ ହୋଇ ଉଠିବା । ଏହାହିଁ ଜନ୍ମର ସଫଳତା ଅର୍ଥାତ୍ ନର ଜନ୍ମର ସାର୍ଥକତା । ମାୟାଗତ ବିଚାର ଅର୍ଥାତ୍ ଦେହବୁଦ୍ଧି ତ୍ୟାଗକରି ନିରାକାର ନିର୍ଗୁଣ ପରବ୍ରହ୍ମ ସହିତ (ଯିଏ ଆତ୍ମା ସିଏ ମୁଁ, ସୋଽହଂ) ଏକରସ ହୋଇଯିବା ଉଚିତ । ମୁଁ ଦେହ ନୁହଁ ବୋଲି ଖାଲି କହିଦେଲେ ହେବ ନାହିଁ, ସେ ଭାବନାକୁ ତ୍ୟାଗ କରିବାକୁ ପଡ଼ିବ । ସିଦ୍ଧି ଓ ସାଧନ ଦ୍ୱାରା ଯେଉଁ ସାଧ୍ୟକୁ ଲାଭ କରାଯାଏ ତାହା ଆମେ ସ୍ୱୟଂ । ଏହିଠାରେ ସାଧକତାର ପରିସମାପ୍ତି ଘଟିଥାଏ ।

କୁମ୍ଭାରକୁ ରାଜ ସିଂହାସନ ମିଳିଗଲେ ସେ ଗଧଙ୍କ ଭଳି ଖଟିବ କାହିଁକି ? ସମସ୍ତ ସାଧନ ନାନା ବୃତ୍ତି ସହିତ ସଂପୃକ୍ତ । ନିବୃତ୍ତି ସ୍ଥିତିରେ ଅର୍ଥାତ୍ ସାଧ୍ୟପ୍ରାପ୍ତି ପରେ ସାଧନାର ଆଉ ଆବଶ୍ୟକତା କ'ଣ ? ନିତ୍ୟନିୟମାଦି ସାଧନା ତ ଶେଷ ହୋଇଗଲା କହିଲେ ଚଳେ । ଏହାପରେ ସାଧନାର ଚକ୍ରରେ ଜଡ଼ିତ ହେବାର କୌଣସି କାରଣ ନାହିଁ ।

ଏ ଦେହ ପଞ୍ଚଭୂତକୁ ନେଇ ଗଠିତ । ଜୀବ ବ୍ରହ୍ମର ଅଂଶ । ଏହା ଜାଣି ପରବ୍ରହ୍ମରେ ଲୀନ ହୋଇଯିବା ଉଚିତ । ଆତ୍ମଭାବ ଯୋଗୁଁ ଆତ୍ମା, ଜୀବଭାବ ଯୋଗୁଁ ଜୀବ, ମାୟାଭାବ ଯୋଗୁଁ ମାୟାବୋଧ ହୋଇଥାଏ ବୋଲି ଯିଏ ମାନିଥାଏ, ସିଏ ହିଁ ଜ୍ଞାନୀ । ସବୁକଥାକୁ ବୁଝିବାପରେ ଯିଏ ନିଜକୁ ନିଜେ ଜାଣିପାରେ ନାହିଁ, ଯିଏ ଏକଦେଶଦର୍ଶୀ ମନୋଭାବ ପୋଷଣ କରିଥାଏ, ସେଭଳି

ଜ୍ଞାନୀ ବହୁତ ମିଳିବେ । ଦ୍ରଷ୍ଟାଭାବ, ସାକ୍ଷୀଭାବକୁ ତ୍ୟାଗ କରିବାକୁ ପଡ଼ିବ । ବୃତ୍ତିକୁ ଅତିକ୍ରମ କରିବା ପରେ ଆଉ କୌଣସି ଅବଶେଷ ରହି ନଥାଏ । ଏଭଳି ପ୍ରକୃତି ନିବୃତ୍ତି ହେବାପରେ ଶେଷରେ କେବଳ ନିର୍ଗୁଣ ପରବ୍ରହ୍ମ ହିଁ ରହିଥାଏ ।

ତେଣୁ ଏହି ପରବ୍ରହ୍ମରେ ଆମେ ଲୀନ ରହିବା ଉଚିତ । ଏହାହିଁ ପରମାର୍ଥର ଗଭୀର ପରିଚୟ । ପରମାର୍ଥ ଦ୍ୱୈତ ନୁହଁ । ଆମେ ଅଲଗା, ପରମାତ୍ମା ଅଲଗା ଏଭଳି ଦ୍ୱୈତ ଭାବ ଅନ୍ୟ ମାର୍ଗରେ ମଳିଥାଏ । କିନ୍ତୁ ଏହି ପରମାର୍ଥରେ ଆମେ ଏବଂ ଆମର ଇଷ୍ଟଫଳ ଏକ ରହିଥାଏ । ଦରିଦ୍ର ରାଜା ହୋଇଯିବା ପରେ ଦରିଦ୍ରଭଳି ବ୍ୟବହାର କରିବ କାହିଁକି ? ବେଦ, ଶାସ୍ତ୍ର, ପୁରାଣ, ସାଧନା ଏବଂ ସାଧୁସନ୍ଥମାନେ ଯାହାକୁ ପାଇବା ଲାଗି ଉପଦେଶ ଦେଇ ଥାଆନ୍ତି— ସେହି ପରବ୍ରହ୍ମସ୍ୱରୂପ ଆମେ ନିଜେ । ଏହା ଉପଲବ୍ଧି ହେବାପରେ ସାଧନାର ଆଉ କୌଣସି ଆବଶ୍ୟକତା ନଥାଏ ।

ସାର ଅସାର ବିଚାର ଦ୍ୱାରା ପ୍ରକୃତ ଉପଲବ୍ଧି ହୋଇ ସାରିବା ପରେ ଆଉ କର୍ତ୍ତବ୍ୟ ବୋଲି କିଛି ରହେ ନାହିଁ । ପ୍ରଥମେ ଦରିଦ୍ର ରାଜାଙ୍କୁ ଡରୁଥିଲା । କିନ୍ତୁ ରାଜପଦ ପାଇଯିବା ପରେ ତାର ଆଉ ଭୟ କାହାକୁ ? ବେଦଜ୍ଞଙ୍କୁ ବେଦର ଆବଶ୍ୟକତା କ'ଣ ? ବ୍ରହ୍ମବିଦ୍ୟାକୁ ବ୍ରହ୍ମବିଦ୍ ଅଧ୍ୟୟନ କରିବାର ଆବଶ୍ୟକତା କ'ଣ ? କ'ଣ ଆତ୍ମଶୁଦ୍ଧି ଲାଗି ତୀର୍ଥକୁ ତୀର୍ଥଯାତ୍ରା କରିବାକୁ ପଡ଼ିବ ? ସ୍ୱୟଂ ଅମୃତକୁ ଅମୃତଭୋଜନ କରିବାକୁ ପଡ଼ିନଥାଏ । ଅନନ୍ତକୁ ଅନନ୍ତର ଦର୍ଶନ କରିବାର ଅଭିଳାଷ ନିରର୍ଥକ ନୁହେଁ କି ? ନିର୍ଗୁଣ ନିର୍ଗୁଣପଦ ଲାଭ କରିବାଲାଗି ଇଚ୍ଛା ପ୍ରକାଶ କରିଥାଏ କି ? ସ୍ୱ ସ୍ୱରୂପକୁ ଆତ୍ମସ୍ୱରୂପରେ ରଞ୍ଜିତ ହେବା ଲାଗି ସାଧନର କ'ଣ ବା ଆବଶ୍ୟକ ? ମନୋଜୟ କରିବା ପରେ ଧ୍ୟେୟପ୍ରାପ୍ତି ଲାଗି ସାଧନା କରିବା କିମ୍ବା ଉନ୍ମନା ହେବା ହାସ୍ୟାସ୍ପଦ ।



# ଦଶମ ଦଶକ

## ପ୍ରଥମ ସମାସ
## ।। ଅନ୍ତଃକରଣର ବିଶ୍ଳେଷଣ ।।

ଶ୍ରୋତାଙ୍କ ଅନୁରୋଧ— ସମସ୍ତଙ୍କ ଅନ୍ତଃକରଣ ଏକ ନା ଅଲଗା ନିଶ୍ଚିତ ଭାବେ ବୁଝାଇ ଦିଅନ୍ତୁ ।

ବକ୍ତା— ଯଦି ସମସ୍ତଙ୍କ ଅନ୍ତଃକରଣ ଏକ, ତାହାହେଲେ ଜଣଙ୍କର ପ୍ରକୃତି ଅନ୍ୟଠାରୁ ଅଲଗା କାହିଁକି ? ପରସ୍ପର ମଧ୍ୟରେ ମତଭେଦ, ରୁଚିଭେଦ ଆଦି ଉତ୍ପନ୍ନ ହେଉଚି କାହିଁକି ? ଯଦି ସମସ୍ତଙ୍କର ଅନ୍ତର ଏକ, ତାହାହେଲେ ଜଣେ ଭୋଜନ କଲେ ସମସ୍ତଙ୍କର ତ ତୃପ୍ତି ହୋଇଯାଆନ୍ତା, ଜଣେ ମଲେ ତ ସମସ୍ତେ ମରନ୍ତେ, କିନ୍ତୁ ଏପରି କେବେ ହୁଏ ନାହିଁ ।

ସଂସାରରେ ଜଣେ ସୁଖୀ ତ ଜଣେ ଦୁଃଖୀ ରହିବା ନିଶ୍ଚିତ । ସମସ୍ତଙ୍କର ଅଲଗା ଅଲଗା ଭାବନା । ଏହିସବୁ କଥାରୁ ଜଣା ପଡୁଚି ଯେ ସମସ୍ତଙ୍କର ଅନ୍ତଃକରଣ ଏକ ନୁହଁ । ଯଦି ପ୍ରକୃତରେ ସମସ୍ତଙ୍କର ଅନ୍ତଃକରଣ ଏକ ହୁଅନ୍ତା ତାହାହେଲେ ଜଣଙ୍କର ଭାବନା ଅନ୍ୟକୁ ଜଣା ପଡ଼ନ୍ତା । କେହି ନିଜ ମନକଥା ଆଉ ଲୁଚେଇ ରଖି ପାରନ୍ତେ ନାହିଁ । ପ୍ରାଣୀମାନଙ୍କ ମଧ୍ୟରେ ପରସ୍ପରପ୍ରତି ବିରୋଧ ଭାବ ଦେଖା ଦିଅନ୍ତା ନାହିଁ । ସାପ କାମୁଡ଼ିବାକୁ ଗୋଡ଼ାଏ ଏବଂ ମନୁଷ୍ୟ ତା ଭୟରେ ଦୌଡ଼ି ପଳାଏ । ଅନ୍ତଃକରଣ ଏକ ହୋଇଥିଲେ ଏହା ହୁଅନ୍ତା ନାହିଁ । କେହି କାହାକୁ ଡରନ୍ତେ ନାହିଁ ।

ସାରାଂଶ ହେଉଚି— ସମସ୍ତଙ୍କର ଅନ୍ତଃକରଣ ଏକ ନୁହେଁ ।

ବକ୍ତା କହୁଛନ୍ତି— ବ୍ୟସ୍ତ ହୁଅ ନାହିଁ । ସାବଧାନ ହୋଇ ଶୁଣ । ଅନ୍ତଃକରଣର ଅର୍ଥ ହେଉଚି ଅନୁଭୂତି ଅର୍ଥାତ୍ ଜାଣିବାର ସ୍ୱଭାବ ଅର୍ଥାତ

ଦେହରକ୍ଷା କରିବାର ଏକ କଳା । ସାପ ଜାଣିଶୁଣି ଦଂଶନ କରିବାକୁ ଗୋଡ଼ାଏ ଏବଂ ପ୍ରାଣୀ ମଧ୍ୟ ଭଲଭାବରେ ବୁଝିପାରି ଦୌଡ଼ି ପଳାଇଥାଏ । ତେଣୁ ଦୁହିଁଙ୍କର ଜାଣିବାର ବୁଦ୍ଧି ଅର୍ଥାତ୍ ଅନ୍ତଃକରଣ ଏକାଭଳି । ଆଖିରେ ଦେଖିବା, ଜିଭରେ ଚାଖିବା, କାନରେ ଶୁଣିବା, ସ୍ପର୍ଶ କରିବା, ଶୁଙ୍ଘିବା ଆଦି ଦୃଷ୍ଟିରୁ ସବୁ ପଶୁପକ୍ଷୀ, କୀଟ ପତଙ୍ଗ ତଥା ସମସ୍ତ ପ୍ରାଣୀଙ୍କର ଅନୁଭୂତି ଦୃଷ୍ଟିରୁ ସମାନ । ସମସ୍ତଙ୍କ ଲାଗି ଜଳ ଶୀତଳ, ଅଗ୍ନି ଦାହକ ତଥା ଉତ୍ତପ୍ତ । ପ୍ରତ୍ୟେକଙ୍କ ଲାଗି ନିଜର ପସନ୍ଦ ଅପସନ୍ଦ ରହିଛି ଏବଂ ଏହା ଦେହ-ସ୍ୱଭାବର କାରଣ । ଯାହାର ଯେପରି ଶରୀର ଓ ମନ ତାର ସେହିପରି ଉପଲବ୍ଧି । ଜଳର ଶୀତଳତା ବା ଅଗ୍ନିର ଉଷ୍ଣତା ଆଦି ଅନୁଭୂତିରୁ ହିଁ ଜଣାଯାଇଥାଏ । ତେଣୁ ଏକଥା ନିଶ୍ଚିତ ଯେ ଅନୁଭୂତି ବା ଜାଣିବାର ସ୍ୱଭାବ ଏକ । କୀଟପତଙ୍ଗଠାରୁ ଆରମ୍ଭ କରି ବ୍ରହ୍ମଦେବ ପର୍ଯ୍ୟନ୍ତ ସମସ୍ତଙ୍କର ଅନ୍ତଃକରଣ ଏକ । ଅନୁଭୂତି ଯୋଗୁଁ ହିଁ ଜୀବ ଭକ୍ଷଣ କରେ, ଡରେ ଏବଂ ଦୌଡ଼ି ପଳାଏ । ଅଳ୍ପପାଣି ଯାହା, ସମୁଦ୍ରରେ ସମୁଦ୍ରେ ପାଣି ମଧ୍ୟ ସେୟା । ପାଣି ଏକ । ନିଆଁର ଝୁଲ ଯାହା, ପ୍ରଳୟାଗ୍ନି ମଧ୍ୟ ତାହା । ଅଗ୍ନି ଏକ । ତେଣୁ ସମସ୍ତଙ୍କର ଅନ୍ତଃକରଣ ଏକ । ସମସ୍ତେ ଅନ୍ତଃକରଣଦ୍ୱାରା ହିଁ ପାଣି, ଅଗ୍ନି ଆଦି ପଦାର୍ଥକୁ ଅନୁଭବ କରିଥାଆନ୍ତି । ମାତ୍ରା କମ ହୋଇପାରେ ବେଶି ହୋଇପାରେ କିନ୍ତୁ ଜିନିଷ ଏକ । ସଂସାରରେ ଏପରି କୌଣସି ପ୍ରାଣୀ ନାହିଁ ଯାହାର କି ଅନୁଭୂତି ନାହିଁ । ଅନୁଭୂତି ଅର୍ଥାତ୍ ଅନ୍ତଃକରଣ ହେଉଚି ବିଷ୍ଣୁଙ୍କର ସତ୍ତ୍ୱଗୁଣର ଅଂଶ । ତେଣୁ ଅନୁଭୂତି ରୂପରେ ବିଷ୍ଣୁ ସମସ୍ତଙ୍କର ପାଳନ, ପୋଷଣ କରିଥାଆନ୍ତି । ଅନୁଭୂତି ନ ହେବା ଅର୍ଥାତ୍ ନ ଜାଣିବା ହେଉଚି ତମୋଗୁଣର ଲକ୍ଷଣ । ତମୋଗୁଣରେ ପ୍ରାଣୀର ବିନାଶ ଘଟିଥାଏ । ତମୋଗୁଣରେ ଶିବ (ରୁଦ୍ର) ସଂହାର କରିଥାଆନ୍ତି । ଜାଣିବା ଓ ନ ଜାଣିବା— ଏହି ଦୁଇଟିର ମିଶ୍ରିତ ବୁଦ୍ଧିକୁ ରଜୋଗୁଣ କୁହାଯାଏ । ଏହାହିଁ ଜନ୍ମର କାରଣ । ତେଣୁ ବ୍ରହ୍ମାଙ୍କୁ ସୃଷ୍ଟିର ନିର୍ମାତା କୁହାଯାଇଥାଏ । ଅନୁଭୂତି ଅର୍ଥାତ୍ ଜାଣିବାର କ୍ରିୟାଦ୍ୱାରା ସୁଖ ହୋଇଥାଏ । ନ ଜାଣିବା ଦ୍ୱାରା ଦୁଃଖ ହୋଇଥାଏ । ଜାଣିବା ଏବଂ ନଜାଣିବାର ମିଶ୍ରିତ ବୁଦ୍ଧିକୁ ହିଁ ଆମେ ନିଜ ଦେହରେ ବ୍ରହ୍ମାରୂପରେ ଜାଣୁ । ସ୍ଥୂଳଦେହର ନିର୍ମାତା ନିଶ୍ଚିତ ଭାବେ ''ତ୍ରିଶୁଦ୍ଧି'' ବ୍ରହ୍ମା । ଅନ୍ତଃକରଣ ଅର୍ଥ ହେଉଚି ଜାଣିବାର ବୁଦ୍ଧି ବା ଅନୁଭୂତି । ଅନୁଭୂତି ସମସ୍ତଙ୍କଠି ସମାନ ଅର୍ଥାତ୍ ସମସ୍ତଙ୍କ ଅନ୍ତଃକରଣ ଏକ ।

ଏହାଦ୍ୱାରା ନିଜ ଦେହ ଭିତରେ ଉତ୍ପତ୍ତି, ସ୍ଥିତି ଓ ସଂହାର କରୁଥିବା ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ଦେଖିବାର ବିଧି ବତେଇ ଦିଆଗଲା । ସମସ୍ତେ ମନରେ ଦୃଢ଼ବିଶ୍ୱାସ ପୂର୍ବକ ଏମାନଙ୍କୁ ଅନୁଭବ କରିବା ଉଚିତ ।

## ଦ୍ୱିତୀୟ ସମାସ
## ।। ଦେହ-ଆଶଙ୍କା ।।

ଶ୍ରୋତା—ଆପଣ ଏବେ ଯେଉଁସବୁ କଥା କହିଲେ ସେଥିରେ ବିଷ୍ଣୁଙ୍କ ଅଭାବ ଅନୁଭୂତ ହେଉଚି । ଆପଣଙ୍କ କଥାନୁସାରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଉତ୍ପତ୍ତି, ସ୍ଥିତି ଓ ସଂହାର (ପ୍ରଳୟ) ରୂପ ଧାରଣ କରୁଥିବାରୁ ଶେଷରେ ସେମାନଙ୍କର ମଧ ବିନାଶ ଘଟିଥାଏ । ଚତୁର୍ମୁଖ ବ୍ରହ୍ମା, ଚତୁର୍ଭୁଜ ବିଷ୍ଣୁଙ୍କ ମହିମା ଆମେ ଶୁଣିଛୁ । ଲିଙ୍ଗ ପୁରାଣରେ ଶଙ୍କରଙ୍କ ମହିମା ଅନ୍ୟପ୍ରକାରର କୁହାଯାଇଚି । ମୂଳମାୟାରୁ ଗୁଣମାୟା ପ୍ରକଟିତ ଏବଂ ଏଥିରୁ ତ୍ରିଗୁଣାତ୍ମକ ଉପରୋକ୍ତ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତିନି ଦେବ ପ୍ରକଟିତ ହେଲେ ବୋଲି ଶାସ୍ତ୍ରରେ ଉଲ୍ଲେଖ ରହିଛି । କିନ୍ତୁ ମୂଳମାୟା କେଉଁଥିରୁ ଉତ୍ପନ୍ନ ଏକଥା କେଉଁଠି ହେଲେ କୁହାଯାଇନାହିଁ । ତେଣୁ ଆପଣଙ୍କୁ ଅନୁରୋଧ ଏ ବିଷୟଟିକୁ ବିସ୍ତାରିତ ଭାବେ ବୁଝେଇ ଦିଅନ୍ତୁ ।

ଯଦି କୁହାଯାଏ ଯେ ଏହି ତିନିଦେବ ଏକତ୍ର ମୂଳମାୟାକୁ ପ୍ରସ୍ତୁତ କରିଛନ୍ତି ତାହାହେଲେ କ'ଣ ଠିକ୍ ହେବ ? ଦେବ ତ ମାୟା ପରେ ଯାଇ ପ୍ରକଟିତ ହେଲେ । ବ୍ରହ୍ମ ହିଁ ମୂଳମାୟାକୁ ଉତ୍ପନ୍ନ କଲେ ବୋଲି କହିବା ମଧ ଠିକ୍ ହେବ ନାହିଁ, କାରଣ ବ୍ରହ୍ମର କର୍ତ୍ତୃତ୍ୱ ବୋଲି କିଛି ନାହିଁ । ଯଦି ମାୟା ସତ୍ୟ ହୋଇଥାଆନ୍ତା ତାହାହେଲେ ବ୍ରହ୍ମର କର୍ତ୍ତୃତ୍ୱ ଅଛି କି ନାହିଁ ତାହା ବିଚାର କରାଯାଆନ୍ତା । କିନ୍ତୁ ମାୟା ତ ମିଥ୍ୟା, ତେଣୁ ଏହାକୁ କର୍ତ୍ତୃତ୍ୱ ଦିଆଯିବ କିପରି ? ଇଏତ ବଡ଼ ଅଡୁଆଟଡୁଆ କଥା । ଏ ସମ୍ପର୍କରେ ଦୟାକରି ସନ୍ଦେହ ଦୂର କରନ୍ତୁ ।

ବେଦ (ଶବ୍ଦ) ହେଉଚି ମାତା । ଏହା ବ୍ୟତୀତ ଅକ୍ଷର ସମ୍ଭବ ନୁହଁ । ସେହିଭଳି ବିନା ଦେହରେ କୌଣସି ମାତୃକା ସମ୍ଭବ ନୁହଁ । ଦେହରୁହିଁ ଦେହର ଉତ୍ପତ୍ତି । ସବୁ ଦେହ ମଧରୁ ନରଦେହ ଶ୍ରେଷ୍ଠ । ସେମାନଙ୍କ ମଧରୁ ବ୍ରାହ୍ମଣଦେହ ସର୍ବଶ୍ରେଷ୍ଠ । ସେଥିରେ ପୁଣି କୁହାଯାଉଚି ଯେ ବେଦ ଉପରେ କେବଳ

ବ୍ରାହ୍ମଣମାନଙ୍କ ଅଧିକାର ରହିଛି । ଇଏତ ବଡ଼ ଝମେଲା । ସଠିକ୍ ଭାବେ କିଛି ବୁଝି ହେଉନାହିଁ । ବେଦ ଆସିଲା କେଉଁଠୁ, ଦେହର ଉତ୍ପତ୍ତି ହେଲା କିପରି, ଦେବତାମାନେ କିପରି ପ୍ରକଟିତ ହେଲେ— ଆମକୁ ସବୁକଥା ଭଲଭାବରେ ବୁଝେଇ ଦିଅନ୍ତୁ ।

ବକ୍ତା ଉତ୍ତର ଦେଇ କହୁଛନ୍ତି— ଲୌକିକ ପରଂପରା ଏବଂ ଶାସ୍ତ୍ରନିର୍ଣ୍ଣୟ ଏକ କିମ୍ବା ସମାନ ନୁହଁ, କିନ୍ତୁ ସତ୍ୟର ପ୍ରତ୍ୟୟ ସର୍ବଦା ସମାନ । ତେଣୁ ନିଶ୍ଚିତଭାବେ କିଛି କହିବା କଷ୍ଟକର ହୋଇ ପଡ଼ିଥାଏ । ଶାସ୍ତ୍ରର ପ୍ରତିଷ୍ଠା ସହିତ ପ୍ରତ୍ୟୟ (ଅନୁଭବ)କୁ ନ କୁହାଗଲେ ଗଣ୍ଠିଲିକୁ ଫିଟେଇବା ସହଜ ନୁହଁ । କିନ୍ତୁ ଶାସ୍ତ୍ରରେ ବହୁ ମତ ମତାନ୍ତର ରହି ଆସିଛି । ଶାସ୍ତ୍ରରେ କୁହାଯାଇଥିବା କଥାକୁ ରକ୍ଷା କରି ଅନୁଭବର କଥା କୁହାଗଲେ ଅର୍ଥାତ୍ ପୂର୍ବପକ୍ଷ (ପୂର୍ବରୁ ପଣ୍ଡିତମାନେ ଯାହା କହିଛନ୍ତି) କୁ ତ୍ୟାଗ କରି ସିଦ୍ଧାନ୍ତ ଆଡ଼କୁ ଧ୍ୟାନ ଦେଲେ ଜ୍ଞାନୀ ଓ ଅଜ୍ଞାନୀର ସମାଧାନ ହୋଇପାରେ । ଶାସ୍ତ୍ରମାନଙ୍କରେ ପୂର୍ବପକ୍ଷର ଏପରି କେତେକ ପ୍ରତିପାଦନ କରାଯାଇଚି ଯାହାକି ମିଥ୍ୟା । ଅଜ୍ଞାନୀ ଏହି ମିଥ୍ୟାକୁ ସତ ମନେ କରି ଚାଲିଥାଏ । କିନ୍ତୁ ଜ୍ଞାନୀମାନେ ବିଚାରପୂର୍ବକ ନିଜ ଅନୁଭବଦ୍ୱାରା ଏସବୁ ପ୍ରତିପାଦିତ ବିଷୟକୁ ଯାଞ୍ଚ କରିବା ଉଚିତ । ତେଣୁ ପରବର୍ତ୍ତୀ ସମାସରେ ଶାସ୍ତ୍ରକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ବିଷୟଟିକୁ ବୁଝାଇବା ପାଇଁ ଉଦ୍ୟମ କରାଯିବ । ଶ୍ରୋତାମାନେ ମନ ଦେଇ ଶୁଣିବା ଉଚିତ ।

## ତୃତୀୟ ସମାସ
## ।। ଦେହ-ଆଶଂକା ଶୋଧନ ।।

ଉପାଧିରହିତ ଆକାଶ ହିଁ ନିରାକାର ନିରାଭାସ ବ୍ରହ୍ମ । ଏହି ନିରାଭାସ ବ୍ରହ୍ମରୁ ହିଁ ମୁଳମାୟାର ଉତ୍ପତ୍ତି । ମୂଳମାୟା ବାୟୁରୂପ । ବାୟୁରେ ନିର୍ଗୁଣ ଓ ପଞ୍ଚଭୂତ ସମାବିଷ୍ଟ । ଆକାଶରୁ ବାୟୁଦେବତା, ବାୟୁରୁ ଅଗ୍ନିଦେବତା, ଅଗ୍ନିରୁ ଅପୋ-ନାରାୟର (ଜଳଦେବତା) ଏବଂ ଅପ୍ ବା ଜଳରୁ ବିଭିନ୍ନ ବୀଜ ଦ୍ୱାରା ଉତ୍ପନ୍ନ ପୃଥ୍ୱୀର ଉତ୍ପତ୍ତି । ପରେ ଏହି ପୃଥିବୀରୁ ସୃଷ୍ଟି ହୋଇ ପାଷାଣ ଏବଂ ପାଷାଣଦ୍ୱାରା ନିର୍ମିତ ହୋଇଚନ୍ତି ବିଭିନ୍ନ ଦେବଦେବୀ । ଅନେକ ବୃକ୍ଷ, ପାଷାଣ

ଓ ମାଟିଦ୍ୱାରା ବହୁ ଦେବଦେବୀଙ୍କ ମୂର୍ତ୍ତି ତିଆରି ହୋଇଥାଏ । ଏହି ଦେବଦେବୀଙ୍କ ଉପାସନା ଦ୍ୱାରା ଭକ୍ତି ଅନୁସାରେ ଭକ୍ତମାନଙ୍କର ଅନୁଭବ ହୋଇଥାଏ । ସବୁଦେବଦେବୀ ବାୟୁରୂପୀ । ଦେଶକାଳ ଅନୁସାରେ ଯକ୍ଷ, ଚାମୁଣ୍ଡା, ଭୂତ, କାତ୍ୟାୟନୀ ଆଦି ନାନା ଦେବଦେବୀଙ୍କ ପ୍ରଚାର ହୋଇଥାଏ । ଏସବୁ ବାୟୁରୂପୀ ହୋଇଥିଲେ ମଧ୍ୟ ବିଶେଷ ପ୍ରସଙ୍ଗରେ ବିଭିନ୍ନ ଦେହ ଧାରଣ କରି ଭକ୍ତଙ୍କ ଉପାସନା ଅନୁସାରେ କେହି କେହି ଗୁପ୍ତ ରହିଥାଆନ୍ତି ତ କେହି କେହି ପ୍ରକଟିତ ହୋଇଥାଆନ୍ତି ।

ବାୟୁ ଅନୁଭୂତି, ବାସନା, ବୃତ୍ତି ଆଦି ରୂପରେ ଜଗଜ୍ୟୋତିର କଳା । ଆକାଶରେ ଦୁଇପ୍ରକାରର ବାୟୁର ଉତ୍ପତ୍ତି ହୋଇଚି । ଗୋଟିଏ ସବୁବେଳେ ଚଞ୍ଚଳ, ଦ୍ୱିତୀୟଟି ଜଗଜ୍ୟୋତି । ଏହି ଜଗଜ୍ୟୋତିରୁ ହିଁ ଅନେକ ଦେବଦେବୀଙ୍କ ଅନନ୍ତ ମୂର୍ତ୍ତି ପ୍ରଦର୍ଶିତ ହୋଇଥାଏ । ସେହିଭଳି ତେଜ ମଧ୍ୟ ଦୁଇପ୍ରକାରର । ଗୋଟିଏ ଶୀତଳ, ଅନ୍ୟଟି ଉଷ୍ଣ । ଉଷ୍ଣ ତେଜର ପ୍ରକାଶ ରୂପ ହେଉଚି ସୂର୍ଯ୍ୟ, ସର୍ବଗ୍ରାସୀ ଅଗ୍ନି ଓ ବିଦ୍ୟୁତ୍ । ଏହିଭଳି ଉଷ୍ଣତା ତିନିଭାଗରେ ବିଭକ୍ତ । ଶୀତଳ ତେଜରୁ ଜଳ, ଅମୃତ, ଚନ୍ଦ୍ର ଆଦି ଶୀତଳ, ନକ୍ଷତ୍ର ଓ ବରଫଆଦି ପଦାର୍ଥର ସୃଷ୍ଟି । ଜଳ ମଧ୍ୟ ଦୁଇପ୍ରକାରର ଯଥା ପାଣି ଓ ଅମୃତ । ପୃଥିବୀ ମଧ୍ୟ ଦୁଇପ୍ରକାରର ଯଥା ପାଷାଣ, ମାଟି ପ୍ରଭୃତି । ଅନ୍ୟ ପଦାର୍ଥଗୁଡ଼ିକ ହେଉଚି ସୁବର୍ଣ୍ଣ ଓ ରୂପା ଆଦି ଧାତୁରତ୍ନ । ତେଣୁ ପୃଥିବୀକୁ ‘‘ବହୁରତ୍ନା ବସୁନ୍ଧରା’’ କୁହଯାଇଥାଏ ।

ଏହିସବୁ କଥାରୁ ଆପଣମାନେ ସତ୍ୟ ଅସତ୍ୟ କ’ଣ ଗଭୀର ଭାବରେ ଚିନ୍ତାକରି ବିଚାର କରିବା ଆବଶ୍ୟକ । ମୁଖ୍ୟପ୍ରଶ୍ନ ହେଉଚି ମଣିଷର ଜନ୍ମରହସ୍ୟ କ’ଣ ? ଏହା କେଉଁଠୁ ଜାତ ହେଲା ?

ମୁଁ ଏହାର ବର୍ଣ୍ଣନା ଓ ସମାଧାନ ପରବର୍ତ୍ତୀ ସମାସରେ କରିବି ।

## ଚତୁର୍ଥ ସମାସ
## ।। ବୀଜ-ଲକ୍ଷଣ (ଗୁଣ ନିରୂପଣ) ।।

ସୃଷ୍ଟିର ଉତ୍ପତ୍ତି କିପରି ହୁଏ ଏହି କଥା କହୁଚି ଶୁଣନ୍ତୁ । ଏକଥା ସ୍ପଷ୍ଟ ଯେ ମଣିଷରୁ ମଣିଷ, ପକ୍ଷୀରୁ ପକ୍ଷୀ, ପଶୁରୁ ପଶୁ, ମାଛଆଦି ଜଳଚର

ପ୍ରାଣୀଙ୍କଠାରୁ ଜଳଚର ଆଦି ଅଗଣିତ ପ୍ରାଣୀ ଉତ୍ପନ୍ନ ହୋଇଥାଏ । ଏକଥା ପ୍ରତ୍ୟକ୍ଷ ଭାବରେ ଜଣାଯାଇଥାଏ । ତେଣୁ ଅନୁମାନର ପ୍ରଶ୍ନ ନାହିଁ । କୌଣସି କୌଣସି କ୍ଷେତ୍ରରେ ବିପରୀତ ପ୍ରକାରରେ ମଧ୍ୟ ଉତ୍ପତ୍ତି ହୋଇଥାଏ । କିନ୍ତୁ ଏକଥା ନିଶ୍ଚିତ ଯେ ଶରୀର ବିନା ଶରୀରର ଉତ୍ପତ୍ତି ହୋଇନଥାଏ ।

ତେବେ ଏହି ଉତ୍ପତ୍ତିର ପ୍ରଣାଳୀ କିପରି ଆରମ୍ଭ ହେଲା, କେଉଁଠୁ କିଏ ଆରମ୍ଭ କଲା ଏବଂ ଯିଏ ଏହାକୁ ଆରମ୍ଭ କଲା ତାକୁ କିଏ ନିର୍ମାଣ କଲା—ଏକଥା କହି ବସିଲେ ଏହା ଏକ ଲମ୍ବା ଇତିହାସ ହୋଇ ଉଠିବ । ମୁଖ୍ୟକଥାକୁ ଧ୍ୟାନରେ ରଖିବା ଉଚିତ । କଥାଟି ହେଉଚି, ମୁନିଋଷିମାନେ ଯାହା କହି ଯାଇଛନ୍ତି ସେହିକଥା ଉପରେ ଆମେ ଦୃଢ଼ ବିଶ୍ୱାସ ରଖିବା ଆବଶ୍ୟକ ।

ଶାସ୍ତ୍ର ଅନୁସାରେ ପ୍ରଥମେ ପରଂବ୍ରହ୍ମରୁ ମାୟାର ଉତ୍ପତ୍ତି ହେଲା । ଏହି ମାୟାକୁ ହିଁ ଅଷ୍ଟଧା ପ୍ରକୃତି କୁହାଯାଇଥାଏ । କାରଣ ଏହା ପଞ୍ଚଭୂତ ଓ ତିନିଗୁଣର ମିଶ୍ରଣ । ଏହି ମାୟା ବାୟୁରୂପ । ବାୟୁରେ ଯେଉଁ ଅନୁଭୂତି, ତାହାକୁ ହିଁ ଇଚ୍ଛା ବା ସଙ୍କଳ୍ପ କୁହାଯାଇଥାଏ । ପରଂବ୍ରହ୍ମ ସହିତ ସଙ୍କଳ୍ପର କୌଣସି ସମ୍ପର୍କ ନାହିଁ । ସମ୍ପର୍କ ରହିଛି ବୋଲି କହିବା କେବଳ ଶବ୍ଦର ଛଳନା ମାତ୍ର ।

ନିର୍ଗୁଣ ବ୍ରହ୍ମ ଶବ୍ଦାତୀତ । ନାମ, ରୂପ ଆଦି ହେଉଚି ଭ୍ରମାତ୍ମକ । ଆକାଶକୁ ଲକ୍ଷ୍ୟକରି ଯେତେ ଜୋରରେ ପଥର ଫିଙ୍ଗନା କାହିଁକି ତାକୁ ଛୁଇଁ ନପାରେ । ସେହିଭଳି ନିର୍ବିକାର ବ୍ରହ୍ମକୁ ନାମ, ରୂପ ଆଦି ସ୍ପର୍ଶ କରି ନ ପାରେ । ଦୃଢ଼ବିଶ୍ୱାସ ରହିଲେ ହିଁ ଅନୁଭବ ଲାଭ କରିବା ସମ୍ଭବ ।

ବାୟୁରୂପ ମାୟାରେ ଯେଉଁ ଅନୁଭୂତିର କଳା ନିହିତ ତାକୁ ହିଁ ଈଶ୍ୱର ବା ସର୍ବେଶ୍ୱର କୁହାଯାଇଥାଏ । ଏହି ଈଶ୍ୱରରେ ଗୁଣର ପ୍ରବେଶ ହେବାରେ ତ୍ରିଗୁଣ ଯୁକ୍ତ ହୋଇଯାଏ । ଏଇଥିରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର— ଏହି ତିନି ଦେବତାଙ୍କ ନିର୍ମାଣ ହୋଇଥାଏ । ଆଗରୁ କୁହାଯାଇଚି ଯେ ସତ୍ତ୍ୱରୁ ବ୍ରହ୍ମା, ରଜରୁ ବିଷ୍ଣୁ ଏବଂ ତମରୁ ମହେଶଙ୍କ ଉତ୍ପତ୍ତି ହୋଇଥାଏ । ଏମାନଙ୍କ ମଧ୍ୟରେ ତ୍ରିଗୁଣ ମଧ୍ୟରୁ ଗୋଟିଏ ଅନ୍ୟଠାରେ ଊଣାଅଧିକେ ମିଶିଚି । ଯେଉଁ ଗୁଣ ଯାହାଠାରେ ବିଶେଷ ଭାବରେ ପରିଲକ୍ଷିତ ହୋଇଥାଏ ତାହା ହିଁ ତାର ମୁଖ୍ୟଗୁଣ ଭାବରେ ବିବେଚିତ ହୋଇ-ଥାଏ । ସତ୍ତ୍ୱଗୁଣାତ୍ମକ ବିଷ୍ଣୁହିଁ ବାୟୁରେ ଚତୁର୍ଭୁଜଧାରୀ ଦେବତା ହୋଇ ଉଠିଛନ୍ତି ।

ଏହିଭଳି ଭାବେ ବ୍ରହ୍ମା ଓ ମହେଶ୍ୱର ରୂପ ଧାରଣ କରିଛନ୍ତି । ଏହି ଦେବତାମାନଙ୍କ ପକ୍ଷରେ ଗୁପ୍ତ କିମ୍ବା ପ୍ରକଟିତ ହେବା ଲାଗି ବିଳମ୍ବ ହୁଏ ନାହିଁ । ଏବେ ମଧ୍ୟ ବହୁ ସିଦ୍ଧଯୋଗୀ ନିଜକୁ ଗୁପ୍ତ ଓ ପ୍ରକଟିତ ରଖିଥିବା ଆମେ ପ୍ରତ୍ୟକ୍ଷ ଭାବେ ଜାଣୁ । ସେ ସମସ୍ତେ ଜଣେ ଜଣେ ସମର୍ଥ ଦେବତା । ମଣିଷ ଅପେକ୍ଷା ଦେବଦେବୀ-ମାନଙ୍କର ସାମର୍ଥ୍ୟ ଅଧିକ ।

ମନୁଷ୍ୟ ମଧ୍ୟ ନିଜ ଯୋଗଶକ୍ତି ବଳରେ ଭିନ୍ନ ଦେହ ଧାରଣ କରିପାରେ । ସେ କାୟା ପ୍ରବେଶ କରିପାରେ । ଯାହାହେଉ ନା କାହିଁକି ବାୟୁ ହିଁ ଜଗଦାତ୍ମା । ସେ ଯାହା ଚାହିଁବ ତାହା କରିପାରେ । ତା ପକ୍ଷରେ ଗୁପ୍ତ ରହିବା କିମ୍ବା ପ୍ରକଟିତ ହେବା କ'ଣ କଠିନ ? ଈଶ୍ୱର ହିଁ ଗୁଣମାୟାକୁ ଅଙ୍ଗୀକାର କରି ବ୍ରହ୍ମା, ବିଷ୍ଣୁ ମହେଶ୍ୱର ରୂପରେ ତିନି ଦେହ ଧାରଣ କଲେ । ପରେ ସେ ନିଜ ସଂକଳ୍ପ ଶକ୍ତି ଦ୍ୱାରା ସ୍ତ୍ରୀରୂପ କଳ୍ପନା କଲେ ଏବଂ କଳ୍ପନା କରିବାମାତ୍ରେ ସୁନ୍ଦରୀ ସ୍ତ୍ରୀ ରୂପ ପ୍ରକଟିତ ହେଲା । ତାଙ୍କରି ସଂକଳ୍ପ ଦ୍ୱାରା ହିଁ ସ୍ତ୍ରୀମାନଙ୍କଠାରୁ ପୁତ୍ର, ପୌତ୍ରାଦି ଜନ୍ମଲାଭ ହେଲା । ଏହାଦ୍ୱାରା ବିଷ୍ଣୁଦେବ ଏବଂ ବ୍ରହ୍ମଦେବଙ୍କ କଥା କୁହାଗଲା ।

ବ୍ରହ୍ମା ସଂକଳ୍ପ ମାତ୍ରେ ସୃଷ୍ଟିର ନିର୍ମାଣ କଲେ । ବ୍ରହ୍ମଦେବଙ୍କ ଇଚ୍ଛା ମାତ୍ରେ ହିଁ ଜାରଜ, ଅଣ୍ଡଜଆଦି ଅଗଣିତ ଜୀବଜନ୍ତୁ ଉତ୍ପନ୍ନ ହେଲେ । ଜଳ ଓ ଝାଳରୁ ଉତ୍ପନ୍ନ ଜୀବକୁ ସ୍ୱେଦଜ କୁହାଗଲା । ବାୟୁରୁ ଉତ୍ପନ୍ନ ଜୀବକୁ କୁହାଗଲା ଉଦ୍‌ଭିଜ । ପରେ ଏକ ଶରୀରରୁ ଅନ୍ୟ ଶରୀରର ଉତ୍ପନ୍ନ ହେଲା । ଏଇଭଳି ଭାବେ ଅନନ୍ତ ସୃଷ୍ଟିର ନିର୍ମାଣ । ବିଷ୍ଣୁ ଏହି ସୃଷ୍ଟିକୁ ମୂଳରୂପରେ ଅର୍ଥାତ୍ ସୂକ୍ଷ୍ମଇଚ୍ଛାମାତ୍ରକେ ପାଳନ ପୋଷଣ କରନ୍ତି ଏବଂ ସ୍ଥୂଳରୂପରେ ସମୟାନୁଯାୟୀ ଅନେକ ଅବତାର ଧାରଣ କରି ଧର୍ମ ସଂସ୍ଥାପନ କରିଥାଆନ୍ତି । ଧର୍ମ ସଂସ୍ଥାପନ ଦିଗରେ ସହଯୋଗ କରୁଥିବା ସମସ୍ତ ସଜ୍ଜନ ହେଉଛନ୍ତି ବିଷ୍ଣୁରୂପ ଅର୍ଥାତ୍ ବିଷ୍ଣୁଙ୍କର ଅଂଶ । ଦୁର୍ଜନମାନେ ହିଁ ରାକ୍ଷସ । ସଜ୍ଜନଙ୍କ ରକ୍ଷା କରିବା ଏବଂ ଦୁର୍ଜନଙ୍କ ସଂହାର କରିବା ଏବଂ ଏହି ଉଭୟ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଧର୍ମ ସଂସ୍ଥାପନ କରିବା ଲାଗି ଭଗବାନ ବିଷ୍ଣୁ ଅବତାର ଗ୍ରହଣ କରିବା ଆବଶ୍ୟକ ହୋଇଥାଏ । ଯେଉଁ ଜୀବ ଜନ୍ମ ଗ୍ରହଣ କରେ ତାର ଚେତନାକୁ ନଷ୍ଟ କରି ରୁଦ୍ର ଅର୍ଥାତ୍ ଶଙ୍କର ତମୋଗୁଣରେ ତାକୁ ସଂହାର କରିଥାଆନ୍ତି । ରୁଦ୍ରଙ୍କ କ୍ରୋଧ ହିଁ ସୃଷ୍ଟିର ସଂହାର । ଏହାକୁ କୁହାଯାଏ ପ୍ରଳୟ । ପ୍ରଳୟ ସମୟରେ କେବଳ ସମଗ୍ର ସୃଷ୍ଟି ନୁହେଁ, ସମଗ୍ର ବ୍ରହ୍ମାଣ୍ଡ ଜଳ

ନିଶ୍ଚିନ୍ନ ହୋଇଯାଏ । ପୁଣି ବ୍ରହ୍ମା ପୂର୍ବଭଳି ନୂତନ ସୃଷ୍ଟିର ନିର୍ମାଣ ଏବଂ ଭଗବାନ ବିଷ୍ଣୁ ସୃଷ୍ଟିର ପାଳନ କାର୍ଯ୍ୟରେ ଲାଗି ଯାଆନ୍ତି । ଉତ୍ପତ୍ତି, ସ୍ଥିତି ଏବଂ ସଂହାରର ସମଗ୍ର ପ୍ରକ୍ରିୟାକୁ ଶ୍ରୋତାଗଣ ସାବଧାନତା ସହିତ ମନେ ରଖିବା ଉଚିତ । କଳ୍ପାନ୍ତରେ ଯେଉଁ ସଂହାର ଅର୍ଥାତ୍ ମହାପ୍ରଳୟ ହୋଇଥାଏ ଏହାର ବର୍ଣ୍ଣନା ମୁଁ ପରବର୍ତ୍ତୀ ସମାସରେ କରିବି । ଯିଏ ପଞ୍ଚପ୍ରଳୟକୁ ଜାଣେ ସେ ହେଉଚି ଜ୍ଞାନୀ ।

## ପଞ୍ଚମ ସମାସ
## ।। ପ୍ରଳୟ ଲକ୍ଷଣ ।।

ପ୍ରଳୟ ପାଞ୍ଚପ୍ରକାରର । ପିଣ୍ଡରେ ଦୁଇଟି, ବ୍ରହ୍ମାଣ୍ଡରେ ଦୁଇଟି, ଏହିଭଳି ଚାରୋଟି ପ୍ରଳୟ । ପଞ୍ଚମ ପ୍ରଳୟକୁ ବିବେକ-ପ୍ରଳୟ କୁହାଯାଇଥାଏ । ପିଣ୍ଡରେ ଗୋଟିଏ ହେଉଚି ନିଦ୍ରା-ପ୍ରଳୟ, ଅନ୍ୟଟି ମରଣପ୍ରଳୟ । ବ୍ରହ୍ମା, ବିଷ୍ଣୁ, ମହେଶ ନିଦ୍ରିତ ଥିବା ସମୟରେ ବ୍ରହ୍ମାଣ୍ଡର ପ୍ରଳୟ ଘଟିଥାଏ । ବ୍ରହ୍ମାଣ୍ଡର କଳ୍ପାନ୍ତ-ପ୍ରଳୟ ହୋଇ ଯେତେବେଳେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ଅବସାନ ଘଟେ ତାକୁ ବ୍ରହ୍ମପ୍ରଳୟ କୁହାଯାଏ ।

ମୁଁ ବର୍ତ୍ତମାନ ଏହି ପଞ୍ଚପ୍ରଳୟକୁ ସ୍ପଷ୍ଟ ଭାବରେ ବୁଝାଇବି । ମଣିଷ ଯେତେବେଳେ ନିଦ୍ରାବସ୍ଥାରେ ରହେ, ସେତେବେଳେ ସୃଷ୍ଟିର ସମସ୍ତ ବ୍ୟାପାରରୁ ସେ ପୃଥକ୍ ରହିଥାଏ ଏବଂ ସୁସୁପ୍ତି ଅର୍ଥାତ୍ ସ୍ୱପ୍ନାବସ୍ଥା ଆରମ୍ଭ ହୋଇଯାଏ । ଜାଗୃତିର ଖେଳ ନିଦ୍ରାରେ ହୋଇଥାଏ । ତେଣୁ ଏହାକୁ ନିଦ୍ରା-ପ୍ରଳୟ କୁହାଯାଇଥାଏ । ଶରୀର ଚାଲିଯିବା ସମୟକୁ ମୃତ୍ୟୁ ପ୍ରଳୟ କୁହାଯାଇଥାଏ । ଶରୀରରେ ନାନା ରୋଗ ପ୍ରବଳ ହୋଇ ଉଠିବାରେ କିମ୍ବା କୌଣସି ଆକସ୍ମିକ ଦୁର୍ଘଟଣାରେ ଶରୀରରେ ପଞ୍ଚପ୍ରାଣ ଅଲଗା ହୋଇଯାଏ ଏବଂ ତା ସହିତ ମନରୂପୀ ବାୟୁ ମଧ୍ୟ ଉଡ଼ିଯାଏ । କେବଳ ବାକୀ ରହେ ଶବ । ଏହାକୁ ହିଁ କୁହାଯାଏ ମୃତ୍ୟୁ-ପ୍ରଳୟ ।

ଏବେ ବ୍ରହ୍ମାଣ୍ଡ ପ୍ରଳୟର କଥା ଶୁଣନ୍ତୁ । ବ୍ରହ୍ମଦେବ ନିଦ୍ରିତ ହେବା ପରେ ସମଗ୍ର ମୃତ୍ୟୁଲୋକ ଏକ ବଡ଼ପିଣ୍ଡ ହୋଇଉଠେ । ସେତେବେଳେ ସମଗ୍ର ପ୍ରାଣୀ ଜଗତରେ ସମସ୍ତ ବ୍ୟାପାର ସମାପ୍ତ ହୋଇଯାଏ । ପ୍ରାଣୀମାନଙ୍କର ସୂକ୍ଷ୍ମ ଅଂଶ

ମଧ୍ୟ ବାୟୁଚକ୍ରରେ ମିଳେଇଯାଏ । ଏହିଭଳି ଭାବରେ କିଛି ସମୟ ବିତିଯାଏ । ପୁଣି ବ୍ରହ୍ମଦେବ ଜାଗ୍ରତ ହେବା ପରେ ସୃଷ୍ଟିର ରଚନାକାର୍ଯ୍ୟ ଆରମ୍ଭ ହୋଇଯାଏ । ବାୟୁରେ ବଚ୍ଛୁରିତ ଅବସ୍ଥାରେ ରହିଥିବା ସୂକ୍ଷ୍ମାଂଶ (ଜୀବ) ପୁଣି ଶରୀରଧାରଣ କରି ସଂସାରରେ ବିଚରଣ କରେ ଅର୍ଥାତ୍ ପୂର୍ବ ଭଳି ପୁଣି ସୃଷ୍ଟିର ଭ୍ରମ ଜାରି ହୁଏ ।

ବ୍ରହ୍ମଦେବଙ୍କ ଆୟୁଷ ଶେଷ ହେବା ସଙ୍ଗେ ସଙ୍ଗେ ବ୍ରହ୍ମପ୍ରଳୟ ଆରମ୍ଭ ହୋଇଯାଏ । ଲାଗଲାଗ ଶହେବର୍ଷ ଧରି ବର୍ଷା ନ ହେବା ଯୋଗୁ ସମଗ୍ର ଜୀବସୃଷ୍ଟିର ବିନାଶ ଘଟିଥାଏ । ପୃଥିବୀ ଅସମ୍ଭବ ଭାବରେ ଫାଟିଯାଏ । ସୂର୍ଯ୍ୟର ଉତ୍ତାପ ବାରଗୁଣ ବଢ଼ିଯାଏ । ସମଗ୍ର ସଂସାର ପୋଡ଼ି ପାଉଁଶ ହୋଇଯାଏ । ଅଗ୍ନିର ବିସ୍ଫୋରଣ ଦ୍ୱାରା ଲାଭା ଭଳି ବିଷର ଉଦ୍‌ଗାର ହୁଏ । ଶେଷରେ ଏହି ଗରଳ ମଧ୍ୟ ଶେଷ ହୋଇଯାଏ । ଆକାଶରେ ସୂର୍ଯ୍ୟର ପ୍ରଖରତମ ଜ୍ୱାଳା ସୃଷ୍ଟି ହୁଏ ଏବଂ ତଳେ ଶେଷନାଗ ଗରଳ ଉଦ୍‌ଗାର କରେ ଏବଂ ଏହି ଦୁହିଁଙ୍କର ପ୍ରତାପରେ ସମଗ୍ର ବହ୍ମାଣ୍ଡ ଜଳି ଭସ୍ମ ହୋଇଯାଏ । ସୂର୍ଯ୍ୟର ପ୍ରଖର ତେଜରେ ମେରୁ ମନ୍ଦର ଗିରି ଭୁଷୁଡ଼ିପଡ଼ି ଇନ୍ଦ୍ରଙ୍କର ଅମରାବତୀ, ବ୍ରହ୍ମଦେବଙ୍କ ସତ୍ୟଲୋକ, ନାରାୟଣ ବିଷ୍ଣୁଙ୍କ ବୈକୁଣ୍ଠପୁରୀ ଏବଂ ଶିବଙ୍କ କୈଳାସ ଆଦି ସବୁଲୋକ ଭସ୍ମ ହୋଇଯାଏ ।

ମେରୁ ପର୍ବତ ଭୁଷୁଡ଼ି ପଡ଼ିବା ସଙ୍ଗେ ସଙ୍ଗେ ସମସ୍ତ ଦେବ ବାୟୁଚକ୍ରରେ ବିଲୀନ ହୋଇଯାନ୍ତି । ସେତେବେଳେ ହାତୀର ଶୁଣ୍ଢ ଭଳି ମୂଷଳ ଧାରାରେ ବୃଷ୍ଟି ଆରମ୍ଭ ହୋଇ ସମଗ୍ର ସୃଷ୍ଟିରେ ନିମିଷକରେ ଜଳ-ପ୍ରଳୟ ହୋଇ ସମଗ୍ର ସୃଷ୍ଟି ସେହି ଜଳରେ ବୁଡିଯାଏ । ସୃଷ୍ଟି ଜଳରୂପ ଧାରଣ କରିବା ପରେ ଅଗ୍ନି ଏହି ଜଳକୁ ଶୁଖେଇଦିଏ । ଅଗ୍ନି ପ୍ରଜ୍ୱଳିତ ହେବା ମାତ୍ରେ ସମୁଦ୍ରରେ ବଡ଼ବାନଳବାୟୁର ପ୍ରକୋପ ଦେଖାଯାଏ । ଶଙ୍କରଙ୍କ ନେତ୍ରରୁ ବିଚ୍ଛୁରିତ ତେଜ ପଞ୍ଚଭୂତ, ଅହଂକାର ଓ ମହତ୍-ତତ୍ତ୍ୱ ଆଦି ସପ୍ତକଞ୍ଚୁକ ଏବଂ ସୂର୍ଯ୍ୟ, ବିଦ୍ୟୁତ୍‌ଶକ୍ତି ଆଦି ସମସ୍ତ ଜ୍ୱାଳା ଏକତ୍ର ହୋଇଯାଏ । ଦେବତାମାନଙ୍କ ତେଜୋଦୀପ୍ତ ଶରୀର ଏହିଥିରେ ବିଲୀନ ହୋଇଯାଏ ଏବଂ ସେମାନେ ନିଜ ନିଜର ପୂର୍ବରୂପମାନଙ୍କରେ ମିଳେଇଯାଆନ୍ତି । ତାହାପରେ ମହାପ୍ରଭଞ୍ଜନ (ବାୟୁ)ର ପ୍ରକୋପରେ ଅଗ୍ନି ପ୍ରଶମିତ ହୁଏ ଏବଂ ବାୟୁ ମୂଳବ୍ରହ୍ମ ଆଡ଼କୁ ଅଗ୍ରସର ହୁଏ । ଧୂଆଁ ଯେପରି ଆକାଶରେ ବିଲୀନ ହୋଇଯାଏ ସେହିଭଳି ବାୟୁ ମଧ୍ୟ ବ୍ରହ୍ମରେ ଲୀନ ହୋଇଯାଏ । ସମସ୍ତେ ଜାଣନ୍ତି

ଯେ ଅକ୍ଷର ବିନାଶ ଘଟେ ବହୁ ଭିତରେ । ବାୟୁର ପ୍ରକୋପ ମାତ୍ରେ ପଞ୍ଚଭୂତ, ତ୍ରିଗୁଣ ଏବଂ ଈଶ୍ୱର, ପ୍ରକୃତି ଓ ପୁରୁଷ ନିଜ ନିଜର ଅଧିଷ୍ଠାନ ଛାଡ଼ି ନିର୍ବିକଳ୍ପ ବ୍ରହ୍ମରେ ବିଲୀନ ହୋଇଯା'ନ୍ତି । ଏହି ସମୟରେ ଅନୁଭୂତି ମଧ୍ୟ ନଷ୍ଟ ହୋଇଯାଏ ଏବଂ ଜଗଜ୍ଜ୍ୟୋତି ମଧ୍ୟ ଲୋପ ପାଇଯାଏ । ଅବଶେଷରେ ରହେ କେବଳ ଶୁଦ୍ଧ, ନିର୍ବିକଳ୍ପ ଏକମାତ୍ର ସ୍ୱରୂପସ୍ଥିତି ବ୍ରହ୍ମ । ସଂସାରରେ ଯେତେ ପ୍ରକାରର କଳ୍ପିତ ନାମ ଓ ରୂପ ରହିଛି, ସେସବୁର କାରଣ ହେଉଛି ପ୍ରକୃତି । ତେଣୁ ପ୍ରକୃତିର ବିନାଶ ଘଟିବା ପରେ ଅବଶେଷରେ କ'ଣ ବା ରହେ ଯେ ତାକୁ ଶବ୍ଦରେ ବର୍ଣ୍ଣନା କରାଯାଇ ପାରିବ । ତେଣୁ ପ୍ରକୃତି ରହିଥିବା ଅବସ୍ଥାରେ ବିବେକ ଦ୍ୱାରା ସଦ୍‌ବସ୍ତୁ ପରଂବ୍ରହ୍ମ ପରମାତ୍ମାଙ୍କ ବିବେଚନା ଏବଂ ସେହି ପରମାତ୍ମାର ପ୍ରକାଶ ତଥା ତା ସହିତ ସାକ୍ଷାତ୍‌କାର ଲାଭକୁ ହିଁ ବିବେକପ୍ରଳୟ କୁହାଯାଏ । ଏହାଦ୍ୱାରା ସମଗ୍ର ବନ୍ଧନରୁ ମୁକ୍ତିପାଇ ସଦ୍-ବସ୍ତୁ ବ୍ରହ୍ମ ସ୍ୱରୂପ ହୋଇଉଠିଥାଏ ।

ଏହିଭଳି ଭାବରେ ମୁଁ ପଞ୍ଚପ୍ରଳୟ ବିଷୟକୁ ସଂକ୍ଷେପରେ ଆପଣମାନଙ୍କୁ ବୁଝାଇଲି । ହେ ଶ୍ରୋତାଗଣ ! ମୁଁ ଯାହା କହିଲି ତାହା ଉପରେ ଚିନ୍ତା କରି ଆପଣମାନେ ଏହାର ସତ୍ୟତା ଓ ଯଥାର୍ଥ୍ୟ ଅନୁଭବ କରିବାଲାଗି ଉଦ୍ୟମ କରିବା ଉଚିତ ।

ମୁଁ ଏ ପର୍ଯ୍ୟନ୍ତ ଆପଣମାନଙ୍କୁ ଉତ୍ପତ୍ତି, ସ୍ଥିତି ଓ ସଂହାର ସମ୍ପର୍କରେ ସମସ୍ତ ବିଷୟ ବୁଝେଇ ଦେଲି । ଏବେ ନିର୍ଗୁଣ, ନିରାକାର ପରମାତ୍ମା ସମ୍ପର୍କରେ ପରବର୍ତ୍ତୀ ସମାସରେ ବିସ୍ତାରିତ ଭାବରେ କହିବି ।

## ଷଷ୍ଠ ସମାସ
## ।। ଭ୍ରମର ଆଭାସ ।।

ପୂର୍ବ ସମାସରେ ଉତ୍ପତ୍ତି, ସ୍ଥିତି ଓ ସଂହାର ସଂପର୍କରେ କୁହାଯାଇଚି, ଏବେ, ନିର୍ଗୁଣ ପରମାତ୍ମା ସମ୍ପର୍କରେ ଶୁଣ । ପରମାତ୍ମା ଏହିସବୁ ସ୍ଥିତିର ଉର୍ଦ୍ଧରେ । ହେବା, ରହିବା କିମ୍ବା ଯିବା ଆଦି ସହିତ ଏହାଙ୍କର କୌଣସି ସମ୍ପର୍କ ନାହିଁ । ଏହା ଆଦି, ମଧ୍ୟ ଓ ଅନ୍ତ ସବୁଥିରେ ପରିପୂର୍ଣ୍ଣ । ପରମାତ୍ମା ସର୍ବଦା ଏକାଭଳି । ମଝିରେ ଏହାର ଯେଉଁ ଉତ୍ପତ୍ତି, ସ୍ଥିତି ଓ ସଂହାରର ଦୃଶ୍ୟ ଦେଖାଯାଇଥାଏ, ସେସବୁ

ହେଉଚି ଭ୍ରମ-ଜାଲ । ଯାହାର ଆଭାସ ରହିଛି, ସେ ସବୁ ନାଶବାନ୍ । ପିଣ୍ଡ ବ୍ରହ୍ମାଣ୍ଡରେ ନାନା ଆଲୋଡ଼ନ ସୃଷ୍ଟି ହୋଇଥାଏ, କଳ୍ପାନ୍ତରେ ସେସବୁ ବିଲୁପ୍ତ ହୁଏ ।

ବିବେକୀ ପୁରୁଷ ସୃଷ୍ଟିରେ ବିଚରଣ କରୁଥିବା ସଙ୍ଗେ ସଙ୍ଗେ ସାର କ'ଣ ଅସାର କ'ଣ ସେ ସବୁ ବିଷୟକୁ ଧ୍ୟାନରେ ରଖିଥାଆନ୍ତି, ତଥାପି ସେମାନଙ୍କ ମନ ଶାନ୍ତ ରହିଥାଏ । ଏଭଳି ଜ୍ଞାନୀ ପୁରୁଷଙ୍କ ସଂଖ୍ୟା ସଂସାରରେ ବହୁତ କମ୍ । ଅଧିକାଂଶ ତ ଅଜ୍ଞାନୀ— ଜ୍ଞାନୀଙ୍କ କଥା ଶୁଣୁଚି କିଏ ? ଜ୍ଞାନୀର ଲକ୍ଷଣ ହେଉଚି— ସେ କେବେହେଲେ ଭ୍ରମଜାଲରେ ପଡ଼େ ନାହିଁ । ସବୁ ଭ୍ରମକୁ ଜାଣି ଯିଏ ଏ ସବୁଥିରୁ ଅଲଗା ରହେ, ସିଏ ହିଁ ଜ୍ଞାନୀ ।

ଭ୍ରମ କ'ଣ ସେ କଥା ବିଚାର କରାଯାଉ । ନିର୍ବିକାର ପରବ୍ରହ୍ମ ସର୍ବବ୍ୟାପୀ । ଏହି ପରବ୍ରହ୍ମ ବ୍ୟତୀତ ନାମ ରୂପଧାରୀ ସବୁ ଜିନିଷ ହେଉଚି ଭ୍ରମ ।

ଭ୍ରମେଣାହଂ ଭ୍ରମେଣ ତ୍ୱଂ ଭ୍ରମେଣୋପାସକା ଜନାଃ ।
ଭ୍ରମେଣେଶ୍ୱରଭାବତ୍ୱଂ ଭ୍ରମମୂଳମିଦଂ ଜଗତ୍ ॥ ୧ ॥

ଅର୍ଥାତ୍ ଅଷ୍ଟଧା ପ୍ରକୃତି ମଧ ଭ୍ରମ । ବିବେକ ସହିତ ଯିଏ ଏହି ଭ୍ରମରୁ ପୃଥକ ରହେ ସିଏ ଧନ୍ୟ । ଭ୍ରମ ସମ୍ପର୍କରେ କେତେକ ଉଦାହରଣ— ବିଦେଶ ଭ୍ରମଣରେ ଯିବାବେଳେ ବାଟବଣା ହୋଇଯିବା, ଆତ୍ମୀୟ ସ୍ୱଜନଙ୍କ ପରିଚୟକୁ ଭୁଲିଯିବା, ଭୂତପ୍ରେତାଦି ବାଧାଦ୍ୱାରା ପୀଡ଼ିତ ଓ ବିପର୍ଯ୍ୟସ୍ତ ହେବା, ମଦ୍ୟପାନରେ ଉନ୍ମତ୍ତ ହେବାରେ ଗୋଟିଏ ବସ୍ତୁକୁ ଅନ୍ୟବସ୍ତୁ ଭାବରେ ଦେଖିବା, ସଂଶୟ ଭଉଁରୀ ଭିତରେ ଚକ୍କର ଖାଇବା, ରଙ୍ଗମଞ୍ଚରେ ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିବା ପୁରୁଷକୁ ଜଣେ ସ୍ତ୍ରୀ ଲୋକ ବୋଲି ଭାବିବା, ସହରରେ ରାସ୍ତାଭୁଲି ଇତଃସ୍ତତଃ ହେବା, ଗୁପ୍ତ ଜିନିଷକୁ ଗୋଟିଏ ସ୍ଥାନରେ ରଖି ଅନ୍ୟସ୍ଥାନକୁ ଦରାଣ୍ଡିବା, ଅପହୃତ ଜିନିଷକୁ ପାଇବା ଲାଗି ଚିନ୍ତାମଗ୍ନ ରହିବା, ପଠିତ ବସ୍ତୁକୁ ଭୁଲିଯିବା, ସ୍ୱପ୍ନରେ ଅନୁଭୂତ ଦୁଃଖକୁ ନିଜର ଦୁଃଖ ମନେ କରିବା, ନାନା ଦୁଃଶ୍ଚିନ୍ତାରେ ଘାବରେଇଯିବା, ମିଛ ଖବରରେ ମନ ଖରାପ କରିବା, ଗଛ ବା ଖୁଣ୍ଟକୁ ଦେଖି ଭୂତପ୍ରେତ ମନେ କରିବା, କିଏ ବଡ଼ ପାଟିରେ ଡାକିବାମାତ୍ରେ ଚମକି ପଡ଼ିବା,

ଜଳକୁ କାଚ ମନେ କରି ବୁଡିଯିବା, ମୁଖ୍ୟଦ୍ୱାରକୁ ଛାଡ଼ି ଏ ଦ୍ୱାର ସେ ଦ୍ୱାର ହେବା, ଏକକୁ ଅନେକ ଭାବରେ ଦେଖିବା ଆଦି ହେଉଚି ଭ୍ରମର ଲକ୍ଷଣ । ମୃତ ମନୁଷ୍ୟ କେବେ କେବେ ସ୍ୱପ୍ନରେ ଦେଖା ଦେଇ କ'ଣ କିଛି ହାତ ପତେଇ ମାଗିଥାଏ । ଏଭଳି ସ୍ୱପ୍ନଚିତ୍ରକୁ ଜାଗ୍ରତ ଅବସ୍ଥାରେ ଚିନ୍ତା କରିବା ମଧ୍ୟ ଭ୍ରମାବସ୍ଥା ।

ପ୍ରତ୍ୟେକ ସାଂସାରିକ ବସ୍ତୁ ଯେ ମିଥ୍ୟା ଏକଥା ଜାଣି ସୁଦ୍ଧା ଏ ବସ୍ତୁ ସେ ବସ୍ତୁକୁ ପାଇବା ଲାଗି ଉଦ୍ୟମ କରିବା ମଧ୍ୟ ଭ୍ରମ । ନିଜର ଖ୍ୟାତି ଯଶ କିପରି ବୃଦ୍ଧି ପାଇବ ସେ ସମ୍ପର୍କରେ ଚିନ୍ତା କରିବା; ବାହ୍ୟିକ ବୈଭବରେ ଭୁଲିଯିବା; କୌଣସି ପ୍ରଲୋଭନରେ ପଡ଼ିବା; କର୍ମଠତାର ଅଭିମାନରେ ପ୍ରକୃତ ଜ୍ଞାନକୁ ତୁଚ୍ଛ ମନେକରିବା; ମୁଁ ସର୍ବଜ୍ଞ, ବ୍ରହ୍ମଜ୍ଞ ମନେକରି ଅନାଚାରରେ ମାତିବା ହେଉଚି ଭ୍ରମ । ଦେହାଭିମାନ, କର୍ମାଭିମାନ, ଜାତ୍ୟାଭିମାନ, କୁଳାଭିମାନ, ଜ୍ଞାନାଭିମାନ, ମୋକ୍ଷାଭିମାନ ଆଦି ସମସ୍ତ ଅଭିମାନ ହେଉଚି ଭ୍ରମ । ଯାହାର ନ୍ୟାୟ, ଅନ୍ୟାୟର ଜ୍ଞାନ ନାହିଁ, ଅନ୍ୟାୟ କଲେ ମଧ୍ୟ ସେଥିଲାଗି ଯିଏ ଦୁଃଖିତ ନୁହଁ, ଯାହାର ସାର ଅସାରର ବିଚାର ନାହିଁ, ଆଗ ପଛ ବିଚାର ନାହିଁ, ଯିଏ ଅହଂକାରରେ ବଶବର୍ତ୍ତୀ ହୋଇ ନିଜର ବଡ଼ିମା ଦେଖାଇ ହୋଇଥାଏ, ଏବଂ ଅଯଥା ଗୁଡ଼ାଏ କଳ୍ପନା ଜଳ୍ପନା କରିଥାଏ, ସେ ଭ୍ରମରେ ପଡ଼ିଛି ବୋଲି ବୁଝିବାକୁ ହେବ । କି ଔଷଧ ଖାଇଲେ କି ଉପକାର ହୁଏ ଏକଥା ନଜାଣି ଯିଏ ଏଣୁ ତେଣୁ ନାନା ଔଷଧ ପତ୍ର ଖାଇଥାଏ, ଅନୁଭବ ବିନା ଜ୍ଞାନର ବଡ଼େଇ କରିଥାଏ, ଫଳ କ'ଣ ହେବ ନ ଜାଣି ଯିଏ ଅନ୍ଧ ଭାବରେ କାର୍ଯ୍ୟ କରିଥାଏ, ଅଜ୍ଞାନୀଙ୍କ ଭଳି ନାନା ଯୋଗ ସାଧନା କରିଥାଏ, ଯିଏ ଶରୀରର ଦୁଃଖ ଲାଗି ସର୍ବଦା ଇଚ୍ଛା କରିଥାଏ—ସେ ଭ୍ରମ-ପୀଡ଼ିତ ବ୍ୟକ୍ତି । 'କପାଳ ଲିଖନ କେ କରିବ ଆନ'—ଏଭଳି ଭାବିବା ମଧ୍ୟ ଭ୍ରମ ।

ଏହିଭଳି ଭାବେ ଅଜ୍ଞାନୀ ଲୋକେ ନାନା ଭ୍ରମରେ ବିଜଡ଼ିତ । ଉଦାହରଣ ସ୍ୱରୂପ ଅଳ୍ପ କିଛି କୁହାଗଲା । ସାରା ସଂସାରର ମୂଳ ତ ଭ୍ରମାତ୍ମକ, ତେଣୁ ସବୁ ବିଷୟକୁ ଅଲଗା ଅଲଗା ବର୍ଣ୍ଣନା କରିବା ନିରର୍ଥକ । ଏତିକିମାତ୍ର ଜାଣ ଯେ ପରବ୍ରହ୍ମ ପରମାତ୍ମା ବ୍ୟତୀତ ଆଉ ସବୁ ଭ୍ରମ । ଜ୍ଞାନୀ ଏକଥା ଜାଣେ ବୋଲି ସେ ସଂସାର ଭିତରେ ରହିଥିଲେ ମଧ୍ୟ ସଂସାରରେ ଲିପ୍ତ ନୁହଁ । ଅନେକ ଲୋକ ଏହି ଜ୍ଞାନୀ ବ୍ୟକ୍ତିଙ୍କ ସମ୍ପର୍କରେ ନାନା ଦୋଷାରୋପ କରି ଲୋକଙ୍କୁ ଭ୍ରାନ୍ତ କରିବା ଦେଖାଯାଏ ।

ଏକଥା ଶୁଣିବା ପରେ ଶ୍ରୋତାଙ୍କ ପ୍ରଶ୍ନ— ମହାନ୍ ଜ୍ଞାନୀ ପୁରୁଷ, ସନ୍ଥ ସଜ୍ଜନ, ମହାତ୍ମାମାନଙ୍କ ସମାଧିପୀଠକୁ ପୂଜା କରିବା ଉଚିତ ନା ଅନୁଚିତ ? କ'ଣ ଏଥିରୁ କିଛି ଫଳ ମିଳେ ? ଅତୀତରେ ଏପରି ବହୁ ସାଧୁ ସନ୍ଥ ମହାତ୍ମା ଥିଲେ ଯେଉଁମାନଙ୍କର ଲୋକୋତ୍ତର ସାମର୍ଥ୍ୟ ଥିଲା । ସାଂସାରିକ ପଦାର୍ଥ ପ୍ରତି ଏମାନଙ୍କ ମୋହ ମାୟା ନଥିଲା ବୋଲି ଯଦି ମାନୁ ତାହା ଆମର ଭ୍ରମ ବୋଲି ବିଚାର କରାଯିବ କି ? ଦୟାକରି ସେହିକଥା ଆମକୁ ବୁଝାଇ ଦିଅନ୍ତି ।

ବକ୍ତା— ଆଗାମୀ ସମାସରେ ସେକଥା କୁହାଯିବ ।

## ସପ୍ତମ ସମାସ
## ।। ସଗୁଣ ଭଜନ ।।

ଶ୍ରୋତାମାନଙ୍କ ପ୍ରଶ୍ନଟିକୁ ମୁଁ ଆଉ ଟିକିଏ ସ୍ପଷ୍ଟ କରି ଦେବାକୁ ଚାହେଁ । ଶ୍ରୋତାମାନଙ୍କ ସନ୍ଦେହ ହେଉଚି—ଅବତାର ତଥା ଜ୍ଞାନୀ ଓ ସଜ୍ଜନମାନେ ତ ସାର ଅସାର ବିଚାରଦ୍ୱାରା ମୁକ୍ତ ହୋଇ ଯାଇଛନ୍ତି, ତଥାପି ସେମାନଙ୍କର ସାମର୍ଥ୍ୟର ପ୍ରଭାବ ଏ ପର୍ଯ୍ୟନ୍ତ ରହିଛି କିପରି ? ସେମାନଙ୍କ ବାସନାର ପରିସମାପ୍ତି କ'ଣ ଘଟି ନାହିଁ ?

ଉତ୍ତର—ଅବତାରୀ ମହାପୁରୁଷ ଏବଂ ସନ୍ଥ ଜ୍ଞାନୀମାନଙ୍କ ସାମର୍ଥ୍ୟ ସେମାନଙ୍କ ଦେହାବସାନ ଘଟିବା ପରେ ମଧ୍ୟ ପ୍ରଭାବ ବିସ୍ତାର କରି ଚାଲିଥାଏ, ତା ଅର୍ଥ ନୁହେଁ ଯେ ସେମାନେ ମଧ୍ୟ ସାଧାରଣଲୋକଙ୍କ ଭଳି ବାସନାକାମନାରେ ଜଡ଼ିତ ଥିଲେ । ଭାବପ୍ରବଣ ଭକ୍ତମାନଙ୍କର ବହୁ ଚମତ୍କାରିତା ଉପରେ ଦୃଢ଼ ବିଶ୍ୱାସ ହୋଇଯାଏ ଏବଂ ଚମତ୍କାରିତା ବା ଅବତାରୀ ପୁରୁଷଙ୍କ ଲୀଳାକୁ ସତ୍ୟ ବୋଲି ମାନି ନେଇଥାଆନ୍ତି । ସନ୍ଥ ମହାତ୍ମାମାନଙ୍କ ଜୀବନକାଳ ମଧ୍ୟରେ ଭକ୍ତମାନଙ୍କ ମାଧ୍ୟମରେ ବହୁ ଚମତ୍କାରିତା ପ୍ରଦର୍ଶିତ ହୋଇଥାଏ, କିନ୍ତୁ ସେସବୁ ବିଷୟକୁ ଆମେମାନେ ସାବଧାନ ଭାବରେ ବିଚାର କରିବା ଉଚିତ ।

ଅବତାରୀ ପୁରୁଷ କିମ୍ବା ସନ୍ଥମାନେ କୌଣସି ବାସନା ନେଇ ଜନ୍ମଗ୍ରହଣ କରି ନ ଥାଆନ୍ତି ଏବଂ ଲୋକଙ୍କୁ ଏମାନେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ

ଦେଖା ଦେଇଥାଆନ୍ତି । ଏହା କେବଳ ଭାବୁକ ବା ଭାବନାପ୍ରଧାନ ଭକ୍ତମାନଙ୍କ ବିଶ୍ୱାସର ପରିଣାମ । ଏଭଳି ଭକ୍ତଙ୍କ ଲାଗି ଦେବତାମାନଙ୍କ ଅସ୍ତିତ୍ୱ ଯଥାର୍ଥ ବୋଲି କୁହାଯାଇପାରେ । ଭାବନା ବିନା ସମସ୍ତ କଳ୍ପନା ବ୍ୟର୍ଥ ଏବଂ ବିତର୍କ ମାତ୍ର । ଯଦି କୌଣସି ବ୍ୟକ୍ତି ନିଜ ଭାବନାନୁସାରେ କୌଣସି ଜିନିଷକୁ ସ୍ୱପ୍ନରେ ଦେଖେ କ'ଣ ସେହି ଜିନିଷ ତାକୁ ସେହି ମୁହୂର୍ତ୍ତରେ ମିଳିଯାଏ ? ଯଦି ଏକଥା କୁହାଯିବ ଯେ କୌଣସି ଜିନିଷକୁ ମନେ ପକାଇବା ମାତ୍ରେ ସେହି ଜିନିଷ ସଙ୍ଗେ ସଙ୍ଗେ ହାଜର ହେଉ ନାହିଁ କାହିଁକି—ତାହାହେଲେ ତ ଏହି ପ୍ରଶ୍ନର କୌଣସି ସତର୍କ ଉତ୍ତର ଦିଆଯାଇ ପାରିବ ନାହିଁ । ଏସବୁ ହେଉଛି ଭାବନାର ଖେଳ ବା କଳ୍ପନା ଅର୍ଥାତ୍ ଭ୍ରମ । ସ୍ୱପ୍ନରେ ବହୁ ସ୍ଥାନ ଓ ବହୁ ଜିନିଷ ଦେଖାଯାଇଥାଏ, କିନ୍ତୁ ବସ୍ତୁତଃ ଏ ସବୁର କୌଣସି ଅସ୍ତିତ୍ୱ ନାହିଁ । କେବଳ ଏ ସବୁର ସ୍ମରଣ ହିଁ ଅବଶେଷ ରହିଥାଏ ।

ଜ୍ଞାନୀମାନଙ୍କର ଯେ ଜନ୍ମ ହୋଇଥାଏ ଏକଥା ମାନିବା ଅନୁଚିତ । ଏ କଥାଟିକୁ ବୁଝିବା ଲାଗି ବିବେକର ଆବଶ୍ୟକତା ରହିଛି । ବାସ୍ତବରେ ଜ୍ଞାନୀମାତ୍ରେ ମୁକ୍ତ । କିନ୍ତୁ ସେମାନଙ୍କ ସାମର୍ଥ୍ୟର ମୃତ୍ୟୁ ନାହିଁ । ତାହା କାଳ କାଳ ଧରି ଲୋକଙ୍କୁ ପ୍ରଭାବିତ କରିଥାଏ । ତେଣୁ ସମସ୍ତେ ସେମାନଙ୍କ ପଥ ଅନୁସରଣ କରି ପୁଣ୍ୟପଥରେ ପଥିକ ହେବା ଲାଗି ଉଦ୍ୟମ କରିବା ଉଚିତ । ସର୍ବଦା ଈଶ୍ୱର-ପରାୟଣ ହୋଇ ନ୍ୟାୟମାର୍ଗରେ ଚାଲିଲେ ମନୁଷ୍ୟ ପୁଣ୍ୟବାନ ହୋଇଥାଏ । ପୁରଶ୍ଚରଣ ଓ ତୀର୍ଥାଟନ କରି, ନୀତିକୁ ଅନୁସରଣ କରି ବୈରାଗ୍ୟ-ସାଧନାରେ ନିଜର ସାମର୍ଥ୍ୟକୁ ବଢ଼େଇବା ଲାଗି ସମସ୍ତେ ପ୍ରୟାସ କରିବା ଆବଶ୍ୟକ । ସ୍ୱ ସ୍ୱରୂପରେ ସ୍ଥିରତା ଆସିଲେ ଜ୍ଞାନମାର୍ଗରେ ଚାଲିବା ଲାଗି ସାମର୍ଥ୍ୟ ହୋଇପାରେ । ଏକାଗ୍ରତା ଭଙ୍ଗ ହେବାଭଳି କୌଣସି କାର୍ଯ୍ୟ କରିବା ଅନୁଚିତ । ଏକ ଗୁରୁ ଏବଂ ଏକ ଉପାସନା ଲାଗି ଆରାଧ୍ୟ ଦେବତା ବା ଇଷ୍ଟ ଦେବତାକୁ ମନେ ମନେ ସ୍ଥିର କରି ନେଇ ସେମାନଙ୍କ ଉପରେ ପୂର୍ଣ୍ଣ ଆସ୍ଥା ରଖିବା ଆବଶ୍ୟକ । ତା ନକଲେ ସବୁ ନିଷ୍ଫଳ । ନିର୍ଗୁଣ ସମ୍ପର୍କରେ ଜ୍ଞାନ ଏବଂ ଅନୁଭୂତି ହେଲେ ମଧ୍ୟ ସଗୁଣକୁ ଅବହେଳା କରିବା ଅନୁଚିତ । ଏଭଳି କରିବା ଦ୍ୱାରା ନିଜେ ଦୀନ ହୋଇଯିବା ସାରହେବ । ତା ଫଳରେ ପ୍ରକୃତ ଜ୍ଞାନୀ ହୋଇ ପାରିବ ନାହିଁ କିମ୍ବା ପ୍ରକୃତ ଭକ୍ତ ହୋଇପାରିବ ନାହିଁ ।

ଅଜ୍ଞାନୀମାତ୍ରେ ଅନୁମାନର ଭଉଁରୀ ଭିତରେ ଘାଣ୍ଟି ହୋଇଥାଆନ୍ତି । ଅଜ୍ଞାନ ବା ଭ୍ରମରୁ ମୁକ୍ତ ହେବା ଲାଗି ଜପ ଓ ଧ୍ୟାନର ଅଭ୍ୟାସ କରିବା ଆବଶ୍ୟକ । ସଗୁଣ ଉପାସନା ତ୍ୟାଗକରି ଜ୍ଞାନୀ ହେବା ପରେ ମଧ୍ୟ ଅପଯଶ ପଛେ ପଛେ ଲାଗି ରହିଥିବ । ତେଣୁ ସଗୁଣ-ଭକ୍ତିକୁ କେବେ ହେଲେ ଅନାଦର କରିବା ଅନୁଚିତ । ନିଷ୍କାମ ଭକ୍ତିର କୌଣସି ତୁଳନା ନାହିଁ । କିନ୍ତୁ ନିଷ୍କାମଭକ୍ତିଯୋଗ ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଘଟିଥାଏ । ସେଥିଲାଗି ବହୁ ପୁଣ୍ୟାର୍ଜନ ଆବଶ୍ୟକ । ସକାମ ଭକ୍ତିରେ କାମନା ପୂରଣ ହୋଇଥାଏ, କିନ୍ତୁ ନିଷ୍କାମ ଭକ୍ତିରେ ପ୍ରତ୍ୟକ୍ଷ ପରମାତ୍ମାପ୍ରାପ୍ତି ଘଟିଥାଏ । ଏଥିରୁ ବୁଝିପାରିବ ଯେ କାମନାପୂର୍ତ୍ତି ଓ ଈଶ୍ୱରପ୍ରାପ୍ତି ମଧ୍ୟରେ କେତେ ଫରକ ! ଫଳଦାତା ହେଉଛନ୍ତି ଭଗବାନ । କିନ୍ତୁ ଫଳଦାତା ପ୍ରତି ସର୍ବଦା ଧ୍ୟାନ ଦେଲେ ଭଗବାନ ଭକ୍ତଠାରୁ ଦୂରେଇ ଯିବା ସ୍ୱାଭାବିକ । ତେଣୁ ନିଷ୍କାମ ଭକ୍ତିଦ୍ୱାରା ଭଗବାନଙ୍କୁ ନିଜର କରିନେବା ସବୁଠାରୁ ଶ୍ରେୟସ୍କର ମାର୍ଗ ।

ନିଷ୍କାମ ଭକ୍ତିର ଫଳ ଅପର୍ଯ୍ୟାପ୍ତ । ଏହାଦ୍ୱାରା ଅସୀମ ସାମର୍ଥ୍ୟ ଲାଭ ହୋଇଥାଏ । ତା ନିକଟରେ ସକାମ ଭକ୍ତିରୁ ପ୍ରାପ୍ତ ଫଳ ଅତି ତୁଚ୍ଛ । ନିଷ୍କାମଭକ୍ତ ମନରେ ଯେଉଁ ଭାବନା ଉତ୍ପନ୍ନ ହୋଇଥାଏ, ଭଗବାନ ସଙ୍ଗେ ସଙ୍ଗେ ତାହା ପୂରଣ କରିଥାଆନ୍ତି । ଏଭଳି ନିଷ୍କାମ ଭକ୍ତ ଓ ଭଗବାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥାଏ । ଏଭଳି ଭକ୍ତ ଓ ଭଗବାନଙ୍କ ସାମର୍ଥ୍ୟ ଏକ ହୋଇଯିବାରେ ଏହି ସାମର୍ଥ୍ୟ ଆଗରେ କଳିକାଳ ମଧ୍ୟ ତୁଚ୍ଛ ହୋଇପଡ଼େ । ଆଉ ଅନ୍ୟ କଥା କହିବି କ'ଣ ? ଯେଉଁଠି ନିଷ୍କାମ ଭକ୍ତିଯୁକ୍ତ କର୍ମଯୋଗ ଏବଂ ବିମଳ ବ୍ରହ୍ମଜ୍ଞାନର ସଙ୍ଗମ ଘଟିଥାଏ, ତା ସାମନାରେ ତିନିଲୋକ ମଧ୍ୟ ତୁଚ୍ଛ । ଏଭଳି ଜ୍ଞାନୀର ମୁଖମଣ୍ଡଳରେ ଅସାମାନ୍ୟ ବୁଦ୍ଧିଶାଳୀ ପୁରୁଷର ତେଜ ଦେଖାଯାଇଥାଏ । ଏଭଳି ଭକ୍ତ ଆଗରେ ସମସ୍ତ ଯଶ, କୀର୍ତ୍ତି ଓ ବଳବୀର୍ଯ୍ୟ ନତମସ୍ତକ । ଯେଉଁଠି ଅଜ୍ଞାନର ନିରୂପଣ ଓ ହରି କୀର୍ତ୍ତନର ପ୍ରବାହ ଏକାଠି ଚାଲିଥାଏ ଅର୍ଥାତ୍ ଜ୍ଞାନ ଓ ଭକ୍ତିର ନିବିଡ଼ ସଙ୍ଗମ ଘଟିଥାଏ, ସେଠାରେ ଜୀବମାତ୍ରେ ତନ୍ମୟ ଏବଂ ତଲ୍ଲୀନ (ତତ୍ + ଲୀନ=ତଲ୍ଲୀନ) ହୋଇ ପଡ଼ନ୍ତି । ଯେଉଁ ପରମାର୍ଥରେ ଭ୍ରଷ୍ଟାଚାର ବିନ୍ଦୁବିସର୍ଗ ସୁଦ୍ଧା ନଥାଏ, ସେ ଉଦାର ହୋଇଉଠିଥାଏ । ସାର-ଅସାର, ନ୍ୟାୟ-ଅନ୍ୟାୟ

ପ୍ରତି ଧ୍ୟାନ ରଖିଲେ ଈଶ୍ୱର ପ୍ରଦତ୍ତ ସଦ୍‌ବୁଦ୍ଧି କୁମାର୍ଗରେ ପରିଚାଳିତ ହୋଇ ନଥାଏ । ଭଗବାନ ନିଜର ଅନନ୍ୟ ଭକ୍ତକୁ ସ୍ୱୟଂ ସଦ୍‌ବୁଦ୍ଧି ପ୍ରଦାନ କରିଥା'ନ୍ତି । ଏ ସମ୍ପର୍କରେ ଭଗବଦ୍ ଗୀତାରେ କୁହାଯାଇଛି—

''ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପୟାନ୍ତି ତେ''

ଏହାର ତାତ୍ପର୍ଯ୍ୟ ହେଉଛି— ନିଷ୍କାମ ସଗୁଣ ଭକ୍ତି ଏବଂ ବ୍ରହ୍ମଜ୍ଞାନ । ଏହି ଦୁଇଟିର ସମନ୍ୱୟରେ ଅନୁଭବ ଲାଗି ଜ୍ଞାନପ୍ରାପ୍ତି ଘଟିଥାଏ, କିନ୍ତୁ ଏହା ଅତ୍ୟନ୍ତ ଦୁର୍ଲ୍ଲଭ ।

## ଅଷ୍ଟମ ସମାସ
## ।। ପ୍ରତୀତି-ବର୍ଣ୍ଣନ ।।

ଯାହାର ପ୍ରତୀତି (ପରିଚୟ) ଜ୍ଞାନ ଥାଏ, ସେ ବୁଦ୍ଧିମାନ । ଯାହାର ଏହି ଜ୍ଞାନ ନାହିଁ ସେ ଦୀନ ହୀନ, ପାଗଳ । ରତ୍ନ ଓ ପଥରର ପ୍ରତୀତି (ପରୀକ୍ଷା) ବିନା ତାକୁ କ୍ରୟ କରିବା ହାନିକାରକ । ଘୋଡ଼ା ଓ ଅସ୍ତ୍ର-ଶସ୍ତ୍ରକୁ ମଧ୍ୟ ପରୀକ୍ଷା କରିନେବା ଉଚିତ । ବୁଣିଲେ ଗଜା ହେବାର ସମ୍ଭାବନା ସମ୍ପର୍କରେ ନିଶ୍ଚିତ ହେବାପରେ ବୁଣିବା ଲାଗି ବିହନ କିଣିବା ଉଚିତ । ପରୀକ୍ଷା ଓ ପରିଚୟ ବ୍ୟତୀତ ଯେକୌଣସି ନିରୂପଣ ମଧ୍ୟ ବ୍ୟର୍ଥ । ପରୀକ୍ଷିତ ଔଷଧକୁ ହିଁ ସେବନ କରିବା ଉଚିତ । ବିନା ପରୀକ୍ଷାରେ ଔଷଧ ପ୍ରୟୋଗ କରିବା ଦ୍ୱାରା ଉପକାର ହେବା ଅପେକ୍ଷା ଅପକାର ହେବାର ସମ୍ଭାବନା ଅଧିକ । ଥରେ ଥରେ ପ୍ରାଣହାନି ଘଟିବାର ଆଶଙ୍କା ଦେଖାଦେଇଥାଏ । ତେଣୁ ଆନୁମାନିକଭାବେ କୌଣସି କାର୍ଯ୍ୟ କରିବା ମୂର୍ଖତା । ଚାଲାକ ବ୍ୟକ୍ତିର ଚାଲାକିକୁ ଭଲଭାବେ ବୁଝିନେବା ଆବଶ୍ୟକ । ଧୋକ୍‌କାବାଜ ଲୋକର କଥା ଓ କାର୍ଯ୍ୟକୁ ଭଲଭାବରେ ନିରୀକ୍ଷଣ କଲେ ତାର ପ୍ରକୃତ ଉଦ୍ଦେଶ୍ୟ ଜାଣିହୋଇଥାଏ ।

ତଥାକଥିତ ଅନାଚାରୀ ସାଧୁ-ସନ୍ନ୍ୟାସୀ ଏବଂ ନୂଆ ନୂଆ ବେଶଧାରୀ ତସ୍କର ପ୍ରତି ସତର୍କ ରହିବା ଉଚିତ । ଦେବାଳିଆ ଶେଠ, ସୌଦାଗରମାନଙ୍କ ବାହ୍ୟାଡମ୍ବରକୁ ଦେଖି ନିରୀହ ଲୋକେ ସେମାନଙ୍କ ଚିକ୍‌ଚାକଣିଆ କଥାରେ

ମୋହିତ ହୋଇ ନିଜର ଧନଦୌଲତ ହରେଇ ବସିଥାଆନ୍ତି । ସେଥିଲାଗି କୁହାଯାଇଛି ଯେ ପରିଚୟ ଓ ପରୀକ୍ଷା ବିନା ଲବ୍‌ଧଜ୍ଞାନ ବ୍ୟର୍ଥ । ଏପରି ଜ୍ଞାନରେ କୌଣସି ସମସ୍ୟାର ସମାଧାନ ହୋଇ ନ ଥାଏ ।

ସାଧାରଣ ନିରୀହ ଲୋକେ ମନ୍ତ୍ର-ତନ୍ତ୍ରରେ ମୋହିତ ହୋଇ ପଡ଼ିଥାଆନ୍ତି । ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ମନ୍ତ୍ରତନ୍ତ୍ରର ଉପଦେଶ ଶୁଣେଇ ଲୋକଙ୍କୁ ପ୍ରଭାବିତ କରନ୍ତି, ଏପରିକି ଲୋକଙ୍କ ପ୍ରାଣ ହରଣ କରନ୍ତି । ଏହାଠୁ ବଳି ଦୁଷ୍କୃତି କିଛି ନାହିଁ । ପ୍ରଭାବିତହେବା ମଧ୍ୟ ଏକ ଦୁର୍ନୀତି, ଦୁଷ୍କର୍ମ । ଯଦି କୌଣସି ଅନାଡ଼ି ବୈଦ୍ୟର ଚିକିତ୍ସାରେ କେହି ମରେ, ସେଥିରେ ଅନାଡ଼ିର ଦୋଷ କ'ଣ ? ଅନାଡ଼ି ବୈଦ୍ୟ କହେ ତାର ମରିବାର ଯୋଗ ଥିଲା ସେ ମଲା । ଅନ୍ୟମାନଙ୍କ ମନରେ ସେମାନେ ବିଶ୍ୱାସ ଜନ୍ମାନ୍ତି ଯେ ମଲା ସିନା, ସେ ପାପମୁକ୍ତ ହୋଇଗଲା, ଜନ୍ମମରଣର ଶୃଙ୍ଖଳରୁ ସେ ମୁକ୍ତ ହୋଇଗଲା, ତାର ପ୍ରକୃତ କଲ୍ୟାଣ ସାଧନ ହେଲା । କିନ୍ତୁ ପ୍ରକୃତରେ ଏହା କ'ଣ କଲ୍ୟାଣ ?

ପରମାତ୍ମା ତଥା ନିଜ ଆତ୍ମାକୁ ଭଲଭାବରେ ଚିହ୍ନିବା, ଆତ୍ମନିବେଦନ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ରଖିବା ଦ୍ୱାରା ହିଁ ମନୁଷ୍ୟର ପ୍ରକୃତ କଲ୍ୟାଣ ସାଧନ ହୋଇଥାଏ । ବ୍ରହ୍ମାଣ୍ଡର କର୍ତ୍ତା କିଏ, ଏହା କ'ଣ ଉତ୍ପାଦନ କରେ, ଉତ୍ପାଦନର ଆବଶ୍ୟକତା କାହିଁକି—ଏସବୁ ପ୍ରଶ୍ନର ସମାଧାନ ହେଲେ ହିଁ ଜ୍ଞାନ ସାର୍ଥକ ହୋଇଥାଏ ।

ମନରେ ସନ୍ଦେହ ରହିଥିଲେ ସମସ୍ତ ପରମାର୍ଥିକ କାର୍ଯ୍ୟ ନିରର୍ଥକ ମନେହୋଇଥାଏ । ପ୍ରଥମେ ଆମେ ସୃଷ୍ଟି ଓ ବ୍ରହ୍ମାଣ୍ଡର କର୍ତ୍ତାଙ୍କୁ ଭଲଭାବରେ ଚିହ୍ନିବା ଉଚିତ ଏବଂ ମାୟାର ଉତ୍ପତ୍ତି କାରଣକୁ ମଧ୍ୟ ଜାଣିବା ଉଚିତ । ଆତ୍ମପରିଚୟ ପରେ ମନରେ ପୁଞ୍ଜିଭୂତ ହୋଇ ରହିଥିବା ନାନା ଅନ୍ଧବିଶ୍ୱାସର ପରମ୍ପରା ମଧ୍ୟ ତୁଟିଯାଏ । ଅନ୍ଧବିଶ୍ୱାସର ପରମ୍ପରା ତ ରହିବ, କିନ୍ତୁ ତାକୁ ପରୀକ୍ଷା କରିବାର ଜ୍ଞାନ ମଧ୍ୟ ହେବା ଆବଶ୍ୟକ । ପରମ୍ପରା ଓ ପ୍ରତୀତିର ସମନ୍ୱୟ ରକ୍ଷା କରିବା ସଙ୍ଗେ ସଙ୍ଗେ ଅନ୍ଧବିଶ୍ୱାସର ନିରାକରଣ ଦିଗରେ ଉଦ୍ୟମ କରାଯିବା ଆବଶ୍ୟକ ।

## ନବମ ସମାସ
## ।। ପୁରୁଷ-ପ୍ରକୃତି ସ୍ପଷ୍ଟୀକରଣ ।।

ଯେପରି ଆକାଶରେ ବାୟୁର ଉତ୍ପତ୍ତି, ସେହିଭଳି ବ୍ରହ୍ମରୁ ମୂଳମାୟାର ଉତ୍ପତ୍ତି । ବାୟୁ-ସ୍ୱରୂପ ମୂଳମାୟାରେ ତିନିଗୁଣ ଓ ପାଞ୍ଚଭୂତ ମିଶି ଅଷ୍ଟଧା ପ୍ରକୃତି ଅତି ସୂକ୍ଷ୍ମ ରୂପରେ ସମାବିଷ୍ଟ । ବରଗଛ ମଞ୍ଜିକୁ ଭାଙ୍ଗି ଦେଖିଲେ ସେଥିରେ ବରଗଛର ବିଶାଳତାକୁ ଦେଖିହୁଏ ନାହିଁ । କିନ୍ତୁ ଏହି ବୃକ୍ଷ ଏହି ମଞ୍ଜିଭିତରେ ହିଁ ସମାହିତ ରହିଥାଏ । ସେହିଭଳି ମୂଳରୂପରେ ଯାହା ହୋଇଥାଏ ତାହା ବ୍ୟକ୍ତଭାବରେ ପ୍ରକଟିତ ହୋଇଥାଏ । ତେଣୁ ବୀଜଭୂତ ଯେ ମୂଳମାୟାର ସ୍ୱରୂପ ତାକୁ ପରିଶୋଧିତ ଭାବେ ଜାଣିବା ଉଚିତ ।

ମୂଳମାୟାର ଦୁଇଟି ବିଭାଗ । ଏହାର ପରିଚୟ ବିବେକଦ୍ୱାରା ହିଁ ସମ୍ଭବ । ନିଶ୍ଚଳତାରେ ଯେଉଁ ଚଞ୍ଚଳସ୍ଥିତି ହୋଇଥାଏ ତାହା ହିଁ ବାୟୁ । ଏହାର ଅନୁଭୂତି ହିଁ ଜଗଜ୍ୟୋତିର ମୂଳସ୍ରୋତ । ପ୍ରାଣୀ ଓ ବାୟୁର ସଂଯୋଗହିଁ ମୂଳମାୟା । ଚେତନା (ଅନୁଭୂତି) ଓ ବାୟୁକୁ ହିଁ ପୁରୁଷ-ପ୍ରକୃତି ତଥା ଶିବଶକ୍ତି କୁହାଯାଇଥାଏ । ବାୟୁସ୍ୱରୂପ ମୂଳମାୟାରେ ଯେଉଁ ଚେତନା ତାହା ହିଁ ପୁରୁଷ । ବାୟୁ ହେଉଛି ଶକ୍ତି, ଚେତନା ହେଉଛି ଇଶ୍ୱର । ପରସ୍ପର ଏକରୂପ ହେବାଦ୍ୱାରା ମୂଳମାୟାକୁ ଅର୍ଦ୍ଧନାରୀନଟେଶ୍ୱର ମଧ କୁହାଯାଇଥାଏ ।

ବାୟୁରେ ଯେଉଁ ଚେତନା ତାହା ହିଁ ଇଶ୍ୱର । ସେଥିରୁ ତ୍ରିଗୁଣର ଉତ୍ପତ୍ତି । ଏହି ତ୍ରିଗୁଣ ମଧ୍ୟରେ ଯାହା ସତ୍ତ୍ୱଗୁଣ ତାହା ହେଉଛି ଶୁଦ୍ଧ ଚେତନା । ଏହାହିଁ ଦେହଧାରୀ ବିଷ୍ଣୁ । ଏହାଙ୍କ ଅଂଶରୁ ସୃଷ୍ଟିର ସଂଚାଳନ ହୋଇଥାଏ । ଗୀତାରେ ମଧ ଏହି କଥା କୁହାଯାଇଛି । ଯିଏ ଏସବୁ ବିଷୟରେ ମୂଳପର୍ଯ୍ୟନ୍ତ ବିଚାର କରିଥାଏ, ସେ ମାୟାରେ ଜଡ଼ିତଥିଲେ ମଧ ଅବଶ୍ୟ ମୁକ୍ତ ହୋଇପାରିବ । ସେହି ଗୋଟିଏ ଚେତନାଶକ୍ତି ସବୁ ପ୍ରାଣୀଙ୍କୁ ସଂଚାଳନ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କ ରକ୍ଷଣାବେକ୍ଷଣ କରିଥାଏ । ଏହାକୁ ହିଁ ଜଗଜ୍ୟୋତି କୁହାଯାଇଥାଏ । ମନୁଷ୍ୟ, ପଶୁ-ପକ୍ଷୀ, କୀଟ-ପତଙ୍ଗ ଆଦି ସମସ୍ତଙ୍କର ଏହା ହେଉଛି ଜୀବନର ଆଧାର । ଚେତନାଶକ୍ତି ଦ୍ୱାରା ହିଁ ଏମାନଙ୍କର ରକ୍ଷା ହୋଇଥାଏ । ଏହାର ପ୍ରଭାବରୁ ହିଁ ଜୀବ ବିପଦ ଦେଖାଦେବାମାତ୍ରେ ଦୌଡ଼ି ପଳାଏ କିମ୍ବା ଲୁଚିଯାଏ । ଏହ

ଚେତନାଶକ୍ତି ସମଗ୍ର ସଂସାରକୁ ରକ୍ଷା କରିଥାଏ । ତେଣୁ ଏହାକୁ ଜଗଜ୍ୟୋତି କୁହାଯାଇଥାଏ । ଏହି ଚେତନାର ଅଭାବରୁ ହିଁ ପ୍ରାଣୀର ମୃତ୍ୟୁ ହୋଇଥାଏ ।

ଯେପରି ଜଳ ବରଫ ପାଲଟି ଅନନ୍ତ ଅଣୁର ରୂପଧାରଣ କରିଥାଏ, ସେହିଭଳି ମୂଳମାୟାର ଏହି ଚେତନା ଫଳରେ ବ୍ରହ୍ମାଣ୍ଡର ବିସ୍ତାର ହୋଇଛି । ଏହି ଚେତନା ହେତୁ ହିଁ ବହୁ ଦେବଦେବୀ, ଭୂତ, ପିଶାଚ ଆଦି ନିଜ ଶକ୍ତିସାମର୍ଥ୍ୟ ଅନୁସାରେ ସୃଷ୍ଟି ବିଚରଣ କରିଥାଆନ୍ତି । ଏମାନଙ୍କୁ କଳ୍ପିତ ବୋଲି ମନେକରିବା ଅନୁଚିତ । ଏମାନେ ବାୟୁରୂପ ଧାରଣ କରି ନିଜ ଇଚ୍ଛାନୁସାରେ ନିଜ ରୂପ ବଦଳାଇଥାଆନ୍ତି । ଅଜ୍ଞାନୀ ମନୁଷ୍ୟ ନିଜ କାମନାବାସନା ହେତୁ ଭ୍ରାନ୍ତ ହୋଇ ପଡ଼ିବାରେ ଏହି ଭୂତ, ପିଶାଚାଦି ସେମାନଙ୍କ କାର୍ଯ୍ୟରେ ନାନା ବାଧା ଦେଇଥାଆନ୍ତି । କିନ୍ତୁ ଜ୍ଞାନୀ ପୁରୁଷଙ୍କର କୌଣସି ବାସନା କିମ୍ବା ସଂକଳ୍ପ ନ ଥିବାରୁ ସେମାନଙ୍କ ଲାଗି ଏମାନେ କୌଣସି ବାଧା ସୃଷ୍ଟି କରିପାରନ୍ତି ନାହିଁ । ତେଣୁ ସମସ୍ତେ ଆତ୍ମଜ୍ଞାନ ଲାଗି ଅଭ୍ୟାସ କରି ସେଥିରେ ଉପକୃତ ହେବା ଆବଶ୍ୟକ ।

ଆତ୍ମଜ୍ଞାନଦ୍ୱାରା ଯେ ସବୁ କର୍ମର ଖଣ୍ଡନ ହୋଇଥାଏ ଏହା ନିଶ୍ଚିତ । ବିନାପ୍ରାପ୍ତିରେ କର୍ମର ବନ୍ଧନ ଛିଣ୍ଡେ ନାହିଁ ଏବଂ ସଦ୍‌ଗୁରୁବିନା ଆତ୍ମଜ୍ଞାନଲାଭ ହୁଏନାହିଁ । ଏହି କଥାକୁ ମନେରଖ । ତେଣୁ ସଦ୍‌ଗୁରୁଙ୍କ ସଦ୍‌ସଂଗଦ୍ୱାରା ଅନ୍ତର୍ଯ୍ୟାମୀତତ୍ତ୍ୱର ପରିଶୋଧନ କରିବା ଆବଶ୍ୟକ । ଅନ୍ତର୍ଯ୍ୟାମୀତତ୍ତ୍ୱର ମୂଳତତ୍ତ୍ୱରେ ବିଲୀନ ହୋଇ ଆମେ ସ୍ୱୟଂ ମୂଳତତ୍ତ୍ୱରୂପ ହୋଇଥାଉ । ମୂଳତତ୍ତ୍ୱର ସ୍ୱରୂପଦ୍ୱାରା ଅନନ୍ୟ ହୋଇଉଠିବା ମନୁଷ୍ୟ ପକ୍ଷରେ ସାଧ । ସାର ଅସାରର ବିଚାର ବିନା ସବୁକିଛି ବ୍ୟର୍ଥ । ତେଣୁ ନିରନ୍ତର ବିଚାର ଚିନ୍ତନ କରିବା ଆବଶ୍ୟକ । ଶ୍ରବଣ, ମନନ ଓ ନିଦିଧ୍ୟାସ ଦ୍ୱାରା କ୍ରମେ କ୍ରମେ ପରିଚିତ ହେଲେ ପରିଶେଷରେ ଆତ୍ମସାକ୍ଷାତ୍‌କାର ହୋଇଥାଏ । ତେଣୁ ସାକ୍ଷାତ୍‌କାର ଲାଗି ଅନ୍ୟ ଉପାୟ ଅନ୍ୱେଷଣର କୌଣସି ଆବଶ୍ୟକତା ନାହିଁ ।

## ଦଶମ ସମାସ
## ।। ଚଳ-ଅଚଳ ନିରୂପଣ ।।

ବ୍ରହ୍ମ ଆକାଶଭଳି ଶୂନ୍ୟ, ବ୍ୟାପକ, ନିର୍ମଳ, ନିଶ୍ଚଳ ଓ ସଦୋଦିତ । ଏହାର ଆଦି ନାହିଁ କି ଅନ୍ତ ନାହିଁ । ଏହାକୁ ହିଁ ପରମାତ୍ମା କୁହାଯାଇ ଥାଏ ।

ଏହାଙ୍କର ଅଗଣିତ ନାମ । ଏହା ଆକାଶଠାରୁ ପାତାଳ ପର୍ଯ୍ୟନ୍ତ ବ୍ୟାପ୍ତ, ସର୍ବବ୍ୟାପୀ ଓ ନିରାଭାସ । ଏହାହିଁ କଳ୍ପାନ୍ତରେ ମଧ୍ୟ ସର୍ବତ୍ର ସଂଚାରିତ ତତ୍ତ୍ୱ । ଏହା ଅନିର୍ବଚନୀୟ ଓ ଅଚଳ । ଏହି ଅଚଳ ତତ୍ତ୍ୱରୁ ଚଞ୍ଚଳତାର ସ୍ଫୂର୍ତ୍ତି ଏବଂ ଏହିଥିରୁ ଅନେକ ତତ୍ତ୍ୱର ଉତ୍ପତ୍ତି । ଏହା ଅଦୃଶ୍ୟ ହେଲେ ମଧ୍ୟ ନିର୍ଦ୍ଦେଶ କରିବା, ଏହାର ଲକ୍ଷଣକୁ ବତେଇବା ଏବଂ ଏହାର ପରିଚୟ ଦେବା ଲାଗି ନାମ ଅନିବାର୍ଯ୍ୟ ।

ମୂଳମାୟା, ମୂଳପୁରୁଷ ଏବଂ ମୂଳପ୍ରକୃତି—ଏସବୁ ନାମ ବ୍ରହ୍ମର ଚଞ୍ଚଳ ପ୍ରେରଣାକୁ ନିର୍ଦ୍ଦେଶ କରିବାଲାଗି ଦିଆଯାଇଚି । କିନ୍ତୁ ଯାହାକୁ ଏହି ନାମସବୁ ଦିଆଯାଇଚି ତାକୁ ଆମ୍ଭେମାନେ ଚିହ୍ନିବା ଉଚିତ । ବିନା ପରିଚୟ (ପ୍ରତୀତି)ରେ ବୃଥା ଗୁଡ଼ାଏ କଥା କହିବାରେ ଲାଭ କ'ଣ ? ପରିଚୟ ଅଭାବରୁ କେବଳ ନାନା ଅନୁମାନ ସୃଷ୍ଟି ହୋଇଥାଏ । ନିଶ୍ଚଳ ଆକାଶରେ ଚଞ୍ଚଳବାୟୁ ବହିଥାଏ, କିନ୍ତୁ ଆକାଶ ଓ ବାୟୁ ଭିନ୍ନ ଭିନ୍ନ । ସେହିଭଳି ନିଶ୍ଚଳ ପରବ୍ରହ୍ମରେ ମାୟାରୂପୀ ଭ୍ରମର ପ୍ରବାହ ଚାଲିଥିଲେ ମଧ୍ୟ ବ୍ରହ୍ମ ଓ ଭ୍ରମ ମଧ୍ୟରେ ଆକାଶପାତାଳ ପ୍ରଭେଦ ।

ମାୟାରୂପୀ ଭ୍ରମର ନିରାକରଣ ଆବଶ୍ୟକ । ଯେପରି ଆକାଶରେ ବାୟୁର ସଂଚାଳନ ହୋଇଥାଏ, ସେହିଭଳି ନିଶ୍ଚଳ ବ୍ରହ୍ମରେ ଭ୍ରମର ସଂଚାଳନ ଦ୍ୱାରା "ଏକ ଅହଂ ବହୁସ୍ୟାମ" (ମୁଁ ଏକ ହେଲେ ମଧ୍ୟ ବହୁରୂପ ଧାରଣ କରିଥାଏ)ର ସ୍ଫୁରଣ ହୋଇଥାଏ । ଏସବୁ ମୂଳପ୍ରକୃତି ଓ ମୂଳମାୟାରୁ ସଂଘଟିତ । "ଅହଂ"ର ସ୍ଫୁରଣରୂପୀ ଚେତନା ହିଁ ବ୍ରହ୍ମାଣ୍ଡର ମହାକାରଣକାୟା । ପିଣ୍ଡରେ ଯେପରି ସ୍ଥୂଳ, ସୂକ୍ଷ୍ମ, କାରଣ ଓ ମହାକାରଣ ଏପରି ଚାରିପ୍ରକାରର ଦେହ ରହିଛି, ସେହିଭଳି ବ୍ରହ୍ମାଣ୍ଡର ବିରାଟ, ହିରଣ୍ୟଗର୍ଭ, ଅବ୍ୟାକୃତ ଓ ସ୍ଥୂଳ ଏହିପରି ଚାରିଦେହ । ଏହାକୁ ଈଶ୍ୱର ତନୁ-ଚତୁଷ୍ଟୟ କୁହାଯାଏ । ଅର୍ଥାତ୍ ଈଶ୍ୱରଙ୍କ ଚାରିଦେହ : ପିଣ୍ଡର ଚାରି ଏବଂ ବ୍ରହ୍ମାଣ୍ଡର ଚାରି—ମୋଟ ଆଠଟି ଦେହ । ଏହି ଆଠଦେହ ମଧ୍ୟରେ ଯାହା ଅଷ୍ଟମଦେହ ତାହା ହିଁ ମୂଳମାୟା । ଆଗରୁ କୁହାଯାଇଚି ଯେ ଅହଂର ସ୍ଫୁରଣରୂପୀ ହେଉଛି ଚେତନା । ଚେତନାହିଁ ମୂଳମାୟା । ଏହାହିଁ ଆଦି ସ୍ଫୁରଣ ।

ମୂଳମାୟାର ପରମେଶ୍ୱରଆଦି ଅନନ୍ତ ନାମ । ଏସବୁ ନାମ କେବଳ ସଙ୍କେତ ମାତ୍ର । ଏହି ମୂଳ ମାୟାକୁ ପରାତ୍ମା, ପରମେଶ୍ୱର, ପରେଶ, ଜ୍ଞାନଧନ,

ଈଶ୍ୱର, ଜଗଦୀଶ, ସତ୍ତାରୂପ, ଜ୍ଞାନରୂପ, ପ୍ରକାଶରୂପ, ଜ୍ୟୋତିରୂପ, କାରଣରୂପ, ଚିଦ୍‌ରୂପ, ଆତ୍ମା, ଅନ୍ତରାତ୍ମା, ଦ୍ରଷ୍ଟା, ସାକ୍ଷୀ, ଜୀବାତ୍ମା, ଶିବାତ୍ମା, ଦେହୀ, କୂଟସ୍ଥ, ହରିହର ବ୍ରହ୍ମା, ଅନନ୍ତପୁରୁଷ ଆଦି ନାମରେ ସଂବୋଧିତ କରାଯାଇଥାଏ । ଇନ୍ଦ୍ର, ଚନ୍ଦ୍ର, ବରୁଣାଦି ଦେବ, ମୁନି, ଋଷି, ଗଣଗନ୍ଧର୍ବ, ବିଦ୍ୟାଧର, ଯକ୍ଷକିନ୍ନର, ନାରଦ ଆଦି ସମସ୍ତଙ୍କର ଅନ୍ତର ହେଉଚି ଏହି ମୂଳମାତ୍ମା । ଅର୍ଥାତ୍ ସମସ୍ତଙ୍କର ଧ୍ୟେୟ ତଥା ଆରାଧ୍ୟ ଏହି ମୂଳମାୟା । ତେଣୁ ମୂଳମାୟାକୁ ସର୍ବାନ୍ତରାତ୍ମା କୁହାଯାଇଥାଏ । ଏହି ଅନ୍ତରାତ୍ମା ହିଁ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ରମଣ୍ଡଳ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଆଦି ସମଗ୍ର ବ୍ରହ୍ମାଣ୍ଡକୁ ସଂଚାଳନ କରିଥାଏ ।

ମୂଳମାୟା ହିଁ ଗୁଣ-ମାୟା ହୋଇ ସତ୍ତ୍ୱ, ରଜ, ତମ ରୂପକ ହରିହର ବ୍ରହ୍ମାଦି ଉତ୍ପନ୍ନ କରି ସକଳ ବ୍ରହ୍ମାଣ୍ଡ-ରଚନାର କାରଣ ହୋଇଥାଏ । ଏହି ମୂଳମାୟାର ସ୍ତ୍ରୀ-ବାଚକ ନାମ ମଧ୍ୟ ଅଗଣିତ, ଯଥା-ଜଗଦୀଶ୍ୱରୀ, ପରମେଶ୍ୱରୀ, ତ୍ରୈଲୋକ୍ୟ-ଜନନୀ, ଅନ୍ତର୍କଳା, ଚେତନକଳା, ଚଞ୍ଚଳା, ଜଗଜ୍ଜ୍ୟୋତି, ଜୀବନକଳା, ପରାପୂରମୟୀ ଶାରଦା, ମତି, ଧୃତି, ଧାରଣା, ମୂଳପ୍ରକୃତି, ଶକ୍ତି, ଜାଗୃତିଜ୍ଞାନମୟୀ, ସୁଖ-ଦୁଃଖଜ୍ଞାନମୟୀ, ଦୀନବତ୍ସଳା, କୃପାମୟୀ, କୋମଳା, ଶାନ୍ତି, କ୍ଷମା, ଦୟା, ଆଧ୍ୟାତ୍ମ-ବିଦ୍ୟାଦାୟିନୀ, ସାଯୁଜ୍ୟଦାୟିନୀ ।

ଗୁଣ ଓ ସୃଷ୍ଟି ରଚନାର ଆଶ୍ରୟରେ ମୂଳମାୟାର ଅନନ୍ତ ନାମ । କିନ୍ତୁ ସମସ୍ତଙ୍କର ସଂଚାଳକ ସର୍ବବ୍ୟାପୀ ଅନ୍ତରାତ୍ମା ଏକ । କୀଟ-ପତଙ୍ଗଠାରୁ ଆରମ୍ଭ କରି ବ୍ରହ୍ମଦେବ ପର୍ଯ୍ୟନ୍ତ ସମସ୍ତଙ୍କର ସମାବେଶ ଘଟିଛି ଅନ୍ତରାତ୍ମାରେ । ଏହାକୁ ହିଁ ଆମେ ଚିହ୍ନିବା କଥା । ଆମେ କେବଳ ସୃଷ୍ଟି-ରଚନାର ଖେଳ ଦେଖୁଚୁ । କିନ୍ତୁ ଏହାର ନିୟନ୍ତାଙ୍କୁ ଆମେ ଦେଖି ପାରୁନା । ଏହା ପ୍ରତ୍ୟୟମାନ ହେଲେ ମଧ୍ୟ ଭାସମାନ ନୁହଁ । ଏହା ଶରୀରୀ ହୋଇଥିଲେ ମଧ୍ୟ କୌଣସି ଗୋଟିଏ ସ୍ଥାନରେ ଆବଦ୍ଧ ନୁହଁ । ଏହା ଏତେ ସୂକ୍ଷ୍ମ ଯେ, ସୂକ୍ଷ୍ମତମ ଆକାଶ ମଧ୍ୟ ଏହିଥିରେ ନିହିତ ରହିଛି । ଏହା ଏତେ ସ୍ଥୂଳ ଯେ ଏଥିରେ ସମୁଦ୍ର, ନଦୀ, ପାହାଡ଼, ପର୍ବତ ଆଦି ପଦାର୍ଥ ମଧ୍ୟ ବ୍ୟାପ୍ତ । ଏହା ସବୁଠାରୁ ମଧ୍ୟ ଚଞ୍ଚଳ । ଏତେ ଚଞ୍ଚଳ ଯେ ଆମେ ଯେଉଁ ଯେଉଁ ଜିନିଷକୁ ଦେଖୁ ସେ ସବୁ ଜିନିଷ ତଦ୍ରୁପ ହୋଇ ପଡ଼ିଥାଏ । ଅନନ୍ତ ରୂପରେ ଏହାକୁ ଚିହ୍ନି ହୋଇଥାଏ । ଏହା ସମସ୍ତଙ୍କ କାନରେ ରହି ଶବ୍ଦକୁ ଶୁଣିଥାଏ,

ନାକରେ ରହି ଗନ୍ଧକୁ ଆଘ୍ରାଣ କରିଥାଏ, ତ୍ୱକ୍ (ଚମଡ଼ା)ରେ ରହି ଶୀତଳତା, ଉଷ୍ଣତା ଏବଂ ସ୍ପର୍ଶକୁ ଅନୁଭବ କରିଥାଏ । ଏହିଭଳି ଏହି ପରବ୍ରହ୍ମ । ଏହା ସବୁଥିରେ ଓତଃପ୍ରୋତଃ ଭାବେ ରହିଥିଲେ ମଧ୍ୟ କାହା ସହିତ ଲିପ୍ତ ନୁହଁ, ଅଲିପ୍ତ । ତାର ଅଗାଧ ଲୀଳାକୁ ସେହି ପରବ୍ରହ୍ମ ହିଁ ଜାଣେ ।

ସେ ପୁରୁଷ ନୁହଁ କି ସ୍ତ୍ରୀ ନୁହଁ । ତାର ବାଲ୍ୟ, ତରୁଣ କିମ୍ବା ବୃଦ୍ଧାବସ୍ଥା ବୋଲି କିଛି ନାହିଁ । ସେ ସବୁ ଦେହର ସଂଚାଳକ ହୋଇ ମଧ୍ୟ ଅକର୍ତ୍ତା । ସବୁ ଭୂତ ବା ପ୍ରାଣୀ କ୍ଷର ଅର୍ଥାତ୍ ନଶ୍ୱର କିନ୍ତୁ ପରବ୍ରହ୍ମ ଅକ୍ଷର ଅର୍ଥାତ୍ ଅବିନାଶୀ । ଗୀତାରେ କୁହାଯାଇଚି—

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥

ଅର୍ଥାତ୍, ସଂସାରରେ କ୍ଷର ଓ ଅକ୍ଷର— ଏଭଳି ଦ୍ୱିପ୍ରକାରର ପୁରୁଷ ରହିଛନ୍ତି । ସେମାନଙ୍କ ମଧ୍ୟରୁ କ୍ଷର ଶବ୍ଦର ଅର୍ଥ ବିନାଶଶୀଳ କାର୍ଯ୍ୟରୂପକ ସର୍ବଭୂତ । କୂଟସ୍ଥ ପୁରୁଷ ହିଁ ଅବିନାଶୀ ଅକ୍ଷର ବୋଲି ଅଭିହିତ ।

ଏପର୍ଯ୍ୟନ୍ତ ଚଞ୍ଚଳ ମୂଳମାୟା ଓ ଅନ୍ତରାତ୍ମାର ବର୍ଣ୍ଣନା କରାଗଲା । ନିଶ୍ଚଳ ପରଂବ୍ରହ୍ମ ଏସବୁର ଊର୍ଦ୍ଧ୍ୱରେ । ଏହା ''ଉତ୍ତମଃ ପୁରୁଷ ସ୍ତ୍ୱନ୍ୟ'' ଅର୍ଥାତ୍ ଏହା ଉତ୍ତମ ପୁରୁଷଠାରୁ ମଧ୍ୟ ଉତ୍ତମ । ଏହା ନିଷ୍ପ୍ରପଞ୍ଚ, ନିଷ୍କଳଙ୍କ, ଚିରଞ୍ଜନ, ନିର୍ବିକାର । ମୁଖ୍ୟ ପରଂବ୍ରହ୍ମ ଓ ପରମାତ୍ମା ଏକ । ଚାରି ଦେହକୁ ନିଃଶେଷ କରି, ଅର୍ଥାତ୍ ଦେହାତୀତ ହୋଇ ପରଂବ୍ରହ୍ମ ସହିତ ଅନନ୍ୟ ହେବା ହିଁ ଭକ୍ତର ପ୍ରକୃତ ଲକ୍ଷଣ । ଅଷ୍ଟଦେହର ନିବାରଣ ହେବାପରେ ଚଞ୍ଚଳ ପରମାତ୍ମାର ଶେଷ ରହିଲା କେଉଁଠି ? ନିର୍ବିକାରରେ ବିକାର ଆସିବ କୁଆଡୁ ? ତେଣୁ ନିଶ୍ଚଳ ପରବ୍ରହ୍ମ ଏବଂ ଚଞ୍ଚଳ ମୂଳମାୟାର ଭିନ୍ନତାକୁ ନିଶ୍ଚିତଭାବେ ଅନୁଭବ କରିବା ଉଚିତ ।

ଚଞ୍ଚଳ ମାତ୍ରେ ନଶ୍ୱର । ତେଣୁ ନିଶ୍ଚଳକୁ ହିଁ ଶାଶ୍ୱତ ବୋଲି ମାନିବା ଉଚିତ । ଅସାର, ଅନିତ୍ୟକୁ ତ୍ୟାଗକରି ସାର, ନିତ୍ୟ, ନିଶ୍ଚଳ ପରବ୍ରହ୍ମର ଆଶ୍ରୟ ନେଇ ତଦ୍‌ରୂପ ହେବା ଲାଗି ଉଦ୍ୟମ କରିବା ଉଚିତ । ଏହା କରିବାଦ୍ୱାରା ଜ୍ଞାନ

ଲୋପ ପାଇ ବିଜ୍ଞାନର ଉଦୟ ହୋଇଥାଏ । ମନର ମଳପଣ ଯାଇ ଉନ୍ମନ ଅବସ୍ଥା ଆସିଥାଏ । ତେଣୁ ତାକୁ ଚଞ୍ଚଳତା ସ୍ପର୍ଶ କରିବ କିପରି ?

କିନ୍ତୁ ଏସବୁ କହିବା କିମ୍ୱା ଶୁଣିବା କଥା ନୁହଁ । ଏ ସଂପର୍କରେ ପ୍ରତ୍ୟକ୍ଷ ଅନୁଭବହେବା ଆବଶ୍ୟକ । ଅନୁଭବ ବିନା ସମାଧାନ ହୋଇ ନପାରେ ।

ସତ୍ୟଠୁ ବଳି ପୁଣ୍ୟ ନାହିଁ । ସତ୍ୟଠୁ ବଳି ପାପ କିଛି ନାହିଁ । ସତ୍ୟ ହେଉଚି ନିଶ୍ଚଳ ବ୍ରହ୍ମସ୍ୱରୂପ । ଅସତ୍ୟ ହେଉଚି ଚଞ୍ଚଳମାୟା । ସତ୍ୟଦ୍ୱାରା ପାପର ନିବାରଣ ହୋଇଥାଏ, ଶେଷରେ ରହେ ନିଶ୍ଚଳ ପୁଣ୍ୟ । ସତ୍ୟ ସହିତ ଅନନ୍ୟ ହେବାଦ୍ୱାରା ମନୁଷ୍ୟ ନାମାତୀତ ହୋଇଉଠେ । ସେତେବେଳେ ପ୍ରତ୍ୟୟ ହୋଇଥାଏ ଯେ ମୁଁ ସ୍ୱୟଂ ସିଦ୍ଧବସ୍ତୁ, ମୋର ଦେହ ସଂପର୍କ ବୋଲି କିଛି ନାହିଁ । ଏହା ସଙ୍ଗେ ସଙ୍ଗେ ପାପର ପାହାଡ଼ ନିମିଷକରେ ଜଳି ଭସ୍ମୀଭୂତ ହୋଇଯାଏ ।

ବ୍ରହ୍ମଜ୍ଞାନଦ୍ୱାରା ଅନେକ ଦୋଷର ପରିମାର୍ଜନ ହୋଇଥାଏ । ତା'ପରେ ମନେହୁଏ ଆଉ କୌଣସି ସାଧନା କରିବା ଅର୍ଥ ବୃଥା ସମୟ ନଷ୍ଟ କରିବା । ଅନେକ ତୀର୍ଥକ୍ଷେତ୍ରକୁ ଯାତ୍ରା କରିବା, ତୀର୍ଥରେ ସ୍ନାନକରିବା, ପୂଜା, ପାଠ, ବ୍ରତ, ଯୋଗ ଆଦି ସାଧନାଠାରୁ ଆତ୍ମଜ୍ଞାନ ସାଧନର ମହିମା କୋଟି କୋଟି ଗୁଣରେ ଅଧିକ । ଯାହାର ଆତ୍ମଜ୍ଞାନଲାଭ ହୋଇଥାଏ, ତାର ପୁଣ୍ୟର ସୀମା ନ ଥାଏ । ତାର ସବୁ ପାପ ଭସ୍ମ ହୋଇଯାଏ । ବେଦଶାସ୍ତ୍ରରେ ସତ୍ୟସ୍ୱରୂପର ଅନନ୍ତ ମହିମାର ବର୍ଣ୍ଣନା କରାଯାଇଛି । ଜ୍ଞାନୀମାତ୍ରେ ଆତ୍ମସ୍ୱରୂପବାନ୍ । ତେଣୁ ତାର ପୁଣ୍ୟସଂପତ୍ତି ଅତୁଟ ରହେ । ଏସବୁ ଅନୁଭୂତିର କଥା । ବିନା ଅନୁଭବ (ପ୍ରତୀତି)ରେ ସବୁ ବୃଥା । ତେଣୁ ଆତ୍ମଦର୍ଶନର ପ୍ରତ୍ୟୟ ବା ଆତ୍ମଲାଭ ଲାଗି ସମସ୍ତେ ଉଦ୍ୟମ କରିବା ଉଚିତ । ଆତ୍ମଦର୍ଶନ ବା ଆତ୍ମାନୁଭବ ବିନା ଦୁଃଖ-ଶୋକରୁ କେହି ତ୍ରାହି ପାଇ ନ ପାରନ୍ତି ।

ଶ୍ରୀ ରଘୁନାଥଜୀଙ୍କ କୃପାରୁ ସମସ୍ତେ ଆତ୍ମପ୍ରତ୍ୟୟ ଲାଭ ପୂର୍ବକ ସଦ୍‌ଜ୍ଞାନ ଲାଭ କରନ୍ତୁ, ଏହା ମୋର ଏକାନ୍ତ ପ୍ରାର୍ଥନା ।



# ଏକାଦଶ ଦଶକ

## ପ୍ରଥମ ସମାସ
## ।। ସିଦ୍ଧାନ୍ତ ବିଚାର ।।

ଆକାଶରୁ ଯେ ବାୟୁ ଉତ୍ପନ୍ନ ହୋଇଥାଏ, ଏ କଥା ସମସ୍ତେ ଅନୁଭବ କରିଥାଆନ୍ତି । ବାୟୁରୁ ଅଗ୍ନି କିପରି ପ୍ରକଟିତ ହୋଇଥାଏ ସମସ୍ତେ ମନ ଦେଇ ଶୁଣନ୍ତୁ ।

ବାୟୁର ଘର୍ଷଣରୁ ଅଗ୍ନିର ଉତ୍ପତ୍ତି ହୋଇଥାଏ । ବାୟୁତତ୍ତ୍ୱ ଦୁଇ ଭାଗରେ ବିଭକ୍ତ । ଗୋଟିଏ ଶୀତଳ, ଅନ୍ୟଟି ଉଷ୍ଣ । ଶୀତଳ ବାୟୁର ଶୀତଳ ତେଜ ଏବଂ ଶୀତଳ ତେଜରୁ ଜଳର ଉତ୍ପତ୍ତି । ଜଳରୁ ବୀଜରୂପୀ ପୃଥିବୀ ଏବଂ ଅନନ୍ତ ବୀଜରୁ ସୃଷ୍ଟିର ଉତ୍ପତ୍ତି ହୋଇଛି । ମୂଳମାୟାର କଳ୍ପନା ହିଁ ସୃଷ୍ଟି ରୂପରେ ପ୍ରକଟିତ । ପ୍ରଥମ କଳ୍ପନା (ଆଦି ସଂକଳ୍ପ) ହିଁ ମୂଳ ଓ ମାୟା । ଏଥିରୁ ତ୍ରିଗୁଣାତ୍ମକ ଗୁଣ ମାୟାର ବିସ୍ତାର । ନିଶ୍ଚଳବ୍ରହ୍ମସ୍ଥିତ ଏହି ମୂଳମାୟା ଚଞ୍ଚଳ କଳ୍ପନାର ହିଁ ରୂପ । ମୂଳମାୟାରେ ପ୍ରଥମରୁ ହିଁ ଅଷ୍ଟଧା ପ୍ରକୃତିର ଅସ୍ତିତ୍ୱ ରହି ଆସିଛି । ସତ୍ତ୍ୱ, ରଜ, ତମ— ଏହି ତିନିଗୁଣ ଏବଂ ପୃଥ୍ୱୀ, ଅପ, ତେଜ, ବାୟୁ ଓ ଆକାଶ—ଏହି ପଞ୍ଚଭୂତର ମିଶ୍ରଣରେ ହିଁ ଅଷ୍ଟଧା ପ୍ରକୃତିର ନିର୍ମାଣ । ମୂଳମାୟାରେ ଏସବୁ କଳ୍ପନା ରୂପରେ ରହିଥାଏ ।

ଯେପରି ବୀଜର ବିସ୍ତାର ସଂଗେ ସଂଗେ ସୂକ୍ଷ୍ମରୁ ସ୍ଥୂଳକୁ ପ୍ରବେଶ କରୁ କରୁ ଜଡ଼ ହିଁ ସୃଷ୍ଟିରେ ପରିଣତ ହୋଇଥାଏ, ସେପରି ମୂଳତଃ କଳ୍ପନା ବା ସଂକଳ୍ପରୁ ମୂଳମାୟାର ଉଦ୍‌ଭବ । ଏହାକୁ ତ୍ରିଗୁଣରୂପରେ ଗୁଣମାୟା ଏବଂ ଜଡ଼ ସୃଷ୍ଟି ରୂପରେ ପରିବର୍ତ୍ତିତ ହେବାପରେ ଅବିଦ୍ୟାମାୟା କୁହାଯାଇଛି । ଏଥିରୁ ଚାରି ଯୋନି (ଜାରଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଦ) ଏବଂ ଚାରିବାଣୀ (ପରା, ପଶ୍ୟନ୍ତି, ମଧ୍ୟମା, ବୈଖାରୀ)ର ବିସ୍ତାର ହୋଇ ଅନନ୍ତଜୀବ ପ୍ରକଟିତ ହୋଇଛି ।

ଇଏତ ସୃଷ୍ଟି ନିର୍ମାଣର କ୍ରମ । ଏବେ ସଂହାର କେଉଁ କ୍ରମରେ ହୋଇଥାଏ ଶୁଣ । ପୂର୍ବ ଦଶକରେ ପ୍ରଳୟ ବର୍ଣ୍ଣନା ବେଳେ ଏହା ସୁବିସ୍ତୃତ ଭାବେ କୁହାଯାଇଛି ।

ପୁଣି ଏହି କଥା ସଂକ୍ଷେପରେ କହୁଛି । ଧାରାବାହିକ ଭାବେ ଶହେ ବର୍ଷଧରି ବର୍ଷା ନ ହେଲେ ସମଗ୍ର ସୃଷ୍ଟି ଶୁଖିଯିବ । ଶାସ୍ତ୍ରମାନଙ୍କରେ ଏହି କଳ୍ପାନ୍ତ ବିଷୟ ଉଲ୍ଲେଖ ରହିଛି । ପରେ ସୂର୍ଯ୍ୟ ବାରକଳାରେ ତାତି ଉଠିବ । ଏହାର ଭୀଷଣ ଉତ୍ତାପରେ ସାରା ସଂସାର ଭସ୍ମୀଭୂତ ହୋଇ ଜଳରେ ବିଲୀନ ହୋଇପଡ଼ିବ । ତା'ପରେ ଜଳ ଅଗ୍ନିରେ, ଅଗ୍ନି ବାୟୁରେ ଏବଂ ବାୟୁ ନିରାକାର ଆକାଶରେ ବିଲୀନ ହୋଇଯିବ । ଏହିଭଳିଭାବେ ସମଗ୍ର ସୃଷ୍ଟିର ସଂହାର ହେବ । ମାୟା ବିଲୁପ୍ତ ହୋଇ ଶେଷରେ ରହିବ କେବଳ ବ୍ରହ୍ମ । ଜୀବ ଶିବ, ପିଣ୍ଡବ୍ରହ୍ମାଣ୍ଡ ଏବଂ ମାୟା ଅବିଦ୍ୟାଆଦି ମୂଳମାୟାରୁ ଉତ୍ପନ୍ନ ସମଗ୍ର ଲୀଳାକୁ ବିବେକଦ୍ୱାରା ଜାଣି ହୋଇଥାଏ । ତେଣୁ ଏହାକୁ ବିବେକ-ପ୍ରଳୟ କୁହାଯାଇଥାଏ । ଏସବୁ ବିବେକୀ ପୁରୁଷ ଜାଣିପାରେ । ମୂର୍ଖ ଏହାକୁ ଜାଣିବ କିପରି ? ସାରା ସୃଷ୍ଟିରେ ଦୁଇଟି ତତ୍ତ୍ୱ ଦେଖାଯାଇଥାଏ । ଗୋଟିଏ ନିଶ୍ଚଳ (ବ୍ରହ୍ମ) ଏବଂ ଏକ ଚଞ୍ଚଳ (ମାୟା) । ସମଗ୍ର ସୃଷ୍ଟିର କର୍ତ୍ତ୍ରୀ ହେଉଛି ମୂଳମାୟା । ଏହାକୁ ଅନ୍ତରାତ୍ମ ମଧ୍ୟ କୁହାଯାଇଥାଏ । ନିଶ୍ଚଳ ବ୍ରହ୍ମ ସହିତ ଚଞ୍ଚଳ ସୃଷ୍ଟିର ସମ୍ବନ୍ଧ ନାହିଁ । ଅନ୍ତରାତ୍ମା ସବୁ ଶରୀରରେ ରହିଥାଏ । ସମଗ୍ର କର୍ତ୍ତୃତ୍ୱ ଏହି ଅନ୍ତରାତ୍ମାର । ଇନ୍ଦ୍ରିୟମାନଙ୍କ ଦ୍ୱାରା ଏହା ଅନନ୍ତ ଶରୀରକୁ ସଂଚାଳନ କରିଥାଏ । କିନ୍ତୁ ଏହା କାର୍ଯ୍ୟ କରୁଥିଲେ ମଧ୍ୟ ଅକର୍ତ୍ତା । ଧନୀ, ନିର୍ଦ୍ଧନୀଠାରୁ ଆରମ୍ଭ କରି ବ୍ରହ୍ମ ପର୍ଯ୍ୟନ୍ତ ଏହା ସବୁ ଦେହର ଚାଳକ । ଏହାକୁ ପରମାତ୍ମା-ସର୍ବକର୍ତ୍ତା ମଧ୍ୟ କୁହାଯାଇଥାଏ । କିନ୍ତୁ ପରିଶେଷରେ ବିବେକ-ପ୍ରଳୟ ହେବାପରେ ଆଉ କିଛି ଶେଷ ରହେନାହିଁ । କୁକୁର, ଘୁଷୁରୀ ଆଦିରେ ମଧ୍ୟ ଏହି ଅନ୍ତରାତ୍ମା ବିଦ୍ୟାମାନ । ସାମାନ୍ୟ ଲୋକ ଦେହକୁ ଦେଖିଥାଏ । କିନ୍ତୁ ବିବେକୀ-ପୁରୁଷ ଦେହର ସଂଚାଳକ ଅନ୍ତରାତ୍ମାଙ୍କୁ ଦେଖିଥାଏ । ଏହା ସବୁଦେହରେ ସମାନ ହୋଇଥିବାରୁ ବିବେକୀ ପଣ୍ଡିତପୁରୁଷ ଏହାର ସମଦର୍ଶନ କରିଥାଏ । ଶ୍ରୀମଦ୍ ଭଗବଦ୍‌ଗୀତାରେ ଭଗବାନ ଏହି କଥା ହିଁ କହିଚନ୍ତି । ଯଥା—

''ବିଦ୍ୟାବିନୟ ସଂପନ୍ନ ବ୍ରାହ୍ମଣେ ଗବି ହସ୍ତିନି ।
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦାର୍ଶିନଃ ।''

ଅର୍ଥାତ୍, ବିଦ୍ୟାବିନୟସଂପନ୍ନ ବ୍ରହ୍ମଜ୍ଞ ଜାଣେ ବ୍ରାହ୍ମଣ ଗାଈ, ହାତୀ, ଶ୍ୱାନ, ଚଣ୍ଡାଳର ଦେହ ଭିନ୍ନ ଭିନ୍ନ ହୋଇଥିଲେ ମଧ୍ୟ ସମସ୍ତଙ୍କ ଅନ୍ତରାତ୍ମା ଏକ ।

ଜ୍ଞାନୀପୁରୁଷ ସବୁ ପ୍ରାଣୀଠାରେ କେବଳ ଏକ ଅନ୍ତରାତ୍ମାଙ୍କୁ ଦେଖିଥାଏ । ଅନନ୍ତ ପ୍ରାଣୀଙ୍କ ସମଗ୍ର କ୍ରିୟାକଳାପ ଏହି ଅନ୍ତରାତ୍ମାଦ୍ୱାରାହିଁ ହୋଇଥାଏ । ତେଣୁ ଏହାକୁ ଜଗଜ୍ଜ୍ୟୋତି କୁହାଯାଇଥାଏ । କାନରେ ଶୁଣିବା, ଚର୍ମଦ୍ୱାରା ଶୀତଉଷ୍ଣ ବୋଧ ହେବା, ଆଖି ଦ୍ୱାରା ବିଭିନ୍ନ ପଦାର୍ଥକୁ ଦେଖିବା, ରସନା (ଜିଭ) ଦ୍ୱାରା ରସର ସ୍ୱାଦ ଗ୍ରହଣ କରିବା, ନାକ ଦ୍ୱାରା ଗନ୍ଧ ଅନୁଭବ କରିବା, କର୍ମେନ୍ଦ୍ରିୟ ଦ୍ୱାରା ବିଭିନ୍ନ ବିଷୟକୁ ଉପଭୋଗ କରିବା ଆଦି ସମସ୍ତ କାର୍ଯ୍ୟ ଏହି ଚଞ୍ଚଳକର୍ତ୍ତା ଅନ୍ତରାତ୍ମାହିଁ କରିଥାଏ । ଏହା ଅତ୍ୟନ୍ତ ସୂକ୍ଷ୍ମ ହୋଇଥିଲେ ମଧ୍ୟ ସ୍ଥୂଳ ଦେହକୁ ରକ୍ଷା କରିଥାଏ । ସୁଖ-ଦୁଃଖ ଅନୁଭବ କରିଥାଏ । ଅନ୍ତରାତ୍ମାକୁ ଅନ୍ତରସାକ୍ଷୀ ମଧ୍ୟ କୁହାଯାଇଥାଏ । ଏହାର ଆହୁରି ଅନେକ ନାମ ଯଥା ଆତ୍ମା, ଅନ୍ତରମ୍ଭା, ବିଶ୍ୱାତ୍ମା, ଚୈତନ୍ୟ, ସର୍ବାତ୍ମା, ସୂକ୍ଷ୍ମାତ୍ମା, ଜୀବ, ଶିବ, ପରମାତ୍ମା, ଦ୍ରଷ୍ଟା, ସାକ୍ଷୀ ଓ ସତ୍ତାରୂପ । ମୂଢ଼ଲୋକେ ପରମାତ୍ମାକୁ ଏକବସ୍ତୁ ବୋଲି କହିଥା'ନ୍ତି । ସବୁଠି ରହିଥିବା ଏହି ଅନ୍ତରାତ୍ମା ଚଞ୍ଚଳ ଅର୍ଥାତ୍ ମାୟା ମଧ୍ୟ । ଚଞ୍ଚଳମାୟା ମାୟାରୂପରେ ବହୁରୂପରେ ପୃଥକ୍ ପୃଥକ୍ ଦେଖାଯାଇଥାଏ । କିନ୍ତୁ ନିଶ୍ଚଳ ପରବ୍ରହ୍ମ ସତ୍ୟ ଏବଂ ଏକ । ଏହା ହିଁ ନିତ୍ୟ-ଅନିତ୍ୟ ବିବେକ ।

ଜୀବ ଚାରିପ୍ରକାରର । ଯିଏ ଜାଣେ ସେ ଜ୍ଞାନୀ । ଯିଏ ନଜାଣେ ସେ ଅଜ୍ଞାନୀ । ଜନ୍ମଗ୍ରହଣ କରୁଥିବା ଜୀବ ବାସନାତ୍ମକ । ପରବ୍ରହ୍ମ ସହିତ ଏକାକାର ହେବା ଜୀବହିଁ ବ୍ରହ୍ମାଂଶ । ଏହି ଚାରିପ୍ରକାରର ଜୀବ ଚଞ୍ଚଳ ମାୟାଦ୍ୱାରା ପ୍ରଣୋଦିତ । ତେଣୁ ନଶ୍ୱର । ନିଶ୍ଚଳ ପରବ୍ରହ୍ମ ଆଦି ଅନ୍ତରେ ମଧ୍ୟ ନିଶ୍ଚଳ ରହିଥାଏ । ଏହା ହିଁ ଶାଶ୍ୱତ ସତ୍ୟ । ପରବ୍ରହ୍ମ ଆଦି ମଧ୍ୟ ଅନ୍ତରେ ଏକ, ସମାନ, ନିର୍ବିକାର, ନିଃସଙ୍ଗ, ନିର୍ଗୁଣ, ନିରାକାର, ନିରଞ୍ଜନ ଓ ନିଷ୍ପ୍ରପଞ୍ଚ । ବିବେକଦ୍ୱାରା ଚଞ୍ଚଳର ଅବସାନ ଘଟିଲେ ଜୀବ ଶିବ ହୋଇଯାଏ । ଏହା ହେଉଚି ଶାସ୍ତ୍ରବଚନ । କିନ୍ତୁ ଯେଉଁଠି ଉପାଧି ନାହିଁ ତା'ର ଅବସାନର ପ୍ରଶ୍ନ ଉଠିବ କିପରି ?

ତେଣୁ ଆତ୍ମତତ୍ତ୍ୱକୁ ଜାଣିବା ହେଉଚି ଜ୍ଞାନ ଏବଂ ଜ୍ଞାନର ବିସ୍ମରଣ ହେଉଚି ବିଜ୍ଞାନ । ଉନ୍ମନାବସ୍ଥାରେ ଯେପରି ମନର କୌଣସି ଅସ୍ତିତ୍ୱ ରହେ ନାହିଁ, ସେହିଭଳି ଜ୍ଞାନକୁ ବିଜ୍ଞାନ କଳନା କରିପାରେ ନାହିଁ । ସ୍ୱରୂପାନୁଭବକୁ ବିଜ୍ଞାନ କଳନା କରିବ କିପରି ? ନିବୃତ୍ତି ବା ବୃତ୍ତିଶୂନ୍ୟତା ବୃତ୍ତିକୁ ଅନୁଭବ କରି ନ ଥାଏ । ସେହିଭଳି ଗୁଣ (ଚଞ୍ଚଳ) ନିର୍ଗୁଣ ବ୍ରହ୍ମକୁ ଜାଣିପାରେ ନାହିଁ ।

ତେଣୁ ସନ୍ଥଜନମାନେ କହିଥାଆନ୍ତି ଯେ ବିବେକଦ୍ୱାରା ଗୁଣାତୀତ ପରବ୍ରହ୍ମଙ୍କୁ ଚିହ୍ନିବା ଉଚିତ । ଶ୍ରବଣଠାରୁ ମନନ ଶ୍ରେଷ୍ଠ । କାରଣ ମନନଦ୍ୱାରା ସାର (ବ୍ରହ୍ମ) ଏବଂ ଅସାର (ଚଞ୍ଚଳମାୟା)ର ବିବେକ ହୋଇଥାଏ ଏବଂ ସାରରୂପ ବ୍ରହ୍ମର ନିଦିଧ୍ୟାସ ଦ୍ୱାରା ସଂଗରହିତ ବସ୍ତୁର ସାକ୍ଷତ୍କାର ହୋଇଥାଏ । ନିର୍ଗୁଣ ସହିତ ଅନନ୍ୟତା ହିଁ ସାଯୁଜ୍ୟମୁକ୍ତି । ଏଠାରେ ଲକ୍ଷ୍ୟାଂଶ (ବସ୍ତୁ) ଏବଂ ବାଚ୍ୟାଂଶ (ଚଞ୍ଚଳମାୟା)ର ବିଚାର ସମାପ୍ତ ହୋଇଥାଏ । ଅଲକ୍ଷ୍ୟ ବସ୍ତୁରେ ଲକ୍ଷ୍ୟ ବିଲୀନ ହୋଇଯାଇଥାଏ । ସିଦ୍ଧାନ୍ତ ମିଳିଗଲେ ପୂର୍ବପକ୍ଷର ସମାପ୍ତି ଘଟେ । ତାପରେ ପ୍ରତ୍ୟକ୍ଷତାଦ୍ୱାରା (ଚକ୍ଷୁଆଦି ଇନ୍ଦ୍ରିୟଦ୍ୱାରା) ଏବଂ ବୁଦ୍ଧିଦ୍ୱାରା ଅଗୋଚର ପରବ୍ରହ୍ମର ଅନୁଭବ ହେବ କିପରି ? ଜୀବ ଯଦି ସ୍ୱୟଂ ଅନୁଭବରୂପ ହୋଇଉଠେ ଅନୁଭବର ଦ୍ୱୈତଭାଷାର ଅସ୍ତିତ୍ୱ ରହିପାରେ କି ? ମାୟିକ ଉପାଧି (ଚଞ୍ଚଳମାୟା) ରହିଥିଲେ ମଧ୍ୟ ସ୍ୱରୂପକାର ହେବା ହିଁ ସହଜ ସମାଧି । ଶ୍ରବଣ, ମନନ, ଚିନ୍ତନ ଓ ନିଦିଧ୍ୟାସର ଅଭ୍ୟାସଦ୍ୱାରା ଏହା ଦୃଢ଼ ଓ ସ୍ଥିର ହୋଇଥାଏ । ମୁମୂର୍ଷୁ ସାଧକ-ମାତ୍ରେ ଏହି ଦୃଷ୍ଟିରେ ପ୍ରଯତ୍ନ କରିବା ଉଚିତ ।

## ଦ୍ୱିତୀୟ ସମାସ
## ।। ଦେବପୂଜା-ବିବେକ ।।

ଏକ (ବ୍ରହ୍ମ) ନିଶ୍ଚଳ ଏବଂ ଏକ (ମାୟା) ଚଞ୍ଚଳ । ସବୁ ଲୋକ ଚଞ୍ଚଳ ମାୟାର ବଶବର୍ତ୍ତୀ । ଯାହା ନିଶ୍ଚିତ ତାହା ସର୍ବଦା ନିଶ୍ଚଳ । ନିଶ୍ଚଳ ବ୍ରହ୍ମରେ ନିଶ୍ଚଳ ଭାବରେ ସ୍ଥିର ରହିଥିବା ବ୍ରହ୍ମସ୍ୱରୂପ ଜ୍ଞାନୀ କୋଟିକ ମଧ୍ୟରେ ଗୋଟିଏ ହୋଇପାରେ । ବହୁଲୋକ ବ୍ରହ୍ମ-ଜ୍ଞାନ ସମ୍ପର୍କରେ ଲମ୍ବାଚୌଡ଼ା କଥା କହିଥାଆନ୍ତି; କିନ୍ତୁ ସମସ୍ତେ ଚଞ୍ଚଳମାୟା ଦ୍ୱାରା ଆବଦ୍ଧ । ଚଞ୍ଚଳମାୟାର କବଳରେ ପଡ଼ିନଥିବା ଲୋକ ବିରଳ କହିଲେ ଚଳେ । ଚଞ୍ଚଳ ମୂଳମାୟାଦ୍ୱାରା ତ୍ରିଗୁଣପଞ୍ଚଭୂତାତ୍ମକ ସୃଷ୍ଟି ଏବଂ ଏଥିରୁ ଅଗଣିତ ଜୀବ ପ୍ରକଟିତ । ଏହି ଜୀବଜଗତର ସମଗ୍ର ଜୀବନ ଏହି ମାୟାରେ ନିର୍ବାହିତ । ତେଣୁ ସମଗ୍ର ବାସନା କାମନା ମାୟାଜନିତ । ସଂସାରର ସମଗ୍ର ଜୀବଜଗତ ଚଞ୍ଚଳମାୟାଗ୍ରସ୍ତ । ତେଣୁ ସବୁକର୍ମ ମାୟାବୀ । ଚଞ୍ଚଳ ମାୟାକୁ ବିବେକଦ୍ୱାରା ତ୍ୟାଗ କରି ନିଶ୍ଚଳ ପରବ୍ରହ୍ମରେ ପ୍ରବେଶ କରିବା ଭଳି ମହାପୁରୁଷ ଦୁର୍ଲଭ । ଚଞ୍ଚଳ ନିଶ୍ଚଳ ହୋଇ ନପାରେ ଏବଂ ନିଶ୍ଚଳ (ବ୍ରହ୍ମ)କୁ

ଚଞ୍ଚଳ (ମାୟା) ଭିତରେ ରହି କେହି କେବେ ଉପଲବ୍ଧି କରି ନପାରେ । ଚଞ୍ଚଳ କ'ଣ, ନିଶ୍ଚଳ କ'ଣ ଏ ସମ୍ପର୍କରେ ବିବେକକୁ ସର୍ବଦା ଜାଗ୍ରତ ରଖିଲେ କିଛି କିଛି ଅନୁଭବ ମିଳିଥାଏ । କିଛି କଛି କହିବାର ତାତ୍ପର୍ଯ୍ୟ ହେଉଚି ସନ୍ଦେହ ଓ ଭ୍ରମଆକାରରେ ମନ ଉପରେ ଚଞ୍ଚଳ ମାୟାର ଯଥେଷ୍ଟ ପ୍ରଭାବ ପଡ଼ିଥାଏ । ତେଣୁ ସମସ୍ତ ପରିଶ୍ରମ ବେକାର ହୁଏ । ନିଶ୍ଚଳ ସମ୍ପର୍କରେ ସନ୍ଦେହ ଓ ଭ୍ରମ ଆଦି ଦୂରୀଭୂତ ହୋଇ ମନୁଷ୍ୟ ଜ୍ଞାନଲାଭ କରିବା କାଠିକର ପାଠ ।

ଯାହାସବୁ ସଗୁଣ ବା ସାକାର ସେ ସବୁ ବିନାଶଶୀଳ । ଏଥିରେ ଛୋଟ ବଡ଼ର ବିଚାର ନିରର୍ଥକ । କାରଣ ସବୁଠି ତ ମାୟାର ବିସ୍ତାର । ଏହି ବ୍ରହ୍ମାଣ୍ଡ ଅଷ୍ଟଧା ପ୍ରକୃତିର ରଚନା ଏବଂ ଏହା ଚିତ୍ରବିଚିତ୍ର ନାନା ରୂପରେ ପ୍ରକଟିତ । ଅନନ୍ତ ବିକାର ହେତୁ ଏଥିରେ ନାନାପ୍ରକାରର ଛୋଟବଡ଼ ଚମତ୍କାର ପ୍ରାଣୀଙ୍କ ନିର୍ମାଣ ହୋଇଛି । କାରଣ ମୂଳମାୟା ବିକାରଗ୍ରସ୍ତ । ଏହା ମୂଳତଃ ସୂକ୍ଷ୍ମ ହୋଇଥିଲେ ମଧ୍ୟ ଏହା ସ୍ଥୂଳ ଭାବରେ ଚାରିଆଡ଼େ ଖେଳି ରହିଛି । ମନୁଷ୍ୟ ଭିତରେ ମଧ୍ୟ ଅଗଣିତ ଦେହର ଉତ୍ପନ୍ନ ହୋଇଛି । ଏହି ଦେହଗୁଡ଼ିକୁ ଅନେକ ଭାଷାରେ ଏବଂ ବହୁନାମରେ ନିର୍ଦ୍ଦେଶ କରାଯାଇଛି । ମନୁଷ୍ୟସମାଜ ଭିତରେ ମଧ୍ୟ ଅନେକ ରୀତି-ନୀତି, ଅନେକ କଳ୍ପନା ଓ ଅନେକ ଆଚାର-ବିଚାର । ଲୋକେ ନିଜ ନିଜ ଇଚ୍ଛାନୁସାରେ ନିଜ ନିଜ ଢଙ୍ଗରେ ଚଳିଥାଆନ୍ତି । ଅଷ୍ଟଧା ପ୍ରକୃତିରୁ ହିଁ ସମସ୍ତେ ଜନ୍ମଲାଭ କରୁଥିଲେ ମଧ୍ୟ ଲୋକଙ୍କ ଆଚାର-ବିଚାର ଭିନ୍ନ ଭିନ୍ନ । କିଏ ବେଦ ସପକ୍ଷରେ ତ କିଏ ବିପକ୍ଷରେ । ଏହିଭଳି ନାନା ମତମତାନ୍ତର ଏବଂ ସ୍ୱଚ୍ଛନ୍ଦ୍ୟ ବିଚାର ରହିଆସିଛି । ଯେତେବେଳେ ଯେଉଁ ବିଚାର-ପ୍ରବାହ ଚାଲେ, ଲୋକେ ସେହି ବିଚାରରେ ଭାସିଥାଆନ୍ତି । ସମସ୍ତଙ୍କର ମତ ଏକ ହୋଇ ନପାରିବାରେ କେହି କାହାକୁ ନିୟନ୍ତ୍ରଣ କରି ପାରେନାହିଁ । ନାନା ମତର ଅହମିକା ମଧ୍ୟ ରହିଛି । ଜଣେ ଜଣକୁ ବଳି ବହୁ ତଥାକଥିତ ଜ୍ଞାନୀ ମଧ୍ୟ ବାହାରି ଥାଆନ୍ତି । ଏମାନଙ୍କ ମଧ୍ୟରୁ ପ୍ରକୃତ ଜ୍ଞାନୀ କିଏ, ଅଜ୍ଞାନୀ କିଏ ବାଛିବ କିପରି ? ସମସ୍ତଙ୍କର ତ ଆଚାର ବିଚାର ପୃଥକ୍ । ପ୍ରାୟ ସମସ୍ତେ ସ୍ୱାର୍ଥପର । ଅଧିକାଂଶ ଲୋକଙ୍କର ନିଜ ଜାତି ତଥା ସଂପ୍ରଦାୟର ଅଭିମାନ ରହିଥାଏ । ନିଜ ବିଶ୍ୱାସ ଓ ମତ ଅନୁଯାୟୀ ନାନା ଦେବଦେବୀଙ୍କର ପୂଜା ଚାଲିଛି । ପୂଜା ପଦ୍ଧତି ମଧ୍ୟ ଅନେକ । କିଏ ଦେବଦେବୀଙ୍କୁ ପୂଜା କରୁଛି ତ କିଏ ଭୂତ, ପିଶାଚଙ୍କୁ ନିଜ ନିଜର ଆରାଧ

ଭାବରେ ପୂଜା କରୁଛି । ପ୍ରକୃତ ପରମାତ୍ମା ପ୍ରତି କାହାର ଧ୍ୟାନ ନାହିଁ । ସାରଅସାରର ବିଚାର ଲୋପପାଇ ନାନା ଦେବଦେବୀ ଓ ଶାସ୍ତ୍ରର ହାଟ ବଜାର ଖୋଲିଛି । ଲୋକେ କାମନାକୁ ନେଇ ବ୍ରତ ଉପାସନା ଆଦି କରିବାରେ ଲାଗିଛନ୍ତି । ସତ୍ୟ-ଅସତ୍ୟର ନିର୍ଣ୍ଣୟ ନ ହେବାରେ ସାରା ମାନବ ସମାଜ ଭ୍ରଷ୍ଟ ହୋଇପଡ଼ିଛି । ଏହି ଲୋକଙ୍କ ଭିତରୁ କିଏ ଜ୍ଞାନୀ ସେମାନଙ୍କ ଆଚାର-ବିଚାରରୁ ସ୍ପଷ୍ଟ ଜଣାପଡ଼ିଥାଏ । ଜ୍ଞାନୀ ମଧ୍ୟ ଲୋକଙ୍କ ଆଚାର ବିଚାରକୁ ସ୍ପଷ୍ଟଭାବେ ଜାଣିପାରନ୍ତି ।

ଲୋକେ କେଉଁ କେଉଁ ଦେବତାକୁ କେଉଁ କେଉଁ ମାର୍ଗରେ ଉପାସନା କରନ୍ତି ସେହିକଥା କହୁଚି ।

ଧାତୁ, ପାଷାଣ କିମ୍ବା ମାଟି ଆଦିରେ ନାନା ପ୍ରକାର ମୂର୍ତ୍ତି ତିଆରି କରି ସେଗୁଡ଼ିକୁ ଭଗବାନ ମନେକରିବା ବହୁଲୋକଙ୍କର ଉପାସନାମାର୍ଗ । ଅନ୍ୟ କେତେକ ଲୋକ ରାମ, କୃଷ୍ଣ ଆଦି ଦେବତାଙ୍କର ଅବତାର ଚରିତ ଶୁଣି ଏହି ଅବତାରମାନଙ୍କର ଜପ-ଧ୍ୟାନ କରିଥାଆନ୍ତି । ଆଉ କେହି କେହି ସମସ୍ତଙ୍କ ଅନ୍ତରାତ୍ମା ଏବଂ ସର୍ବସାକ୍ଷୀଜ୍ଞାନ-ଧନ ପରମାତ୍ମାଙ୍କୁ ନିଜର ଆରାଧ୍ୟ ଭାବରେ ଗ୍ରହଣ କରିଥାଆନ୍ତି । କେହି କେହି ନିର୍ମଳ, ନିତ୍ୟ, ନିଶ୍ଚଳ ପରବ୍ରହ୍ମବସ୍ତୁର ବସ୍ତୁସ୍ୱରୂପ ହୋଇ ଅନନ୍ୟ ଚିନ୍ତନ କରିଥାଆନ୍ତି । ପ୍ରତିମା ପୂଜନ, ଅବତାରୋ-ପାସନା, ଅନ୍ତରାତ୍ମା-ଭଜନ ଏବଂ ନିଶ୍ଚଳ ବ୍ରହ୍ମୋପାସନା—ଏହିଭଳି ଚାରି ପ୍ରକାରର ଭିନ୍ନ ଭିନ୍ନ ଉପାସନା-ମାର୍ଗ ରହିଛି । ସଂସାରରେ ବାସକରୁଥିବା ସବୁଲୋକ ଏହି ଚାରି ଶ୍ରେଣୀରେ ବିଭକ୍ତ । ଏହି ଶ୍ରେଣୀର ଲୋକ ଏକ ପରମାତ୍ମାଙ୍କ ପୂଜା କରୁଛନ୍ତି ବୋଲି ଦାବୀ କରିଥାଆନ୍ତି । ସେମାନଙ୍କ ଦାବୀ ଓ ଭାବ ଯଥାର୍ଥ କି ନୁହଁ ସେହି ପରମାତ୍ମା ଭଗବାନଙ୍କୁ ହିଁ ଜଣା ।

ସେ ଯାହାହେଉ ନା କାହିଁକି ଅଷ୍ଟଧା ପ୍ରକୃତିକୁ ଚିହ୍ନି ପ୍ରକୃତିର ଊର୍ଦ୍ଧ୍ୱରେ ଥିବା ପରମାତ୍ମାଙ୍କୁ ଜାଣିବା ଉଚିତ । ପ୍ରକୃତି ଭିତରେ ରହିଥିବା ଦେବଦେବୀମାନେ ପ୍ରକୃତିର ସ୍ୱଭାବର ପ୍ରତୀକମାତ୍ର । ପ୍ରକୃତିର ଊର୍ଦ୍ଧ୍ୱରେ ରହୁଥିବା ଭାବାତୀତ ପରମାତ୍ମାଙ୍କୁ ଭାବାତୀତ ମହାତ୍ମା ହିଁ ଜାଣେ ଏବଂ ପରମାତ୍ମାଙ୍କ ପରିଚୟ ବିବେକଦ୍ୱାରାହିଁ ହୋଇପାରେ । ଯିଏ ତାକୁ ଭଜନ କରିବ, ତାକୁ ତଦ୍ରୂପ ହେବାକୁ

ପଡ଼ିବ । ନିର୍ମଳ, ନିଶ୍ଚଳକୁ ଭଜନ କରିବା ଲାଗି ନିର୍ମଳ ନିଶ୍ଚଳ ହେବାକୁ ପଡ଼ିବ । ଜ୍ଞାନୀ ସାଧାରଣ ଲୋକଭଳି ବ୍ୟବହାର କଲେ ମଧ୍ୟ ଆନ୍ତରିକ ଭାବରେ ସେ ନିଶ୍ଚଳ ଶାଶ୍ୱତ ବ୍ରହ୍ମସ୍ୱରୂପ ହେବା ଆବଶକ୍ୟ ।

## ତୃତୀୟ ସମାସ
## ।। ଶିକ୍ଷା-ବିବେଚନ ।।

ସମର୍ଥ ବକ୍ତା କହୁଛନ୍ତି—ବହୁ ଜନ୍ମ-ଜନ୍ମାନ୍ତର ପରେ ଏହି ଦେବଦୁର୍ଲ୍ଲଭ ନରଦେହ ଲାଭ ହୋଇଥାଏ । ତେଣୁ ସମସ୍ତେ ନ୍ୟାୟନୀତି ଓ ସଦାଚରଣପୂର୍ବକ ଜୀବନ ନିର୍ବାହ କରିବା ଉଚିତ । ଗୃହସ୍ଥ ଧର୍ମର ନିୟମ ପାଳନ କରିବା ସଂଗେ ସଂଗେ ବିବେକ ପ୍ରତି ଧ୍ୟାନ ରଖିବା ଆବଶ୍ୟକ । ଏହାଦ୍ୱାରା ଇହଲୋକ ଓ ପରଲୋକ ଉଭୟ କ୍ଷେତ୍ରରେ ଉତ୍ତମ ଦଶା ମିଳିବ । ଅତି ବେଶୀହେଲେ ମନୁଷ୍ୟ ଶହେବର୍ଷ ବଂଚିପାରେ । ସେଥିରୁ କେତେବର୍ଷ ଶୈଶବ ଅବସ୍ଥାରେ ଓ କୈଶୋର ଅବସ୍ଥାରେ ଅଜ୍ଞାନରେ (ଖେଳ କୌତୁକରେ) ଯୌବନ ଅବସ୍ଥା ଭୋଗ କରିବା ଯାଏ ବିତେ । ତା'ପରେ ଆସେ ବୃଦ୍ଧାବସ୍ଥା । ଏହି ଅବସ୍ଥାରେ କର୍ମାନୁସାରେ ନାନା ରୋଗ ଦେଖାଦିଏ । ଏ ସମୟତକ ବିତେ ରୋଗ ନିବାରଣ ଚିନ୍ତାରେ । ଭଗବାନଙ୍କ ସଂପର୍କରେ ଚିନ୍ତା କରିବାକୁ ଆଉ ସମୟ କାହିଁ ? ରାଜକୀୟ ତଥା ପ୍ରଶାସନିକ ପରିସ୍ଥିତି ଅଥବା ଦୈବୀ ଦୁର୍ବିପାକ ଯୋଗୁଁ ବହୁ ଦୁଖ-କଷ୍ଟ ସହିତ ସମ୍ମୁଖୀନ ହେବାକୁ ପଡ଼ିଥାଏ । ଦେହର ସେବା ଏବଂ ଉଦର ପୋଷଣ ଲାଗି ଉଦ୍ୟମ କରୁ କରୁ ଜୀବନର ସମୟ ଚାଲିଯାଏ । ପରିବାରରୁ ଜଣକ ପରେ ଜଣେ ମରିଥାଆନ୍ତି । ବାପା, ଜେଜବାପା ମରିଛନ୍ତି ଏକଥା ଜାଣି ମଧ୍ୟ ମନୁଷ୍ୟ ନିଜର ସ୍ୱାର୍ଥ ହାସଲ କରିବା ଏବଂ ଶରୀର ସେବାରେ ଲାଗି ରହିଥାଏ । ଘରେ ନିଆଁ ଲାଗି ଧୂ ଧୂ ହୋଇ ଜଳୁଥିବା ବେଳେ ଯେଉଁ ମଣିଷ ଶୋଇ ରହିଥାଏ, ସେଭଳି ଆତ୍ମଘାତୀ ଲୋକଙ୍କୁ ବୁଝେଇବି କ'ଣ ? ଆରେ ବେଟା ! ପୁଣ୍ୟମାର୍ଗକୁ ତ ଛାଡ଼ିଲୁ, ଗୁଡ଼ାଏ ପାପ ତ ସଂଗ୍ରହ କରିସାରିଲୁଣି । ଯମରାଜଙ୍କ ଦ୍ୱାରା ବହୁ ଯାତନା ତ ସହିବାକୁ ପଡ଼ିବ; ଏବେ ଯେତିକି ସମୟ ଅଛି, ଅନ୍ତତଃ ସେତିକି ସମୟ ବିବେକ ସହିତ ଆଚରଣ କରି ଇହ-ପର-ଲୋକ ସୁଧାରିବା ପାଇଁ ଚେଷ୍ଟା କର ।

ମନୁଷ୍ୟର ପ୍ରଧାନ ଶତ୍ରୁ ହେଉଛି ଆଳସ୍ୟ । ଏହାର କୁଫଳ ସଂଗେ ସଂଗେ ମିଳିଥାଏ । ''ହଁ ପରେ କରିବା'' ବୋଲି ଭାବି ଅଳସୁଆ ଲୋକ ସବୁବେଳେ ଶୋଇରହିଥାଏ, କାରଣ ଆଳସ୍ୟରେ ହିଁ ଜୀବନ ବିତେଇବାରେ ସେ ଆନନ୍ଦ ଲାଭ କରିଥାଏ । ଏହାର ବିପରୀତ ହେଉଚି ଉଦ୍ୟୋଗୀ ଲୋକ । ସେ କାମ କରିବାକୁ ଭଲପାଏ । ବୃଥାରେ ସମୟ କଟାଇବାକୁ ସେ ଚାହେଁନା । କାମ କରିବାରେ ତାର ଆନନ୍ଦ । ପ୍ରଯତ୍ନ ଏବଂ ପୁରୁଷାର୍ଥ ଯୋଗୁଁ ସେ ସୁଖପୂର୍ବକ ଅନ୍ନ, ବସ୍ତ୍ର ଆଦି ଭୋଗ କରିଥାଏ । ଆଳସ୍ୟ ଫଳରେ ମଣିଷ ନିରୁତ୍ସାହୀ ହୋଇପଡ଼େ । ଆଳସ୍ୟ ଫଳରେ କୌଣସି ଉଦ୍ୟମ କରିବାଲାଗି ମନୁଷ୍ୟର ଇଚ୍ଛା ବା ଆଗ୍ରହ ହୁଏ ନାହିଁ । ତା ମୁହଁରେ ସର୍ବଦା ଉଦାସୀନତା ଛାଇ ହୋଇ ରହିଥାଏ । ଆଳସ୍ୟ ତ୍ୟାଗ କଲେ ଲୋକ ବୈଭବ-ସୁଖ ଲାଭ କରେ ଏବଂ ଜୀବନର ଅନେକ ସମସ୍ୟାର ସମାଧାନ ହୋଇଥାଏ ।

ପ୍ରତିଦିନ କେଉଁସବୁ ନିୟମ ପାଳନ କରିବା ଉଚିତ, ସେହିକଥା କହୁଚି । ପ୍ରାତଃ କାଳରୁ ଶଯ୍ୟା ତ୍ୟାଗ କରି ନିୟମପୂର୍ବକ କେତେକ ସ୍ତୋତ୍ର ପାଠକରି ଯଥାଶକ୍ତି ଭଗବାନଙ୍କୁ ଧ୍ୟାନ କରିବା ଉଚିତ । ତା'ପରେ ଦୂରସ୍ଥ ନିର୍ଜନସ୍ଥାନରେ ଶୌଚ, ମୁଖମାର୍ଜନ ଆଦି ନିତ୍ୟକର୍ମ ସାରି ନିର୍ମଳ ଜଳରେ ସ୍ନାନ କରିବ । ତା'ପରେ ସଂଧ୍ୟା, ବୈଶ୍ୱଦେବ ଆଦି ଯଥାବିଧି କରିବ । ଏସବୁ ସାରି ଫଳାହାର କରି ନିଜର ଉଦ୍ୟୋଗ-ଧନ୍ଦାରେ ଲାଗିଯିବା ଉଚିତ ।

ପ୍ରତ୍ୟେକ ମନୁଷ୍ୟ ନିଜ ନିଜର ବ୍ୟବସାୟ ସାବଧାନତା ସହିତ କରିବା ଉଚିତ । ସାବଧାନ ନ ରହିଲେ ଠୋକର ଖାଇବାକୁ ପଡ଼ିଥାଏ । ସତର୍କ ନ ରହିଲେ ମନୁଷ୍ୟ ନାନାପ୍ରକାରର ଭୁଲଭଟକାର ଶିକାର ହୋଇ ଧୋକ୍କା ଖାଇଥାଏ । ତେଣୁ ବାରମ୍ବାର କୁହାଯାଉଛି ଯେ, ମନୁଷ୍ୟ ସର୍ବଦା ସାବଧାନ ବା ସତର୍କ ରହି ଦକ୍ଷତାର ସହିତ ନିଜ ବ୍ୟବସାୟ କରିବା ଉଚିତ । ଏଭଳି ବ୍ୟକ୍ତିଙ୍କୁ ଭୋଜନ କରିବାରେ ମଧ୍ୟ ଆନନ୍ଦ ମିଳିଥାଏ ।

ଭୋଜନପରେ କୌଣସି ସଦ୍‌ଗ୍ରନ୍ଥର ସ୍ୱାଧ୍ୟାୟ ଏବଂ ଜ୍ଞାନ ଚର୍ଚ୍ଚା କରିବା ଉଚିତ । ଏକାନ୍ତରେ ବସି ସଦ୍‌ଗ୍ରନ୍ଥର ପଠନ ଓ ମନନ କରିବା ଉଚିତ । ଏହା କରିବା ଦ୍ୱାରା ମନୁଷ୍ୟ ବୁଦ୍ଧିମାନ ହୋଇପାରିବ, ନଚେତ ମୂର୍ଖତାରେ ହିଁ ତାର

ଜୀବନ ପର୍ଯ୍ୟବସିତ ହେବ । ବୁଦ୍ଧିମାନ୍ ବ୍ୟକ୍ତି ନାନା ସୁଖକୁ ଯଥାର୍ଥ ଭାବରେ ଉପଭୋଗ କରୁଥିବା ବେଳେ ମୂର୍ଖମାତ୍ରେ ଦୀନହୀନ ଅବସ୍ଥାରେ ହିଁ ରହିବ । ମୁହୂର୍ତ୍ତେ ସୁଦ୍ଧା ସମୟ ନଷ୍ଟ ନ କରିବା ଭାଗ୍ୟବାନର ଲକ୍ଷଣ । ତେଣୁ ସର୍ବଦା ଉଦ୍ୟୋଗରେ ନିମଗ୍ନ ରହିବା ଉଚିତ । ପରିଶ୍ରମଦ୍ୱାରା ଧନଧାନ୍ୟ ଲାଭପୂର୍ବକ ଭୋଜନ କରିବା, ଧର୍ମ ଚର୍ଚ୍ଚାରେ ସମୟ ବ୍ୟୟ କରିବା ଅର୍ଥାତ୍ ପ୍ରପଞ୍ଚ ଓ ପରମାର୍ଥ ଉଭୟକୁ ସମୁଚିତଭାବରେ ସାଧନ କରିବା ଭାଗ୍ୟବାନର ଲକ୍ଷଣ । ଏହିଭଳି ଉଭୟ-ଦିଗରେ ଦକ୍ଷ (ପ୍ରପଞ୍ଚ ଓ ପରମାର୍ଥ ସାଧନ) ବ୍ୟକ୍ତି ଦେହ-ବୁଦ୍ଧି-ବିବେକରେ ବିଲୀନ ହୋଇଥିବାରୁ ତା ଚିତ୍ତରେ କେବେହେଲେ ଦୁଃଖ ଜାତ ହୋଇ ନ ଥାଏ । ସେ ଦୁଃଖକୁ ସୁଖ ମଣିଥାଏ । ଯାହା କିଛି ଅଛି ବା ହେଉଛି ସେ ସବୁ ଭଗବାନଙ୍କର—ମନରେ ଏହି ନିଶ୍ଚିତଭାବ ଦୃଢ଼ୀଭୂତ ହେବାରେ ତାର ଅନ୍ତଃକରଣ କେବେହେଲେ ଉଦ୍‌ବିଗ୍ନ ହୋଇପଡ଼େ ନାହିଁ ।

ପ୍ରପଞ୍ଚରୁ ସୁବର୍ଣ୍ଣ ବା ଧନ ଦୌଲତ ଏବଂ ପରମାର୍ଥରୁ ପଞ୍ଚୀକରଣ ଅର୍ଥାତ୍ ପଞ୍ଚଭୂତ ସଂପର୍କରେ ତତ୍ତ୍ୱଜ୍ଞାନ ଲାଭ ହୋଇଥାଏ । ଦୁଇଟିଯାକ ମହତ୍ତ୍ୱପୂର୍ଣ୍ଣ । ଏହି ଦୁଇଟିଯାକ ସାଧନା କରି ''ତତ୍ତ୍ୱମସି''ଆଦି ମହାବାକ୍ୟର ମନନ କରିବାରେ ମନୁଷ୍ୟ ବନ୍ଧନରୁ ମୁକ୍ତ ହୋଇଥାଏ ।

କର୍ମ, ଉପାସନା ଏବଂ ଜ୍ଞାନ-ଏହି ତିନୋଟି ଅଙ୍ଗଦ୍ୱାରା ପରିପୂର୍ଣ୍ଣ ମନୁଷ୍ୟ ହିଁ ପରମ ସମାଧାନ ଲାଭ କରିଥାଏ । ତେଣୁ ଆମ୍ଭେମାନେ ସର୍ବଦା ପରମାର୍ଥ-ପୋଷକ ଗ୍ରନ୍ଥଗୁଡ଼ିକର ପଠନ-ପାଠନ ଓ ସଦାଚାରସଂପନ୍ନ ବ୍ରହ୍ମନିଷ୍ଠ ଜ୍ଞାନୀ ପୁରୁଷର ସତ୍‌ସଙ୍ଗ ଏବଂ ତାଙ୍କର ସଦୁପଦେଶ ଲାଭ କରି ନିଜ ଜୀବନ ସଫଳ ଓ ସାର୍ଥକ କରିବା ଉଚିତ । ଏହା ହିଁ ମନୁଷ୍ୟ ଜୀବନ ଲାଭର ଏକମାତ୍ର ଉଦ୍ଦେଶ୍ୟ । ଅନ୍ୟସବୁ ନିରର୍ଥକ ।

## ଚତୁର୍ଥ ସମାସ
## ।। ବିବେକ-ବର୍ଣ୍ଣନ ।।

ଆକାଶ ଭଳି ବ୍ରହ୍ମର ବିଚାର । ଆକାଶ ଯେପରି ନିରାକାର, ନିର୍ବିକାର, ସେହିଭଳି ବ୍ରହ୍ମ ଅନ୍ତରମ୍ବା ଚଞ୍ଚଳ । ବ୍ରହ୍ମ ଦ୍ରଷ୍ଟ ନୁହଁ ବି ସାକ୍ଷୀ ନୁହଁ । ଏସବୁ ହେଉଚି

ଅନ୍ତରାତ୍ମା । ଏହି ଆତ୍ମଦେବର ସ୍ୱଭାବ ଚଞ୍ଚଳ । ଏହା ସବୁ ଜୀବରେ ରହି ଏମାନଙ୍କ ପାଳନ-ପୋଷଣ କରିଥାଏ । ଅନ୍ତରାତ୍ମା ଚଞ୍ଚଳ । ଏହା ବ୍ୟତୀତ ଆଉ ସବୁ ହେଉଚି ଜଡ଼ । ଏହା ବିନା ଦେହ ମଧ୍ୟ ବ୍ୟର୍ଥ । ଏହି ଅନ୍ତରାତ୍ମାଦ୍ୱାରା ପରମାର୍ଥଜ୍ଞାନ ଲାଭ ହୋଇଥାଏ । ଏହା କର୍ମ, ଉପାସନା ଓ ଜ୍ଞାନ ମାର୍ଗରେହିଁ ଚାଲିଥାଏ । ଏହାଦ୍ୱାରା ପ୍ରବୃତ୍ତି ଆଦି ସବୁ ସାଧନ ସଂପନ୍ନ ହୋଇଥାଏ । ଏହି ଚଞ୍ଚଳ ଅନ୍ତରାତ୍ମା ବିନା ନିଶ୍ଚଳ ବ୍ରହ୍ମର ବୋଧ ହୋଇ ନଥାଏ । କିନ୍ତୁ ଚଞ୍ଚଳ କେବେହେଲେ ନିଶ୍ଚଳ ହୋଇନପାରେ । ଏସବୁ କଥା ବିବେକ-ବିଚାରଦ୍ୱାରା ହିଁ ଜଣାଯାଏ ।

ଚଞ୍ଚଳ ଓ ନିଶ୍ଚଳର ସନ୍ଧିରେ ଅର୍ଥାତ୍ ଯେଉଁଠି ଚଞ୍ଚଳ ଶେଷ ହୋଇ ନିଶ୍ଚଳ ବିଚାର ଆରମ୍ଭ ହୋଇଥାଏ, ସେଠାରେ ବୁଦ୍ଧି କୁଣ୍ଠିତ ହୋଇପଡ଼େ । କର୍ମମାର୍ଗର ବିଧି ଏ ପଟେ । କର୍ମମାର୍ଗ ହେଉଚି ଚଞ୍ଚଳମାୟାର ପ୍ରୟାସ । ଉପାସନା ଆଦି କର୍ମ ସହିତ ସଂପୃକ୍ତ ଦେବତାମାନଙ୍କଠାରୁ ନିଶ୍ଚଳବ୍ରହ୍ମ ଭିନ୍ନ । ଦେବତା ବିକାରୀ, କିନ୍ତୁ ବ୍ରହ୍ମ ନିର୍ବିକାରୀ । ଦୁହିଁଙ୍କୁ ଏକ ମନେକରିବା ମୂର୍ଖତାର ଲକ୍ଷଣ । ଦୁହିଁଙ୍କୁ ଏକାଠି ବିଚାର କରିବାଦ୍ୱାରା ବିଚାରଣା ଲୋପ ପାଇଥାଏ । ପଞ୍ଚୀକରଣ ବା ପଞ୍ଚଭୂତ ସହିତ ମହାବାକ୍ୟକୁ ବାରମ୍ବାର ବିଚାର କରିବା ହିଁ ପରମାର୍ଥର ମୂଳ । ଉତ୍ପତ୍ତି, ସ୍ଥିତି ଓ ଲୟ ଏହି ବିଚାର ଚଞ୍ଚଳ (ମାୟା) ତତ୍ତ୍ୱର; ନିଶ୍ଚଳ ବ୍ରହ୍ମର ନୁହଁ । ଏହି ସାର-ଅସାର ବିଚାର ପ୍ରତି ଆମେ ସର୍ବଦା ଧ୍ୟାନ ରଖିବା ଆବଶ୍ୟକ । ସାର ଓ ଅସାର ଏ ଦୁଇଟିଯାକ ଏକ ବୋଲି ଯଦି ମାନିନେଉ ତାହାହେଲେ ବିବେକ ରହିଲା କେଉଁଠି ? ଯିଏ ପାପୀ ଓ ଅଜ୍ଞାନୀ, ତାର ବିବେକ ଆସିବ କୁଆଡୁ ? ସେହିଭଳି ଯିଏ ବିବେକୀ ତାର ପାପ ନଥାଏ କି ଅଜ୍ଞାନ ନଥାଏ । ଯିଏ ଏକ ଥାଇ ଅନେକ ହୋଇଛି, ଯିଏ ସୃଷ୍ଟିରୂପରେ ବିସ୍ତୃତ, ଏହି ବିକାରସଂପନ୍ନ ଅନ୍ତରାତ୍ମା ଯେ ନିଶ୍ଚଳ ପରବ୍ରହ୍ମ ନୁହଁ, ଏକଥା ସୁସ୍ପଷ୍ଟ । ଏହି ବିଚାର ବିବେକୀଜ୍ଞାନୀ ଦ୍ୱାରାହିଁ ସମ୍ଭବ । ଅଜ୍ଞାନୀ ଶାଶ୍ୱତ କ'ଣ ନଶ୍ୱର ଅଶାଶ୍ୱତ ଜାଣିପାରେନାହିଁ ।

ଉତ୍ପତ୍ତି, ସ୍ଥିତି ଓ ଲୟ ଏସବୁ କେବଳ ନଶ୍ୱରବସ୍ତୁ ଲାଗି । ଏହା ଅନୁଭବସିଦ୍ଧ ସତ୍ୟ । ସଂସାରରେ ଜଣେ ସୁଖୀ ତ ଜଣେ ଦୁଃଖୀ । ଜଣେ ଜଣକୁ

ଖୁଆଇବା ଏବଂ ଦଣ୍ଡିବା ଲାଗି ବସିରହିଛି । ଯାହାର ନ୍ୟାୟ ନୀତିପ୍ରତି ଖାତିର ନାହିଁ ସେଭଳି ବ୍ୟକ୍ତି ମଧ ବ୍ରହ୍ମଜ୍ଞାନର କଥା ବଖାଣିଥାଆନ୍ତି; କିନ୍ତୁ ସେମାନଙ୍କ କଥାରେ କ'ଣ ବା ସାରଥାଏ ? ଏସବୁ ହେଉଚି ପାଠୁଆ-ମୂର୍ଖର ଲକ୍ଷଣ । ତେଣୁ ବିବେକପୂର୍ବକ ଅସାରବସ୍ତୁକୁ ତ୍ୟାଗକରି ସାରବସ୍ତୁ ଅର୍ଥାତ୍ ଶାଶ୍ୱତ ବ୍ରହ୍ମକୁ ଅଙ୍ଗୀକାର କରିବା ଉଚିତ । ଉଚିତ ଅନୁଚିତକୁ ବିଶ୍ଳେଷଣ କରିବାହିଁ ଜ୍ଞାନ । ସଂସାରରୂପୀ ହାଟକୁ ଆସି ବିବେକୀପୁରୁଷ ଶାଶ୍ୱତ ଲାଭ ଦ୍ୱାରା ଅମରପଦ ପାଇଥାଏ । ମୂଢ଼ ଅଭାଗୀ (ସାର-ଅସାର ବିଚାରହୀନ) ଲୋକ ମୂଳଧନ, ଅର୍ଥାତ୍ ନିଜ ମୂଳଧନକୁ ହରେଇ ଦେବାଳିଆ ହୋଇପଡ଼ିଥାଏ । ତେଣୁ ସୁଜ୍ଞ ଲୋକେ ସାର ଅସାରକୁ ଯଥୋଚିତ ଭାବେ ବିଚାର କରିବା ଉଚିତ । ବିବେକବିନା ସବୁ ବ୍ୟର୍ଥ । ତେଣୁ ବିବେକର ଜାଗରଣ ଲାଗି ନିତ୍ୟ ଶ୍ରବଣ ମନନ କରିବା ଉଚିତ ।

## ପଞ୍ଚମ ସମାସ
## ।। ରାଜନୀତି ବର୍ଣ୍ଣନ ।।

ବକ୍ତା କହୁଛନ୍ତି— ପ୍ରତିଦିନ ନିୟମପୂର୍ବକ ନିୟମିତଭାବେ ସ୍ୱଧର୍ମ ପାଳନ କରିବା ଉଚିତ । ନିଜ ଆରାଧ ଭଗବାନଙ୍କୁ ଧ୍ୟାନ କରିବା ଏବଂ ତତ୍ତ୍ୱନିରୂପଣ ସମ୍ପର୍କରେ ବାରମ୍ବାର ମନନ କରିବା ଉଚିତ । ମୁଁ ମଧ ଏହିଭଳି କରି ଆସିଛି । ସବୁ ବିଷୟକୁ ମତେ ବାରମ୍ବାର କହିବାକୁ ପଡୁଚି । କାରଣ ଶ୍ରୋତାମାନଙ୍କ ମତି ଅତି ଚଞ୍ଚଳ । କାଲି ଯାହା କୁହାଯାଇଥାଏ ତାକୁ ଆଜି ସେମାନେ ପାସୋରି ପକାନ୍ତି । ଯାହାସବୁ କୁହାଯାଉଚି ସେ ସବୁ ତାତ୍ତ୍ୱିକ ବିଷୟ ହୋଇଥିବାରୁ ଏବଂ ଶ୍ରୋତାମାନେ ଏସବୁପ୍ରତି ବିମୁଖ ହୋଇପଡୁଥିବା ଲକ୍ଷ୍ୟକରି ମତେ ପୁଣି ସମସ୍ତଙ୍କୁ ସାବଧାନ କରିଦେବାକୁ ପଡୁଛି ।

ତେଣୁ ଶ୍ରୋତାମାନଙ୍କୁ କହୁଛି— ନିଜ ଧର୍ମମତରେ ଅଟଳ ରହିବା ଉଚିତ ଏବଂ ତୁମ ପ୍ରତି ଅନ୍ୟ ଲୋକର ଯେପରି ସଦ୍‌ଭାବ ବଢ଼ିବ ସେଥିଲାଗି ଉଦ୍ୟମ କରିବା ଉଚତ । ଏଥିଲାଗି ହରିକଥା ନିରୂପଣ ହେଉଛି ମୁଖ୍ୟ ଉପାୟ । ଦ୍ୱିତୀୟ ଉପାୟ ହେଉଛି ରାଜକାରଣ (ରାଜନୀତି) । ତୃତୀୟରେ ସର୍ବତ୍ର ସର୍ବଦା

ସାବଧାନତା ଅବଲମ୍ବନ । ଚତୁର୍ଥ ଉପାୟ ହେଉଛି ଉଦ୍ୟମ କରିବା । ଏହି ଚାରୋଟିଯାକ ଉପାୟବିନା ଲୋକକଲ୍ୟାଣର ମାର୍ଗ ଉପଲବ୍ଧି କରାଯାଇ-ପାରେ ନାହିଁ । ଏହାବ୍ୟତୀତ ଯେଉଁମାନେ ଲୋକମଙ୍ଗଳ କାର୍ଯ୍ୟ କରିବାରେ ଆଗ୍ରହୀ, ସେହିଭଳି ସଜ୍ଜନମାନଙ୍କ ପକ୍ଷରେ ଆଉ କୋଡ଼ୋଟି ଗୁଣ ସମ୍ପାଦନ କରିବା ଆବଶ୍ୟକ । ସଂସାରରେ ବହୁଲୋକ ଊଣାଅଧିକେ ଛୋଟକାଟିଆ ଅପରାଧ ବା ଦୋଷ କରିଥା'ନ୍ତି । ଏହିସବୁ ଦୋଷକୁ ଧରି ନବସି କ୍ଷମା କରିବା ଉଚିତ । କୌଣସି ବିଷୟ ପ୍ରତି ଆସକ୍ତ ନ ହୋଇ ଅନ୍ୟର ମନୋଭାବ ସଠିକ ଭାବରେ ଜାଣିବାଲାଗି ଉଦ୍ୟମ କରିବା ଉଚିତ । ନ୍ୟାୟନୀତି-ପଥରେ ଚାଲି ଅନ୍ୟମାନଙ୍କ ଲାଗି ନିଜକୁ ଏକ ଦୃଷ୍ଟାନ୍ତରେ ପରିଣତ କରିବା ଆବଶ୍ୟକ । ତାହା ଫଳରେ ନିଜର ଭଲ ଗୁଣକୁ ଦେଖି ଅନ୍ୟମାନେ ଆକୃଷ୍ଟ ହୋଇପାରିବେ । ସମସ୍ତଙ୍କୁ ବୋଧାମୃତ ପାନ କରାଇ ନିଜର ଗୃହସ୍ଥାଶ୍ରମକୁ ମଧ ଯଥାଯୋଗ୍ୟ ପାଳନ କରିବା ଉଚିତ । ଗୃହସ୍ଥାଶ୍ରମରେ ଅର୍ଥାତ୍ ସାଂସାରିକ ଜୀବନ ଯାପନ କରିବାରେ ବହୁ କଠିନ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଧୈର୍ଯ୍ୟର ସହିତ ଏହି ସମସ୍ୟା ଗୁଡ଼ିକର ସମ୍ମୁଖୀନ ହୁଅ; କିନ୍ତୁ କୌଣସି ବିଷୟ ପ୍ରତି ଅତି ଘନିଷ୍ଠ ହୋଇପଡ଼ ନାହିଁ । ବାହାରେ ନିଜ ପ୍ରବୃତ୍ତିର ପରିପ୍ରକାଶ କଲେ ମଧ ଅନ୍ତରଭିତରେ ସେହି ପ୍ରବୃତ୍ତିଗୁଡ଼ିକଠାରୁ ଅଲିପ୍ତ ରହିବା ଉଚିତ ।

ବାଦବିବାଦ ବା ତର୍କବିତର୍କ ଚାଲିଥିଲା ବେଳେ ନିଜକୁ ସ୍ୱଳ୍ପଜ୍ଞ ବୋଲି ମାନିନେବା ଉଚିତ । ତାହାହେଲେ ବିତଣ୍ଡା ବଢ଼ି ବଢ଼ି କଟୁତା ପ୍ରକାଶପାଇବ ନାହିଁ ଏବଂ ବିବାଦ ସଦ୍‌ଭାବର ସହିତ ଶେଷହେବ । କାହାର ଦୋଷ ଦେଖିଲେ ମଧ ଖୋଲାଖୋଲି ଆଲୋଚନା କର ନାହିଁ । ଯଦି ଆଲୋଚନା କରିବା ନିତାନ୍ତ ଆବଶ୍ୟକ ହୁଏ, ତାହାହେଲେ ତାକୁ ସଂକ୍ଷେପରେ ସାରିଦେବା ଉଚିତ । ଦୁର୍ଜନ ଲୋକଙ୍କପ୍ରତି ମଧ ଦୟାଭାବ ପୋଷଣ କରି ତାକୁ ମୁକ୍ତ କରିଦେବା ଉଚିତ । ମନରେ ସବୁବେଳେ ନିରପେକ୍ଷ ଦୃଷ୍ଟିକୋଣ ପୋଷଣ କରିବା ଆବଶ୍ୟକ । କୌଣସି ଖରାପ କାର୍ଯ୍ୟ ପ୍ରତି ଅଯଥା ଆଗ୍ରହ ପ୍ରକାଶ କରିବା ଅନୁଚିତ । କୁପ୍ରସଙ୍ଗରୁ ରକ୍ଷା ପାଇବା ଲାଗି ନାନା ଉପାୟ ସ୍ଥିର କରିବା ଆବଶ୍ୟକ । ଅନେକ ମହତ୍ କାର୍ଯ୍ୟ କରିବା ଅସମ୍ଭବ ମନେହୋଇଥାଏ । କିନ୍ତୁ ବୁଝିବା ଉଚିତ୍ ଯେ, କୌଣସି ମହତ୍ କାର୍ଯ୍ୟ ଅସମ୍ଭବ ନୁହେଁ । ଏଥିପାଇଁ ବହୁ ଉଦ୍ୟମ କରି ତାହାକୁ

ସଫଳ କରିବା ଆବଶ୍ୟକ । ହୁଏତ ସତ୍ସଙ୍ଗ-ସମାରୋହ ବା ସଭାସମିତି ଆଦି ତୁମର ଅନୁକୂଳ ବା ତୁମର ମନଲାଖି ହୋଇ ନପାରେ, ତାହା ବୋଲି ସେଗୁଡ଼ିକୁ ଭାଙ୍ଗିବାଲାଗି ଉଦ୍ୟମ କରିବା ଅନୁଚିତ । କାରଣ ହୁଏତ ଅନ୍ୟମାନଙ୍କ ପକ୍ଷରେ ଏହା ଅନୁକୂଳ ହୋଇପାରେ ।

ସର୍ବଦା ଅନ୍ୟର କଲ୍ୟାଣ ଚିନ୍ତା କରିବା ଉଚିତ । ବହୁମତକୁ ଆଦର କରିବା ଉଚିତ । ଯାହା ବହୁତ ଲୋକ ଚାହୁଁଛନ୍ତି, ହୁଏତ ତୁମେ ତାକୁ ଚାହିଁ ନପାର । ସେଥିଲାଗି ତୁମକୁ କେହି ବାଧ କରି ନ ପାରେ । ତେଣୁ ବହୁମତ ସହ ଯଦି ତୁମେ ଏକମତ ନହୁଅ ତାହାହେଲେ ସେଠାରୁ ତୁମେ ଦୂରକୁ ଚାଲିଯିବା ଉଚିତ; ଅର୍ଥାତ୍ ନିଜେ ହଟିଯିବା ଆବଶ୍ୟକ ।

ଅନ୍ୟର ଦୁଃଖ ପ୍ରତି ସମ୍ବେଦନଶୀଳ, ସହାନୁଭୂତିଶୀଳ ତଥା ସହଭାଗୀ ହେବା ଉଚିତ । ଅଧ୍ୟୟନ, ମନନ ଓ ଚିନ୍ତନ ଦ୍ୱାରା ଆତ୍ମଜ୍ଞାନ ବିଚାରକୁ ସର୍ବଦା ଜାଗ୍ରତ ରଖିବା ଏବଂ ପରୋପକାର ଲାଗି ସର୍ବଦା ତତ୍ପର ହେବା ଉଚିତ । ନିଜ ମନକୁ ଶାନ୍ତ ଓ ସ୍ଥିର ରଖି ଅନ୍ୟକୁ ଶାନ୍ତିପ୍ରଦାନ କରିବା ଲାଗି ଉଦ୍ୟମ କରିବା ଆବଶ୍ୟକ । ନିଜେ କୌଣସି ଖରାପ କାମ ନକରି ଅନ୍ୟକୁ ମଧ୍ୟ କୌଣସି ଖରାପ କାମ ନକରିବାକୁ ପରାମର୍ଶ ଦେବା ଉଚିତ । ନିଜେ ସତ୍କର୍ମ ଆଚରଣ କରିବା ଉଚିତ । ଅନ୍ୟର ଦୁଃଖରେ ଦୁଃଖୀ ନହେଲେ ଲୋକସଂଗ୍ରହ କାର୍ଯ୍ୟ କରାଯାଇନପାରେ । ରାଜନୀତିରେ ଭାଗନିଅ, କିନ୍ତୁ ଅନ୍ୟକୁ ରାଜନୀତି ଶିକ୍ଷା ଦିଅ ନାହିଁ । ଅନ୍ୟକୁ ଦୁଃଖ ଦେବାଲାଗି ଇଚ୍ଛା ପ୍ରକାଶ କର ନାହିଁ । ଲୋକଙ୍କ ମନକୁ ଭଲଭାବେ ପରୀକ୍ଷା କରି ସେମାନଙ୍କୁ ଆପଣାର କରିନେବା ଲାଗି ସର୍ବଦା ଉଦ୍ୟମ କର । କଣ୍ଟାବାଡ଼ରେ ଲୁଗା ପକେଇ କଳିକଜିଆ ଲଗେଇବାଭଳି ତାମସ ପ୍ରକୃତିର ଲୋକଙ୍କଠାରୁ ସବୁବେଳେ ଦୂରରେ ରହିବାକୁ ଚେଷ୍ଟା କର । ହୀନ, ନୀଚମନୋବୃତ୍ତିର ଲୋକମାନଙ୍କ ସହିତ କଥାବାର୍ତ୍ତା କର ନାହିଁ । ସେଭଳି ଲୋକକୁ ଦେଖିବାମାତ୍ରେ ସେ ସ୍ଥାନ ପରିତ୍ୟାଗ କର ।

ରାଜନୀତି ଉପଯୋଗୀ ଏହିଭଳି ଅନେକ କଥା କୁହାଯାଇପାରେ । କିନ୍ତୁ କେତେ କହିବି ? ଯାହାର ମନ ଶାନ୍ତ ସେ କେବଳ ରାଜନୀତିକୁ ଠିକ୍ ଭାବରେ ଚଳେଇପାରେ । ଯିଏ ପ୍ରଗତିଶୀଳ ଅର୍ଥାତ୍ ଯେ ସବୁବେଳେ ଆଗେଇଯିବା ପାଇଁ

ଚେଷ୍ଟା କରେ ତାକୁ ଉତ୍ସାହିତ କରିବା ଆବଶ୍ୟକ । କିନ୍ତୁ ଯେଉଁମାନେ କଳହ ଏବଂ ବିରୋଧ କରିବା ପାଇଁ ତତ୍ପର ସେମାନଙ୍କୁ ନୀଚ ବୋଲି ପ୍ରତିପାଦିତ କରିବା ଉଚିତ । ଯିଏ ରାଜନୀତିରେ ପୋଖତ ଖେଳାଳୀ ସେ କାହାର କାରସାଦିରେ ପଡ଼େ ନାହିଁ । ସେ ସର୍ବଦା ନିଜର ପ୍ରତିଷ୍ଠାକୁ ଅକ୍ଷୁଣ୍ଣ ରଖିଥାଏ । ସେହିଭଳି ଅଭିଜ୍ଞ ରାଜନୀତିଜ୍ଞ କୌଣସି କ୍ଷମତା, ଧନସମ୍ପଦ କିମ୍ବା ସ୍ୱାର୍ଥକୁ ବଡ଼ ମନେକରିନଥାଏ । ସେ ସର୍ବଦା ଯଥାସମ୍ଭବ ସମସ୍ତଙ୍କୁ ସନ୍ତୁଷ୍ଟ ରଖିବାପାଇଁ ଉଦ୍ୟମ କରିଥାଏ । ଯେ ନ୍ୟାୟ ନୀତିକୁ ସ୍ୱୀକାର କରେ ନାହିଁ ସେ ତାହାଠାରୁ ଦୂରରେ ରହିବାପାଇଁ ପସନ୍ଦ କରିଥାଏ ।

ଶ୍ରୋତାଗଣ ! ଆପଣମାନେ ରାଜନୀତି କଥା ଜାଣିବାକୁ ଚାହିଁବାରୁ ମୁଁ ସଂକ୍ଷେପରେ ବୁଝେଇଲି । ଯଦି କିଛି ତ୍ରୁଟିଥାଏ କ୍ଷମା କରିବେ ।

## ଷଷ୍ଠ ସମାସ
## ॥ ମହାନୁଭବ ଲକ୍ଷଣ ॥

ଏବେ ମହାନୁଭବର ଲକ୍ଷଣ ଶୁଣ । ଲେଖାଲେଖି କରୁଥିବା ବେଳେ ମନକୁ ସ୍ଥିର ଶାନ୍ତ ରଖିବା ସଙ୍ଗେ ସଙ୍ଗେ ଅକ୍ଷରଗୁଡ଼ିକୁ ଗୋଲ ଗୋଲ ଏବଂ ସ୍ପଷ୍ଟଭାବରେ ଲେଖିବା ଉଚିତ । ଲେଖିବା ପରେ ଲେଖା ଗୁଡ଼ିକୁ ପଢ଼ି ଭୁଲଥିଲେ ସଂଶୋଧନ କରିନେବା ପରେ, ପୁଣିଥରେ ପଢ଼ି ନେବା ଉଚିତ । ଅକ୍ଷରଗୁଡ଼ିକ ସୁନ୍ଦର, ସୁବାଚ୍ୟ, ସମାନ ଓ ସିଧା ହେବା ଉଚିତ । ଲେଖିବା ଶୈଳୀ ମଧ୍ୟ ଆକର୍ଷଣୀୟ ହେବା ଉଚିତ । ନାନା କଥା ପ୍ରସଙ୍ଗର ବର୍ଣ୍ଣନା କଲାବେଳେ ସେଥିରେ ଚତୁରତାପୂର୍ବକ ବିଭିନ୍ନ ଭାବର ସୁଚିତ୍ରଣ କରାଯିବା ଆବଶ୍ୟକ ।

ପରମାର୍ଥ ବିବେଚନ, ସତର୍କ ରାଜନୀତି ଓ ଶୁଦ୍ଧ ବ୍ୟବହାର ଆଦି ସଦ୍‌ଗୁଣ ମହାନୁଭବଦ୍ୱାରା ହେବା ଉଚିତ । ସେଥିଲାଗି ଅନ୍ୟ ସହିତ ପରାମର୍ଶ କରାଯିବା ଉଚିତ । ନିଜର ବିଚାରକୁ ଅନ୍ୟ ଆଗରେ ସ୍ପଷ୍ଟଭାବରେ ଉପସ୍ଥାପିତ କରାଯିବା ଆବଶ୍ୟକ ଏବଂ ସବୁ ବିଷୟକୁ ଭଲଭାବରେ ବିଶ୍ଳେଷଣ କରାଯିବା ଉଚିତ । ସମସ୍ତଙ୍କ ମନରୁ ଯେପରି ସଂଦେହମୋଚନ ହୋଇପାରିବ ସେହିଭଳି କାର୍ଯ୍ୟ କରିବା ଆବଶ୍ୟକ । ଦୂରଦର୍ଶୀ ଅର୍ଥାତ୍ ଯିଏ ଭବିଷ୍ୟତର ସାମାନ୍ୟ

ଘଟଣାଦି ସମ୍ପର୍କରେ ବିଚାର କରିଥାଏ ସେ ପ୍ରକୃତ ବୁଦ୍ଧିମାନ ତଥା ମହାନୁଭବ ହୋଇପାରିଥାଏ ।

ପ୍ରକୃତ ମହାନୁଭବ ବ୍ୟକ୍ତି ନିଜେ ଜ୍ଞାନଲାଭ କରି ଅନ୍ୟମାନଙ୍କୁ ମଧ୍ୟ ଜ୍ଞାନ ବିତରଣ କରିଥାଏ । ସେ ବହୁ ବିପନ୍ନ ଲୋକଙ୍କ ଦୁଃଖକଷ୍ଟ ନିବାରଣ କରିଥାଏ । ଭାଷଣ ଦେବାରେ ତାର ଯଥେଷ୍ଟ ପଟୁତା ରହିଥାଏ । ସଙ୍ଗେ ସଙ୍ଗେ ତା'ଠାରେ ଭକ୍ତି, ଜ୍ଞାନ, ବୈରାଗ୍ୟର ଉତ୍କୃଷ୍ଟ ସମନ୍ୱୟ ଘଟିଥାଏ । ସେ ଉଦ୍ୟମଶୀଳ ଓ ଧୈର୍ଯ୍ୟବାନ୍ ଏବଂ ଅନ୍ତରଭିତରେ ସମସ୍ତ ପ୍ରକାରର କାମନା ଓ ଉପାଧିଠାରୁ ଅସଂପୃକ୍ତ ରହିଥାଏ । ଯେପରି ଅନ୍ତରାତ୍ମା ସମସ୍ତ ପ୍ରକାରର ଦୈହିକ କାର୍ଯ୍ୟ କରୁଥିବା ସଙ୍ଗେ ସଙ୍ଗେ ସମସ୍ତଙ୍କଠାରୁ ଅଲିପ୍ତ ରହିଥାଏ, ସେହିଭଳି ମହାନୁଭବ ବ୍ୟକ୍ତ ଅଲିପ୍ତ ଭାବରେ ସବୁ କାର୍ଯ୍ୟ କରିଥାଏ । ଏଭଳି ବ୍ୟକ୍ତିଠାରୁ ବହୁଲୋକ ସଦ୍‌ପ୍ରେରଣା ଲାଭ କରିଥା'ନ୍ତି ।

ଏଭଳି ସର୍ବଜ୍ଞ ଓ ସର୍ବକର୍ତ୍ତା ପୁରୁଷଙ୍କୁ ହିଁ ମହାନୁଭବ ବ୍ୟକ୍ତି କହିବା ଯଥାର୍ଥ । ମହାନୁଭବ ବ୍ୟକ୍ତି ନୀତି, ନିୟମଗୁଡ଼ିକୁ କଠୋରଭାବେ ପାଳନ କରିଥାଆନ୍ତି । ସେ ନିଜେ କୌଣସି ଅନ୍ୟାୟ କରେ ନାହିଁ କିମ୍ବା ଅନ୍ୟକୁ ଅନ୍ୟାୟ କରିବାକୁ ଦିଏ ନାହିଁ । ଯେକୌଣସି ସମସ୍ୟା ଯେତେ କଠିନ ହେଉନା କାହିଁକି, ମହାନୁଭବବ୍ୟକ୍ତି ତାକୁ ସହଜରେ ଅତିକ୍ରମ କରିପାରେ । ଏଭଳି ଅସାଧାରଣ ଧାରଣାସଂପନ୍ନ ପୁରୁଷ ବହୁ ଲୋକଙ୍କ ଆଶ୍ରୟସ୍ଥଳ ହୋଇଉଠନ୍ତି ।

ଆମେମାନେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଆଦର୍ଶଜୀବନୀରୁ ଏସବୁ ସଦ୍‌ଗୁଣ ଶିଖିବା ଉଚିତ ।

## ସପ୍ତମ ସମାସ
## ।। ଚଞ୍ଚଳ ସରୀତା ।।

ମାୟାନଦୀ ସଦା ଚଞ୍ଚଳ । ଠିକ୍ ଗୁପ୍ତ ଗଙ୍ଗା ଭଳି । ଏହା ସବୁକିଛି କରୁଥିଲେ ମଧ୍ୟ ନିଜେ ଅଦୃଶ୍ୟ, ଅର୍ଥାତ୍ ସବୁ କାର୍ଯ୍ୟ କରି ମଧ୍ୟ ଏହା ଦୃଷ୍ଟିଗୋଚର ହୁଏ ନାହିଁ । ମୂଳମାୟାର ସ୍ମରଣଦ୍ୱାରା ଚିତ୍ତଶୁଦ୍ଧି ହୋଇଥାଏ । କଳ୍ପନାର

ଅନୁସନ୍ଧାନ କରୁ କରୁ ମନ ଏହି ମୂଳମାୟାରେ ପହଞ୍ଚିବା ପରେ ପରମପାବନ ହୋଇଉଠେ । ଯେକୌଣସି ବ୍ୟକ୍ତି ଏହାକୁ ଅନୁଭବ କରିପାରେ ।

ମାୟାନଦୀ ନିଶ୍ଚଳ ବ୍ରହ୍ମ-ପର୍ବତରୁ ବାହାରି ତଳକୁ ଖସି ଆସିବା ପରେ ଏହା ଶୁଦ୍ଧ ଓ ସବଳ ହୋଇଉଠିବା ସଙ୍ଗେ ସଙ୍ଗେ ସୂକ୍ଷ୍ମରୁ ସ୍ଥୂଳ ଆଡ଼କୁ ପ୍ରବାହିତ ହେବାରେ ଲାଗେ । ଏହି କ୍ରମ ଅବ୍ୟାହତ ରହିଥାଏ; କିନ୍ତୁ ଏହି ନଦୀର ପ୍ରବାହକୁ କେହି ଦେଖିପାରନ୍ତି ନାହିଁ । ଏହା ଘୂରି ଘୂରି ପ୍ରବାହିତ ହୁଏ । ଏହା ଦେହରେ ନାନା ସ୍ଥାନରେ ଭଉଁରୀ ସୃଷ୍ଟି ହୁଏ । ବାଟରେ ଯାହା ପଡ଼େ ଗୋଟେଇପାଟେଇ ନିଏ । ଏହାର ସ୍ରୋତ ଦୁଇକୂଳକୁ ଖାଇଥାଏ । ଅଧୋମୁଖି ହୋଇ ଏହା ବହିବାରେ ଲାଗିଥାଏ । ଏହି ନଦୀର ସ୍ରୋତ ଓ ପ୍ରବାହରେ ଫୁସଫୁସିଆ ମାଟି ଖସିପଡ଼େ, ଅତଡ଼ା ଖସେ । କିନ୍ତୁ କଠିନ, ପଥୁରିଆ ଭୂଇଁ ଯିମିତି ସିମିତି ରହିଥାଏ । ଅର୍ଥାତ୍ ସାତ୍ତ୍ୱିକ ସୂକ୍ଷ୍ମ ଲହଡ଼ି ଲୁପ୍ତ ହୋଇଯାଏ, କେବଳ ରହେ ତାମସିକ ସ୍ଥୂଳ ଲହଡ଼ି । ସୂକ୍ଷ୍ମରୁ ସ୍ଥୂଳ ଆଡ଼କୁ ଗତି କରିବା ଏହି ପ୍ରବାହର ସ୍ୱଭାବ ।

ମାୟାନଦୀର ପ୍ରବାହ ସହିତ ଅନେକ ଜୀବ ମଧ ଭାସି ଭାସି ଯାଇଥାଆନ୍ତି । ସେମାନଙ୍କ ମଧ୍ୟରୁ କେହି ପ୍ରପଞ୍ଚ ଭିତରେ ପଡ଼ି ପୁଣି ଉପରକୁ ଉଠନ୍ତି, ଆଉ କେହି କେହି ଅଧୋଗତି-ମାର୍ଗରେ ଯାଇ ଯାଇ କାମ-କ୍ରୋଧ ଆଦି ଭଉଁରୀ ଭିତରେ ପଡ଼ନ୍ତି ଏବଂ ଅହଂକାର ଦ୍ୱାରା ଫୁଲିଫାଟି ଉପରକୁ ଉଠନ୍ତି । ଅନ୍ୟ ପୁଣ୍ୟବାନ ଜୀବ (ଶାସ୍ତ୍ର, ବୁଦ୍ଧି, ଭାବନା ସଂପନ୍ନ) ନିଜ ବଳଦ୍ୱାରା ସ୍ରୋତକୁ କାଟି ପହଁରି ପହଁରି ଅନ୍ତର୍ମୁଖ ହୋଇ ଉତ୍ପତ୍ତିସ୍ଥଳକୁ ଫେରିଆସିଥାଆନ୍ତି, ଫଳରେ ରକ୍ଷା ପାଆନ୍ତି । ଉତ୍ପତ୍ତିସ୍ଥଳ ହେଉଚି ମୂଳମାୟାର ସମୀପ ବ୍ରହ୍ମାଦି ଦେବ ଏବଂ ବ୍ରହ୍ମାଣ୍ଡର ଅନ୍ୟ ଦେବତାଙ୍କ ମୂଳସ୍ଥାନ । ସବୁ ଦେବଦେବୀଙ୍କ ମୂଳପୀଠ ହେଉଚି ଏହି ସ୍ଥାନ ।

ମାୟାନଦୀର ପ୍ରବାହର ବିପରୀତ ଦିଗରେ ପହଁରି ପହଁରି ଉତ୍ପତ୍ତି ସ୍ଥଳରେ ପହଞ୍ଚିବା ପରେ ଏହି ଦେବଦେବୀଙ୍କ ସହିତ ଭେଟହୁଏ । ଏହି ଉତ୍ପତ୍ତିସ୍ଥଳର ଜଳ (ଚୈତନ୍ୟ ତତ୍ତ୍ୱ) ଅତ୍ୟନ୍ତ ନିର୍ମଳ କିନ୍ତୁ ଚଞ୍ଚଳ । ଏହାକୁ ଅପନାରାୟଣ କୁହାଯାଇଥାଏ । ଏହି ମାୟାନଦୀ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିଲୋକରେ ବ୍ୟାପି ରହିଛି । କିନ୍ତୁ ଏହାର ମୂଳ ଉଦ୍‌ଗମ (ଉତ୍ପତ୍ତି) ସ୍ଥଳ ହେଉଚି

ଅନ୍ତରାଳ ବା ଆକାଶ ଏବଂ ଏହା ସଦାସର୍ବଦା ପ୍ରବହମାନ। । ଏହି ମାୟାମୋହ-ମହାନଦୀର ବିଶାଳ ପ୍ରବାହ ତଳ ଉପର ସର୍ବତ୍ର ବିସ୍ତୃତ । ତଳେ ଏହା ପଶୁ-ପକ୍ଷୀ ଓ କୀଟ-ପତଙ୍ଗ ଯୋନିରେ, ମଧ୍ୟରେ ଏହା ମନୁଷ୍ୟ ଯୋନିରେ ଏବଂ ଉପରେ ଦେବଦେବୀଙ୍କ ଯୋନିରେ ପ୍ରକଟିତ । ଏସବୁ ରହସ୍ୟ ଜ୍ଞାନୀ ପୁରୁଷମାତ୍ରେ ଜାଣେ ।

ଜଗଦୀଶଙ୍କ ଭଳି ସମଗ୍ର ବ୍ରହ୍ମାଣ୍ଡରେ ଏହି ମାୟାର ଅଧିକାର । ଅଗଣିତ ପ୍ରାଣୀଙ୍କର ଅଗଣିତ ପାତ୍ର । ସବୁ ପାତ୍ରରେ ମାୟାନଦୀ ଜଳ ଭର୍ତ୍ତି ହୋଇରହିଛି । ଏହ ଜଳରୁ ଅଧିକାଂଶ ସାଂସାରିକ କାର୍ଯ୍ୟରେ ଏବଂ ବହୁତ କମ ଜଳ ପରମାର୍ଥ କାର୍ଯ୍ୟରେ ଲାଗିଥାଏ । ଏହି ଜଳ ଯେଉଁ ଜିନିଷ ସହିତ ଯାଏ, ସେହି ଜିନିଷର ରଙ୍ଗରେ ଏହା ରଞ୍ଜିତ ହୋଇପଡ଼େ । ଏହା ସାତ୍ତ୍ୱିକ ସଜ୍ଜନଙ୍କ ସଙ୍ଗରେ ମଧୁର, ତାମସିକ ମନୁଷ୍ୟ ସଙ୍ଗରେ ପିତା ଏବଂ ରାଜସିକ ବ୍ୟକ୍ତି ସଙ୍ଗରେ ଏହା ଖାରିଆ ହୋଇପଡ଼େ ।

ଗହୀର ଭୂମିକୁ ପାଇବାମାତ୍ରେ ଏହି ଜଳ ସେଇଠି ଜମିରହେ ଅର୍ଥାତ୍ ଜୀବ ଦେହରେ ମାୟାପ୍ରବେଶ କରି ସେଠାରେ ସ୍ଥିର ହୋଇଯାଏ । ଏହା ବିଷରେ ବିଷ, ଅମୃତରେ ଅମୃତ, ସୁଗନ୍ଧରେ ସୁଗନ୍ଧ, ଦୁର୍ଗନ୍ଧରେ ଦୁର୍ଗନ୍ଧ ହୋଇପଡ଼େ । ଗୁଣ ଓ ଦୁର୍ଗୁଣ ମିଶି ଏହା ସମାନ ହୋଇ ଯାଏ । ତେଣୁ ହେ ଶ୍ରୋତାଗଣ ! ଜଳର ମହିମା ଅପାର । ଏହାର ଜଳ ମଧ୍ୟ ଅଥଳ । ଏହାକୁ ନଦୀ କୁହାଯିବ କି ମହାନଦୀ କୁହାଯିବ ସ୍ଥିର କରି ହେଉ ନାହିଁ । ଅନେକ ପ୍ରାଣୀ ଏହି ଜଳରେ ବୁଡ଼ି ରହି ଥାଆନ୍ତି । ମାୟା ଉପରକୁ ଏହାଙ୍କ ମୁଣ୍ଡ ହେବେହେଲେ ଉଠିପାରେ ନାହିଁ । କିନ୍ତୁ ଯେଉଁ ଜ୍ଞାନୀ ସାଧକମାନେ ମାୟାନଦୀର ଉତ୍ପତ୍ତିସ୍ଥଳର ଉପରିଭାଗରେ ପହଞ୍ଚିସାରିଲେଣି, ଅର୍ଥାତ୍ ଯେଉଁମାନେ ମାୟାନଦୀର ସ୍ରୋତ ବିରୁଦ୍ଧରେ ଲଢ଼ି ଲଢ଼ି ମାୟାନଦୀ ପାର ହୋଇ ବ୍ରହ୍ମସ୍ୱରୂପ ହୋଇ ସାରିଲେଣି, ମୁହଁ ଫେରାଇ ଦେଖିଲେ ମଧ୍ୟ ସେମାନଙ୍କୁ ଆଉ ମାୟାନଦୀ ଦେଖାଯାଏ ନାହିଁ । ସେତେବେଳେ ସେମାନେ ଅନୁଭବ କରିଥାଆନ୍ତି ଯେ ସେମାନେ ଏପର୍ଯ୍ୟନ୍ତ କେବଳ ମାୟା-ରୂପୀ ଭ୍ରମରେହିଁ ବିଚରଣ କରିବାରେ ଲାଗିଥିଲେ, ବାସ୍ତବରେ ମାୟା-ନଦୀ ବୋଲି କିଛି ନାହିଁ, ଏହା ସର୍ବଥା ମିଥ୍ୟା ଓ ଭ୍ରମ । ମାୟା ଅର୍ଥାତ୍ କଳ୍ପନା ହେଉଚି କେବଳ ବୃତ୍ତି, ଆଭାସ ଏବଂ ଭ୍ରମ ।

ବାସ୍ତବ ଯୋଗେଶ୍ୱର ଜ୍ଞାନୀ ପୁରୁଷ କିପରି ମାୟାଠାରୁ ଅଲିପ୍ତ ଏବଂ ବୃତ୍ତିଶୂନ୍ୟ ହୁଅନ୍ତି ସେ ସମ୍ପର୍କରେ ଗଭୀରଭାବେ ମନନ, ଚିନ୍ତନ ଓ ନିଦିଧ୍ୟାସନ କରି ଅନୁଭବ କରିବା ଉଚିତ ।

ଶ୍ରୀ ସମର୍ଥ ରାମଦାସ ସ୍ୱାମୀ କହୁଛନ୍ତି—ଏ ସମ୍ପର୍କରେ ବାରମ୍ବାର କହିଲେ ମଧ୍ୟ ତୁମେମାନେ ସେହି ସେହି କଥାହିଁ ପଚାରିବାରେ ଲାଗିଚ । ତେଣୁ ମତେ ବାରମ୍ବାର ସେହିକଥା କହିବାକୁ ପଡୁଚି ।

## ଅଷ୍ଟମ ସମାସ
## ।। ଅନ୍ତରାତ୍ମା-ବିବେଚନ ।।

ଏବେ ମୁଁ ସର୍ବକର୍ତ୍ତା (ସବୁ କର୍ତ୍ତୃତ୍ୱର ମୂଳାଧାର), ସବୁ ଦେବତାଙ୍କ ନାଥ ଯେଉଁ ମୂଳପୁରୁଷ (ଅନ୍ତରାତ୍ମା)ଙ୍କୁ ବନ୍ଦନା କରୁଛି, ତାଙ୍କର ପ୍ରେରଣାବିନା ଗଛର ପତ୍ର ସୁଦ୍ଧା ହଲି ନପାରେ । ତିନିଲୋକର ସଂଚାଳକ କେବଳ ସେ ହିଁ । ସେ ସର୍ବଘଟ (ଶରୀର)ରେ ବାସ କରିଥାଆନ୍ତି । ସେ ଭିନ୍ନ ଭିନ୍ନ ଶରୀରରେ ଭିନ୍ନ ଭିନ୍ନ ନାମ ଓ ରୂପରେ ରହିଥାନ୍ତି । ତାଙ୍କର କେତେବା ବର୍ଣ୍ଣନା କରିବି ? ଏହି ଗୁପ୍ତେଶ୍ୱରଙ୍କୁହିଁ ଈଶ୍ୱର କୁହାଯାଇଥାଏ । ବଡ଼ ବଡ଼ ଲୋକେ ତାଙ୍କରି ସତ୍ତାରୁହିଁ ଐଶ୍ୱର୍ଯ୍ୟଶାଳୀ ହୋଇଥାଆନ୍ତି । ଏହି ବିଶ୍ୱମ୍ଭରଙ୍କୁ ଯିଏ ଚିହ୍ନେ ବା ଜାଣେ ସେ ନିଜେ ବିଶ୍ୱମ୍ଭର ହୋଇଯାଇଥାଏ । ଏଭଳି ବ୍ୟକ୍ତି ନିକଟରେ ସନ୍ମୁଖ ସମାଧି ଓ ସହଜସ୍ଥିତି ଆଦି ନିତାନ୍ତ ତୁଚ୍ଛ । ଏହି ବ୍ୟକ୍ତି ବିଶ୍ୱର ଉତ୍ପତ୍ତି, ସ୍ଥିତି ଓ ସମାପ୍ତିକୁ ଅନ୍ତର୍ଦୃଷ୍ଟିରେ ଦେଖିବାପରେ ଅନ୍ତରାତ୍ମାର ପ୍ରକୃତ ସ୍ୱରୂପ ସମ୍ପର୍କରେ ଅବଗତ ହୋଇଥାଏ । ଏପରି ଅବସ୍ଥା ଯାହାର ହୁଏ ସେ କୁବେରର ଧନ ଭଣ୍ଡାର ପାଇବା ଭଳି ପରମାନନ୍ଦ ଲାଭ କରିଥାଏ । ତାକୁ ଏଥିଲାଗି କୌଣସି କଷ୍ଟ କରିବାକୁ ପଡ଼େନାହିଁ । କିନ୍ତୁ ତଦ୍‌ରୂପ ଲାଭ କରିବାଭଳି ମହାତ୍ମା ପୃଥିବୀରେ ବିରଳ । ତଥାପି ଏହି ଅନ୍ତରାତ୍ମା ସମ୍ପର୍କରେ ସ୍ୱଳ୍ପ ପରିଚୟ କରାଇ ଦେବାଭଳି ଲୋକ ଅଛନ୍ତି ।

ଏହି ଅନ୍ତରାତ୍ମାକୁ ନିରନ୍ତର ଦର୍ଶନ କରି ଆମ୍ଭେମାନେ ପ୍ରବାସ କରିବା ଉଚିତ । ଅନ୍ତରାତ୍ମାଙ୍କୁ ଦେଖି ନପାରିଲେ ମଧ୍ୟ ବାରମ୍ବାର ତାଙ୍କୁହିଁ ମନନ କରିବା ଆବଶ୍ୟକ । ଠିକ୍‌ଭାବେ ମନନ କରିନପାରିଲେ ମଧ୍ୟ ତାଙ୍କ ସମ୍ପର୍କରେ ଯେଉଁ

ଗ୍ରନ୍ଥରେ ବର୍ଣ୍ଣନା କରାଯାଇଚି, ତାକୁ ବାରମ୍ବାର ପାଠ କରିବା ଉଚିତ । ଏହି ଅନ୍ତରାତ୍ମା କେତେବଡ଼, ଏହା ଦେଖିବାକୁ କିପରି ଏବଂ ଏହାକୁ ଦେଖିବାଲାଗି ଇଚ୍ଛୁକ ମୁମୁକ୍ଷୁର କି ଦଶା ହୋଇଥାଏ, ଏସବୁ ବୁଝାଇବା ଅସମ୍ଭବ । ଲୋକେ ଯାହା ଦେଖିଥାଆନ୍ତି ଏବଂ ଶୁଣିଥାଆନ୍ତି, ସେତିକିହିଁ ବୁଝାଇ ପାରନ୍ତି । କିନ୍ତୁ ବହୁତ ଶୁଣିଲେ କିମ୍ବା ବହୁତ ଦେଖିଲେ ମଧ୍ୟ ଅନ୍ତରାତ୍ମା ସମ୍ପର୍କରେ କାହାର ସମ୍ପୂର୍ଣ୍ଣ ଜ୍ଞାନ ହୋଇପାରେ ନାହିଁ । ମନୁଷ୍ୟମାତ୍ରେ ଏକ ଦେହଧାରୀ କଣ୍ଢେଇ, ଇଏ ଅନ୍ତରାତ୍ମାଙ୍କୁ ଜାଣିବ କିପରି ? ଅନ୍ତରାତ୍ମା ତ ପୂର୍ଣ୍ଣ ଆଉ ଦେଖିବାବାଲା ତ ଅପୂର୍ଣ୍ଣ । ଦ୍ରଷ୍ଟା ଯେତେବେଳେ ପୂର୍ଣ୍ଣତ୍ୱ ଲାଭ କରିବ, ସେତେବେଳେ ସେ ପୂର୍ଣ୍ଣକୁ ଦେଖି ପାରିବ ଅର୍ଥାତ୍ ସେ ପୂର୍ଣ୍ଣଠାରୁ ଅଭିନ୍ନ ହୋଇପଡ଼ିବ । ପରମାତ୍ମାଠାରୁ ବିଭକ୍ତ ନହେବାହିଁ ଭକ୍ତି ଏବଂ ଭକ୍ତର ସାର୍ଥକତା । ଅନ୍ୟଥା ସମସ୍ତ ପ୍ରବୃତ୍ତି ବ୍ୟର୍ଥ ।

ରାଜାଙ୍କ ଦରବାରକୁ ଯାଇ ଯଦି ରାଜାଙ୍କ ଦର୍ଶନ ନପାଇଲ ତାହାହେଲେ ଦରବାରକୁ ଯିବା ବ୍ୟର୍ଥ । ଦେହଧାରଣ କରି, ଅନେକ ବିଷୟ ଭୋଗ କରି ଯଦି ଦେହସ୍ୱାମୀଙ୍କୁ ଚିହ୍ନି ନପାରିଲ ତାହାହେଲେ ଦେହଧାରଣ ବୃଥା । ଦେହ ଏକ ଘର । ଏ ଘରକୁ ଆସି ଯଦି ଘରବାଲା ସହିତ ପରିଚିତ ହୋଇ ଦି'ପଦ ଦୁଃଖସୁଖ ହୋଇ ନପାରିଲ, ତାହାହେଲେ ଘରକୁ ଆସିବା ଯାହା ନଆସିବା ତାହା ।

ସବୁଠୁ ଆଶ୍ଚର୍ଯ୍ୟର ବିଷୟ ହେଉଚି ଲୋକେ ନିଜକୁ ବିବେକୀ କହୁଥିଲେ ମଧ୍ୟ ଉପରୋକ୍ତ ଭାବେ ଆଚରଣ କରି ଅବିଚାରହିଁ କରିଥାଆନ୍ତି । ଯାହାର ଯେପରି ଅଧିକାର ସେହିଭଳି ଆଚରଣ କରିବା ଉଚିତ । ନିଜ ଅନ୍ତରରେ ଯେ ଐଶ୍ୱରୀକ ଶକ୍ତି ନିହିତ ଏକଥା ଅଜ୍ଞାନୀ ଅବିବେକୀ ଲୋକେ ଜାଣି ପାରନ୍ତି ନାହିଁ । ନିଜକୁ ଜ୍ଞାନୀ କହୁଥିବା ଲୋକେ ମଧ୍ୟ ଅଜ୍ଞାନୀଙ୍କ ଭଳି ଆଚରଣ କରି ବୃଥାଟାରେ ନିଜକୁ ଦୀନହୀନ କରିଥାଆନ୍ତି । ହୃଦୟରେ ସର୍ବଦା ପ୍ରତିଷ୍ଠିତ ଅନ୍ତରାତ୍ମାଙ୍କ ଭଳି ଅତୁଳ ସଂପଦକୁ ଭୁଲି ଭିକାରୀଙ୍କ ଭଳି ଅଜ୍ଞାନୀ ଲୋକେ ବାହାରେ ଅନ୍ତରାତ୍ମାଙ୍କୁ ଖୋଜିବାରେ ଲାଗିଥାନ୍ତି । ଏକଦିଗଦର୍ଶୀ ଚଞ୍ଚଳଚିତ୍ତବୃତ୍ତି ହେତୁ ବହୁତ କମ୍ ଲୋକଙ୍କଠାରେ ଅନ୍ତରାତ୍ମାଙ୍କୁ ଧ୍ୟାନ କରିବା ପ୍ରବୃତ୍ତି ଦେଖାଯାଏ ।

ଏହି ବ୍ରହ୍ମାଣ୍ଡ ହେଉଚି ନାନାରୂପ ଓ ନାନା ନାମଧାରୀ ପ୍ରାଣୀଙ୍କ ନିବାସ । କୌଣସି କୌଣସି ପ୍ରାଣୀ ମାଟି ଭିତରେ ଏବଂ ପଥର ଭିତରେ ରହିଥାନ୍ତି । କିନ୍ତୁ

ସମସ୍ତଙ୍କ ଦେହରେ ସେହି ଏକ ପରମାତ୍ମା ବିଦ୍ୟମାନ । ସେ ଏକ ହେଲେ ମଧ୍ୟ ଅନେକ ଦେହରେ ରହିଥାଆନ୍ତି । କେଉଁଠି ପ୍ରକଟିତ ଭାବେ ତ କେଉଁଠି ଅପ୍ରକଟିତ ଭାବେ ରହିଥାଆନ୍ତି ।

ଏକଥା ଅନୁଭବସିଦ୍ଧ ଯେ ଯାହା ଚଞ୍ଚଳ ତାହା ନିଶ୍ଚଳ ହୋଇ ନପାରେ, ଅର୍ଥାତ୍ ଯାହା ଚଞ୍ଚଳ ନୁହଁ ତାହା ନିଶ୍ଚଳ ପରଂବ୍ରହ୍ମ । ପଞ୍ଚତତ୍ତ୍ୱରେ ନିର୍ମିତ ଏହି ଶରୀରକୁ ଯେତେବେଳେ ଆମେ ଅଲିପ୍ତ ବୋଲି ମାନିନେଉଁ, ଅର୍ଥାତ୍ ଯେତେବେଳେ ଆମର ଦେହବୁଦ୍ଧି ନଷ୍ଟ ହୋଇଯାଏ, ସେତେବେଳେ ଚତୁର୍ଦ୍ଦିଗରେ କେବଳ ରହେ ନିର୍ମଳ, ନିଶ୍ଚଳ ନିରଞ୍ଜନ ପରବ୍ରହ୍ମ ଏବଂ ତାଙ୍କ ଦର୍ଶନ ପାଇବା ମାତ୍ରେ ମନୁଷ୍ୟ ଲାଭ କରେ ପରମାନନ୍ଦ । କିଂତୁ ଯିଏ ଅବିବେକୀ ତାଠାରେ ମୁଁ କିଏ, କେଉଁଠୁ ଆସିଲି ଏବଂ କାହିଁକି ଆସିଲି—ଏସବୁ ଜ୍ଞାନ ହୋଇ ନଥାଏ ।

ତେଣୁ ବୁଦ୍ଧିମାନ୍ ଲୋକେ ଏସବୁ ବିଷୟରେ ମନନ ଚିନ୍ତନ କରିବା ଉଚିତ ଏବଂ ବିବେକ ବଳରେ ଦୁସ୍ତର ଭବସାଗର ପାରହେବା ଉଚିତ । ହରିଭକ୍ତି ଦ୍ୱାରା ହିଁ ମନୁଷ୍ୟ ନିଜକୁ ଓ ନିଜ ବଂଶକୁ ଉଦ୍ଧାର କରିପାରିବ । ବଂଶର ଅର୍ଥ କେବଳ ସ୍ଥୂଳଦେହର ବଂଶ ନୁହଁ । ଏଠାରେ ବଂଶର ଅର୍ଥ ମୂଳମାୟାଠୁ ଆରମ୍ଭ କରି ସମଗ୍ର ବ୍ରହ୍ମବଂଶକୁ ବୁଝିବା ଉଚିତ ।

## ନବମ ସମାସ
## ।। ଉପଦେଶ-ବିବେଚନ ।।

ପ୍ରଥମେ ଆମର ସଂପର୍କ କର୍ମ ସହିତ । କର୍ମ, ଉପାସନା ଓ ଜ୍ଞାନ ଏହି ତିନୋଟି ମଧ୍ୟରୁ ପ୍ରଥମେ କର୍ମ କରିବାକୁ ପଡ଼ିଥାଏ । ଯେକୌଣସି କର୍ମ ଯଥାବିଧି ସଂପନ୍ନ କରିବା ଉଚିତ । କର୍ମରେ ତ୍ରୁଟି ରହିଲେ ବିପରୀତ ପରିଣାମ ଭୋଗ କରିବାକୁ ପଡ଼ିଥାଏ । ତେଣୁ ଯେ କୌଣସି କର୍ମ ବିଧିବିଧାନପୂର୍ବକ ଏକାଗ୍ର ଚିତ୍ତରେ ଭକ୍ତି ସହିତ କରିବା ଉଚିତ । ଯଦି କୌଣସିଠି ତ୍ରୁଟିବିଚ୍ୟୁତି ରହିଯାଏ, ସଂଗେ ସଂଗେ ହରି-ସ୍ମରଣ କରି କ୍ଷମା-ପ୍ରାର୍ଥନା କରିନେବା ଉଚିତ ।

ପ୍ରଭୁ ହରି କିପରି ଏହାର ବିଚାର କରାଯାଉ । ଆମେ ସଂଧ୍ୟାବନ୍ଦନ ପୂର୍ବରୁ ଈଶ୍ୱରଙ୍କ ୨୪ ନାମର ଉଚ୍ଚାରଣ କରୁ । ଏହି ଚବିଶ ନାମବାଲା,

ସହସ୍ରନାମବାଲା, ଅନନ୍ତନାମବାଲା ତଥା ନାମାତୀତ ପରମାତ୍ମା ଦେଖିବାକୁ କିପରି ଜାଣିବା ଲାଗି ଅନ୍ତରକୁ ପରିଶୁଦ୍ଧ କରିବା ଉଚିତ । ସ୍ନାନ, ସଂଧ୍ୟା, ପୂଜା ଅର୍ଚ୍ଚନା ଦ୍ୱାରା ମୂର୍ତ୍ତି ପୂଜନ ହୋଇଥାଏ । ଯେଉଁ ଦେବତାପ୍ରତି ଯାହାର ଯେପରି ପ୍ରୀତିଭାବ ସେ ସେହିଭଳି ଭାବେ ମୂର୍ତ୍ତିପୂଜା କରିଥାଏ । କିଂତୁ ଯେଉଁ ପରମାତ୍ମାଙ୍କର ଏସବୁ ଭିନ୍ନ ଭିନ୍ନ ପ୍ରତିମା, ସେହି ପରବ୍ରହ୍ମଙ୍କୁ ଚିହ୍ନିବା ହେଉଚି ପରମ ପୂଜା ।

କୌଣସି ଗୁରୁଜନଙ୍କ ସହିତ ପ୍ରଥମେ ପରିଚୟ ହେବାପରେ ତାଙ୍କୁ ନମସ୍କାର କରାଯାଇଥାଏ । ସେହିଭଳି ପ୍ରଥମେ ପରମାତ୍ମାଙ୍କ ସହିତ ପରିଚିତ ହେବାପରେ ତାଙ୍କୁ ଭକ୍ତି କରିବା ଉଚିତ । ତାହାହେଲେ ମଣିଷ ସଂସାର-ସାଗର ପାରିହୋଇପାରିବ । ପୂଜାର ପ୍ରତିମା ତ ଏକ ମୂର୍ତ୍ତି, କିଂତୁ ଏହି ମୂର୍ତ୍ତି ମାଧ୍ୟମରେ ପୂଜକର ଶରୀରରେ ଅନ୍ତରାତ୍ମାର ସଂଚାର ହୋଇଥାଏ । ସବୁ ଦେବଦେବୀ ଓ ଅବତାରୀ ପୁରୁଷ ମଧ୍ୟ ନିଜ ନିଜ ରୂପରେ ଅନ୍ତରାତ୍ମାଙ୍କ ଦର୍ଶନ କରିଥା'ନ୍ତି । ସମସ୍ତଙ୍କର ନିଜରୂପ ଏହି ଜଗଜ୍ୟୋତି ସତ୍ତ୍ୱଗୁଣଦ୍ୱାରା ଅଧିଷ୍ଠିତ । ଏହି ଜଗଜ୍ୟୋତି ଅନ୍ତଃକରଣର ଉର୍ମି । ଏହାର ଉଦରରେ ଅସଂଖ୍ୟ ଦେବଦେବୀ ବିଦ୍ୟମାନ । ଏହି ଦେବତାମାନଙ୍କର ମଧ୍ୟ ବହୁଦେବତା ରହିଥାନ୍ତି । ପ୍ରତ୍ୟେକଙ୍କ ସଂପର୍କରେ ପ୍ରତ୍ୟୟ ହୁଏ ସ୍ୱାନୁଭାବଦ୍ୱାରା ।

ଦେହ-ପୁରୀର ଈଶ (ନିଅନ୍ତା) ହିଁ ପୁରୁଷ । ଜଗତର ସ୍ୱାମୀ ଜଗଦୀଶ ତଥା ଜଗନ୍ନାଥ ପୁରୁଷମାନଙ୍କ ମଧ୍ୟରେ ପୁରୁଷୋତ୍ତମ । ସବୁ ଜୀବର ଅନ୍ତରରେ ବାସ କରି ସବୁ ଶରୀରକୁ ସଂଚାଳନ କରୁଥିବା ପୁରୁଷୋତ୍ତମ ହେଉଚନ୍ତି ଶ୍ରୀକୃଷ୍ଣ । ସେ ସମଗ୍ର ସୃଷ୍ଟିରେ ଏବଂ ସମସ୍ତଙ୍କଠାରେ ସମାନ ଭାବରେ ପୂରି ରହିଛନ୍ତି । ଏହି ଅନ୍ତରାତ୍ମା କର୍ତ୍ତା ଓ ଭୋକ୍ତା । ଶୁଣିବା, ଦେଖିବା, ଶୁଙ୍ଘିବା, ଚାଖିବା, ବିଚାର କରିବା, ଚିହ୍ନିବା, ପର-ଆପଣା ଜାଣିବା— ଏସବୁ ହେଉଚି ଅନ୍ତରାତ୍ମାଙ୍କ କାର୍ଯ୍ୟ । ସେ ସମସ୍ତଙ୍କର ଅନ୍ତଃକରଣ । ଦେହବୋଧ ଯୋଗୁଁ ପ୍ରତ୍ୟେକ ଜୀବ ନିଜକୁ ମିଥ୍ୟାଭିମାନରେ ଅଲଗା ଅଲଗା ମନେ କରିଥାଏ । ଜନ୍ମ-ମୃତ୍ୟୁ, ମରିବା-ମାରିବା ଆଦି କ୍ରିୟା ପ୍ରତ୍ୟେକ ଦେହ ସହିତ ଅଲଗା ଅଲଗା ଦେଖାଯାଇଥାଏ, କିନ୍ତୁ ଏସବୁ କେବଳ ଏକ ମହାସାଗରରେ ଦେଖାଯାଉଥିବା ଅନେକ ଲହରୀଭଳି

ମିଥ୍ୟା ଆଭାସମାତ୍ର । ବାସ୍ତବରେ ତିନିଲୋକକୁ ସଂଚାଳନ କରୁଥିବା ତ୍ରୈଲୋକ୍ୟନାଥ ହିଁ ଏକମାତ୍ର ଅନ୍ତରାତ୍ମା ।

ସମଗ୍ର ବ୍ରହ୍ମାଣ୍ଡରେ ସଂଚାଳିତ ଚେତନା ଶକ୍ତିର ନାମ ହିଁ ବିଷ୍ଣୁ । ଅନ୍ତରାତ୍ମାର ଏ ଯେଉଁ ସ୍ୱରୂପ ସେ ମଧ୍ୟ ପଞ୍ଚତତ୍ତ୍ୱ ଅନ୍ତର୍ଗତ । ପ୍ରଥମେ ଏହି ଅନ୍ତରାତ୍ମାଙ୍କୁ ନିଜ ଦେହରେ ଦେଖିବା ଉଚିତ; ତାହାହେଲେ ସମଗ୍ର ସଂସାରର ଦର୍ଶନ ଆପେ ଆପେ ହୋଇଯିବ । ସବୁଠାରୁ ଶ୍ରେଷ୍ଠ ପରବ୍ରହ୍ମ । ଏହାଙ୍କ ବିଚାର କରିବାଦ୍ୱାରା ସବୁ ବସ୍ତୁକୁ ଜାଣି ହୋଇଥାଏ । ଏହା ନିଶ୍ଚିତ ଯେ, ଚଞ୍ଚଳବସ୍ତୁମାତ୍ରେ ନଶ୍ୱର, କ୍ଷୟଶୀଳ । କିନ୍ତୁ ନିଶ୍ଚଳ, ନିରଞ୍ଜନ, ଅବିନାଶୀ ପରବ୍ରହ୍ମ ଉତ୍ପତ୍ତି, ସ୍ଥିତି ଓ ସଂହାରର ଊର୍ଦ୍ଧ୍ୱରେ । ଏ ସମ୍ପର୍କରେ ଜ୍ଞାନଲାଭ ହିଁ ପ୍ରକୃତ ବିଜ୍ଞାନ । ଜ୍ଞାନର ସହାୟତାରେ ଯେତେବେଳେ ଆଠଶରୀର ଏବଂ ନାମ ରୂପର ନିରସନ ହୋଇଯାଏ, ସେତେବେଳେ ଜୀବ ନିରଞ୍ଜନ, ବିମଳ, ଶାଶ୍ୱତ ବ୍ରହ୍ମକୁ ଅନୁଭବ କରିଥାଏ ।

ତେଣୁ ବିବେକ ସାହାଯ୍ୟରେ ହିଁ ମନୁଷ୍ୟ ଏହି ବ୍ରହ୍ମର ଅନନ୍ୟ ଉପାସକ ହେବା ଉଚିତ । ଏଭଳି ଭାବାତୀତ ଅବସ୍ଥାକୁ ଅନୁଭବ କରିବା ଉଚିତ ଯେଉଁଠି ଦ୍ରଷ୍ଟାର ଅସ୍ତିତ୍ୱ ବୋଲି କିଛି ରହିବ ନାହିଁ । ଏହା ବ୍ରହ୍ମସ୍ୱରୂପର ଅନୁଭୂତି ହୋଇଯିବା ପରେ ଏଭଳି କହିବା ମଧ୍ୟ ଏକ ବୃତ୍ତି । ତେଣୁ ଏଭଳି ବୃତ୍ତିର ମଧ୍ୟ ନିବୃତ୍ତି ଆବଶ୍ୟକ ।

ଏଭଳି ସ୍ଥିତିରେ ପହଞ୍ଚିବା ପରେ ବାକ୍ୟ ମଧ୍ୟ କୁଣ୍ଠିତ ହୋଇ ପଡ଼ିଥାଏ ଏବଂ ଲକ୍ଷ୍ୟ ଅଲକ୍ଷ୍ୟ ହୋଇଯାଇଥାଏ । ବୃତ୍ତିର ଯେଉଁ କେତେକ ଅଂଶ ଅବଶିଷ୍ଟ ରହିଥାଏ ସେତକ ମଧ୍ୟ ବାଚ୍ୟାଂଶ ସହିତ ସମାପ୍ତ ହୋଇଯାଏ ।

## ଦଶମ ସମାସ
## ।। ନିସ୍ପୃହ ଲକ୍ଷଣ ।।

ମୂର୍ଖଙ୍କ ଦୃଷ୍ଟି ଏକଦିଗଦର୍ଶୀ ହୋଇଥାଏ । କିନ୍ତୁ ଯିଏ ଚତୁର ଅର୍ଥାତ୍ ଜ୍ଞାନୀ ତାର ଦୃଷ୍ଟି ଅତି ବ୍ୟାପକ । ଜ୍ଞାନୀ ଅନେକଭାବରେ ଅନେକ ସୁଖ

ଉପଭୋଗ କରିଥାଏ । ସାଧାରଣ ଲୋକେ ଯାହାକୁ ଦୁଃଖ ମନେ କରିଥାଆନ୍ତି ଜ୍ଞାନୀ ତାକୁ ସୁଖ ମନେକରିଥାଏ । କାରଣ ଦୁଃଖ-ସୁଖ ତା ପକ୍ଷରେ ସମାନ । ବ୍ୟାପକତାରେ ସେହି ବ୍ୟାପକ ଅନ୍ତରାତ୍ମା ହିଁ ବିରାଜିତ । ସେ ସର୍ବଜ୍ଞ, ସର୍ବକର୍ତ୍ତା ଓ ସର୍ବଭୋକ୍ତା । ସମଗ୍ର ସୃଷ୍ଟିରେ ଏହାଙ୍କର ସତ୍ତା । ଏହାଙ୍କର ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟ ଲାଭ ନ କଲେ ଏହାଙ୍କୁ କିଏ କିପରି ଜାଣିବ ?

ଜ୍ଞାନୀମାତ୍ରେଏହି ଅନ୍ତରାତ୍ମାଙ୍କ ଭଳି ସାରଗ୍ରାହୀ, ସର୍ବଗ୍ରାହୀ ଏବଂ ବ୍ୟାପକ ହେବା ଆବଶ୍ୟକ । ଅନ୍ତରାତ୍ମା ସର୍ବବ୍ୟାପକ ହୋଇ ମଧ୍ୟ କୌଣସି ଏକ ସ୍ଥାନରେ କିମ୍ବା ସ୍ଥିତିରେ ଆବଦ୍ଧ ରହି ନ ଥାଏ । ସେ କୀର୍ତ୍ତିରୂପରେ ସମସ୍ତ ଆବାଳ-ବୃଦ୍ଧ-ବନିତାଙ୍କ ସହିତ ପରିଚିତ ହୋଇଥିଲେ ମଧ୍ୟ କୌଣସି ବେଶଭୂଷଣରେ ଦୂଷିତ କିମ୍ବା ବନ୍ଧାନୁହନ୍ତି । ଏହାଙ୍କ କୀର୍ତ୍ତି ସର୍ବଦିଗରେ ପରିବ୍ୟାପ୍ତ । କିନ୍ତୁ ଏହାଙ୍କ ମୂର୍ତ୍ତିକୁ ଦେଖି ତାଙ୍କର ମହନୀୟତାରେ ଭାସିଯିବା ଉଚିତ ନୁହଁ । ତାଙ୍କର ପ୍ରକୃତ ଭୂଷଣ ମୂର୍ତ୍ତି ନୁହଁ, କୀର୍ତ୍ତି । ବିଭିନ୍ନ ବେଶଭୂଷାରେ ତାଙ୍କ କଳ୍ପିତ ମୂର୍ତ୍ତିକୁ ସଜେଇଲେ ମଧ୍ୟ ସତତ ତାଙ୍କ କୀର୍ତ୍ତି ସମ୍ପର୍କରେ ଚିନ୍ତନ ଓ ନିଦିଧ୍ୟାସନ ଚାଲିବା ଉଚିତ ।

ଜ୍ଞାନୀମାତ୍ରେ ପରିଚିତ ଲୋକଙ୍କଠାରୁ ଦୂରରେ ରହି ନୂଆ ନୂଆ ଲୋକଙ୍କ ସହିତ ସମ୍ପର୍କ ବୃଦ୍ଧିକରିଥାଏ । ଲୋକ ତାଙ୍କ ଇଚ୍ଛାକୁ ଜାଣିବାପାଇଁ ଚାହିଁଥାଆନ୍ତି, କିନ୍ତୁ ସେ ସର୍ବଦା ଇଚ୍ଛାହୀନ ରହିଥାଏ । ସେ କାହାକୁ ଗୁରୁତ୍ୱ ସହିତ ଦେଖେନାହିଁ କିମ୍ବା କାହା ସହିତ ବିଶେଷ କଥାବାର୍ତ୍ତା କରେନାହିଁ । ସେ କୌଣସି ଗୋଟିଏ ଜାଗାରେ ରହେ ନାହିଁ । ଏଠି ସେହି ବିଚରଣ କରିଥାଏ । ସେ କାହାକୁ ନିଜର ଗନ୍ତବ୍ୟସ୍ଥାନର ଠିକଣା ଜଣାଇ ନ ଥାଏ । ତାର ଅବସ୍ଥାକୁ କେହି କେବେ ଅନୁମାନ ମଧ୍ୟ କରିପାରନ୍ତି ନାହିଁ । ସେ କାହାକୁ ଅନୁକରଣ କରେ ନାହିଁ । ତାର ଦର୍ଶନ ପାଇବା ଲାଗି ଲୋକେ ଲାଳାୟିତ ହୋଇଉଠନ୍ତି, କିନ୍ତୁ ସେ ଲୋକସମ୍ପର୍କଠାରୁ ଯଥାସମ୍ଭବ ଦୂରରେ ରହିଥାଏ । ଯେଉଁଠି ତା ପ୍ରତି ଆଦର ବଢ଼େ, ସେଥିପ୍ରତି ତାର ଅରୁଚି ହୋଇଥାଏ ।

ଏହି ପ୍ରକାରର ଜ୍ଞାନୀର ଭୂମିକାକୁ କେହି ଜାଣିପାରନ୍ତି ନାହିଁ । ତାର ଦେହଜ୍ଞାନ ବୋଲି କିଛି ନଥାଏ । କିନ୍ତୁ ହରିକୀର୍ତ୍ତନ ଓ ହରିଭକ୍ତିକୁ ସେ କ୍ଷଣେ ସୁଦ୍ଧା ଭୁଲିନଥାଏ ।

ଏଭଳି ସ୍ଥିତପ୍ରଜ୍ଞ ଜ୍ଞାନୀ ପୁରୁଷ ସର୍ବଦା ଏକାନ୍ତରେ ରହି ଧ୍ୟାନ, ଧାରଣା, ନାମ, ଜପତପ ଆଦିରେ ନିଜର ସମୟ ଅତିବାହିତ କରିବା ଉଚିତ୍ । ସେ ଏଭଳି ଭାବେ ନିଜ ଜୀବନକୁ ସାର୍ଥକ କରି ଅନ୍ୟକୁ ପ୍ରେରଣା ଦେବା ଉଚିତ । ଜ୍ଞାନୀମାତ୍ରେ ସଦ୍‌ଗୁଣଗୁଡ଼ିକୁ ସଂଗ୍ରହ କରି ଏବଂ ନିଜ ଜୀବନକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ ଅନ୍ୟକୁ ଉପଦେଶ ଦେବା ଆବଶ୍ୟକ । ଏଭଳି ଜ୍ଞାନୀବ୍ୟକ୍ତି ସଜ୍ଜନମାନଙ୍କ ସଂଗଠନ କରି ଏକ ସଂଘ ଗଠନ ଦ୍ୱାରା ରଚନାତ୍ମକ ସେବାକାର୍ଯ୍ୟାଦି ସେଇମାନଙ୍କୁ ଧରି କରିବା ଉଚିତ୍ ।

ପ୍ରଥମେ ପରିଶ୍ରମ, ପରେ ଏହାର ସୁଫଳ ଲାଭ କରିବା ହେଉଚି ନିୟମ । ଯିଏ ପରିଶ୍ରମପାଇଁ ଉପଯୁକ୍ତ ତାକୁ ପରିଶ୍ରମ ପାଇଁ ପ୍ରେରଣାଦେବା ଉଚିତ । ଅର୍ଥାତ୍ ବ୍ୟକ୍ତିର ଯୋଗ୍ୟତା ଓ ଶକ୍ତି ଅନୁସାରେ ସେମାନଙ୍କୁ ଉପଯୁକ୍ତ କାର୍ଯ୍ୟରେ ଲଗାଇବା ଉଚିତ । ମନୁଷ୍ୟର ଉଦ୍ୟୋଗ ଓ କର୍ତ୍ତୃତ୍ୱକୁ ଦେଖି ବିଶ୍ୱାସ କରିବା ଉଚିତ । ଯେକୌଣସି କାର୍ଯ୍ୟ କଲାବେଳେ ନିଜର ପ୍ରତିଷ୍ଠାକୁ ଅକ୍ଷୁଣ୍ଣ ରଖିବା ଉଚିତ ।

ମୁଁ ଏସବୁ କଥା ମୋ ଅନୁଭୂତିରୁ ହିଁ କହୁଚି । ଭଲ ଲାଗି ଅନୁସରଣ କର । ନିଜେ ଜ୍ଞାନୀ ହୋଇ ଅନ୍ୟକୁ ଜ୍ଞାନସଂପନ୍ନ କରିବା ହେଉଚି ଜୀବନର କର୍ତ୍ତବ୍ୟ ।



# ଦ୍ୱାଦଶ ଦଶକ

## ପ୍ରଥମ ସମାସ
## ।। ବିମଳ-ନିରୂପଣ ।।

ପ୍ରଥମେ ନିଜ ଗୃହସ୍ଥାଶ୍ରମ ସୁଚାରୁରୂପେ ଚଳାଅ, ତା ସଙ୍ଗେ ସଙ୍ଗେ ସୁସ୍ଥ ମନରେ ପରମାର୍ଥ ବିଚାର କର । ବିବେକୀ ସ୍ତ୍ରୀ-ପୁରୁଷମାନେ ଏହା କରିବାରେ କୌଣସି ତ୍ରୁଟି କରିବା ଅନୁଚିତ । ଗୃହସ୍ଥଧର୍ମକୁ ଠିକ୍ ଢଙ୍ଗରେ ପାଳନ ନକରି ପରମାର୍ଥପାଇଁ କାମନା କଲେ ଦୁଃଖୀ ହେବା ସାର ହେବ । ଯିଏ ଗୃହସ୍ଥଧର୍ମ ଏବଂ ପରମାର୍ଥ ଉଭୟପ୍ରତି ସମୁଚିତ ଧ୍ୟାନ ରଖେ, ସିଏ ହେଉଚି ଉପଯୁକ୍ତ ବିବେକୀ ପୁରୁଷ । ପ୍ରପଞ୍ଚପ୍ରତି ଦୃଷ୍ଟି ନଦେଇ ଯଦି ପରମାର୍ଥର ଚିନ୍ତା କରିବାରେ ଲାଗିବ ତ ଭୋକରେ ମରିବ । ଏହା ପାଗଳାମି ଛଡ଼ା କିଛି ନୁହଁ । ପେଟରେ ଭୋକଥାଇ ପରମାର୍ଥ କାମନା କରିବସିଲେ ମନ ସେଥିରେ ଲାଗିବ ଦ ? ସେହିଭଳି ପରମାର୍ଥକୁ ଉପେକ୍ଷା କରି ଯଦି ପ୍ରପଞ୍ଚରେ ନିମଗ୍ନ ରହିବ ତାହାହେଲେ ଶେଷରେ ଅସହ୍ୟ ଯମଯାତନା ଭୋଗ କରିବାକୁ ପଡ଼ିବ ।

ନିଜର ଉଚ୍ଚପଦସ୍ଥ ଅଧିକାରୀ ତୁମକୁ ଦେଇଥିବା କାମ ପ୍ରତି ଅବହେଳା କରି ଯଦି ଘରେ ଅଳସୁଆଙ୍କ ଭଳି ବସିରହୁ ତାହାହେଲେ ସେହି ଅଧିକାରୀଦ୍ୱାରା ଦଣ୍ଡିତ ହେବା ସ୍ୱାଭାବିକ । ସେହିପରି ଆମେମାନେ ଯଦି ସର୍ବଶ୍ରେଷ୍ଠ ଅଧିକାରୀ ପରମାତ୍ମାଙ୍କ ଆଦେଶକୁ ପାଳନ କରି ତାଙ୍କୁ ଯଦି ସନ୍ତୁଷ୍ଟ ନକରୁ ତାହାହେଲେ ନାନା ଦୁର୍ଦ୍ଦଶା ଭୋଗକରି ପରିଶେଷରେ ଯମଦୂତଙ୍କ ଦ୍ୱାରା ନିର୍ଯ୍ୟାତିତ ହେବାକୁ ହିଁ ପଡ଼ିବ ।

ନିଜର ଉଚ୍ଚପଦସ୍ଥ ଅଧିକାରୀ ତୁମକୁ ଦେଇଥିବା କାମ ପ୍ରତି ଅବହେଳା କରି ଯଦି ଘରେ ଅଳସୁଆଙ୍କ ଭଳି ବସିରୁହ ତାହାହେଲେ ସେହି ଅଧିକାରୀଦ୍ୱାରା ଦଣ୍ଡିତ ହେବା ସ୍ୱାଭାବିକ । ସେହିପରି ଆମେମାନେ ଯଦି ସର୍ବଶ୍ରେଷ୍ଠ ଅଧିକାରୀ

ପରମାତ୍ମାଙ୍କ ଆଦେଶକୁ ପାଳନ କରି ତାଙ୍କୁ ଯଦି ସନ୍ତୁଷ୍ଟ ନକରୁ ତାହାହେଲେ ନାନା ଦୁର୍ଦ୍ଦଶା ଭୋଗକରି ପରିଶେଷରେ ଯମଦୂତଙ୍କ ଦ୍ୱାରା ନିର୍ଯ୍ୟାତିତ ହେବାକୁ ହିଁ ପଡ଼ିବ ।

ଯିଏ ସଂସାର ଭିତରେ ରହି ''ପଦ୍ମପତ୍ରମିବାଂଭସା'' ଅର୍ଥାତ୍ ପଦ୍ମପତ୍ରଭଳି ସଂସାର ସହିତ ଲିପ୍ତ ରହେନାହିଁ ସେ ହେଉଚି ମୁକ୍ତ ଏବଂ ଯୋଗ୍ୟ ବ୍ୟକ୍ତି । ଏଭଳି ପୁରୁଷ ହିଁ ନିତ୍ୟ ଆତ୍ମାନୁସଂଧାନରେ ଚିତ୍ତକୁ ଅବିଚଳିତ ରଖିଥାଏ । ଯିଏ ଆତ୍ମତତ୍ତ୍ୱପ୍ରତି ସାବଧାନ ସେ ଗୃହସ୍ଥଧର୍ମ (ପ୍ରପଞ୍ଚ) ଓ ପରମାର୍ଥ ଉଭୟକୁ ସମାନଭାବରେ ଏବଂ ଯଥୋଚିତ ଭାବେ ନିର୍ବାହ କରିପାରେ । ଯାହାର ଗୃହସ୍ଥଧର୍ମ ଠିକ ଥାଏ, ତାର ପରମାର୍ଥ ମଧ୍ୟ ଠିକ୍ ଭାବରେ ହୋଇପାରେ । ଯିଏ ପ୍ରପଞ୍ଚ କାର୍ଯ୍ୟରେ ଅସଫଳ, ତାର ପରମାର୍ଥ ମଧ୍ୟ ମିଥ୍ୟା । ଯିଏ ପ୍ରପଞ୍ଚ ଓ ପରମାର୍ଥ ଉଭୟ ପ୍ରତି ସାବଧାନ ରହିଥାଏ ସେ ଧନ୍ୟ । ଏଭଳି ପୁରୁଷ ହିଁ ଆତ୍ମହିତ ସାଧନ ସଙ୍ଗେ ସଙ୍ଗେ ଜନକଲ୍ୟାଣ ମଧ୍ୟ କରିବାରେ ସମର୍ଥ ହୋଇଥାଏ ।

ତେଣୁ ଆମ୍ଭେମାନେ ସଜ୍ଜନଙ୍କ ସତ୍‌ସଙ୍ଗ କରି ସେମାନଙ୍କ ସୁଗୁଣଗୁଡ଼ିକୁ ଅନୁସରଣ କରିବା ଉଚିତ । ସାଧାରଣ ଲୋକଙ୍କ ଦୋଷତ୍ରୁଟି ପ୍ରତି ଲକ୍ଷ୍ୟ ରଖିବା ଅନୁଚିତ । ସଜ୍ଜନମାନେ ଅନ୍ୟମାନଙ୍କ ଗୁଣକୁ ଯଥାର୍ଥଭାବରେ ଜାଣିପାରିଥାଆନ୍ତି, କିନ୍ତୁ କାହାର ନିନ୍ଦା କରନ୍ତି ନାହିଁ ।

ତେଣୁ ସମସ୍ତେ ଦୂରଦର୍ଶୀ ହୋଇ ଏବଂ ସାବଧାନତାର ସହିତ ସମନ୍ୱିତ ଭାବେ ଗୃହସ୍ଥ ଧର୍ମ ଓ ପରମାର୍ଥ ଆଚରଣ କରି ଜୀବନକୁ ସଫଳ ଓ ସାର୍ଥକ କରିବା ଉଚିତ୍ ।

## ଦ୍ୱିତୀୟ ସମାସ
## ।। ପ୍ରତ୍ୟୟ ନିରୂପଣ ।।

ବକ୍ତା କହୁଛନ୍ତି— ସଂସାରକୁ ଆସିଥିବା ହେ ଗୃହସ୍ଥ ଓ ନିସ୍ପୃହ ସଜ୍ଜନଗଣ ! ମୋ କଥାକୁ ମନଦେଇ ଶୁଣ ଏବଂ ଯାହା କହୁଚି ତାକୁ ଭଲଭାବରେ ଚିନ୍ତା କରି ଦେଖ । ମନୁଷ୍ୟ ମନରେ ବାସନା ଓ କଳ୍ପନାର ବହୁ ତରଙ୍ଗ

ଦେଖାଦେଇଥାଏ । ସମସ୍ତେ ଚାହାଁନ୍ତି ନିଜ ଇଚ୍ଛାନୁସାରେ ଖାଇବାକୁ, ପିଇବାକୁ, ରହିବାକୁ ଓ ପିନ୍ଧିବାକୁ ମିଳନ୍ତା କି, କିନ୍ତୁ ତାହା ହୋଇପାରେ ନାହିଁ । ବହୁ ସମୟରେ ମନୁଷ୍ୟ ଯାହା ଇଚ୍ଛା କରେ ତାର ଓଲଟା କଥା ହୋଇଥାଏ । ଏଭଳି ହୁଏ କାହିଁକି, ଏଥିରେ ଆମର ଦୋଷ କେଉଁଠି ରହୁଚି, ସେ ସଂପର୍କରେ ବିଚାର କରିବା ଉଚିତ ।

ସଂସାରରେ କିଏ ସୁଖୀ ତ କିଏ ଦୁଃଖୀ । ଯିଏ ଦୁଃଖୀ ହୋଇଥାଏ ସେ ନିଜ ପ୍ରାରବ୍ଧ (ପୂର୍ବଜନ୍ମର କର୍ମଫଳ)କୁ ଦୋଷ ଦେଇଥାଏ । କିନ୍ତୁ ନିଜର ଉଦ୍ୟମର ଅଭାବରୁ ହିଁ ମଣିଷ ଦୁଃଖ ଭୋଗ କରିଥାଏ । ନିଜର ଦୋଷକୁ ଘୋଡ଼ାଇବା ପାଇଁ ଦୁଃଖ ଭୋଗର କାରଣ ସ୍ୱରୂପ ମୂଢ଼ଲୋକେ ପ୍ରାରବ୍ଧକୁ ଦାୟୀ କରିଥାଆନ୍ତି । ଯିଏ ନ୍ୟାୟନୀତିକୁ ଜଳାଞ୍ଜଳି ଦେଇ ଭଲ-ମନ୍ଦ ବିଚାର ନକରି ଯାହାପାରୁ ତାହା କରିଥାଏ ତାକୁ ଦୁଃଖ ଭୋଗ କରିବାକୁ ହିଁ ପଡ଼ିବ । ଲୋକଙ୍କ ସହିତ ବ୍ୟବହାର କରିବା ସମୟରେ ସେମାନଙ୍କ ସ୍ୱଭାବକୁ ପରୀକ୍ଷା କରିନେବା ଉଚିତ ।

କ୍ଷମାଶୀଳଭାବେ ଲୋକଙ୍କ ସହିତ ବ୍ୟବହାର କରିବା ଉଚିତ୍ । ଚନ୍ଦନକୁ ଘଷିଲେ ଏହାର ସୁଗନ୍ଧ ଜଣାପଡ଼େ । ସେହିଭଳି ମଣିଷର ଗୁଣପରୀକ୍ଷା ତା ସହିତ ପ୍ରତ୍ୟକ୍ଷ ବ୍ୟବହାର ଦ୍ୱାରା ହୋଇଥାଏ । ମଣିଷକୁ ଆପଣାର କରିନେବା ଲାଗି ଏକମାତ୍ର ପନ୍ଥା ହେଉଚି ସମସ୍ତଙ୍କପ୍ରତି ପ୍ରେମଭାବ ପୋଷଣ କରିବା । ବିଶ୍ୱଭାବ ହିଁ ବିଶ୍ୱନାଥଙ୍କ ନିବାସ । ଜନତା ହିଁ ଜନାର୍ଦ୍ଦନ ସ୍ୱରୂପ । ଅର୍ଥାତ ଜନତାର ବିଶ୍ୱାସଯୋଗ୍ୟ ହୋଇପାରିଲେ ସହଜରେ ଜନାର୍ଦ୍ଦନଙ୍କ ପ୍ରେମାସ୍ପଦ ହୋଇପାରିବ । ଯେମିତି ବୁଣିବ, ସିମିତି ଗଛ ଉଠିବ ଏବଂ ସିମିତି ଫଳ ପାଇବ । ଭଲ ଆଚରଣ କଲେ ସମସ୍ତେ ତୁମକୁ ଭଲ ପାଇବେ, ଖରାପ ଆଚରଣ କଲେ ଖରାପ ପାଇବେ । ତେଣୁ ପ୍ରତ୍ୟେକ ମୁହୂର୍ତ୍ତରେ ନିଜ ମନକୁ ଭଲ ରଖି ନିଜକୁ ଭଦ୍ର ଓ ସଂସ୍କୃତ ଭାବରେ ଗଢ଼ିବା ଉଚିତ ।

ବାଦବିବାଦ ଓ ଦୁରାଗ୍ରହରୁ କଳହ ସୃଷ୍ଟି ହୋଇଥାଏ । ତେଣୁ ସମସ୍ତଙ୍କ ସହିତ ସଦ୍‌ଭାବନା, ସହନଶୀଳତା ଓ ଶାନ୍ତିପୂର୍ବକ ବ୍ୟବହାର କରିବା ଦ୍ୱାରା ସମସ୍ତଙ୍କ ମନୋଭାବ ତୁମପ୍ରତି ଅନୁକୂଳ ରହିବ । ଯେଉଁଠି ଦୁର୍ଜନଙ୍କ ସମାଗମ, ସେଠାରେ ନିଜର ସହିଷ୍ଣୁତାର ପରିସମାପ୍ତି ଘଟିବାର ଆଶଙ୍କା ରହିଥାଏ । ତେଣୁ

ସେଠାରୁ ତୁରନ୍ତ ହଟିଯିବା ଉଚିତ । କାହାସହିତ ବୃଥାରେ ଯୁକ୍ତିତର୍କ କରିବା ଅନୁଚିତ ।

ଦିନେ ନା ଦିନେ ମନୁଷ୍ୟଙ୍କୁ ସଂସାରଛାଡ଼ି ଯିବାକୁ ପଡ଼ିବ । ଏହି କଥା ମନେରଖି ସମସ୍ତଙ୍କ ସହିତ ସୁସଂପର୍କ ରକ୍ଷା କରିବା ଉଚିତ । ବିବେକୀ ପୁରୁଷମାତ୍ରେ ଏହା କରିଥାଏ । ନିଜଠୁ ଛୋଟ ବଡ଼ ଓ ନିଜ ସହିତ ନିମ୍ନଶ୍ରେଣୀର ସବୁଲୋକଙ୍କ ସହିତ ସ୍ନେହପୂର୍ଣ୍ଣ ବ୍ୟବହାର କରିବା ଉଚିତ୍ । ଭଲରୁ ଭଲର ବୃଦ୍ଧିଘଟେ—ଏହା ଅନୁଭବସିଦ୍ଧ କଥା । ଏହାଠୁଁ ଅଧିକ ଆଉ କ'ଣ କୁହାଯାଇପାରେ ?

ହରିକଥା, ଅଧ୍ୟାତ୍ମ ନିରୂପଣ ଏବଂ ସମସ୍ତଙ୍କ ପ୍ରତି ସୁବ୍ୟବହାର ଏବଂ ରାଜନୀତିର ଆଚରଣ ସମୟାନୁସାରେ କରିବା ଆବଶ୍ୟକ । ସମୟ ଓ ପରିସ୍ଥିତି ଅନୁସାରେ ବ୍ୟବହାର ନକଲେ ବିପରୀତ ଫଳ ଘଟିବା ସଙ୍ଗେ ସଙ୍ଗେ ଉଦ୍ୟମ ନିଷ୍ଫଳ ହୋଇପାରେ । ତେଣୁ ଆମ୍ଭେମାନେ ଏଥିପ୍ରତି ଧ୍ୟାନଦେବା ଆବଶ୍ୟକ ।

ବହୁତ ତ ଜ୍ଞାନଲାଭ ହେଲାଣି; କିନ୍ତୁ ସମୟାନୁଯାୟୀ ଯଦି ଜ୍ଞାନର ବ୍ୟବହାର କରାନଯାଏ ତାହାହେଲେ କି ଲାଭ ?

## ତୃତୀୟ ସମାସ
## ।। ଭକ୍ତି-ବିବେଚନ ।।

ବକ୍ତା କହୁଛନ୍ତି—ଏ ସଂସାରରେ ଅଗଣିତ ମନୁଷ୍ୟ । ଏ ସମସ୍ତଙ୍କୁ ଆମ୍ଭେମାନେ ବିବେକପୂର୍ବକ ନିରୀକ୍ଷଣ କରିବା ଉଚିତ୍ । ଆମ୍ଭେମାନେ ଇହଲୋକ ଅର୍ଥାତ୍ ପ୍ରବୃତ୍ତି ଓ ପରଲୋକ ଅର୍ଥାତ୍ ନିବୃତ୍ତି ଉଭୟକୁ ଭଲଭାବେ ବିଚାର କରିବା ଉଚିତ୍ । ଇହଲୋକକୁ ସଫଳ କରିବା ଲାଗି ସଜ୍ଜନମାନଙ୍କ ସତ୍‌ସଂଗ କରିବା ଉଚିତ୍ ଏବଂ ପରଲୋକ ପ୍ରାପ୍ତି ଲାଗି ସଦ୍‌ଗୁରୁଙ୍କ ଶରଣାଶ୍ରିତ ହେବା ଆବଶ୍ୟକ ।

କିନ୍ତୁ ସଦ୍‌ଗୁରୁଙ୍କୁ କ'ଣସବୁ ପ୍ରଶ୍ନ କରିବ ? ତାଙ୍କୁ କେବଳ ଦୁଇଟି କଥା ପଚାରିବା ଉଚିତ । ପ୍ରଥମ ପ୍ରଶ୍ନ— ଈଶ୍ୱର କ'ଣ ? ଦ୍ୱିତୀୟ ପ୍ରଶ୍ନ ମୁଁ କିଏ ? ଅର୍ଥାତ୍ ସଦ୍‌ଗୁରୁଙ୍କଠାରୁ ଭଗବାନ ଓ ଭକ୍ତ ସଂପର୍କରେ ତାଙ୍କର ବିଚାର ଜାଣିବା ଆବଶ୍ୟକ । ଏଥିଲାଗି ପଞ୍ଚୀକରଣ ଓ ମହା ବାକ୍ୟର ଅଧ୍ୟୟନ ଆବଶ୍ୟକ ।

ପରଂବ୍ରହ୍ମ ଓ ନିଜେ ନିଜକୁ ଚିହ୍ନିବା ଉପରେ ସମଗ୍ର ଉଦ୍ୟମର ସଫଳତା ନିର୍ଭର କରେ । ସାର ଓ ଅସାରକୁ ବିଚାର କରିବା ପରେ ଏକଥା ଉପଲବ୍ଧ ହେବ ଯେ, ପରାର୍ଥମାତ୍ରେ ଅସାର ଏବଂ ଅଶାଶ୍ୱତ । ପରାର୍ଥ ବା ପଦାର୍ଥର କାରଣ ତଥା ସାରଭୂତ ଯେଉଁ ବ୍ରହ୍ମ ତାହା କାହା ସହିତ ଲିପ୍ତ ନୁହଁ । ତାହା ହିଁ ଶ୍ୱାଶ୍ୱତ । ଏହା ହିଁ ଅଚଳ ବ୍ରହ୍ମ । ଚଞ୍ଚଳ ଅନ୍ତରାତ୍ମା ଏବଂ ଜଡ଼ ପଦାର୍ଥସବୁ ହେଉଛି ମାୟାର ଖେଳ । ଶ୍ୱାଶ୍ୱତ ବ୍ରହ୍ମ ଏ ସବୁଠାରୁ ଅଲଗା, ଅଲିପ୍ତ । ବିବେକ ଦ୍ୱାରା ଏସବୁ କଥା ଭଲଭାବରେ ବୁଝିବା ଉଚିତ ଏବଂ ମାୟାର ଉପକରଣଗୁଡ଼ିକୁ ବିବେକବୁଦ୍ଧି ଦ୍ୱାରା ପରିତ୍ୟାଗ କରିବା ଉଚିତ ।

ମାୟା ହେଉଚି ପଞ୍ଚଭୌତିକ ଅର୍ଥାତ୍ ମାୟାରୁ ଉତ୍ପନ୍ନ ଯେତେ ପଦାର୍ଥ ସବୁ ବିନାଶଶୀଳ । ପିଣ୍ଡ, ବ୍ରହ୍ମାଣ୍ଡ ଏବଂ ଆଠପ୍ରକାରର ଶରୀର— ସବୁ ନଶ୍ୱର । ସମସ୍ତ ଦୃଶ୍ୟ ପଦାର୍ଥ ଦିନେ ନା ଦିନେ ନଷ୍ଟ ହେବହିଁ ହେବ । ଯାହା ଉତ୍ପନ୍ନ ହୋଇଥାଏ, ତାହା ମରେ । ଅର୍ଥାତ୍ ମାୟାର ଯେତେ ରୂପ ଦେଖାଯାଏ ସମସ୍ତଙ୍କର ପରିସମାପ୍ତି ନିଶ୍ଚିତ । ଯିଏ ବଢ଼ିବ, ସିଏ ଛିଣ୍ଡିବ, ଯିଏ ଆସିବ, ସିଏ ଯିବ । ପ୍ରଳୟାନ୍ତରେ ପଞ୍ଚଭୂତର ମଧ୍ୟ ବିନାଶ ଘଟିବା ନିଶ୍ଚିତ । ଏକଥା ସ୍ପଷ୍ଟ ଯେ, ଦେହଧାରୀ ପ୍ରାଣୀମାତ୍ରେ ମରଣଶୀଳ । ଏହା ପ୍ରତ୍ୟକ୍ଷ ଯେ ମନୁଷ୍ୟର ବୀର୍ଯ୍ୟରୁ ନୂତନ ମନୁଷ୍ୟ ଜନ୍ମ ଗ୍ରହଣ କରିଥାଏ । କିନ୍ତୁ ଖାଦ୍ୟ ନ ଖାଇଲେ ବୀର୍ଯ୍ୟ ଜାତ ହେବ କିପରି ? ବନସ୍ପତି ନ ହେଲେ ଅନ୍ନ (ଖାଦ୍ୟ) ଅସିବ କଆଡୁ ? ପୃଥ୍ୱୀ(ମାଟି) ନ ରହିଲେ ବନସ୍ପତି (ଉଦ୍‌ଭିଦ) ଆସିବ କୁଆଡୁ ? ଜଳ ନ ଥିଲେ ପୃଥ୍ୱୀ ଆସିବ କୁଆଡୁ ? ତେଜ (ଅଗ୍ନି) ନଥିଲେ ଜଳ କୁଆଡୁ ଆସିବ ? ବାୟୁ ନ ରହିଲେ ତେଜତତ୍ତ୍ୱର ସତ୍ତା ବି ରହିନପାରେ । ସେହିପରି ବିନା ଆକାଶରେ ବାୟୁର ଅସ୍ତିତ୍ୱ ପ୍ରଶ୍ନ ଉଠିନପାରେ । ଆକାଶ ହିଁ ଅନ୍ତରାତ୍ମା । ଅନ୍ତରାତ୍ମା ମଧ୍ୟ ବ୍ରହ୍ମରେ ''ଏକୋହଂ ବହୁସ୍ୟାମ୍''ର ସ୍ଫୁରଣବିନା ପ୍ରକଟିତ ହେବ କିପରି ?

ବର୍ତ୍ତମାନ ଆମର ଦେଖିବା କଥା ନିର୍ବିକାର ବ୍ରହ୍ମରେ ବିକାର ସଂଭବ କି ? ବ୍ରହ୍ମରେ ପୃଥିବୀଠାରୁ ଆରମ୍ଭ କରି ଆକାଶ (ଅନ୍ତରାତ୍ମା) ପର୍ଯ୍ୟନ୍ତ ପଞ୍ଚଭୂତରେ କୌଣସି ଅଂଶ ନାହିଁ । ଏଥିରୁ ଏ କଥା ସିଦ୍ଧ ହେଉଚି ଯେ ନିର୍ବିକାର ବ୍ରହ୍ମ ହିଁ ସାରରୂପ ଏବଂ ଏହାଠାରୁ ଭିନ୍ନ ଅନ୍ୟ ଅଷ୍ଟଧା ପ୍ରକୃତି ଅସାର ଏବଂ ନଶ୍ୱର । ବିବେକ ଦୃଷ୍ଟରୁ ସୃଷ୍ଟିକୁ ଦେଖିଲେ ଏ ସବୁ ଅସାର ଓ ନାଁକୁ ମାତ

ମନେହେବ । ଶାଶ୍ୱତ ବ୍ରହ୍ମର ଅନୁଭବ ମାତ୍ରେ ସବୁ ସମସ୍ୟାର ସମାଧାନ ହୋଇଥାଏ । ତେଣୁ ବିବେକ ଦ୍ୱାରା ସାର-ଅସାର ବସ୍ତୁକୁ ନିର୍ଣ୍ଣୟ କରି ଧାରଣାକୁ ଦୃଢ଼ କରିବା ଉଚିତ୍ ।

ଶାଶ୍ୱତ ନିର୍ଗୁଣବ୍ରହ୍ମଜ୍ଞାନ ଲାଭ କରିବା ପରେ "ମୁଁ କିଏ" ଏହି ପ୍ରଶ୍ନର ବିଚାର କରାଯିବା ଆବଶ୍ୟକ । "ମୁଁ" ଭାବ ଦେହଭାବରୁ ଉତ୍ପନ୍ନ ହୋଇଥାଏ । ତେଣୁ କେଉଁ ତତ୍ତ୍ୱରୁ ଦେହ ଜାତ ଏହାର ବିଚାର ପ୍ରଥମେ କରିବା ଉଚିତ । ଦେହ ହେଉଚି ପଞ୍ଚଭୂତର ଏକ କଣ୍ଢେଇ । "ମୁଁ, ତୁ" ଭେଦଭାବ କେବଳ ମନର କଳ୍ପନା । ଦେହତତ୍ତ୍ୱକୁ ବୁଝିବା ମାତ୍ରେ ଦେହାଭିମାନ ନଷ୍ଟ ହୋଇଯାଇଥାଏ । ତତ୍ତ୍ୱରେ ତତ୍ତ୍ୱ ବିଲୀନ ହୋଇଯିବା ପରେ ମୁଁ ଓ ତୁ ଭାବନା ଆସିବ କୁଆଡୁ ? ତାପରେ ରହେ କେବଳ ସତ୍ୟବସ୍ତୁ ପରଂବ୍ରହ୍ମ ।

ପଞ୍ଚୀକରଣ, ତତ୍ତ୍ୱବିଶ୍ଳେଷଣ ଏବଂ ମହାବାକ୍ୟର ବିଚାର କରିବା ଦ୍ୱାରା ଦେହବୋଧ ତୁଟିଯାଇଥାଏ । ନିଃସଂଗ ବୃତ୍ତିରେ ଆତ୍ମ ନିବେଦନ କରିବା ଦ୍ୱାରା ପରମାତ୍ମା ଓ ଆତ୍ମାର ମିଳନ ଘଟିଥାଏ । ତତ୍ତ୍ୱର ନିରସନ ହେବାରେ "ମୁଁ" ଭାବ ନଷ୍ଟ ହୋଇଥାଏ । ବୃତ୍ତିରହିତ ପଦପ୍ରାପ୍ତି ମାତ୍ରେ ମନ ଉନ୍ମନ ହୋଇ ଉଠେ । ଜ୍ଞାନ ବିଜ୍ଞାନରେ, ଧ୍ୟାନ ଧ୍ୟେୟରେ ବିଲୀନ ହୋଇ ଜନ୍ମ-ମରଣର ଭୟ ତୁଟିଯାଏ, ଏବଂ ପ୍ରାଣୀ ବନ୍ଧନମୁକ୍ତ ହୋଇ ମୋକ୍ଷର ଅଧିକାରୀ ହୋଇଥାଏ । ସମସ୍ତ ତର୍କ-ବିତର୍କ ଏବଂ ସମସ୍ତ ସଂକଟ ଦୂର୍ ହେବାରେ ମନୁଷ୍ୟର ଜନ୍ମ ସାର୍ଥକ ହୋଇଉଠେ । ଜ୍ଞାନ-ବିଜ୍ଞାନରେ, ଧ୍ୟାନ-ଧ୍ୟେୟରେ ବିଲୀନ ହୋଇ ଜନ୍ମ-ମରଣର ଭୟ ତୁଟିଯାଏ ଏବଂ ପ୍ରାଣୀ ବନ୍ଧନମୁକ୍ତ ହୋଇ ମୋକ୍ଷର ଅଧିକାରୀ ହୋଇଥାଏ । ସମସ୍ତ ତର୍କ-ବିତର୍କ ଏବଂ ସମସ୍ତ ସଂଙ୍କଟ ଦୂର ହେବାରେ ମନୁଷ୍ୟର ଜନ୍ମ ସାର୍ଥକ ହୋଇଉଠେ । ସେ ପରମ ସମାଧାନ ଲାଭ କରେ ।

## ଚତୁର୍ଥ ସମାସ
## ।। ବିବେକ-ବୈରାଗ୍ୟ ବିବେଚନ ।।

କେହି କେହି ଅଚାନକ ବୈଭବଶାଳୀ ହୋଇଉଠିଥାଆନ୍ତି । କିନ୍ତୁ ଲାଭ କରାଯାଇଥିବା ଧନର ଯଦି ସଦୁପଯୋଗ ନ କରାଯାଏ ତାହା ହେଲେ ସେ ଧନ

ବ୍ୟର୍ଥ ହୋଇପଡ଼େ । ସେହିଭଳି ବିବେକବିନା ବୈରାଗ୍ୟ ମଧ୍ୟ ନିଷ୍ଫଳ ହୁଏ । ଦୁଷ୍ଟା ସ୍ତ୍ରୀ କିମ୍ବା ପାରିବାରିକ ଜଞ୍ଜାଳରେ ବିରକ୍ତ ହୋଇ ଯଦି କେହି ସଂସାର ପ୍ରତି ବିରକ୍ତ ହୋଇପଡ଼େ ଏବଂ ବୈରାଗ୍ୟ ସାଧନ ଲାଗି ଉଦ୍ୟମ କରେ, ସେ ବୈରାଗ୍ୟର ମୂଲ୍ୟ କିଛି ନାହିଁ । ତାହା ନିରର୍ଥକ, ବ୍ୟର୍ଥ । ଘର-ସଂସାରର ଜଞ୍ଜାଳରେ ଘାବରେଇ ଯାଇ କେହି କେହି ଜବରଦସ୍ତି ସନ୍ନ୍ୟାସୀ ହୋଇପଡୁ-ଥିବାର ଦେଖାଯାଏ । ସେ ଘର ଛାଡ଼ି ଚାଲିଗଲେ କିମ୍ବା ସନ୍ନ୍ୟାସ ଗ୍ରହଣ କଲେ ମଧ୍ୟ ପରମାର୍ଥ ସାଧନା କରି ପାରିବ ନାହିଁ । ସେ ସ୍ୱେଚ୍ଛାଚାରୀ, ଆଚାରଶୂନ୍ୟ, ଭ୍ରଷ୍ଟ ଏବଂ ଅବିବେକୀ ଭାବରେ କାର୍ଯ୍ୟ କରିଥାଏ । ବୈରାଗ୍ୟ ସାଙ୍ଗକୁ ବିବେକ ମଧ୍ୟ ଦରକାର । ବିବେକ ବିନା ବୈରାଗ୍ୟ ଆଚରଣ କଲେ ଅନର୍ଥର ବିସ୍ତାର ହୋଇଥାଏ । ଏଭଳି ମନୁଷ୍ୟର ବୈରାଗ୍ୟ ହୋଇପାରେ ନାହିଁ କିମ୍ବା ବିବେକ ହୋଇପାରେନା । ତାର ଗୃହସ୍ଥୀର ଜ୍ଞାନ ହୋଇପାରେନା କିମ୍ବା ବୈରାଗ୍ୟର ବିଜ୍ଞାନ ହୋଇପାରେନା । ଉଭୟ ଦିଗରେ ସେ ଦୀନହୀନ ହୋଇପଡ଼େ । ତା ଜୀବନ ଉପହାସର ପାତ୍ର ହୋଇଥାଏ ।

କେହି କେହି ଶବ୍ଦାଡ଼ମ୍ବର କରିବା ଜାଣନ୍ତି । ସେମାନେ ବିବେକୀଙ୍କ ଭଳି ବଡ଼ ବଡ଼ କଥା କହିଥାଆନ୍ତି; କିନ୍ତୁ ସେଥିରେ ତିଳେ ହେଲେ ବୈରାଗ୍ୟ ଭାବ ନଥାଏ । ବିଷୟ-ପ୍ରପଞ୍ଚରେ ସଢୁଥିବା ବ୍ୟକ୍ତି ଏହିଭଳି ବିବେକୀ କଥା କହିଥାଆନ୍ତି । ଏମାନଙ୍କ କଥା ବନ୍ଦୀଶାଳାରେ ଆବଦ୍ଧଥିବା ବ୍ୟକ୍ତି ଅନ୍ୟମାନଙ୍କ ଆଗରେ ନିଜର ପରାକ୍ରମ ପ୍ରକାଶ କରିବା ଭଳି । ବିନା ବୈରାଗ୍ୟରେ ଜ୍ଞାନର ବଡ଼େଇ କେବଳ ''ଦମ୍ଭ'' ମାତ୍ର । ଲୋଭ ଓ ଦମ୍ଭର ଚାକରହୋଇ ଏଭଳି ମୂର୍ଖ ବ୍ୟକ୍ତିର ଜୀବନ ଶିକୁଳିରେ ବନ୍ଧାହୋଇଥିବା କୁକୁରର ଜୀବନ ଭଳି ବ୍ୟର୍ଥ ।

ତାତ୍ପର୍ଯ୍ୟ ହେଉଚି— ବିବେକ ଓ ବୈରାଗ୍ୟର ବିନା ସମନ୍ୱୟରେ ସୁଖ ଦୁଃଖରୁ କେହି ତ୍ରାହି ପାଇ ନ ପାରେ । ଏହି ଦୁଇଟିର ସଂଯୋଗରେହିଁ ମନୁଷ୍ୟ ପ୍ରକୃତ ଆନନ୍ଦ ଲାଭ କରିଥାଏ ।

ବିବେକ ଦ୍ୱାରା ଘନିଷ୍ଠ-ବନ୍ଧନ ତୁଟିଯାଏ ଏବଂ ବୈରାଗ୍ୟ ଦ୍ୱାରା ବାହ୍ୟ ପ୍ରପଞ୍ଚ ଲୋପ ପାଇଥାଏ । ଏଭଳି ଅନ୍ତର୍ବାହ୍ୟମୁକ୍ତ ନିଃସଙ୍ଗ ଅନାସକ୍ତ ପୁରୁଷ ହିଁ ପ୍ରକୃତ ଯୋଗୀ । ସେ ବିଚାର ପୂର୍ବକ କଥା କହିଥାଏ । ଯେପରି କହେ ସେହିଭଳି

ଆଚରଣ ମଧ୍ୟ କରିଥାଏ । ତାର ଆଚାର ବିଚାରକୁ ଦେଖି ସଦାଚାରୀ ସଜ୍ଜନମାନେ ସନ୍ତୋଷଲାଭ କରିଥାଆନ୍ତି । ତିନିଲୋକର ରାଜ୍ୟ ତା ପକ୍ଷରେ ତୁଚ୍ଛ । ପରୋପକାରରେ ତା ଜୀବନ ନିୟୋଜିତ ହୋଇଥାଏ । ବିବେକ ଓ ଧାରଣା ଦ୍ୱାରା ସେ ସଂଯୁକ୍ତ ରହିଥାଏ । ସେ ସର୍ବଦା କୀର୍ତ୍ତନପ୍ରେମୀ । ତାଳ ସୁର ସହିତ ଭଜନ ଗାଇବାରେ ସେ ନିଜେ ତ ଆନନ୍ଦ ଲାଭ କରେ; ତା ଭଜନ ଶୁଣି ଅନ୍ୟମାନେ ମଧ୍ୟ ପରମାର୍ଥ ମାର୍ଗରେ ଅଗ୍ରସର ହୋଇଥାଆନ୍ତି । ସତ୍‌ମାର୍ଗ ଆଚରଣ କରିବାର ଲୋକେ ତା ପ୍ରତି ବହୁ ସଂଖ୍ୟାରେ ଆକୃଷ୍ଟ ହୋଇଥାଆନ୍ତି । ଏଭଳି ଲୋକପ୍ରତି ଜନାର୍ଦ୍ଦନ ଭଗବାନ ସର୍ବଦା ପ୍ରସନ୍ନ ହୋଇଥାଆନ୍ତି ।

ଯାହାଠି ଅଟଳ ବୈରାଗ୍ୟ, ନିର୍ଲୋଭ, ନିରଭିମାନ, ନିର୍ଦମ୍ଭ, ନିର୍ଦ୍ୱନ୍ଦ୍ୱସ୍ଥିତି, ଅନୁଭବ ଯୋଗୁଁ ବ୍ରହ୍ମଜ୍ଞାନ, ସ୍ନାନସନ୍ଧ୍ୟା ଭଗବଦ୍ ଭଜନ ଦେଖାଦେଇଥାଏ, ଜାଣିବ ଯେ, ତାଠାରେ ବିବେକ ଓ ବୈରାଗ୍ୟ ଉଭୟର ସଂଯୋଗ ଘଟିଚି । ବିବେକ ନଥାଇ ବୈରାଗ୍ୟ ହେଉଚି ମିଥ୍ୟା ଧର୍ମଜ୍ଞାନର ଲକ୍ଷଣ । ବିବେକ ବିନା କେବଳ ଶୁଷ୍କ ଜ୍ଞାନର ଅବତାରଣା ନିରର୍ଥକ, ବୃଥା । ବିବେକ ଓ ବୈରାଗ୍ୟର ସମନ୍ୱୟ ବହୁତ କମ୍ ଲୋକଙ୍କ ଭାଗ୍ୟରେ ଘଟିଥାଏ । ବିବେକ-ବୈରାଗ୍ୟସଂପନ୍ନ ପୁରୁଷ ସାକ୍ଷାତ୍ ପରମାତ୍ମା ସ୍ୱରୂପ । ସତ୍‌ପୁରୁଷଙ୍କ ମୁହଁରୁ ଏହି କଥା ହିଁ ଶୁଣିବାକୁ ପାଇବ ।

## ପଞ୍ଚମ ସମାସ
## ॥ ଆତ୍ମସମର୍ପଣ ॥

ହାତରେ ଖଡ଼ି କିମ୍ବା ଲେଖନ ଧରି ରେଖାକୁ ବୁଲେଇ ବାଲେଇ ବା ଘୂରେଇ ସ୍ୱର ବ୍ୟଞ୍ଜନ ଆଦିକୁ ଗୁନ୍ଥିଲେ ଅକ୍ଷର ହୋଇଥାଏ । ଅକ୍ଷର ଦ୍ୱାରା ଶବ୍ଦ ତିଆରି ହୁଏ ଏବଂ ଶବ୍ଦକୁ ପ୍ରୟୋଗ କରି ଗଦ୍ୟ ପଦ୍ୟ ଆଦି ଲେଖାଯାଇଥାଏ । ଏହିଥିରୁ ଶ୍ରୁତବେଦ, ଶାସ୍ତ୍ର, ପୁରାଣ, ନାନାବିଧ କାବ୍ୟ-କବିତା, ସିଦ୍ଧାନ୍ତ ଆଦି ଗ୍ରନ୍ଥର ପ୍ରସାର ହୋଇଥାଏ । ବହୁ ଋଷିମୁନିଙ୍କ ବହୁ ମତ । ବର୍ଗ (ଋଗ୍ ବେଦ) ଅଧ୍ୟାୟଗୁଡ଼ିକର ପ୍ରକରଣ, ଋଗ୍ (ବେଦମନ୍ତ୍ର), ଶ୍ରୁତି, ସ୍ମୃତି, ଅଧ୍ୟାୟ, ସର୍ଗ, ସ୍ତବକ, ଜାତି, ପ୍ରସଙ୍ଗ, ସମାସ, ପୋଥି ଆଦି ବିଭାଗ ଓ ଗ୍ରନ୍ଥର ନାମ ଅନେକ ।

ପଦ, ଶ୍ଳୋକ, ସାକୀ, ଦୋହା ଆଦି ଅନେକ କାବ୍ୟ-ବିଭାଗ ମଧ ରହିଛି । ଗାୟନ କଳା ମଧ ବିଭିନ୍ନ ପ୍ରକାରର । ଧ୍ୱନି, ଘୋଷ, ନାଦ, ରେଖା ଆଦି ବାଣୀର ଗୁଣ । ବୈଖାରୀ ବାଣୀ ମଧ ନାନା ପ୍ରକାରର । ପରାବାଣୀର ଉନ୍ମେଷ ଅର୍ଥାତ୍ ସ୍ଫୁରଣ; ପଶ୍ୟନ୍ତିରେ ଧ୍ୱନି ଓ ମଧ୍ୟମା ଆଦି ନାଦ; ବୈଖାରୀରେ ନାନା ରେଖା ତଥା ସେଥିରୁ ନାନା ଶବ୍ଦ ରତ୍ନର ନିର୍ମାଣ ହୋଇଚି । ଅକାର, ଉକାର ଓ ମକାର ଏବଂ ଅର୍ଦ୍ଧମାତ୍ରାକୁ ମିଳେଇ ଓଁ (ଓଁକାର)ର ସୃଷ୍ଟି ଏବଂ ୫୨ ମାତ୍ରାର ସଂଯୋଗରେ ୧୬ ସ୍ୱର ଏବଂ ୩୬ ବ୍ୟଞ୍ଜନ ହୋଇଚି ।

'ଅ'କାର ତମୋଗୁଣ, 'ଉ'କାର ରଜୋଗୁଣ ଓ 'ମ'କାର ସତ୍ତ୍ୱ ଗୁଣର ପ୍ରତୀକ । ଏଥିରେ ପ୍ରଧାନ ତତ୍ତ୍ୱ ଅର୍ଦ୍ଧମାତ୍ରାର ସତ୍ତ୍ୱଗୁଣର ମିଶ୍ରଣ ଘଟିବାରେ ଓଁକାରକୁ ମହତ୍ତତ୍ତ୍ୱ ବା ମହାମାୟା ବା ମୂଳମାୟା କୁହାଯାଇଥାଏ । ଓଁ କାରରୁ ସମସ୍ତ ଶବ୍ଦର ସୃଷ୍ଟି । ଦେହ ମଧ ଆଠ ପ୍ରକାରର । ପିଣ୍ଡର ଚାରୋଟି ଦେହ, ବ୍ରହ୍ମାଣ୍ଡର ମଧ ଚାରୋଟି । ଏହି ଆଠଟି ଦେହ ଅନେକ ତତ୍ତ୍ୱର ମିଳନରେ ହୋଇଚି । ମୁଖ୍ୟ ତତ୍ତ୍ୱ ହେଉଚି ତ୍ରିଗୁଣ । ଏହି ତ୍ରିଗୁଣ ଓ ପଞ୍ଚଭୂତର ମିଳନରେ ପ୍ରସ୍ତୁତ ହୋଇଚି ଅଷ୍ଟଧା ପ୍ରକୃତି । ଏହି ଅଷ୍ଟଧା ପ୍ରକୃତି ହେଉଚି ବାୟୁରୂପ । ଏହାର ଉତ୍ପତ୍ତି ମୂଳମାୟାରୁ । ବାୟୁବିରହିତ ଆକାଶ ଭଳି ଅଷ୍ଟଦେହ-ବିରହିତ ପରବ୍ରହ୍ମକୁ ବିବେକ ଦ୍ୱାର ଦର୍ଶନ କରିବା ଉଚିତ । ପିଣ୍ଡ ବ୍ରହ୍ମାଣ୍ଡର ରଚନା ଓ ସଂହାରର ବିଚାରକୁ ନିରସନ କରି ସାରଭୂତ ବିମଳବ୍ରହ୍ମର ଉପଲବ୍ଧି ଆବଶ୍ୟକ । ଜଡ଼ପଦାର୍ଥ ଓ ଚଞ୍ଚଳ ଆତ୍ମା ଉଭୟକୁ ନିରସନ କରି ନିଶ୍ଚଳ ପରବ୍ରହ୍ମର ଅନୁସନ୍ଧାନ କରୁ କରୁ ସେଥିରେ ବିଲୀନ ହୋଇ ତଦ୍ରୂପ ହୋଇପଡ଼ିବା ଉଚିତ । ଏହାପରେ ଆତ୍ମନିବେଦନ କଥା କହୁଚି । ଏହା ଠିକ୍ ତିନି ପ୍ରକାରର ।

ଦେହଠାରୁ ଆରମ୍ଭ କରି ସୃଷ୍ଟିର ସବୁ ପଦାର୍ଥ ପରମାତ୍ମାର । ମୁଁ କିମ୍ବା ମୋର ବୋଲି କିଛି ନାହିଁ । ଏଭଳି ଶୁଦ୍ଧ ଭାବନା ସହିତ ଭଗବାନଙ୍କ ଶରଣ ନେବା ହିଁ ଜଡ଼-ଆତ୍ମନିବେଦନ । ଚଞ୍ଚଳ ଜୀବାତ୍ମା ଜଗଦୀଶଙ୍କ ଅଂଶ । ଜୀବାତ୍ମା ଜଗଦୀଶଙ୍କଠାରୁ ପୃଥକ୍ ନୁହେଁ । ''ମୁଁ କର୍ତ୍ତା ନୁହଁ''—ଏହି ଭାବନାକୁ ହିଁ ଚଞ୍ଚଳ ଆତ୍ମନିବେଦନ କୁହାଯାଇଥାଏ । ଚଞ୍ଚଳ ମାୟା ତ ସ୍ୱପ୍ନଭଳି । କିନ୍ତୁ ପରମାତ୍ମା ନିଶ୍ଚଳ, ନିରାକାର । ତେଣୁ ଚଞ୍ଚଳ ମାୟାର ଅଭାବରେ 'ମୁଁ'ର କଳ୍ପନା ଯେ ବୃଥା ଏହି ଜ୍ଞାନ ହେବା ହିଁ ନିଶ୍ଚଳ ଆତ୍ମ-ନିବେଦନ ।

ଏହି ତିନି ପ୍ରକାରର ଆତ୍ମ-ନିବେଦନ ଦ୍ୱାରା ଏକଥା ପ୍ରତୀତ ହେଉଚି ଯେ 'ମୁଁ'ର କୌଣସି ଅସ୍ତିତ୍ୱ ନାହିଁ କିମ୍ବା ଦ୍ୱୈତ ଭାବର ମଧ୍ୟ କୌଣସି ଅବକାଶ ନାହିଁ । ଏହି ଅବସ୍ଥାରେ ଅହଂକାର ସମୂଳ ନଷ୍ଟ ହୋଇଯାଇଥାଏ । ଭଲଭାବରେ ମନନ ଓ ଚିନ୍ତନ କଲେ ଏହି ରହସ୍ୟ ଜଣାପଡ଼ିଥାଏ ଏବଂ ଏହା ଜାଣିବା ମାତ୍ରେ ମନ ସ୍ଥିର ହୋଇଯାଇଥାଏ । ଅନ୍ତତଃ ପୂର୍ଣ୍ଣ-ଜ୍ଞାନ ପ୍ରକଟିତ ହେବା ଦ୍ୱାରା କହିବା, ଶୁଣିବା ଆଦିର ଆଉ କୌଣସି ଆବଶ୍ୟକତା ରହି ନ ଥାଏ । ସ୍ୱୟମେବ 'ମୁଁ'ଟି ନିଶ୍ଚଳ ବ୍ରହ୍ମାକାର ହୋଇ ସେହିଥିରେ ଲୀନ ହୋଇଯାଏ । ସେତେବେଳେ ଜୀବର କି ଅବସ୍ଥା ହୋଇଥାଏ ତାହା ଭାଷାରେ ବର୍ଣ୍ଣନା କରି ହେବ ନାହିଁ । ଏହାକୁ ହିଁ କୁହାଯାଏ ପ୍ରକୃତ ଆତ୍ମ-ନିବେଦନ ବା ଆତ୍ମସମର୍ପଣ ।

## ଷଷ୍ଠ ସମାସ
## ।। ସୃଷ୍ଟି-ନିର୍ମାଣ ବିବେଚନ ।।

ବକ୍ତା କହୁଛନ୍ତି— ପରବ୍ରହ୍ମ ଆକାଶ ଭଳି ନିର୍ମଳ, ନିଶ୍ଚଳ, ଶାଶ୍ୱତ, ଅସୀମ ଓ ବ୍ୟାପକ । ଏଥିରେ କାର୍ଯ୍ୟ-କାରଣ, ଜନ୍ମ-ମରଣ, ରଚନା-ବିଘଟନ, ଜ୍ଞାନ-ଅଜ୍ଞାନ, ଆଗମନ-ନିର୍ଗମନ ଆଦି କୌଣସି କ୍ରିୟା ନାହିଁ । କାରଣ ଏହା ''ମାୟାତୀତ । ବ୍ରହ୍ମ ମୁଁ ଏକରୁ ବହୁ ହେବି'' (ଏକୋହଂ ବହୁସ୍ୟାମ୍)ର ସଂକଳ୍ପ ଜାତ ହେବାରେ ଏହି ଆଦି ସଂକଳ୍ପ ହିଁ ମୂଳମାୟାର ରୂପ ଧାରଣ କରେ । ଏହାକୁ ହିଁ କୁହାଯାଏ 'ଷଡ଼ଗୁଣୈଶ୍ୱର୍ଯ୍ୟସମ୍ପନ୍ନ ଭଗବାନ' ଏବଂ ''ଅର୍ଦ୍ଧନାରୀନଟେଶ୍ୱର'' ସର୍ବେଶ୍ୱର, ସର୍ବଜ୍ଞ, ସାକ୍ଷୀ, ଦ୍ରଷ୍ଟା, ଜ୍ଞାନଘନ, ପରେଶ, ପରମାତ୍ମା, ଜଗଜ୍ଜୀବନ, ମୂଳପୁରୁଷ ଆଦି ସବୁ ନାମ ଏହି ମୂଳମାୟାର । ଏହି ମୂଳମାୟା ଅଧୋମୁଖୀ ହେବାରେ ଗୁଣମାୟା ହୋଇଯାଏ । ଗୁଣମାୟାରୁ ତ୍ରିଗୁଣ ଏବଂ ତ୍ରିଗୁଣରୁ କ୍ରମଶଃ ବ୍ରହ୍ମା, ବିଷ୍ଣୁ, ମହେଶ ଏବଂ ତମୋଗୁଣ ରୂପୀ ରୁଦ୍ର (ମହେଶ୍ୱର)ରୁ ପଞ୍ଚମହାଭୂତର ନିର୍ମାଣ ହୋଇଛି । ମୂଳମାୟାରେ ହିଁ ସୂକ୍ଷ୍ମ ଅଷ୍ଟଧା ପ୍ରକୃତି ଅତି ସୂକ୍ଷ୍ମରୂପରେ ବିଦ୍ୟମାନ । ଏହା ବଢ଼ି ବଢ଼ି ବ୍ୟକ୍ତିରୂପରେ ପ୍ରକଟିତ ହୋଇଥାଏ ।

ନିଶ୍ଚଳ ବ୍ରହ୍ମରୁ ଯେଉଁ ସଂକଳ୍ପ ଜାତହେଲା, ସେଥିରେ ପ୍ରଥମ ମୂଳମାୟାର ଉଦ୍ରେକ ହେଲା । ଏହା ବାୟୁସ୍ୱରୂପ । ତ୍ରିଗୁଣ ପଞ୍ଚଭୂତାତ୍ମକ ଅଷ୍ଟଧା

ପ୍ରକୃତି ମଧ୍ୟ ବାୟୁ । ଏହି ବାୟୁ ମୂଳମାୟାରେ ସୂକ୍ଷ୍ମଭାବରେ ରହିଥାଏ । ଏଥିରେ ଆକାଶ, ଅର୍ଥାତ୍ ଅନ୍ତରାତ୍ମାକୁ ସ୍ୱୟଂ ପ୍ରତ୍ୟୟ କରିବା ଉଚିତ । ଆକାଶରେ ଉଷ୍ଣ ଓ ଶୀତଳ ବାୟୁ; ଶୀତଳବାୟୁରୁ ତାରକା ଚନ୍ଦ୍ର; ଉଷ୍ଣବାୟୁର ସୂର୍ଯ୍ୟ, ଅଗ୍ନି ଏବଂ ବିଜୁଳି ଆଦି ନିର୍ମାଣ ହୋଇଚି । ତେଜ (ଅଗ୍ନି)ରୁ ଜଳ, ଜଳରୁ ପୃଥ୍ୱୀ, ପୃଥିବୀରୁ ନାନା ଗଛଆଦି ବନସ୍ପତିର ଉତ୍ପତ୍ତି । ବନସ୍ପତିରୁ ନାନା ରସ ଏବଂ ନାନା ବୀଜ ଏବଂ ଏହି ବୀଜରୁ ଚଉରାଶି ଲକ୍ଷ ଯୋନି (ପ୍ରାଣୀ)ର ବିସ୍ତାର ହୋଇଚି । ଏହିଭଳି ଭାବରେ ସୃଷ୍ଟି-ରଚନାର ବିଚାର କରାଯିବା ଉଚିତ୍ ।

ଏହି ରୂପରୁ ସଂହାର-ଲୀଳାର ବିଚାର କରାଯିବା ଉଚିତ୍ । ଯିଏ ଯେଉଁଠାରୁ ଉତ୍ପନ୍ନ ହୋଇଥାଏ ସେ ଅନ୍ତତଃ ସେହିଠାରେ ବିଲୀନ ହୋଇଥାଏ । ଏହି ତତ୍ତ୍ୱଟିକୁ ମନେରଖିବା ଉଚିତ୍ । ସୃଷ୍ଟିର ଉତ୍ପତ୍ତି, ସ୍ଥିତି ଓ ଲୟ—ଏହି ତିନୋଟି ସ୍ଥିତିରେ ଶାଶ୍ୱତ ବ୍ରହ୍ମ-ସ୍ୱରୂପ ଅଖଣ୍ଡ ରହିଥାଏ । ଏହାହିଁ ଯେ ସାର-ବସ୍ତୁ ଏବଂ ଶେଷମାୟା ଯେ ଅସାର ଏ ସଂପର୍କରେ ବିବେକ ସର୍ବତ୍ର ଜାଗ୍ରତ ରହିବା ଉଚିତ୍ । ଆଦି, ମଧ୍ୟ ଓ ଅନ୍ତରେ ଯେଉଁ ନିରଂଜନ ବ୍ରହ୍ମ— ଏହାର ଅନୁସଂଧାନ ଦିଗରେ ମନୁଷ୍ୟମାତ୍ରେ ସର୍ବଦା ଲିପ୍ତ ରହିବା ଉଚିତ୍ । ଏହାକୁ କେହି କେହି ଦ୍ରଷ୍ଟା, ସାକ୍ଷୀ ଅନ୍ତରାତ୍ମା କହିଥାଆନ୍ତି । ସାକ୍ଷୀତ୍ୱ ମଧ୍ୟ ଏକ ଅବସ୍ଥା । କିନ୍ତୁ ବ୍ରହ୍ମ ଅବସ୍ଥାତୀତ ।

ନାନା ବିଦ୍ୟା, କଳାକୌଶଳ ସବୁ ହେଉଚି ମାୟାର ଖେଳ । ଯିଏ ଉପାଧିଠାରୁ ଊର୍ଦ୍ଧ୍ୱରେ ତାକୁ ଏହି ସୃଷ୍ଟି ରଚନା କେବଳ ଏକ ମରୀଚିକା, ଭ୍ରମର ଜାଲ ବୋଲି ମନେହେବ । ତେଣୁ ବିବେକ ବିଚାର ଦ୍ୱାରାହିଁ ବ୍ରହ୍ମପଦ ପ୍ରାପ୍ତ ହୋଇପାରେ । ସଂସାରରେ କିଏ ରାଜବୈଭବ ଭୋଗ କରୁଛି ତ କେହି ଅନ୍ୟମାନଙ୍କର ମଳମୂତ୍ର ସଫା କରୁଛି । ସମସ୍ତେ ନିଜକୁ ଶ୍ରେଷ୍ଠ ମନେକରୁଛନ୍ତି । କିନ୍ତୁ ବିବେକୀ ଲୋକ ଯଥାର୍ଥସ୍ଥିତି ଅର୍ଥାତ୍ କିଏ ପ୍ରକୃତରେ କ'ଣ, ଜାଣିପାରେ । ମୂଢ଼, ମିଥ୍ୟାଚାରୀ ଲୋକଙ୍କ ସଂସର୍ଗରେ ଆସି ନିଜର ସର୍ବନାଶ କରିବା ଅନୁଚିତ । ସେମାନେ ଲୋକଙ୍କୁ ମିଥ୍ୟାପଥରେ ପରିଚାଳିତ କରିଥାଆନ୍ତି । ତେଣୁ ନିଜର ଅନୁଭବ ଦ୍ୱାରା ସତ୍ୟର ଅନୁସଂଧାନ କରିବା ଉଚିତ ।

କେବଳ ଗ୍ରନ୍ଥପାଠ ଦ୍ୱାରା ଯଦି ଆତ୍ମ-ପ୍ରତ୍ୟୟ ତଥା ଆତ୍ମୋପଲବ୍ଧି ହୋଇଯାଇ ପାରୁଥାଆନ୍ତା, ତେବେ ସଦ୍‌ଗୁରୁଙ୍କର କୌଣସି ଆବଶ୍ୟକତା

ନଥାଆନ୍ତା । ଆତ୍ମପ୍ରତ୍ୟୟ ଲାଗି ମାଧ୍ୟମ ହେଉଚନ୍ତି ସଦ୍‌ଗୁରୁ । ସଦ୍‌ଗୁରୁଙ୍କ ମୁହଁରୁ ସୃଷ୍ଟି ରଚନାର ରହସ୍ୟ ସଂପର୍କରେ ଜ୍ଞାନଲାଭ କରି ଆତ୍ମବିଶ୍ୱାସ ଲାଭ କରିବା ଆବଶ୍ୟକ । ଅନେକ ଲୋକ ଦାମ୍ଭିକତା ପ୍ରକାଶ କରୁଥିବା ତଥାକଥିତ ଗୁରୁମାନଙ୍କ ଫାଶରେ ପଡ଼ି ନିଜର ପତନ ଘଟାଇଥାଆନ୍ତି । ତେଣୁ ସଦ୍‌ଗୁରୁଙ୍କ ଆଶ୍ରୟ ନେଇ ଶ୍ରଦ୍ଧା ଓ ନମ୍ରଭାବଦ୍ୱାରା ସେମାନଙ୍କ ଆସ୍ଥାଭାଜନ ହେବା ଆବଶ୍ୟକ ।

## ସପ୍ତମ ସମାସ
## ।। ବାସନା-ତ୍ୟାଗ ।।

ଶ୍ରୋତାମାନେ କହୁଛନ୍ତି— ନ୍ୟାୟ-ନିଷ୍ଠୁର କଥା ସମସ୍ତଙ୍କ ପକ୍ଷରେ ଅପ୍ରିୟ ଲାଗିଥାଏ । ତା ବୋଲି ଭୟରେ କ'ଣ ସତ କହିବନି ? ନିଶ୍ଚୟ କହିବା ଉଚିତ୍ । ଭୋଜନ କରିବ ତ ନିଃସଂକୋଚ ଭାବରେ କରିବା ଉଚିତ । ଏଭଳି ବହୁ ଲୋକ ଅଛନ୍ତି ଯେଉଁମାନେ କି ବିଷୟ ବାସନାକୁ ନିନ୍ଦା କରିଥାଆନ୍ତି; କିନ୍ତୁ ନିଜେ ବିଷୟ ବାସନାରେ ବୁଡ଼ି ରହିଥାଆନ୍ତି । ବିଷୟକୁ ନିନ୍ଦା କରିବ; ଅଥଚ ବିଷୟକୁ ସେବନ କରିବ— ଏଭଳି ଦୋମୁହାଁ ଚାଲ୍ ଠିକ୍ ନୁହଁ । ପ୍ରପଞ୍ଚୀ ଗୃହସ୍ଥ ଲୋକଙ୍କ ଭଳି ପରମାର୍ଥୀ (ଅଧ୍ୟାତ୍ମବାଦୀ) ଲୋକେ ମଧ୍ୟ ଷଡ଼ରସ ଭୋଜନ କରିଥାଆନ୍ତି । ସମସ୍ତେ ବିଷୟକୁ ଉପଭୋଗ କରିଥାଆନ୍ତି, ଅଥଚ ବିଷୟର ନିନ୍ଦା କରିଥାଆନ୍ତି ।

ଯେ ପର୍ଯ୍ୟନ୍ତ ଦେହ ରହିଛି ସେ ପର୍ଯ୍ୟନ୍ତ କେହି ବିଷୟକୁ ତ୍ୟାଗ କରିନପାରନ୍ତି, କିନ୍ତୁ କୁହାଯାଉଚି ଯେ ବିଷୟ ତ୍ୟାଗ ନକଲେ ପରମାର୍ଥ ପ୍ରାପ୍ତି ଅସଂଭବ । ଇଆଡ଼େ ବିଷୟତ୍ୟାଗ ସଂଭବ ହୋଇପାରୁନି କି ପରମାର୍ଥ ପ୍ରାପ୍ତି ମଧ୍ୟ ହୋଇପାରୁନି । ତେଣୁ ସ୍ୱାମିଜୀ ! ଆମକୁ ଏକଥା ସ୍ପଷ୍ଟଭାବେ ବୁଝେଇ ଦିଅନ୍ତୁ ଯେ ବିଷୟକୁ ତ୍ୟାଗ କଲେ ଶରୀର ଚଳି ପାରିବ କିପରି ? ଏକଥା ବିଚିତ୍ର ମନେ ହେଉଚି ଯେ ସବୁ ବିଷୟ ତ୍ୟାଗ କଲେ ଯାଇ ପରମାର୍ଥ ସାଧନା କରାଯାଇପାରିବ ।

ସମର୍ଥ ସ୍ୱାମିଜୀ କହୁଛନ୍ତି— ପ୍ରିୟ ଶ୍ରୋତାଗଣ ! ମନେରଖ ଯେ ବୈରାଗ୍ୟପୂର୍ବକ ବିଷୟକୁ ତ୍ୟାଗ କଲେ ପରମାର୍ଥ ଲାଭ ହୋଇପାରେ । ପ୍ରପଞ୍ଚ

ତ୍ୟାଗ ଦ୍ୱାରା ହିଁ ଯେ ପରମାର୍ଥପ୍ରାପ୍ତି ସଂଭବ ହୋଇଥାଏ— ଏକଥା ସତ୍ୟ । ବଡ଼ ବଡ଼ ଜ୍ଞାନୀ ପୁରୁଷ କଷ୍ଟ ସ୍ୱୀକାର କରି ବିଖ୍ୟାତ ହୋଇଛନ୍ତି । ଏହି ଶ୍ରେଷ୍ଠ ପୁରୁଷମାନଙ୍କୁ କେତେକ ସ୍ୱାର୍ଥାନ୍ଧ ଲୋକ ଈର୍ଷା କରିଥାଆନ୍ତି । ଯାହାଠାରେ ତିଳେ ବି ବୈରାଗ୍ୟ ନାହିଁ, ଶୁଦ୍ଧ ଆଚାର ବିଚାର ନାହିଁ— ଏଭଳି ଲୋକ ନିଜକୁ ନିଜେ ସଜ୍ଜନ ବୋଲି ଡିଣ୍ଡିମ ପିଟିଲେ ମଧ୍ୟ ସେମାନଙ୍କଠାରେ ଅନୁମାନିକ ଜ୍ଞାନ ବ୍ୟତୀତ କିଛି ନ ଥାଏ । ସେମାନଙ୍କ ହୃଦୟରେ ପ୍ରକୃତ ଅନୁତାପର ଅନୁଭବ ନଥାଏ । ଅନୁତାପ ନହେବା ପୂର୍ବଜନ୍ମ ପାପର ପ୍ରତୀକ । ବୈରାଗ୍ୟ ଓ ଅନୁତାପ ଅଭାବରୁ ସେମାନେ ଅନ୍ୟର ଉତ୍କର୍ଷକୁ ସହି ପାରନ୍ତି ନାହିଁ । ଯିଏ ଦେବାଳିଆ, ଅନ୍ୟ ଭାଗ୍ୟବାନର ଧନଦୌଲତକୁ ଦେଖିବାମାତ୍ରେ ତାର ଗାତ୍ରଦାହ ହୋଇଥାଏ । ଏଭଳି ଈର୍ଷାଳୁ ବ୍ୟକ୍ତି ଯଦି ଅନାଶକ୍ତ ବ୍ୟକ୍ତିର ନିନ୍ଦା କରେ, ବୈରାଗ୍ୟକୁ ହସରେ ଉଡ଼ାଇଦିଏ, ସେଥିରେ ଅନାସକ୍ତବ୍ୟକ୍ତି ବା ବୈରାଗ୍ୟବାନ୍ ବ୍ୟକ୍ତିର କ'ଣ ବା କ୍ଷତି ହେବ ?

ବୈରାଗ୍ୟଠୁ ବଳି ଭାଗ୍ୟ କିଛି ନାହିଁ । ଯାହାଠି ବୈରାଗ୍ୟ ନାହିଁ, ସେ ଅଭାଗା । ବିନା ବୈରାଗ୍ୟରେ କେହି ପରମାର୍ଥର ଅଧିକାରୀ ହୋଇ ନପାରେ । ଆତ୍ମପ୍ରତ୍ୟୟ-ଜ୍ଞାନ ଦ୍ୱାରା ଯେଉଁ ଅନାସକ୍ତ ପୁରୁଷ ବିବେକ ବଳରେ ସର୍ବସ୍ୱ ତ୍ୟାଗ କରିଥାଏ ସେଭଳି ମହାଯୋଗୀ ସାକ୍ଷାତ ଭଗବତ୍‌ପୁରୁଷ ପାଲଟିଥାଏ । ସେ ହେଉଛନ୍ତି ଯୋଗୀଙ୍କ ମଧ୍ୟରେ ମୁକୁଟମଣି । ଅଷ୍ଟମହାସିଦ୍ଧିକୁ ଉପେକ୍ଷା କରି ଯିଏ ଯୋଗ-ଦୀକ୍ଷା ଧାରଣ କରିଥାଏ ସେ ଘରଘର ବୁଲି ଭିକ୍ଷାମାଗୁଥିବା ସ୍ୱୟଂ ଶଂକର ।

କେବଳ ସାଧୁ ସନ୍ନ୍ୟାସୀଙ୍କ ଭଳି ବେଶ ପୋଷାକ ପିନ୍ଧି ବୁଲୁଥିବା ତଥାକଥିତ ମହାତ୍ମାମାନେ ଈଶ୍ୱର-ପୁରୁଷ ହେବା ବିଡ଼ମ୍ବନାମାତ୍ର । ତେଣୁ ସାର ଅସାରର ପରୀକ୍ଷା କରିନେବା ଆବଶ୍ୟକ । ଅନାସକ୍ତ ବୈରାଗ୍ୟବାନ୍ ବିବେକୀ ମହାତ୍ମାମାନେ ଲୋକଙ୍କ ପଛରେ ଗୋଡ଼େଇ ନ ଥାଆନ୍ତି । ଲୋକେ ସେମାନଙ୍କ ପାଖକୁ ଆପେ ଆପେ ଆସନ୍ତି । କିନ୍ତୁ ଯିଏ ବିଷୟାସକ୍ତଭୋଗୀ ତାକୁ କେବଳ ମୂର୍ଖଲୋକେ ହିଁ କିଛିପାଇବା ଆଶାରେ ଲୋଭରେ ପୂଜା କରିଥାଆନ୍ତି । ଆଚାର-ବିଚାରରେ ଭ୍ରଷ୍ଟ, ବିଷୟଲୋଭୀ, ଅବିବେକୀ ତଥାକଥିତ ମହାତ୍ମାମାନଙ୍କୁ ସଜ୍ଜନ ପୁରୁଷଙ୍କ ସତ୍‌ସଂଗ ଭଲ ଲାଗିନଥାଏ । ''ସେଇଟା କ'ଣ ମୋଠୁ ବେଶୀ

ଜାଣିଚି'' କହି ସେମାନେ ସଜ୍ଜନମାନଙ୍କ ପାଖ ପଶି ପାରନ୍ତି ନାହିଁ । ଯିଏ ବୈରାଗ୍ୟସଂପନ୍ନ ଏବଂ ଆଚାରବିଚାରରେ ପବିତ୍ର, ଯିଏ ଜ୍ଞାନୀ ହୋଇ ମଧ୍ୟ ଭକ୍ତିଭାବରେ ବୁଡ଼ି ରହିଥାଏ, ସ୍ୱୟଂପ୍ରଜ୍ଞ ହୋଇ ସୁଦ୍ଧା ବାଦବିବାଦଠାରୁ ଅର୍ଥାତ୍ ବିଦ୍ୟା-ବିନୋଦଠାରୁ ଦୂରରେ ରହିଥାଏ ଏଭଳି ମହାପୁରୁଷଙ୍କ ସତ୍‌ସଙ୍ଗ ଦୁର୍ଲ୍ଲଭ ।

ଅଶୁଦ୍ଧ ବିଷୟକୁ ସର୍ବଦା ତ୍ୟାଗ କରି ଶୁଦ୍ଧ ବିଷୟକୁ ବିବେକପୂର୍ବକ ସେବନ କରିବା ହିଁ ବିଷୟ-ତ୍ୟାଗ । ବିଷୟପ୍ରତି ଯାହାର ପ୍ରଖର ବୈରାଗ୍ୟ ହୋଇଥାଏ, ସମସ୍ତେ ତାକୁ ସମ୍ମାନ କରିଥାଆନ୍ତି । ଏଭଳି ପୁରୁଷର କଥା ଓ କାମରେ ପ୍ରଭେଦ ନଥାଏ । ବିବେକୀ ପୁରୁଷ କେଉଁ ବିଷୟକୁ କେତେ ପରିମାଣରେ କିପରି ତ୍ୟାଗ କରିବା ଉଚିତ ତାହା ଭଲଭାବରେ ଜାଣିଥାଆନ୍ତି । ସେଭଳି ପୁରୁଷ ପିଣ୍ଡ ଓ ବ୍ରହ୍ମାଣ୍ଡକୁ ଭଲଭାବରେ ଜାଣିଥାଆନ୍ତି । ତେଣୁ ଏଭଳି ସର୍ବଜ୍ଞାତା, ସର୍ବଗୁଣ ସଂପନ୍ନ, ବୈରାଗ୍ୟବାନ ମହାପୁରୁଷମାନଙ୍କ ସମାଗମରେ ସତ୍‌ସଂଗ କରିବାରେ ସହଜଭାବରେ ଜୀବନ ସାର୍ଥକ ହୋଇଥାଏ ।

ଅତଏବ ମୁମୁକ୍ଷୁ, ଜିଜ୍ଞାସୁ ସାଧକ ମାତ୍ରେ ଅତ୍ୟନ୍ତ ସାବଧାନତାପୂର୍ବକ ପୂର୍ଣ୍ଣଜ୍ଞାନୀ, ବିବେକୀ ଏବଂ ନିଷ୍ପୃହସନ୍ଥ ମହାତ୍ମାମାନଙ୍କ ସତ୍‌ସଂଗ ଦ୍ୱାରା ଜୀବନକୁ ସାର୍ଥକ କରିବା ଉଚିତ । ବାହ୍ୟାଡ଼ମ୍ବର ସହିତ ବିଳାସୀ ଓ ଭୋଗବାଦୀ ତଥାକଥିତ ଅବତାର-ପୁରୁଷ ବୋଲି ନିଜକୁ କହୁଥିବା ଦମ୍ଭୀଲୋକଙ୍କ ପ୍ରତି ସତର୍କ ରହିବା ଉଚିତ । ସେମାନଙ୍କ ଶବ୍ଦ-ଜାଲରେ ପଡ଼ି ନିଜର ଇହଲୋକ ଓ ପରଲୋକର ବିନାଶ ଘଟେଇବା ଅପେକ୍ଷା ସେମାନଙ୍କଠାରୁ ଦୂରରେ ରହିବା ଭଲ ।

## ଅଷ୍ଟମ ସମାସ
## ।। କାଳର ସ୍ୱରୂପ ।।

ମୂଳମାୟା ଜଗଦୀଶ୍ୱର । ଏଥିରୁ ଅଷ୍ଟଧା ପ୍ରକୃତିର ବିସ୍ତାର ହୋଇ କ୍ରମଶଃ ସୃଷ୍ଟିର ଉତ୍ପତ୍ତି ହୋଇଛି । ଆକାଶ ସଦୃଶ ନିରାକାର ବ୍ରହ୍ମରେ କାଳ ବା ସମୟର କୌଣସି ସ୍ଥାନ ନାହିଁ । ଉପାଧିର ବିସ୍ତାର ସହିତ କାଳର ସତ୍ତା ପ୍ରକଟିତ । ଯେ ପର୍ଯ୍ୟନ୍ତ ଚଞ୍ଚଳତା ରହିଛି ସେ ପର୍ଯ୍ୟନ୍ତ କାଳର କଳ୍ପନା । ଆକାଶ = ଅବକାଶ= ବିଳମ୍ବ = କାଳ । ସୂର୍ଯ୍ୟ ଲାଗି କ୍ଷଣ ବା ମୁହୂର୍ତ୍ତଠାରୁ ଆରମ୍ଭ କରି ଯୁଗ ପର୍ଯ୍ୟନ୍ତ କାଳର ଗଣନା କରାଯାଇଥାଏ । କ୍ଷଣ ବା ପଳ, ଘଡ଼ି, ପ୍ରହର,

ଦିନ, ଅହୋରାତ୍ର, (ରାତିଦିନ), ପକ୍ଷ, ମାସ, ବର୍ଷ, ଯୁଗଆଦି ଦ୍ୱାରା ମନୁଷ୍ୟ କାଳର ଗଣନା କରିଥାଏ । ସେହିଭଳି କୃତଯୁଗ, (ସତ୍ୟଯୁଗ), ତ୍ରେତାଯୁଗ, ଦ୍ୱାପର ଯୁଗ ଓ କଳିଯୁଗ ଆଦି ମଧ୍ୟ କାଳର ଗଣନା ପ୍ରକ୍ରିୟା । ଦେବଦେବୀମାନଙ୍କ ଆୟୁଷ ବହୁତ । ବ୍ରହ୍ମା ଆଦି ତିନି ପ୍ରମୁଖଦେବତାଙ୍କ ଉତ୍ପତ୍ତିର ଯେଉଁ ଖେଳ ଚାଲିଚି, ତାହା ସୂକ୍ଷ୍ମରୀତିରେ ପ୍ରତ୍ୟେକ ପ୍ରାଣୀଠାରେ ମଧ୍ୟ ଚାଲିଚି । କିନ୍ତୁ ପ୍ରାଣୀ ନ୍ୟାୟନୀତି ପାଳନ ନ କରିବାରେ ସେ ନାନା ଦୁଃଖକଷ୍ଟ ଭୋଗ କରୁଛି । ତିନୋଟିଯାକ ଗୁଣ ପରସ୍ପର ସହିତ ମିଳିମିଶି ରହିଛନ୍ତି । ଏଗୁଡ଼ିକୁ ଅଲଗା କରାଯାଇ ନ ପାରେ । ଆଦିରୁ ଅନ୍ତଯାଏଁ ସୃଷ୍ଟିରଚନା ତିନୋଟିଯାକ ଗୁଣର ମିଶ୍ରଣରେ ହୋଇଛି । ତେଣୁ କେଉଁଟି ଶ୍ରେଷ୍ଠ, କେଉଁଟି କନିଷ୍ଠ (ଛୋଟ) କୁହାଯାଇ ନ ପାରେ ।

କେବଳ ଜ୍ଞାନୀମାନେ ଏହାକୁ ବୁଝିଥାଆନ୍ତି । ଅଜ୍ଞାନୀ ବୃଥାଭ୍ରମରେ ଇତସ୍ତତଃ ହେବାରେ ଲାଗିଥାଏ । ଅନୁଭବଦ୍ୱାରା ହିଁ ଏହାର ରହସ୍ୟକୁ ଜାଣିହେବ । ଉତ୍ପତ୍ତି, ସ୍ଥିତିକାଳ, ସଂହାରକାଳ, ଛଅଋତୁର କାଳ, ସୁଖ, ଦୁଃଖ ଓ ଆନନ୍ଦ କାଳ, ପ୍ରାତଃକାଳ, ଅପରାହ୍ନକାଳ, ସାୟଂକାଳ, ପର୍ବକାଳ, ବାଲ୍ୟ-ଯୌବନ ବୃଦ୍ଧାବସ୍ଥାର କାଳ, ସୁକାଳ ଓ ଅକାଳ, ବିଷମକାଳ, ଅନ୍ତିମକାଳ ଆଦି ସବୁକାଳ ଅନୁଭବ ଦ୍ୱାରା ଜାଣି ହୋଇଥାଏ । ବାସ୍ତବତା ଏବଂ ଯାହା ବାହାରକୁ ଦେଖାଯାଏ— ଏ ଦୁଇଟି ଅଲଗା ଅଲଗା ମନେହୋଇଥାଏ । ଏହାର ନାମ ହିଁ ହୀନବିବେକ । ପ୍ରବୃତ୍ତିରେ ଲିପ୍ତ ଥିବା ଲୋକ ଅବିଚାରୀ ହୋଇଥାଏ । ପ୍ରବୃତ୍ତିର ଅଧୋଗତି ଘଟୁଚି ବୋଲି ସେ ଜାଣିପାରେ ନାହିଁ । କିନ୍ତୁ ବିବେକୀ ପୁରୁଷ ଏହା ଜାରିପାରେ । ନିବୃତ୍ତିମାର୍ଗ ଦ୍ୱାରା ମନୁଷ୍ୟର ଊର୍ଦ୍ଧ୍ୱଗତି ହୋଇଥାଏ । ଏହା ପରମ ସୁଖଦାୟକ । ବିବେକୀ ପୁରୁଷ ଊର୍ଦ୍ଧ୍ୱମୁଖୀ ହେଇ ଯେଉଁଠାରୁ ବ୍ରହ୍ମାଣ୍ଡର ଉତ୍ପତ୍ତି ସେହି ମୂଳ ପ୍ରକୃତି ପ୍ରତି ଧ୍ୟାନ ରଖି ସାଧନା କରୁ କରୁ ଉତ୍ପତ୍ତିସ୍ଥଳରେ ପହଞ୍ଚିଥାଏ । ସାଂସାରିକ ଜଞ୍ଜାଳ କରୁଥିଲେ ମଧ୍ୟ ଯିଏ ପରମାର୍ଥ ସାଧନା କରେ ସେ ମଧ୍ୟ ଏହି ସ୍ଥିତି ଲାଭ ଲାଗି ସକ୍ଷମ ହୋଇପାରେ । ସେ ପାରବ୍ଧ (ପୂର୍ବଜନ୍ମ କର୍ମଫଳ) ବଶତଃ ଲୋକଙ୍କ ଭିତରେ ବିଚରଣ କରୁଥିଲେ ମଧ୍ୟ ପ୍ରକୃତିଠାରୁ ଅଲିପ୍ତ ରହିଥାଏ ।

ସମସ୍ତଙ୍କର ମୂଳସ୍ଥାନ ବା ଉତ୍ପତ୍ତି ସ୍ଥଳ ଏକ । କିନ୍ତୁ ସଂସାରରେ କେହି ଜ୍ଞାନୀ ତ, କେହି ଅଜ୍ଞାନୀ । ତେଣୁ ବିବେକ ଦ୍ୱାରା ଉତ୍ପତ୍ତିସ୍ଥଳ (ପରଲୋକ)ରେ

ପହଞ୍ଚିବା ଲାଗି ଉଦ୍ୟମ କରିବା ଆବଶ୍ୟକ । ଭଲଲୋକ, ଇହଲୋକ ଓ ପରଲୋକ ଉଭୟ ସ୍ଥାନରେ ସଫଳ ହୋଇଥାଏ ଏବଂ ଜନ୍ମକୁ ସାର୍ଥକ କରିଥାଏ । ଅଜ୍ଞାନୀଲୋକ ପଶୁଭଳି ଜୀବନ ବିତାଏ । ଫଳରେ ସେ ପରଲୋକରେ ସଫଳ ହୋଇପାରେନା ।

ଯିଏ ଯେପରି କାର୍ଯ୍ୟ କରେ ସେହିଭଳି ଫଳପାଏ । ଯାହା କରିବ, ତାହା ପାଇବ—ଏହା ଅଟଳନ୍ୟାୟ । ଭକ୍ତିରେ ଭଗବାନ ପ୍ରସନ୍ନ ହୋଇଥାଆନ୍ତି । ଭକ୍ତ ଓ ଭଗବାନ ଏକରୂପ ହେବାରେ ପରମ ଶାନ୍ତି ମିଳେ । ନରଦେହ ପାଇ ନିଜ ଯଶକୁ ବିସ୍ତାର ନ କରି ମରିବା ଠିକ୍ ନୁହଁ । ସବୁ କଥା ଜାଣି ମଧ ବିଜ୍ଞଲୋକେ ପ୍ରବୃତ୍ତିର ମାୟା ଜାଲରେ ପଡୁ ଥିବା ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ।

ଜୀବନର ଅନ୍ତିମ କାଳରେ କିଏ କୌଣସି ଜିନିଷ ସାଙ୍ଗରେ ନେଇ ଯାଇ ନଥାଏ । ଯାହା ସାଇତି ରଖିଥାଏ ସିମିତି ପଡ଼ିରହେ । ଏହା ପ୍ରତ୍ୟକ୍ଷ ଅନୁଭୂତିର କଥା । ତେଣୁ ପଦାର୍ଥ ପ୍ରତି ଉଦାସୀନ ରହିବା ଉଚିତ୍ । ପଦାର୍ଥର ଊର୍ଦ୍ଧ୍ୱରେ ଯେଉଁ ପରମାତ୍ମା, ତାଙ୍କୁ ଦର୍ଶନ କରିବା ଉଚିତ । ପରମାତ୍ମା-ଲାଭଠାରୁ ଶ୍ରେଷ୍ଠ ଲାଭ କିଛି ନାହିଁ । ଏ ସଂସାରରେ କାର୍ଯ୍ୟ-କାରଣରୁ ଅର୍ଜିତ ଧନସମ୍ପତ୍ତି ସବୁ ସଂସାରରେ ହିଁ ପଡ଼ି ରହେ । ଏକଥା ଜାଣି ଯେଉଁ ବିବେକୀ-ପୁରୁଷ ସାଂସାରିକ କାର୍ଯ୍ୟକରି ମଧ ସଂସାରରେ ଜଡ଼ିତ ହୋଇ ପଡ଼େ ନାହିଁ ସେ ପରମାର୍ଥ ଲାଭ କରେ । ତାର ସମସ୍ତ ପ୍ରଶ୍ନର ସମାଧାନ ହୋଇଯାଏ ।

ପ୍ରାଚୀନକାଳରେ ଜନକାଦିରାଜା ରାଜ୍ୟଶାସନ ଚଳାଇ ମଧ ପରମାତ୍ମା-ସୁଖର ପରମାନନ୍ଦ ଲାଭ କରିଥିଲେ । ସବୁ ସମୟରେ ମଧ ଏଭଳି ପୁଣ୍ୟଶ୍ଳୋକ ମହାପୁରୁଷ ବିଦ୍ୟମାନ । ଅନ୍ତିମକାଳରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କଲେ ମଧ ମୃତ୍ୟୁକୁ କେହି ହଟେଇ ନ ପାରେ । ରୋଗ, ଉଦ୍‌ବେଗ, ଚିନ୍ତା ଓ ମୃତ୍ୟୁ ହେତୁ ଜୀବନ କାଳର ଅଧୀନ । ତେଣୁ ଜୀବନ ମାତ୍ରେ ପରାବଲମ୍ବୀ ।

ଏହି ସଂସାର ଏକ ମାୟାର ବିପଣୀ, ମାୟାର ହାଟ । ଏହି ବଜାରରେ ଆମେ ପରମାତ୍ମା-ଲାଭ ଉଦ୍ଦେଶ୍ୟରେ ସମୟ ଅତିବାହିତ କରିବା ଉଚିତ୍ । ସଂସାରରେ ରହି ମଧ ସଂସାର ପ୍ରତି ଆସକ୍ତ ନ ହୋଇ ଜୀବନ-ନିର୍ବାହ କରିବା ବିବେକୀତାର କାର୍ଯ୍ୟ । ଏଭଳି ଭାବେ ଜୀବନ ବିତେଇବା ଲାଗି ଯିଏ ଶୁଭସଂକଳ୍ପ କରେ ସେ ପରମାତ୍ମାଙ୍କ କୃପାରେ ସଂସାରର ଦୁଃଖ-ଯାତନାରୁ ମୁକ୍ତି ପାଇଥାଏ ।

## ନବମ ସମାସ
## ।। ପ୍ରଯତ୍ନ ନିରୂପଣ ।।

ଏହାପରେ ଶ୍ରୋତାମାନେ କହିଲେ— ଯେଉଁ ବ୍ୟକ୍ତି ବିଲ୍‌କୁଲ୍ ଦୁର୍ବଳ, ଅନାଚାରୀ, ଦରିଦ୍ର, ଅଳସୁଆ, ପେଟୁ; ଯିଏ ମୂର୍ଖତାବଶତଃ ସବୁକିଛି ଖାଇ ଦେଇଥାଏ; ଯିଏ ଅନ୍ୟକୁ ଠକିବା ଲାଗି ମନେ ମନେ ନାନା ପେଞ୍ଚ ଚଳାଇ ନିଜେ ଠକି ହୋଇ ସର୍ବସ୍ୱ ହରାଇଥାଏ; ଯାହା ପାଖରେ ପିନ୍ଧିବା ଲାଗି ଛିଣ୍ଡା ଲେଙ୍ଗଡ଼ା ଲୁଗା ଖଣ୍ଡେ ନାହିଁ କିମ୍ବା ଶୋଇବା ପାଇଁ ପଟିଟିଏ ସୁଦ୍ଧା ନାହିଁ; ଯାହାର ଘରବାଡ଼ି ବୋଲି କିଛି ନାହିଁ; ଯାହାକୁ ପରିବାରର ଲୋକେ ଆଦୌ ପଚାରନ୍ତି ନାହିଁ —ଏଭଳି ଅଭାଗା ନିରାଶ୍ରିତ ବ୍ୟକ୍ତିର ଦଶା କ'ଣ ହେବ ?

ବକ୍ତା ଉତ୍ତର ଦେଇ କହୁଛନ୍ତି— ଯେ କୌଣସି କାମ ଛୋଟ ହେଉ ବା ବଡ଼ ହେଉ ନ କଲେ ପୂରା ହୋଇ ନ ପାରେ । ତେଣୁ ଛୋଟ ବଡ଼ର ବିଚାର ନ କରି ସମସ୍ତେ କର୍ତ୍ତବ୍ୟ-ପରାୟଣ ହେବା ଉଚିତ । ତାହାହେଲେ ଯାଇ ଭାଗ୍ୟୋଦୟ ଘଟିବ । ଯିଏ ଆନ୍ତରିକ ଭାବରେ ସାବଧାନ ନୁହଁ, ଉଦ୍ୟମଶୀଳ ବା ପ୍ରଯତ୍ନଶୀଳ ନୁହଁ, ତାକୁ ସୁଖ ସନ୍ତୋଷ ମିଳିବ କିପରି ? ତେଣୁ ଆଳସ୍ୟ ଓ ଦୁଶ୍ଚିନ୍ତାକୁ ତ୍ୟାଗ କରି ସମସ୍ତେ ଆନ୍ତରିକ ଭାବରେ କର୍ତ୍ତବ୍ୟ ପାଳନ କରିବା ଉଚିତ ।

ଦିନଚର୍ଯ୍ୟା କିପରି ହେବା ଉଚିତ ସେ କଥା କହୁଛି । ବ୍ରାହ୍ମ ମୁହୂର୍ତ୍ତରେ ଉଠିବା ଉଚିତ ଏବଂ ଶେଯରୁ ଉଠିବା ମାତ୍ରେ ପ୍ରାତଃସ୍ମରଣ ତଥା କେତେକ ସ୍ତୋତ୍ର ଭଜନ ଆଉ ଉଚ୍ଚାରଣ ନିତ୍ୟ-ନିୟମିତ ଭାବରେ କରିବା ଉଚିତ । ତା ପରେ ଶୌଚ ଆଦି ଲାଗି ଗାଁଠାରୁ ଦୂରକୁ ଯିବା ଆବଶ୍ୟକ । ମୁଖମାର୍ଜନ, ସ୍ନାନଆଦି କରି ଦେବଦର୍ଶନ, ଦେବ-ପୂଜନ ଆଦି ବିଧି ସଂପନ୍ନ କରିବା ଉଚିତ । ତାପରେ କିଛି ଜଳପାନ କରି ନିଜ ଉଦ୍ୟୋଗ ବ୍ୟବସାୟରେ ନିଜକୁ ନିୟୋଜିତ କରିବା ଆବଶ୍ୟକ ।

ବାଣିଜ୍ୟ-ବ୍ୟବସାୟରେ ଅନ୍ୟକୁ ନିଜର କରି ନେବାର କଳା ହାସଲ କରିବାକୁ ପଡ଼ିବ । ଯିଏ ଲେଖା ଲେଖିକୁ ନିଜର ଜୀବନ-ନିର୍ବାହର ଅବଲମ୍ବନ କରିବ, ସେ ନିଜ ଅକ୍ଷରଗୁଡ଼ିକ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ମୁଁ ଆଗରୁ ଥରେ

କହିଛି ଯେ ଅକ୍ଷରଗୁଡ଼ିକ ଗୋଲ ଗୋଲ ଏବଂ ସୁନ୍ଦର ହେବା ଆବଶ୍ୟକ । ଯାହା କିଛି ପଢ଼ିବ, ତା ଉପରେ ଗଭୀର ଭାବରେ ମନନ କରିବା ଆବଶ୍ୟକ । ଯାହା ବୁଝିପାରିବନି, ବିନମ୍ରଭାବରେ ଅନ୍ୟଠୁ ପଚାରି ବୁଝିବା ଉଚିତ । ଅଭିଜ୍ଞତା ନ ଥାଇ କାହାକୁ କିଛି ଉପରଠାଉରିଆ ଭାବରେ କହିବା ପାପ । ସର୍ବଦା ସାବଧାନ ରହି ନୀତି ନିୟମକୁ ପାଳନ କରିବା ଉଚିତ । ଲୋକଙ୍କ ଅନୁକୂଳ ହେବାଭଳି କାର୍ଯ୍ୟ କରିବା ଉଚିତ । ତଦ୍ବାରା ପରୋପକାର ହୋଇଥାଏ ।

ସର୍ବଦା ହରିଚର୍ଚ୍ଚା କରିବା ଉଚିତ । ଲୋକେ ଯେପରି ତୁମକଥା ଶୁଣିବାକୁ ଆଗ୍ରହୀ ହେବେ, ସେହିଭଳି ନିଜର ଅଭିଜ୍ଞତା ବିଷୟ ଚତୁରତାର ସହିତ ବର୍ଣ୍ଣନା କରିବା ଉଚିତ । ମଧୁର-ଭାଷଣ କରିବା ଉଚିତ । ତାହାହେଲେ ତୁମେ ନ ଚାହିଁଲେ ମଧ୍ୟ ଲୋକେ ପ୍ରସନ୍ନ ହୋଇ ତୁମର ଜୟ ଜୟକାର କରିବେ । ଭାଷଣ-ପ୍ରବର୍ତ୍ତନରେ ଭକ୍ତି, ଜ୍ଞାନ, ବୈରାଗ୍ୟ ଯୋଗ ଆଦି ସାଧନାର ମାର୍ଗକୁ ଏପରି ବିଶଦ ଭାବରେ ବୁଝେଇବା ଉଚିତ; ଯେଉଁଥିରେ ଲୋକଙ୍କର ଭବ-ରୋଗ ନିବାରଣ ହୋଇପାରିବ । ଏପରି ଉପଦେଶ କରିବା ଉଚିତ, ଯାହାକୁ କାର୍ଯ୍ୟକାରୀ କରିବା ସମ୍ଭବ ହୋଇ ପାରିବ । ପଶୁଙ୍କ ଉପରେ ଅଧିକ ବୋଝ ଲଦି ସେମାନଙ୍କୁ କଷ୍ଟ ଦେବା ଅନୁଚିତ ।

ମନରେ ସବୁବେଳେ ରାମନାମର ଜପ ଚାଲିବା ଉଚିତ୍ । ଅନାସକ୍ତ ଓ ନିର୍ଦ୍ଵନ୍ଦ୍ଵଭାବରେ ଅଧ୍ୟାତ୍ମ-ନିରୂପଣ ଦିଗରେ ସର୍ବଦା ପ୍ରଯତ୍ନ କରିବା ଆବଶ୍ୟକ । ତା ସଙ୍ଗେ ସଙ୍ଗେ ଯଦି ସଂଗୀତ ଅଭ୍ୟାସ କରିପାର ତ ଆହୁରି ଭଲ । ତାହାହେଲେ ଲୋକପ୍ରିୟତା ବୃଦ୍ଧି ସଙ୍ଗେ ସଙ୍ଗେ ବିଭବ ପ୍ରାପ୍ତି ମଧ୍ୟ ହୋଇପାରିବ । ଏଭଳି ଲୋକପ୍ରତି ବହୁଲୋକ ଆକୃଷ୍ଟ ହୋଇଥାଆନ୍ତି । ତେଣୁ ନିଜ ବୁଦ୍ଧିକୁ ପ୍ରସାରିତ କରିବା ଆବଶ୍ୟକ । ବିନା ବିବେକ ବୁଦ୍ଧିରେ କିଏ କ'ଣ କେବେ ସଫଳ ହୋଇପାରେ ? ଅଜ୍ଞାନୀ କଥା ଛାଡ଼, ଗୁଣୀବ୍ୟକ୍ତି ମଧ୍ୟ ସଫଳ ହୋଇନପାରେ । ବିବେକର ବିସ୍ତାର ସଙ୍ଗେ ସଙ୍ଗେ ସମଗ୍ର ବ୍ରହ୍ମାଣ୍ଡକୁ ନିଜର କରିନେବା ଉଚିତ । ତାହାହେଲେ ଯାଇ ଭାଗ୍ୟୋଦୟ ସମ୍ଭବ । କିଏ କ'ଣ ଅଭାଗା ହୋଇ ରହିବାକୁ ଚାହେଁ ? ବିବେକବାନ ପୁରୁଷର ବୁଦ୍ଧି ପ୍ରସାରିତ ହେବା ସଙ୍ଗେ ସଙ୍ଗେ ତା ମନରେ କର୍ତ୍ତବ୍ୟ ଲାଗି ପ୍ରେରଣା ଜାଗ୍ରତ ହୋଇଥାଏ ।

## ଦଶମ ସମାସ
## ।। ବିଭୂତି-ପରିଚୟ ।।

ପ୍ରଥମେ ଉତ୍ତମ ପୁରୁଷର ଲକ୍ଷଣ ଶୁଣ । ଉତ୍ତମ ପୁରୁଷ ପେଟପୂରା ଖାଇ ସାରିବାପରେ ବାକୀ ଅନ୍ନ ଅନ୍ୟମାନଙ୍କୁ ଦେଇଥାଏ । ବଳକା ଅନ୍ନକୁ ସେ ନଷ୍ଟ କରିଦିଏ ନାହିଁ । ସେହିଭଳି ନିଜେ ଜ୍ଞାନସଂପନ୍ନ ହୋଇ ସେହି ଜ୍ଞାନ ଅନ୍ୟକୁ ବିତରଣ କରିବା ଉଚିତ୍ । ଯିଏ ପହଁରା ଜାଣେ ସେ ବୁଡ଼ିଯାଉଥିବା ଲୋକକୁ ଉଦ୍ଧାର କରିବା ଉଚିତ୍ । ନିଜେ ସବୁ ସଦ୍‌ଗୁଣର ଅନୁକରଣ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ସଦ୍‌ଗୁଣସଂପନ୍ନ ହେବାଲାଗି ପ୍ରେରଣା ଦେବା ଆବଶ୍ୟକ । ଉତ୍ତମ ପୁରୁଷମାତ୍ରେ ପ୍ରତିଦିନ ସ୍ନାନ, ସଂଧ୍ୟା, ଦେବପୂଜା, ଜପ-ଧ୍ୟାନ, କୀର୍ତ୍ତନ-ନିରୂପଣ ଆଦି ଶ୍ରଦ୍ଧାର ସହିତ କରିଥାଏ । ଶରୀର ତାର ପରୋପକାର ଦିଗରେ ଅଧିକ ନିୟୋଜିତ ହୋଇଥାଏ । ସେ ସମସ୍ତଙ୍କର ମଙ୍ଗଳ ଚିନ୍ତା କରେ ଏବଂ ସମସ୍ତଙ୍କର ଭଲ ହିଁ କରିଥାଏ । ସମସ୍ତଙ୍କୁ ମିଠା କଥା କହେ । ଅନ୍ୟର ଦୁଃଖରେ ଦୁଃଖୀ ଏବଂ ଅନ୍ୟର ସୁଖରେ ସେ ସୁଖୀ ହୋଇଥାଏ ।

ଏସବୁ ହେଉଚି ଉତ୍ତମ ପୁରୁଷର ବିଭୂତି । ସେ ମଧୁର ଭାଷଣରେ ଅନ୍ୟକୁ ବଶୀଭୂତ କରିଥାଏ । ଅନ୍ୟର ଦୋଷ ଦେଖିଲେ ତାକୁ କ୍ଷମା କରିଥାଏ ଏବଂ ଯଥାସମ୍ଭବ ଅନ୍ୟର ସେବା କରିଥାଏ । ସମସ୍ତଙ୍କୁ ଆତ୍ମୀୟ ଭାବରେ ଭଲ ବ୍ୟବହାର କରିବା ଉତ୍ତମ ପୁରୁଷର ଲକ୍ଷଣ । ଲୋକଙ୍କ ସ୍ୱଭାବ ଓ ଗୁଣକୁ ପରୀକ୍ଷା କରିବା କ୍ଷମତା ତାର ରହିଥାଏ ଏବଂ ସମସ୍ତଙ୍କ ପ୍ରତି ସେ ସମୁଚିତ ବ୍ୟବହାର କରିଥାଏ । ସେ ଅନ୍ୟର ଜୀବନକୁ ସାର୍ଥକ କରିବାଭଳି କଥା କହିଥାଏ ଏବଂ କାର୍ଯ୍ୟ ମଧ୍ୟ କରିଥାଏ । ଯେକୌଣସି ପ୍ରଶ୍ନ ପଚରା ଗଲେ ସେ ଉପେକ୍ଷା ନ କରି ସଙ୍ଗେ ସଙ୍ଗେ ଉତ୍ତର ଦେଇଥାଏ ।

ସେ ସ୍ୱଭାବତଃ କ୍ଷମାଶୀଳ । କ୍ରୋଧକୁ ସେ ପରିତ୍ୟାଗ କରିଥାଏ । ଆଳସ୍ୟ ବୋଲି ତାଠାରେ ତିଳେହେଲେ ନଥାଏ ଏବଂ ସେ ସର୍ବଦା ଉଦ୍ୟମଶୀଳ । କାହାପ୍ରତି ତାର ଈର୍ଷାଦ୍ୱେଷ ନଥାଏ । ସାବଧାନ ରହି କର୍ତ୍ତବ୍ୟକର୍ମକୁ ନିଷ୍ଠାର ସହିତ ପାଳନ କରିଥାଏ । ମୃତ୍ୟୁକୁ ସଦାସ୍ମରଣ କରି ସେ ଭଗବାନଙ୍କ ଭଜନ କୀର୍ତ୍ତନରେ ତତ୍‌ପର ରହିଥାଏ । ଯିଏ ଏପରି ଆଚରଣ କରେ, ମୃତ୍ୟୁପରେ ମଧ୍ୟ ତାର ଯଶ-ସୌରଭ ଅକ୍ଷୁଣ୍ଣ ରହିଥାଏ ।

ଯିଏ ନିୟମିତ ଭାବରେ ନୀତିପୂର୍ବକ କାର୍ଯ୍ୟ କରେ, ତାପ୍ରତି ଲୋକେ ପ୍ରସନ୍ନ ରହିଥାଆନ୍ତି । ତାର ଅଭାବ ବୋଲି କିଛି ରହେ ନାହିଁ । ଏସବୁ ଉତ୍ତମ ଗୁଣରେ ଅଳଂକୃତ ପୁରୁଷ ହିଁ ଆଦର୍ଶ ପୁରୁଷ । ଏହାଙ୍କ ଭକ୍ତିରେ ପରମାତ୍ମା ସନ୍ତୁଷ୍ଟ ହୋଇଥା'ନ୍ତି । ଲୋକେ ଯେତେ ନିନ୍ଦା କରନ୍ତୁ ନା କାହିଁକି ଏଭଳି ପୁରୁଷର ଶାନ୍ତି ଆଦୌ ଭଙ୍ଗ ହୋଇ ନ ଥାଏ । ଯିଏ ଦୁର୍ଜନମାନଙ୍କ ସହିତ ମଧ୍ୟ ନିଷ୍କପଟ ଓ ପ୍ରେମପୂର୍ବକ ବ୍ୟବହାର କରିଥାଏ, ସିଏ ହିଁ ପ୍ରକୃତ ସାଧୁ ।

ଉତ୍ତମ ଗୁଣାଳଂକୃତ ଜ୍ଞାନବୈରାଗ୍ୟସଂପନ୍ନ ପୁରୁଷ ହିଁ ତ୍ରୈଲୋକ୍ୟରେ ଧନ୍ୟ । ସବୁପ୍ରକାରର କଷ୍ଟ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଲୋକମଙ୍ଗଳ କାର୍ଯ୍ୟରେ ନିଜକୁ ନିୟୋଜିତ ରଖିବା ହେଉଚି ଉତ୍ତମ ପୁରୁଷର ଲକ୍ଷଣ । ଯଶଲାଗି ଇଚ୍ଛା ତ, ସୁଖକୁ ଛାଡ଼ିବାକୁ ପଡ଼ିବ । ସେହିଭଳି ସୁଖସୁବିଧା ଚାହିଁବ ତ, ଯଶଲାଭର ଆଶା ଛାଡ଼ିବାକୁ ପଡ଼ିବ ।

ବିନା ବିବେକରେ ସମାଧାନ ମିଳିବନାହିଁ । କେବେହେଲେ ଅନ୍ୟ ମନରେ ଦୁଃଖ ଦିଅନାହିଁ । ସମସ୍ତଙ୍କ ସେବା କରିବାରେ ତତ୍ପର ରହିବା ଆବଶ୍ୟକ । ସମସ୍ତଙ୍କୁ ଆପଣାର ଲୋକ ମନେକରିବା ଉଚିତ । ଯାହା ନିଜେ ପସନ୍ଦ କରନାହିଁ, ଅନ୍ୟପ୍ରତି ସେପରି ବ୍ୟବହାର କରିବା ଅନୁଚିତ । ଅନ୍ୟମନରେ କଷ୍ଟଦେବା ଭଳି କଥା କହିବା ଅପବିତ୍ର । ତା ଫଳରେ ନିଜର ହିଁ କ୍ଷତି ହୋଇଥାଏ । ଯେପରି କହିବ, ସେଭଳି ଜବାବ ପାଇବ । ତେଣୁ ଅନ୍ୟକୁ କଟୁକଥା କହିବ କାହିଁକି ? ଅନ୍ୟକୁ ପୀଡ଼ା ଦେବା ରାକ୍ଷସ-କର୍ମ । ଦମ୍ଭ, ଦର୍ପ, ଅଭିମାନ, କଡ଼ାକଥା— ଏସବୁ ହେଉଚି ଅଜ୍ଞାନୀଙ୍କ ଲକ୍ଷଣ । ଏକଥା ଗୀତାରେ ମଧ୍ୟ କୁହାଯାଇଛି । ଉତ୍ତମଗୁଣ ସଂପନ୍ନ ପୁରୁଷଙ୍କୁ ଲୋକେ ଖୋଜିଥାଆନ୍ତି । କ୍ରିୟାବିନା ଶୁଷ୍କଶବ୍ଦଜ୍ଞାନ ତୁଚ୍ଛ ।

ଲୋକମଙ୍ଗଳ ଲାଗି ଲୋକଙ୍କ ଭିତରେ ସଦ୍‌ବିଚାରର ପ୍ରଚାର କରିବା ଉଚିତ । ଏହା ବିବେକବାନ୍ ପୁରୁଷର କର୍ତ୍ତବ୍ୟ । ଅନ୍ୟର ସୁଖକୁ ନିଜର ସୁଖ ମନେକରିବା ଜ୍ଞାନୀପୁରୁଷର କର୍ତ୍ତବ୍ୟ ।



# ତ୍ରୟୋଦଶ ଦଶକ

## ପ୍ରଥମ ସମାସ
## ।। ଆତ୍ମ-ଅନାତ୍ମ-ବିବେକ ।।

ଆତ୍ମା କ'ଣ, ଅନାତ୍ମା କ'ଣ—ସେ ସମ୍ପର୍କରେ ଭଲଭାବରେ ବିଚାର ଓ ଚିନ୍ତା କରିବା ଆବଶ୍ୟକ । ଚିନ୍ତନ ଓ ମନନ କିପରି କରିବ ସେ କଥା ମନ ଦେଇ ଶୁଣ । ଚାରିପ୍ରକାରର ଖିଆଲ ଏବଂ ଚାରିପ୍ରକାରର ବାଣୀରୁ ୮୪ଲକ୍ଷ ଜୀବଯୋନିର ବିକାଶ ହୋଇଚି ବୋଲି ପୁରାଣରୁ ଜାଣୁ । ସୃଷ୍ଟିରେ ଅଗଣିତ ଦେହ— ଏଥିରେ ଆତ୍ମାର ସିଦ୍ଧାନ୍ତ କରାଯିବ କିପରି ?

ଯିଏ ଆଖିରେ ଦେଖେ, କାନରେ ଶୁଣେ, ଜିଭରେ ଚାଖେ, ନାକରେ ଶୁଙ୍ଘେ, ସବୁ ଅଙ୍ଗକୁ ଛୁଏଁ, ବାଣୀ ଦ୍ୱାରା କହେ—ଏଭଳି ଭାବେ ସବୁ ଇନ୍ଦ୍ରିୟକୁ ସଂଚାଳିତ କରିଥାଏ, ଏକାକୀ ରହି ସମସ୍ତଙ୍କୁ ହଲଚଲ କରିଥାଏ— ସେ ହେଉଚି ଆତ୍ମା । ସେ ନିଜର ଧୈର୍ଯ୍ୟ ଧରିଥାଏ, ଲଜ୍ଜିତ ହୋଇଥାଏ, ଅନ୍ନଜଳ ସେବନ କରିଥାଏ, ମଳମୂତ୍ର ତ୍ୟାଗ କରିଥାଏ ଏବଂ ପ୍ରପଞ୍ଚ ଓ ପରମାର୍ଥର ବିବରଣ ମଧ କରିଥାଏ । ଏହି ଆତ୍ମା ହର୍ଷ, ଶୋକ, ବିନୋଦ, ଚିନ୍ତା, କାୟା, ଛାୟା, ମାୟା, ମମତା, ଆଦି ସମସ୍ତ ବିକାରଦ୍ୱାରା ନାନା ପ୍ରକାର ପଦାର୍ଥର ଇଚ୍ଛା କରିଥାଏ, ଭଲ-ମନ୍ଦ କାର୍ଯ୍ୟ କରିଥାଏ ଏବଂ ସଜ୍ଜନଙ୍କୁ ରକ୍ଷା କରି ଅନ୍ୟମାନଙ୍କୁ ମାରିଥାଏ । ସେ ସବୁବେଳେ ଆସେ, ଯାଏ, ହସେ କାନ୍ଦେ, ଅନୁତାପ କରେ ଏବଂ ନିଜ ଉଦ୍ୟମ ଅନୁସାରେ ଭାଗ୍ୟବାନ କିମ୍ବା ଭାଗ୍ୟହୀନ ହୋଇଥାଏ । ଆତ୍ମା ହିଁ ଦୁର୍ବଳ, ସବଳ, ନ୍ୟାୟୀ ଅନ୍ୟାୟୀ, ଉଦାର କୃପଣ, ପାଗଳ ବୁଦ୍ଧିମାନ, ସ୍ୱେଚ୍ଛାଚାରୀ କିମ୍ବା ସହିଷ୍ଣୁ ସବୁକିଛି ହୋଇଥାଏ । ଆତ୍ମାହିଁ ଜ୍ଞାନ ଓ ଅଜ୍ଞାନରେ ଆନନ୍ଦରେ ବିଚରଣ କରିଥାଏ । ଏହି ଆତ୍ମାହିଁ ଶୁଏ, ଉଠେ, ବସେ, ଚାଲେ, ଦୌଡ଼େ, ଦୋଳାଏ, ଗୀତ ଗାଏ, ବାଦବିବାଦ କରିଥାଏ, କିମ୍ବା ଶାନ୍ତ ରହିଥାଏ । ବିନା ଆତ୍ମାରେ ଶରୀର ଶବମାତ୍ର । ଆତ୍ମା ହିଁ ଶରୀର ସହିତ ସବୁକିଛି କରିଥାଏ ।

କିନ୍ତୁ ଆତ୍ମା ନିତ୍ୟ, ଶରୀର ଅନିତ୍ୟ । ଏହାକୁ ବିବେକଦ୍ୱାରା ଜାଣିବାକୁ ହିଁ ଆତ୍ମ-ଅନାତ୍ମ ବିବେକ କୁହାଯାଇଥାଏ । ପିଣ୍ଡରେ ଯିଏ ଚାରିଦେହକୁ ଧାରଣ କରିଥାଏ ତାକୁ ଜୀବ କୁହାଯାଏ ଏବଂ ବ୍ରହ୍ମାଣ୍ଡରେ ଯିଏ ଚାରିଦେହ ଧାରଣ କରିଥାଏ ତାକୁ କୁହାଯାଏ ଶିବ । ଏହି ଆଠଟି ଦେହ ମଧ୍ୟରୁ ଅଷ୍ଟମ ଦେହ ହିଁ ମୂଳମାୟା ବା ମୂଳପୁରୁଷ । ଏହା ତ୍ରିଗୁଣାତୀତ । ଏହାକୁ କୁହାଯାଏ ଅର୍ଦ୍ଧନାରୀ ନଟେଶ୍ୱର । ଏହା ସମଗ୍ର ସୃଷ୍ଟି ବିସ୍ତାରର ଉତ୍ପତ୍ତିସ୍ଥଳ । ସୂକ୍ଷ୍ମଭାବରେ ବିଚାର କଲେ ପ୍ରତୀତ ହୁଏ ଯେ ଏହା ସ୍ତ୍ରୀ ନୁହଁ କି ପୁରୁଷ ନୁହଁ । ଏହା ଚଞ୍ଚଳ । ଏହାର ଚଞ୍ଚଳତା ଅନୁଭୂତ ହୋଇଥାଏ । ମୂଳମାୟାଠୁ ଆରମ୍ଭ କରି ସ୍ଥୂଳପିଣ୍ଡ ପର୍ଯ୍ୟନ୍ତ, ଅଥବା ବ୍ରହ୍ମାଙ୍କଠାରୁ ଆରମ୍ଭ କରି ପିମ୍ପୁଡ଼ି ପର୍ଯ୍ୟନ୍ତ ଯେତେ ଶରୀର ରହିଛି ସବୁହେଉଚି ଅନିତ୍ୟ ଏବଂ ଏହାକୁ ଯିଏ ସଂଚାଳନ କରିଥାଏ ସିଏ ହେଉଚି ଆତ୍ମା । ଜଡ଼ବସ୍ତୁମାତ୍ରେ ଅନିତ୍ୟ ଏବଂ ଏଥିରେ ଯେଉଁ ସୂକ୍ଷ୍ମତମତତ୍ତ୍ୱ ନିହିତ, ତାହା ନିତ୍ୟ । ଏହାକୁ ଅନୁଭବ କରିବା ହିଁ ନିତ୍ୟ ଅନିତ୍ୟ ବିବେକ କୁହାଯାଏ । ସ୍ଥୂଳ, ସୂକ୍ଷ୍ମ, କାରଣ ଓ ମହାକାରଣ ଏହି ଚାରିଦେହକୁ ଅତିକ୍ରମ କରି ଏବଂ ବିରାଟ ହିରଣ୍ୟଗର୍ଭ ଓ ଅବ୍ୟାକୃତ ଏହି ତିନି ବ୍ରହ୍ମାଣ୍ଡ ଦେହକୁ ଛାଡ଼ି ଚତୁର୍ଥ ଦେହ ଅର୍ଥାତ୍ ମୂଳପ୍ରକୃତିକୁ ଲାଭ କରିବା ହିଁ ନିତ୍ୟାନିତ୍ୟ ବିବେକର ବୃତ୍ତି । ଏହି ବୃତ୍ତିକୁ ଛାଡ଼ି ନିବୃତ୍ତିରେ କିପରି ପ୍ରବେଶ କରାଯାଇପାରିବ ସେ କଥା ପରବର୍ତ୍ତୀ ସମାସରେ ବୁଝାଇ ଦିଆଯିବ । ଆତ୍ମା କିଏ, ଅନାତ୍ମା କିଏ ଏବଂ ଆତ୍ମା ଚଞ୍ଚଳ କାହିଁକି—ଏକଥା ମନେରଖି ସାରାସାର ବିବେକ କଥା ମନ ଦେଇ ଶୁଣ ।

## ଦ୍ୱିତୀୟ ସମାସ
## ।। ସାର-ଅସାର ନିରୂପଣ ।।

ସୃଷ୍ଟିର ଏ ଯେଉଁ ବିଶାଳ ଆଡ଼ମ୍ବର ଦେଖାଯାଉଛି— ଏଥିରେ ସାର ବସ୍ତୁ କ'ଣ, ଅସାର ବସ୍ତୁ କ'ଣ ତାହା ବିବେକପୂର୍ବକ ବିଚାର କରିବା ଉଚିତ । ଯାହାକିଛି ଦେଖାଯାଇଥାଏ, ତାହା ନାଶବାନ । ଯାହା ଆସେ ତାହା ଯାଏ । କିନ୍ତୁ ଯାହା ଅଖଣ୍ଡ ଅବିନାଶୀ ତାହା ହିଁ ସାର । ପୂର୍ବ ସମାସରେ ମୁଁ ଅନାତ୍ମାକୁ ଚିହ୍ନେଇ ଦେଇ ଏହାର ସଂଚାଳକ ଆତ୍ମାର ଅନୁସଂଧାନ କରି କରି ମୂଳମାୟା

ପର୍ଯ୍ୟନ୍ତ ବିଚାର କରିଥିଲି । ଏହି ମୂଳମାୟାରେ ଯେଉଁ ବୃତ୍ତି ନିହିତ ସେଥିରୁ ନିବୃତ୍ତ ହେଲେ ସାରବସ୍ତୁ ମିଳିଥାଏ । ସାର ଅସାର ବିଚାର କଲେ ଏହି ଚଞ୍ଚଳ ଆତ୍ମାର ମଧ୍ୟ ଅନ୍ତ ହୋଇଯାଇଥାଏ । ଚଞ୍ଚଳ ଅର୍ଥାତ୍ ଚଳମାନ । ଯିଏ ଚଳାୟମାନ ନୁହଁ, ସେ ନିଶ୍ଚଳ । ଏକଥା ନିଶ୍ଚିତ ଯେ ନିଶ୍ଚଳରେ ପହଞ୍ଚିବାମାତ୍ରେ ଚଞ୍ଚଳ ହଟିଯାଇଥାଏ । ଜ୍ଞାନ ଓ ଉପାସନା ଉଭୟର ଲକ୍ଷ୍ୟ ଏକ । କିନ୍ତୁ ଉପାସନା ଦ୍ୱାରା ଜନସାଧାରଣ ସହଜରେ ଉଦ୍ଧାର ପାଇଥାଆନ୍ତି ।

ଦ୍ରଷ୍ଟା, ସାକ୍ଷୀ, ଜ୍ଞାତା, ଜ୍ଞାନଧନ, ଚୈତନ୍ୟ—ଏ ସମସ୍ତଙ୍କ ସଂଚାଳକ ଜ୍ଞାନସ୍ୱରୂପ ପରବ୍ରହ୍ମ । ଶେଷରେ ଜ୍ଞାନର ରୂପାନ୍ତର ବିଜ୍ଞାନରେ ହୋଇଥାଏ । ବିଚାର କଲେ ଭଲଭାବରେ ଜଣାଯିବ ଯେ ଯାହା ଚଞ୍ଚଳ ତାହା ନଶ୍ୱର । ଯାହା ମନରେ ଏ ସଂପର୍କରେ ସନ୍ଦେହ ରହିଥାଏ, ସେ ଜ୍ଞାନର ଅଧିକାରୀ ହୋଇନଥାଏ । ନିତ୍ୟ ସଂପର୍କରେ ନିଶ୍ଚିନ୍ତ ହେବାପରେ ମଧ୍ୟ ଯାହା ମନରେ ସନ୍ଦେହ ରହିଥାଏ, ସେ କେବଳ ମରୀଚିକାରେ ଭାସିଥାଏ । ପରବ୍ରହ୍ମ ଅକ୍ଷୟ ଏବଂ ସର୍ବବ୍ୟାପୀ । ଏହା ନିର୍ବିକାର ଏବଂ ଏଥିରେ କୌଣସି ପ୍ରକାରର ହେତୁ ନାହିଁ । ଏହା ଆଦି, ମଧ୍ୟ, ଅନ୍ତ ତିନିପ୍ରକାର ଅବସ୍ଥାରେ ଅଚଳ, ଅଟଳ, ଅଭେଦ୍ୟ ଏବଂ ସର୍ବଦା ସମାନ । ଏହା ଯଦିଓ ଆକାଶଭଳି ଦେଖାଯାଇଥାଏ, ଏହା ଆକାଶଠାରୁ ମଧ୍ୟ ସଘନ । ଏଥିରେ ଅଞ୍ଜନ ଅର୍ଥାତ୍ କୌଣସି ମଳିନତା ନାହିଁ । ଏହା ନିରଂଜନ ଏବଂ ସଦାସର୍ବଦା ପ୍ରକାଶମାନ । ଏହା ନିର୍ଗୁଣ, ଅଲକ୍ଷ୍ୟ ଏବଂ ଏହା କାହାଭଳି ଦେଖାଯାଇ ନଥାଏ । ସର୍ବସଂଗ ପରିତ୍ୟାଗବିନା ଏହି ପରବ୍ରହ୍ମକୁ କେହି ପାଇନପାରେ ।

ତେଣୁ ସର୍ବସଂଗ ପରିତ୍ୟାଗ କରି ଏହି ବ୍ରହ୍ମକୁ ଅନୁଭବ କରିବା ଉଚିତ । ପୂର୍ଣ୍ଣବିବେକଦ୍ୱାରା ବିଚାର କଲେ ସବୁ ସଂଦେହ ଦୂର ହୋଇଥାଏ ଅର୍ଥାତ୍ ଚଞ୍ଚଳ ବସ୍ତୁର ଅଭାବ ପ୍ରତୀତ ହୋଇଥାଏ । ତାପରେ କେବଳ ରହେ ନିଶ୍ଚଳ ପରବ୍ରହ୍ମ ଏବଂ ଏହା ହିଁ ସାରବସ୍ତୁ ।

ଏଭଳି ବିବେକ ଦୃଷ୍ଟିରେ ଦେଖିଲେ ''ସୋହଂ'' (ଅର୍ଥାତ୍ ସିଏ ହିଁ ମୁଁ ଏବଂ ତତ୍ୱମସି (ତୁ ବି ଏହି)—ଏହି ଅନିର୍ବଚନୀୟ ସ୍ଥିତିର ଉପଲବ୍ଧି ହୋଇଥାଏ । ଏଭଳି ବ୍ୟକ୍ତି ବାହାରୁ ସାବଧାନ ମନେ ହେଉଥିଲେ ମଧ୍ୟ ସେ ଭିତରେ ବ୍ରହ୍ମରୂପ ।

ତାର ଚିତ୍ତ ସବୁ ବୃତ୍ତିଠାରୁ ଶୂନ୍ୟ ରହିଥାଏ । ସାର ଆସାର ବିଚାର ଶେଷରେ ଏହାହିଁ ସାରାଂଶ । ଯିଏ ନିର୍ବିକାର ବ୍ରହ୍ମରେ ଲୀନ ହୋଇଥାଏ—ସେଭଳି ସାଧକ ଧନ୍ୟ ।

ତେଣୁ ଅସାରକୁ ଛାଡ଼ି ସାରତତ୍ତ୍ୱ ପରବ୍ରହ୍ମଙ୍କୁ ହିଁ ଗ୍ରହଣ କରିବା ଉଚିତ । ଏହି ପରବ୍ରହ୍ମର ଅନୁସଂଧାନ କରୁ କରୁ ଜ୍ଞାନ-ଭାବନା ମଧ ନଷ୍ଟ ହୋଇ ଜୀବର ବୃତ୍ତି ତଦ୍‌ରୂପ ହୋଇଯାଇଥାଏ । ଏହାହିଁ ଆତ୍ମ୍-ନିବେଦନ ଭକ୍ତି ।

## ତୃତୀୟ ସମାସ
## ।। ସୃଷ୍ଟି-ରଚନା ।।

ବ୍ରହ୍ମ ଘନ ଓ ପୋଲା ମଧ । ଏହା ନିର୍ମଳ, ନିର୍ବିକାର, ନିଶ୍ଚଳ ଏବଂ ଆକାଶଠାରୁ ମଧ ବିଶାଳ । ଏହିଥିରୁ ହିଁ କଳ୍ପାନ୍ତରରେ ସୃଷ୍ଟିର ରଚନା ହୋଇଚି । ଏହା କିପରି ହେଲା ସେହିକଥା ଶୁଣନ୍ତୁ ।

ପ୍ରଥମେ ନିଶ୍ଚଳ ବ୍ରହ୍ମରେ ସଂକଳ୍ପ ଜାତ ହୁଏ । ଏହି ସଂକଳ୍ପକୁ ଆଦିନାରାୟଣ, ମୂଳମାୟା, ଜଗଦୀଶ୍ୱର ଆଦି ନାମରେ ସଂବୋଧନ କରାଯାଇଥାଏ । ଏହି ସଂକଳ୍ପ ମଧ ଅଷ୍ଟଧା ପ୍ରକୃତିର ମୂଳ । ମୂଳମାୟାରୁ ଜାତହେଲା ଗୁଣମାୟା । ଏଥିରୁ ସୃଷ୍ଟି ହେଲା ତ୍ରିଗୁଣ ଏବଂ ଏଥିରୁ ରଚିତ ହେଲା ପ୍ରଣବ ବା ଓଁକାର । ଅ. ଉ. ମ. ମିଶି ଓଁକାର । ଏହାପରେ ବିସ୍ତାର ଲାଭକଲା ପଞ୍ଚଭୂତ । ପଞ୍ଚଭୂତ ମଧରେ ଯେଉଁ ଆକାଶ ଏହା ହିଁ ଅନ୍ତରାତ୍ମା । ଆକାଶରୁ ବାୟୁ, ବାୟୁରୁ ତେଜ ବା ଅଗ୍ନିର ପ୍ରାଦୁର୍ଭାବ ଘଟିଲା । ଦୁଇ ଦିଗରୁ ପ୍ରବାହିତ ବାୟୁର ଘର୍ଷଣରେ ଅଗ୍ନି ପ୍ରକଟିତ । ଶୀତଳ ବାୟୁର ଲହରୀରୁ ଜଳର ଉତ୍ପତ୍ତି । ଏହି ଜଳ ଶୁଖିବାରେ ସୃଷ୍ଟି ହେଲା ପୃଥ୍ୱୀ । ପୃଥ୍ୱୀ ଓ ଜଳର ସଂଯୋଗରେ ଅଗଣିତ ବୀଜ ଉତ୍ପନ୍ନ ହେଲା । ଏହି ବୀଜରୁ ବିଭିନ୍ନ ରଂଗ ଓ ରସର ପତ୍ର, ପୁଷ୍ପ, ଫଳ ମୂଳ ଆଦି ଉତ୍ପନ୍ନ ହୋଇ ସେଥିରୁ ଜାତ ହେଲା ଅନେକ ପ୍ରକାରର ଧାନ୍ୟ ଆଦି ଶସ୍ୟ । ଅନ୍ନ ଧାନ୍ୟରୁ ଗଠିତ ହେଲା ବୀର୍ଯ୍ୟ ଏବଂ ବୀର୍ଯ୍ୟରୁ ଜନ୍ମଲାଭ କଲେ ବହୁପ୍ରାଣୀ । ସଂସାରରେ ଜାରଜ, ଅଣ୍ଡଜ, ସ୍ୱେଦଜ ଏବଂ ଉଦ୍‌ଭିଦଜ ଆଦି ଚାରି କୋଟିର ପ୍ରାଣୀ ରହିଛନ୍ତି । ଏସବୁର ବୀଜ ହେଉଚି ପୃଥ୍ୱୀ ଓ ଜଳ ।

ଏହା ହେଉଚି ସୃଷ୍ଟିର ଚମତ୍‌କାରିତା । ପିଣ୍ଡ ଆଉ ବ୍ରହ୍ମାଣ୍ଡରେ ଚଉରାଶି ଲକ୍ଷ ଯୋନିର ବିସ୍ତାର ହୋଇଛି । ଅଷ୍ଟଧା ପ୍ରକୃତିମୟ ସବୁ ପ୍ରାଣୀ ଜଳରୁହିଁ ଉତ୍ପନ୍ନ । ଜଳବିନା ପ୍ରାଣୀ ଜଗଂତ ରହିନପାରେ । ବେଦ, ଶାସ୍ତ୍ର, ପୁରାଣର ସିଦ୍ଧାନ୍ତ ସଂପର୍କରେ ପ୍ରତ୍ୟୟ ଆବଶ୍ୟକ । ଯାହାକୁ ଅନୁଭବ କରି ପାରୁନ, ଯାହା ସଂପର୍କରେ ମନରେ ପ୍ରତ୍ୟୟ ହୋଇପାରୁନି, ତାକୁ ଅନୁମାନ ଦ୍ୱାରା ସ୍ୱୀକାର କରିବା ଅନୁଚିତ । ଅନୁଭବ ବିନା ସବୁ ବ୍ୟର୍ଥ । ପ୍ରବୃତ୍ତି ହେଉ ବା ନିବୃତ୍ତି ହେଉ ସମସ୍ତ ବ୍ୟବସାୟରେ ଅନୁଭବ ଆବଶ୍ୟକ । ପ୍ରତୀତି ବା ପ୍ରତ୍ୟୟ ବିନା ଅନୁମାନର କୌଣସି ମୂଲ୍ୟ ନାହିଁ ।

ସଂକ୍ଷେପରେ ସୃଷ୍ଟିରଚନା ସଂପର୍କରେ କୁହାଗଲା । ଏଣିକି ସଂହାରର ପ୍ରକ୍ରିୟା ସଂପର୍କରେ କହିବି ।

## ଚତୁର୍ଥ ସମାସ
## ।। ସଂହାର-ବିବେଚନ ।।

ବକ୍ତା କହୁଛନ୍ତି ଯେ ଶାସ୍ତ୍ରରେ ଏକଥା ସବିସ୍ତାର କୁହାଯାଇଛି ଯେ ପ୍ରଳୟ କାଳରେ ସାରା ସୃଷ୍ଟିର ସମାପ୍ତି ଘଟିଥାଏ । ପଞ୍ଚଭୂତର ଲୟ ମଧ ହୋଇ ଯାଇଥାଏ । ଲଗାତର ଶହଶହ ବର୍ଷ ଧରି ଅନାବୃଷ୍ଟି ଫଳରେ ସୃଷ୍ଟି ଉତ୍ତପ୍ତ ହୋଇ ଉଠେ । ପୃଥିବୀ ଫାଟିଯାଏ । ଏଥିରେ ବଡ଼ ବଡ଼ ପର୍ବତ ମଧ ପଶି ଲୋପପାଏ । ସୂର୍ଯ୍ୟମଣ୍ଡଳର ବାରକଳା ଏପରି ଉତ୍ତପ୍ତ ହୋଇ ଉଠେ ଯେ ଏହାର ଜ୍ୱଳନ୍ତ କିରଣରେ ଶହ ଶହ ବର୍ଷ ଧରି ଭୂମଣ୍ଡଳ ଜଳିବାରେ ଲାଗିଥିବ ।

ପୃଥିବୀ ଅଗ୍ନିଭଳି ଲାଲ ଟକ୍‌ଟକ୍ ହୋଇ ଉଠିବ । ଏହା ଫଳରେ 'ଶେଷନାଗ' ମଧ ପୀଡ଼ିତ ହୋଇ ପଡ଼ିବ । ସେ (ଶେଷ) ବିଷବାନ୍ତି କରିବାରେ ଲାଗିବ । ଏହାର କ୍ରୋଧାଗ୍ନିରେ ସମଗ୍ର ପାତାଳ ଲୋକ ଜଳି ପୋଡ଼ି ଭସ୍ମ ହୋଇଯିବ । ଏହାଫଳରେ ପଞ୍ଚଭୂତ ଉଗ୍ର ରୂପ ଧାରଣ କରି ପ୍ରଳୟର ପ୍ରଭଂଜନ ଓ ପ୍ରଳୟ । ଗ୍ନିର ବିସ୍ଫୋରଣ ଘଟାଇବ । ପ୍ରଳୟ କାଳରେ ଏକାଦଶ ଇନ୍ଦ୍ର ଓ ବାର ସୂର୍ଯ୍ୟ ଏକତ୍ର ହୋଇ ପ୍ରଳୟ କରାଇବେ । ବାୟୁ ଓ ବିଦ୍ୟୁତର ପ୍ରହାରରେ ପୃଥିବୀ ଛିନ୍ନଭିନ୍ନ ହୋଇ ଏହାର କଟୃତା ନଷ୍ଟ ହେବ । ଚନ୍ଦ୍ର, ସୂର୍ଯ୍ୟ ଓ ତାରାମଣ୍ଡଳ ସବୁ ଏକ ରୂପ ହୋଇ ପଡ଼ିବେ ।

ଶେଷ ନାଗ, କୂର୍ମ, ବରାହ ଆଦି ପୃଥିବୀର ଆଧାର ଲୋପ ପାଇଯିବାରେ ନିଜ ନିଜର ସ୍ୱତ୍ତ୍ୱ ଛାଡ଼ି ଜଳରେ ବିଲୀନ ହୋଇଯିବେ । ଗର୍ଜନ ତର୍ଜନ କରି ପ୍ରଳୟ ମେଘ ଉତ୍‌ଥିତ ହେବ । ବିଜୁଳି ମାରିବାରେ ଲାଗିବ । ପର୍ବତସମାନଙ୍କ ଭଳି ବିଶାଳକାୟ ଉଲ୍‌କାପାତ ହେବ । ପ୍ରଚଣ୍ଡ ବାୟୁରେ ପର୍ବତ ଗୁଡ଼ିକ ମଧ୍ୟ ଗଛର ପତ୍ର ଭଳି ଉଡ଼ିବାରେ ଲାଗିବେ । ଶେଷରେ ଭୟଙ୍କର ଝଂଜା ପବନ ବହି ସମଗ୍ର ବ୍ରହ୍ମାଣ୍ଡ ଅନ୍ଧକାରାଚ୍ଛନ୍ନ ହୋଇ ପଡ଼ିବ । ସମୁଦ୍ର ଓ ନଦୀମାନଙ୍କରେ ପ୍ରଚଣ୍ଡ ଜୁଆର ଓ ବନ୍ୟା ଆସି ସମଗ୍ର ପୃଥିବୀ ଜଳମଗ୍ନ ହୋଇପଡ଼ିବ । ବ୍ରହ୍ମାଣ୍ଡ ପରି ତପ୍ତ ଲୌହଖଣ୍ଡମାନ ପ୍ରକଟିତ ହୋଇ ସମଗ୍ର ଜଳଭାଗକୁ ଶୋଷି ନେବେ । ଏବଂ ସମଗ୍ର ପୃଥିବୀରେ ଟୋପାଏ ହେଲେ ପାଣି ରହିବ ନାହିଁ । ଜଳ ଶୁଖି ଯିବା ପରେ ପ୍ରଚଣ୍ଡ ଅଗ୍ନିର ରୂପ ଧାରଣ କରିବ ଏବଂ ମହାବାୟୁ ଦ୍ୱାରା ଏହି ଅଗ୍ନି ବାୟୁ ରୂପ ହୋଇ ପଡ଼ିବ ଏବଂ ବାୟୁ ମଧ୍ୟ ପରିଶେଷରେ ମହାକାଶରେ ବିଲୀନ ହୋଇଯିବ । ଏହିପରି ଭାବରେ ସବୁ ଓ ପଞ୍ଚଭୂତର ଖେଳ ସମାପ୍ତ ହୋଇ ମୂଳମାୟା ଅର୍ଥାତ୍ ମହତ୍ ଭୂତର ସ୍ଫୁରଣ ମଧ୍ୟ ନଷ୍ଟ ହୋଇ ବ୍ରହ୍ମାଣ୍ଡ ଲୋପ ପାଇଯିବ । ଏହିଭଳି ଭାବରେ ମହାପ୍ରଳୟରେ ଜଡ଼ ଓ ଚେତନର ସର୍ବନାଶ ହୋଇ କେବଳ ନିଶ୍ଚଳ ପରଂବ୍ରହ୍ମର ସ୍ୱତ୍ୱ ହିଁ ରହିବ ।

## ପଞ୍ଚମ ସମାସ
## ।। ସୃଷ୍ଟିର କଥା ।।

ଅତି ଉଦାସଭାବରେ ଦୁଇଜଣ ସାଧୁ ପୃଥିବୀ ଭ୍ରମଣରେ ବାହାରିଲେ । ରାସ୍ତାରେ ସମୟ କଟେଇବା ଲାଗି ସେମାନେ ଆରମ୍ଭ କଲେ ଏକ କାହାଣୀ । ଜଣେ ହେଲା ବକ୍ତା, ଅନ୍ୟ ଜଣକ ଶ୍ରୋତା । ବକ୍ତା ଏହି କାହାଣୀଟି କହିଲେ—

ଗୋଟିଏ ଘରେ ସ୍ୱାମୀ ସ୍ତ୍ରୀ ବାସ କରୁଥିଲେ । (ଏ ଦୁହିଁଙ୍କୁ ପ୍ରକୃତି ପୁରୁଷ, ଶିବଶକ୍ତି, ଅର୍ଦ୍ଧନାରୀ ନଟେଶ୍ୱର ମୂଳପୁରୁଷ ବୋଲି ଧରିନିଅ) । ଦୁହେଁ ପରସ୍ପରକୁ ଅତି ଭଲ ପାଉଥିଲେ । ଦୁହେଁ ଏକାଠି ବିଚରଣ କରୁଥିଲେ । ଦୁହିଁଙ୍କ ମଧ୍ୟରେ ତିଳେହେଲେ ମନୋମାଳିନ୍ୟ କିମ୍ବା ମତଭେଦ ନଥିଲା । କାଳାନ୍ତରରେ ଏମାନଙ୍କ

ମିଳନରେ ଏକ ପୁତ୍ର ବିଷ୍ଣୁ ଜାତ ହେଲା । ପିଲାଟି ଭାରି କର୍ମଠ ଅନୁଭୂତି ଓ ଜ୍ଞାନସଂପନ୍ନ । ବ୍ୟବହାର ମଧ ଖୁବଭଲ (ସତ୍ତ୍ୱଗୁଣ) । ଏହି ପିଲାଟି ବଢ଼ିଲା । ସେ ମଧ ବିବାହ କଲା । ତାର ମଧ ଗୋଟିଏ ପୁଅ (ବ୍ରହ୍ମା) ହେଲା । ଏ ପୁଅଟି ବାପଠୁ ବଳି ଉତ୍ସାହୀ ସିନା ବାପଠୁ କମ୍ ବୁଦ୍ଧିମାନ (ରଜୋଗୁଣ) । ଏ ପୁଅର ମଧ ପରିବାର ବଢ଼ିଲା । ତାର ଅଗଣିତ ପୁଅ ଝିଅ ଜନ୍ମ ହେଲେ । ସେ ବହୁତ ଲୋକ ନିର୍ମାଣ କଲା । ଏଭଳି ଭାବରେ ସେ ଲୋକ ସଂଗ୍ରହର କର୍ତ୍ତା ହେଲା । ବ୍ରହ୍ମାଙ୍କ ବଡ଼ ପୁଅ ଅଜ୍ଞାନସ୍ୱରୂପ ଏବଂ ଉଦ୍ଧତ, ଉଗ୍ର (ତମୋଗୁଣ) । ଇଏ କାହାଠି କିଛି ଦୋଷ ଦେଖିଲେ ସଂଗେ ସଂଗେ ସଂହାର କରିବାକୁ ଲାଗିଲା । ଏଭଳି-ମତେ ଏହାଙ୍କର ବିରାଟ ପରିବାର ସମ୍ମିଳିତ ଭାବେ ସଂସାର ଚଳାଇବାକୁ ଲାଗିଲେ । ପୁଅ ନାତିମାନଙ୍କ ଏହି ସାଂସାରିକ ପ୍ରପଞ୍ଚକୁ ଦେଖି କୁଳବୃଦ୍ଧ ପିତା ବା ଜେଜେବାପା (ମୂଳପୁରୁଷ) ଚୁପଚାପ ବସି ରହିଥିଲେ । କେତେକାଳ ପରେ ବିଷ୍ଣୁଙ୍କର ବ୍ୟାପାର ବଢ଼ିବାକୁ ଲାଗିଲା । ସେ ଚାରିଆଡ଼େ ଖେଳିଗଲେ । ସେ ଜ୍ଞାନୀ, ସର୍ବଜ୍ଞ, ସଜ୍ଜନ ଭାବରେ ବିଖ୍ୟାତ ହେଲେ । ମୂଳପୁରୁଷଙ୍କ ପୌତ୍ର କମ୍ ବୁଦ୍ଧିମାନ ଓ ଚଞ୍ଚଳ ଏବଂ ପ୍ରପୌତ୍ର (ଅଣନାତି) ଶଙ୍କର ମହାକ୍ରୋଧୀ (ତମୋଗୁଣୀ) ଏବଂ ସଂହାର କର୍ତ୍ତା ଥିଲେ । ପୁତ୍ର ସମସ୍ତଙ୍କର ପାଳନ ପୋଷଣ କରୁଥିଲା, ପୌତ୍ର ପରିବାରର ସଂଖ୍ୟା ବଢ଼ାଇବାରେ ଲାଗିଥିବା ବେଳେ ପ୍ରପୌତ୍ର ସମସ୍ତଙ୍କୁ ସଂହାର କରିବାରେ ଲାଗିଥିଲା । ଏହିଭଳିଭାବେ ମୂଳପୁରୁଷର ବଂଶବୃଦ୍ଧି ହେବାରେ ଲାଗିଲା । କେତେକାଳ ଆନନ୍ଦରେ ବିତିଲା । ଅଗଣିତ ସୃଷ୍ଟି, ଅନନ୍ତ ବ୍ରହ୍ମାଣ୍ଡ ଏବଂ ଅସଂଖ୍ୟ ଜୀବଜଗତର ନିର୍ମାଣ ହେଲା । କିନ୍ତୁ କେତେକାଳ ପରେ ପରିବାରରେ ଆରମ୍ଭ ହେଲା କଳହ । ବଡ଼ମାନଙ୍କୁ ଛୋଟମାନେ ହତାଦର କରିବାକୁ ଲାଗିଲେ ।

ପରସ୍ପରକୁ ସଂଦେହ କରିବାକୁ ଲାଗିଲେ । ସମସ୍ତଙ୍କ ମନ କଳୁଷିତ ହୋଇପଡ଼ିଲା । ଦେଖାଦେଲା ବୈରଭାବ ବା ଶତ୍ରୁତା । ପରିବାରର ଏକତା ନଷ୍ଟ ହେବାରେ ସମସ୍ତେ ମନଇଚ୍ଛା ବ୍ୟବହାର କରିବାକୁ ଲାଗିଲେ । ଦେଖାଦେଲା ସ୍ୱଚ୍ଛନ୍ଦଭାବ । ଯେ ପର୍ଯ୍ୟନ୍ତ ଛୋଟମାନେ ବଡ଼ଙ୍କୁ ଆଦର କରୁଥିଲେ ଏବଂ ସମସ୍ତେ ମିଳିମିଶି, ପରସ୍ପରକୁ ଭଲପାଇ ଚଳୁଥିଲେ, ସେତେବେଳେ ଘରସଂସାର ଠିକ୍‌ଭାବେ ଚାଲୁଥିଲା । କୌଣସି ଖରାପ କଥା ଚିନ୍ତା କରିବାକୁ ସେମାନଙ୍କର

ସମୟ ମଧ୍ୟ ନଥିଲା । କିନ୍ତୁ ଘରେ କଳହ ଲାଗିବାରେ ଧୀରେ ଧୀରେ ଜଣକପରେ ଜଣଙ୍କର ବିନାଶ ଘଟିବାରେ ଲାଗିଲା । ବଡ଼ ବଡ଼ ମହାରଥୀଙ୍କ ଭିତରେ ମଧ୍ୟ ବୈରଭାବ ସୃଷ୍ଟି ହେଲା । ସବୁ ଯାଦବ ଉନ୍ମତ୍ତ ହୋଇ ନିଜ ନିଜ ଭିତରେ ଲଢ଼ିଲେ ଏବଂ ମଲେ । ଏହି ଭଳି ଭାବେ ଅହଂକାରର ବଶୀଭୂତ ହୋଇ ସମସ୍ତେ ଲୋପ ପାଇଲେ ।

ଏହି କାହାଣୀକୁ ଯିଏ ମନନ-ଚିନ୍ତନ କରିବ ଅର୍ଥାତ୍ ସୃଷ୍ଟିର ଉତ୍ପତ୍ତି, ସ୍ଥିତି ଓ ସଂହାରର ମର୍ମ ବୁଝିବ, ସେ ଜନ୍ମମରଣରୁ ମୁକ୍ତ ହୋଇଯାଇପାରିବ । ଶ୍ରୋତା ବକ୍ତା ଏହି କାହାଣୀର ମର୍ମ ବୁଝିଲେ ଧନ୍ୟ ହେବେ । ଏହି କାହାଣୀ ଯୁଗ ଯୁଗାନ୍ତର ଧରି ଚାଲିଆସିଚି । ଶ୍ରୋତାମାନେ ଏହି ତତ୍ତ୍ୱର ରହସ୍ୟ ଭେଦ କରିବା ଲାଗି ଉଦ୍ୟମ କରିବା ଆବଶ୍ୟକ ।

## ଷଷ୍ଠ ସମାସ
## ।। ଲଘୁବୋଧ ନିରୂପଣ ।।

ଆପଣମାନେ ପଞ୍ଚତତ୍ତ୍ୱକୁ ଧ୍ୟାନରେ ରଖି ଏହାର ରୂପବିସ୍ତାର ସମ୍ପର୍କରେ ଚିନ୍ତା କରିବା ଆବଶ୍ୟକ । ତା ପରେ ଶାଶ୍ୱତ କିଏ ଅଶ୍ୱାଶ୍ୱତ କିଏ ସେ ସମ୍ପର୍କରେ ମନନ ଚିନ୍ତନ କରିବା ଉଚିତ୍ ।

ପୃଥିବୀ, ଆପ, ତେଜ, ବାୟୁ, ଓ ଆକାଶ—ଏହି ପାଞ୍ଚଟି ହେଉଛି ପଞ୍ଚତତ୍ତ୍ୱ ବା ପଞ୍ଚଭୂତ । ପୃଥ୍ୱୀ ଅର୍ଥାତ୍ ଧରଣୀ (ମାଟି), ଆପ ଅର୍ଥାତ୍ ପାଣି, ତେଜ ଅର୍ଥାତ୍ ଅଗ୍ନି, ସୂର୍ଯ୍ୟ ଓ ଅନ୍ୟ ସତେଜ ପଦାର୍ଥ । ବାୟୁ ଅର୍ଥାତ୍ ପବନ । ଆକାଶ ଅର୍ଥାତ୍ ଶୂନ୍ୟ ବା ଅବକାଶ । ଏଥିମଧ୍ୟରୁ ଶାଶ୍ୱତ କିଏ ତାର ବିଚାର କରାଯାଉ । ଅଳ୍ପ ଅନୁଭବ ଦ୍ୱାରା ଏ ସମ୍ପର୍କରେ ଜ୍ଞାନ ହୋଇପାରିବ । ପୃଥିବୀର ଯେ ଉତ୍ପତ୍ତି ଏବଂ ସମାପ୍ତି ଘଟିଥାଏ ଏହା ଅନୁଭବ-ସିଦ୍ଧ । ସୃଷ୍ଟିରେ ଯାହାସବୁ ଗଠିତ ହୋଇଥାଏ, ସେ ସବୁର ବିନାଶ ଘଟିଥାଏ । ଜଳ ମଧ୍ୟ ଶୁଖିଯାଏ । ଅଗ୍ନି ଜଳେ ଏବଂ ଲିଭିଯାଏ । ବାୟୁ ମଧ୍ୟ ବନ୍ଦ ହୋଇଯାଏ । ସାରାଂଶ ହେଉଚି ଯେ, ପଞ୍ଚଭୂତାତ୍ମକ ସମସ୍ତ କାର୍ଯ୍ୟ ନଶ୍ୱର, ନାଶବାନ । କେବଳ ଆତ୍ମା ହିଁ ଶାଶ୍ୱତ,

ନିରାକାର ଏବଂ ସତ୍ୟସ୍ୱରୂପ । ଆତ୍ମାର ସ୍ୱରୂପଜ୍ଞାନ ବିନା ଜ୍ଞାନ ହୋଇ ନଥାଏ । ଏହି ସନ୍ଥମାନେ ହିଁ ଏହି ଜ୍ଞାନର ଅଧିକାରୀ । ତେଣୁ ସେହିମାନଙ୍କଠାରୁ ଆତ୍ମ-ସ୍ୱରୂପର ଜ୍ଞାନ ବା ବୋଧ ଆହରଣ କରିବା ଉଚିତ । ସନ୍ଥମାନଙ୍କୁ ପଚାରିଲେ ସେମାନେ ଆତ୍ମା ଯେ ଅବିନାଶୀ ଏବଂ ଜନ୍ମ-ମୃତ୍ୟୁ ରହିତ ସେହିକଥା ଭଲଭାବରେ ବୁଝେଇ ଦେଇଥାଆନ୍ତି । ନିରାକାରରେ ଆକାର ଓ ଆକାରରେ ନିରାକାର ପ୍ରତୀତ ହୋଇଥାଏ । ତେଣୁ ଆକାର ନିରାକାରକୁ ବିବେକପୂର୍ବକ ନିର୍ଣ୍ଣୟ କରିବା ଉଚିତ । ନିରାକାର ନିତ୍ୟ ଏବଂ ଆକାର ଅନିତ୍ୟ । ଏହାକୁ ହିଁ ନିତ୍ୟାନିତ୍ୟ ବିଚାର କୁହାଯାଇଥାଏ । ସେହିଭଳି ସାରରେ ଅସାର ଏବଂ ଅସାରରେ ସାର ଭାସିତ ହୋଇଥାଏ । ତେଣୁ ସାର ଅସାର ବିଚାରର ଅନୁସଂଧାନ କରିବା ମଧ୍ୟ ଆବଶ୍ୟକ ।

ପଞ୍ଚଭୌତିକ ପଦାର୍ଥ ମାୟିକ ଓ ଅନେକ । କିନ୍ତୁ ଆତ୍ମା ଶାଶ୍ୱତ, ଏକ ଏବଂ ସ୍ୱୟଂବ୍ୟାପକ । ପୃଥ୍ୱୀ, ଜଳଆଦି ସବୁ ଭୂତରେ ଆକାଶ ବ୍ୟାପ୍ତ । ଏହିଭଳି ଆକାଶରେ ବ୍ରହ୍ମ ଘନୀଭୂତ । ଗଭୀରଭାବରେ ବିଚାର କଲେ ଆକାଶ ଓ ବ୍ରହ୍ମ ଭିନ୍ନ ଦେଖାଯାଏ ନାହିଁ । ଉପାଧି ଯୋଗୁଁ ଗୋଟିକୁ ଆକାଶ କୁହାହୋଇଥାଏ ଏବଂ ଉପାଧି ନରହିବାରେ ଏହା ବ୍ରହ୍ମ ହୋଇଥାଏ । ଯେଉଁଥିରେ ଉପାଧି ବା ପ୍ରତୀତି ନାହିଁ ତାହା ବ୍ରହ୍ମ । ଆକାଶ ମଧ୍ୟ ଏହିଭଳି । ପରବ୍ରହ୍ମ, ପରମାତ୍ମା ଯେ ନିରାକାର— ଏହାହିଁ ସବୁର ସାରାଂଶ ।

ତାହାହେଲେ ଆଗେ କିଏ— ଏ ସଂପର୍କରେ ବିଚାର କରିବା । ମୃତ୍ୟୁ ସମୟରେ ଶରୀରରୁ ବାୟୁ ଚାଲିଯାଏ । ତେଣୁ କୁହାଯାଏ ପ୍ରାଣ ବାୟୁ ଉଡ଼ିଗଲା । ଏହାକୁ ଅନୁଭବ କରିବାକୁ ଚାହୁଁଚ ତ ଥରେ ନିଃଶ୍ୱାସ ବନ୍ଦ କରି ପରୀକ୍ଷା କରି ଦେଖ । ନିଃଶ୍ୱାସ ବନ୍ଦକରିବା ମାତ୍ରେ ପ୍ରାଣ ବ୍ୟାକୁଳ ହୋଇ ଉଠେ । ଏହାକୁ ବେଶୀ ସମୟ ବନ୍ଦକରି ରଖିଲେ ଶରୀରରୁ ପ୍ରାଣ (ବାୟୁ) ଉଡ଼ିଯାଇଥାଏ ଏବଂ ଶରୀର ଶବ ହୋଇପଡ଼ିଥାଏ । ନିଷ୍ପ୍ରାଣ ଶରୀରରେ କୌଣସି କ୍ରିୟା ହୋଇ ନପାରେ । ଶରୀର ଓ ବାୟୁ ଏବଂ ବାୟୁ ଓ ଶରୀର ଉଭୟ ପରସ୍ପର ଉପରେ ନିର୍ଭରଶୀଳ । ଗୋଟିଏ ଅନ୍ୟ ବିନା ବ୍ୟର୍ଥସିଦ୍ଧ ହୋଇଥାଏ । ଉପରୁ ଦେଖିଲେ କେବଳ ମନୁଷ୍ୟର ଶରୀର ଦେଖାଯାଏ; କିନ୍ତୁ ବିଚାରପୂର୍ବକ ଦେଖିଲେ ଏହି

ଶରୀର ଯେ ପଞ୍ଚଭୂତର ଏକ ପୁଟୁଳି ମାତ୍ର ଏବଂ ଏହା ବିନାଶଶୀଳ । ନିର୍ଗୁଣ ବ୍ରହ୍ମ ବ୍ୟତୀତ ଯେ ଆଉ କିଛି ନାହିଁ—ଏ କଥା ଜାଣିପାରିଲେ ଅଭେଦଭକ୍ତି ଦୃଢ଼ୀଭୂତ ହୋଇଥାଏ ।

ଯଦି ଆମେ ନିଜକୁ କର୍ତ୍ତା ବୋଲି ସ୍ୱୀକାର କରୁ, ତାହାହେଲେ ସବୁକିଛି ନିଜ ଇଚ୍ଛା ଅନୁସାରେ ହେବା ଆବଶ୍ୟକ । କିନ୍ତୁ ଏହା ହୋଇନଥାଏ । ତେଣୁ ''ମୁଁ କର୍ତ୍ତା'' ବୋଲି ଅଭିମାନ କରିବା ବୃଥା । ମୁଁ ଯଦି କର୍ତ୍ତା ନୁହଁ ତାହାହେଲେ ଭୋକ୍ତା କିଏ— ଏ ସମ୍ପର୍କରେ ବିଚାର କରିବା ଉଚିତ୍ । ଅବିଚାର ଦ୍ୱାରା ଏହି ପ୍ରଶ୍ନର ଉତ୍ତର ପାଇବା ସମ୍ଭବ ନୁହଁ । ବିଚାର ଓ ଅବିଚାର, ଆଲୋକ ଓ ଅନ୍ଧକାର ସହିତ ସମାନ । ଯେଉଁଠି ବିଚାରର ଆଲୋକ ନାହିଁ ସେଇଠି ଅନ୍ଧକାର ହିଁ ରହିବ । ସେହିଭଳି ପ୍ରତ୍ୟୟ ଅର୍ଥ ହେଉଚି ନ୍ୟାୟ, ଅପ୍ରତ୍ୟୟ ଅର୍ଥ ହେଉଚି ଅନ୍ୟାୟ ।

ଜନ୍ମାନ୍ଧ ନାନାରତ୍ନର ପରିଚୟ ପାଇବ କିପରି ? ସେହିଭଳି ''ମୁଁ କର୍ତ୍ତା'', ''ମୁଁ ଭୋକ୍ତା'' ଆଦି ବିକାର ମିଥ୍ୟା ତଥା କାଳ୍ପନିକ । ଆତ୍ମା ନିର୍ବିକାର । ଏହାଠାରୁ ନିଜକୁ ଅଭେଦ ତଥା ଅନନ୍ୟ ବୋଲି ସ୍ୱୀକାର କରୁଥିବା ଆତ୍ମନ୍ ପରମଧନ୍ୟ । ଏହି ଆତ୍ମନିବେଦିତ ଭକ୍ତିଯୋଗୁଁ ବ୍ୟକ୍ତି ସମସ୍ତଙ୍କର ସମ୍ମାନନୀୟ ଓ ଆଦରଣୀୟ ହୋଇଥାଏ । ଏହିପ୍ରକାରର ବିବେକସଂପନ୍ନ ସାକ୍ଷୀସ୍ୱରୂପ ଜ୍ଞାନୀ ପୁରୁଷ ହିଁ ମୁକ୍ତ ।

## ସପ୍ତମ ସମାସ
## ।। ପ୍ରତ୍ୟୟ ବିବରଣ ।।

ନିର୍ମଳ, ନିଶ୍ଚଳ, ନିରାଭାସ ଯେଉଁ ବ୍ରହ୍ମ, ତା ଲାଗି ଆକାଶକୁ ହିଁ ଉପମା ଦିଆଯାଇପାରେ । ଚତୁର୍ଦ୍ଦିଗରେ ବ୍ୟାପିରହିଥିବା ଅବକାଶ ଅର୍ଥାତ୍ ଶୂନ୍ୟତାକୁ ହିଁ ଆକାଶ କୁହାଯାଇଥାଏ । ଆକାଶତତ୍ତ୍ୱ ସମଗ୍ର ବ୍ରହ୍ମାଣ୍ଡରେ ବ୍ୟାପ୍ତ । ପୁଣି ତା ଭିତରେ ବାୟୁ, ତେଜ, ଜଳ, ପୃଥ୍ୱୀ ଏହି ଚାରିତତ୍ତ୍ୱ ନିହିତ । ଏସବୁକୁ ଆମେ ଅନୁଭବ ଦ୍ୱାରା ଜାଣିବା ଉଚିତ । ବିନା ଅନୁଭବରେ କେବଳ ଜ୍ଞାନର୍ଜନ ବ୍ୟର୍ଥ । ଯେପରି ଆକାଶରେ ବାୟୁ ଅଥବା ଘଟାକାଶରେ ଘଟିବିମ୍ବ, ସେହିଭଳି ନିଶ୍ଚଳ ବ୍ରହ୍ମରେ ଚଞ୍ଚଳ ଆତ୍ମା ରହିଥାଏ । ତଥାପି ଏ ଦୁହିଁଙ୍କ ମଧ୍ୟରେ ବ୍ୟବଧାନ ଏତେ

ଯେ ତାହା କଳନା କରାଯାଇନପାରେ । ଯିଏ ଆସେ ଯାଏ ତାହା ଚଞ୍ଚଳ ପଞ୍ଚଭୂତ ଅର୍ଥାତ୍ ଅବିଦ୍ୟା-କାର୍ଯ୍ୟ । ଏହା ମଧ୍ୟ ଜଡ଼ ଏବଂ ଆତ୍ମା-ଚଞ୍ଚଳ । ଜଡ଼ଭୂତ ହେଉଚି କର୍ପୂର, ଆତ୍ମା ହେଉଚି ଅଗ୍ନି । ଅର୍ଥାତ୍ ଆତ୍ମା ଅନାତ୍ମାକୁ (ଜଡ଼ଭୂତକୁ) ଜଳାଇଥାଏ ଏବଂ ଶେଷରେ ନିଜେ ଜଳିଯାଇଥାଏ । ଆକାଶ ଓ ବ୍ରହ୍ମ—ଏ ଦୁହେଁ ନିଶ୍ଚଳ ଏବଂ ଏଥିରେ ସ୍ଥିତ ବାୟୁ ଓ ଆତ୍ମା ଚଞ୍ଚଳ । ପରୀକ୍ଷକ ଏହାର ଯଥାର୍ଥ୍ୟ ଜାଣିପାରେ । ଜଡ଼ ତତ୍ତ୍ୱ ଅନେକ କିନ୍ତୁ ଆତ୍ମା ଏକ । ଏଥିରେ ଆତ୍ମାନାତ୍ମା ବିବେକ ରହିଥାଏ ।

ଅତଏବ ସାର (ବ୍ରହ୍ମ) ଏବଂ ଅସାରକୁ (ଜଡ଼ ଓ ଚଞ୍ଚଳ) ବିବେକଦ୍ୱାରା ଚିହ୍ନି ଦୃଶ୍ୟ ଭାସମାନ ପ୍ରକୃତିଠାରୁ ଅଲିପ୍ତ ରହିବା ଉଚିତ । ପ୍ରକୃତି ବିଚାର ଦୂର କରିବା ପରେ ଏହାର ଦୃଶ୍ୟ ସ୍ୱରୂପ ନିଜ ଭିତରେ ନିଜେ ଲୁପ୍ତ ହୋଇଯାଇଥାଏ । ଏବଂ ଚଞ୍ଚଳଆତ୍ମା ଆଧ୍ୟାତ୍ମ-ଶ୍ରବଣ ଦ୍ୱାରା ନିର୍ଗୁଣରେ ଲୀନ ହୋଇଯାଏ । ଅନ୍ତରାତ୍ମା ଚଞ୍ଚଳ ହୋଇ ଉଠିବାରେ ଏହା ଯାହା ସହିତ ସଂଶ୍ଳିଷ୍ଟ ହୁଏ ସେ ତାହାଭଳି ହୋଇଯାଏ । ଜଡ଼ ବା ଅନାତ୍ମାର ସଂଗତିଦ୍ୱାରା ଦେହନ୍ତଭାବକୁ ବହନ କରିବାରେ ତାର ଅଧୋଗତି ହୋଇଥାଏ ଏବଂ ନିଶ୍ଚଳ ବ୍ରହ୍ମର ସଂଗତିଦ୍ୱାରା ସେ ନିଜକୁ ଉଦ୍ଧାର କରିଥାଏ । ଯିଏ ଯାହା ସାଙ୍ଗରେ ମିଶେ ସେ ତାଭଳି ହୋଇଯାଏ । ତେଣୁ ସର୍ବଦା ଶ୍ରେଷ୍ଠମାର୍ଗରେ ନିଜକୁ ପରିଚାଳିତ କରିବା ଉଚିତ ।

ଭଲ ରନ୍ଧା ହୋଇଯାଇଥିବା ଖାଦ୍ୟର ବର୍ଣ୍ଣନା ଶୁଣିବାମାତ୍ରେ ମନ ସେହି ଆଡ଼କୁ ଢଳିପଡ଼ି ସେହିଭଳି ହୋଇଯାଇଥାଏ । କୌଣସି ସୁନ୍ଦରୀ ଲାବଣ୍ୟବତୀ ସ୍ତ୍ରୀର ଶୃଙ୍ଗାର ବର୍ଣ୍ଣନା ଶୁଣିବାମାତ୍ରେ ମନ ସେହିଥିରେ ମଜ୍ଜି ଯାଇଥାଏ । ସେହିଭଳି ଯେଉଁ ବିଷୟକୁ ଆମେ ନିଦିଧ୍ୟାସନ କରୁ ଆମ ମନ ସେହିଭଳି ହୋଇପଡ଼ିବା ସ୍ୱାଭାବିକ । ଯାହା ଯାହା ଆମେ ଶୁଣୁ ବା ଦେଖୁ ସେହିସବୁ ଜିନିଷ ଆମ ମନ ଭିତରେ ଚିତ୍ରିତ ହୋଇଯାଇଥାଏ । ତେଣୁ ବିବେକୀ ପୁରୁଷ ନିଜର ହିତ ଅହିତକୁ ବିଚାର କରି ତଦନୁସାରେ କାର୍ଯ୍ୟ କରିଥାଏ । ତାତ୍ପର୍ଯ୍ୟ ହେଉଛି—ଆମ୍ଭେମାନେ ଏକମାତ୍ର ବିମଳ ବ୍ରହ୍ମରହିଁ ଅନୁସନ୍ଧାନ କରିବା ଉଚିତ । ସବୁ ସୁଖ ପରବ୍ରହ୍ମ ପରମାତ୍ମାଙ୍କର ଦାନ । କିନ୍ତୁ ଆମେମାନେ ସୁଖରେ ବୁଡ଼ିରହି ସୁଖଦାତା ଭଗବାନଙ୍କୁ ଭୁଲିଯାଇଥାଉ ଏବଂ ସାରା ଜୀବନ ବୃଥା ତର୍କ-ବିତର୍କରେ ବିତେଇ ଦେଇଥାଉ । ଗୀତାରେ ମଧ୍ୟ ଭଗବାନ କହିଛନ୍ତି ଯେ— ସବୁ ଛାଡ଼ି ମୋର ଶରଣ

ନିଅ । କିନ୍ତୁ ଆମେମାନେ ଭଗବାନଙ୍କ ବଚନକୁ ମଧ୍ୟ କର୍ଣ୍ଣପାତ କରୁନାହୁଁ । ଫଳରେ ଜୀବନ ଦୁଃଖମୟ ହୋଇ ପଡୁଛି । ଆମ୍ଭେମାନେ ନିଶ୍ଚଳ ସୁଖନିଧାନ ବ୍ରହ୍ମକୁ ଛାଡ଼ି ମାୟାବୀ ସୁଖରେ ପ୍ରଲୁବ୍ଧ ହୋଇପଡୁ ଛୁ । ସେଥିରେ ପ୍ରକୃତ ସୁଖ ମିଳିବ କିପରି ?

ତେଣୁ ପ୍ରକୃତ ବିବେକୀ ସାଧକ ଏହି ଭ୍ରମଜାଲରୁ ହଟି ପ୍ରକୃତ ସୁଖମାର୍ଗକୁ ଗ୍ରହଣ କରିବା ଉଚିତ । ବିବେକର ଫଳ ସୁଖ ଏବଂ ଅବିବେକର ଫଳ ଦୁଃଖ । କର୍ତ୍ତା (ବ୍ରହ୍ମ)କୁ ଚିହ୍ନିବାକୁହିଁ ବିବେକ କୁହାଯାଇଥାଏ । ବିବେକହୀନ ବ୍ୟକ୍ତିହିଁ ପରମଦୁଃଖୀ ହୋଇଥାଏ । ତେଣୁ ଆମେ କର୍ତ୍ତା (ପରମାତ୍ମା)ଙ୍କୁ ଚିହ୍ନି ନିଜର କଲ୍ୟାଣ ସାଧନ କରିବା ଉଚିତ ।

## ଅଷ୍ଟମ ସମାସ
## ।। କର୍ତ୍ତା ବିବେଚନ ।।

ଏ ସବୁ ବିଶ୍ଳେଷଣ ଶୁଣିବା ପରେ ମଧ୍ୟ ଶ୍ରୋତା ପଚାରୁଛନ୍ତି— ସଂସାରର ସୃଷ୍ଟି ଏବଂ ବ୍ରହ୍ମାଣ୍ଡର ପ୍ରକୃତ କର୍ତ୍ତା କିଏ ? ବକ୍ତା କହୁଛନ୍ତି, ଅନେକ ଲୋକ ନିଜ ନିଜର ଆରାଧ୍ୟ ଦେବତା, ନିଜ ନିଜ ସଂପ୍ରଦାୟର ଦେବଦେବୀ ସର୍ବଶ୍ରେଷ୍ଠ ଏବଂ ସୃଷ୍ଟିକର୍ତ୍ତା ବୋଲି ମାନିଥାଆନ୍ତି । କିଏ କହୁଚି ଶ୍ରୀଗଣେଶ ହିଁ ସର୍ବକର୍ତ୍ତା, କିଏ କହୁଚି ମା ଶାରଦା ହିଁ ସର୍ବକର୍ତ୍ତ୍ରୀ । ସେହିଭଳି କିଏ ଭୈରବୀ, କିଏ ବୀରଦେବ, କିଏ ଭଗବତୀଙ୍କୁ, କିଏ ନରହରିଙ୍କୁ ତ କିଏ ନାରାୟଣଙ୍କୁ, କିଏ ଶ୍ରୀରାମଙ୍କୁ ତ କିଏ ଶ୍ରୀକୃଷ୍ଣଙ୍କୁ, କେହି କେଶବଙ୍କୁ ତ କେହି ପାଣ୍ଡୁରଙ୍ଗଙ୍କୁ, କିଏ ସୂର୍ଯ୍ୟ, କିଏ ଲକ୍ଷ୍ମୀ, କିଏ ହନୁମାନ, କିଏ ଦତ୍ତାତ୍ରେୟ, କିଏ ବିଷ୍ଣୁ, କିଏ ବ୍ରହ୍ମା, କିଏ ଶଙ୍କର ଆଦି ଭିନ୍ନ ଭିନ୍ନ ଦେବଦେବୀଙ୍କୁ ସୃଷ୍ଟିକର୍ତ୍ତା ଓ ନିୟନ୍ତା ବୋଲି ମାନୁଛନ୍ତି । କେହି କେହି ନିର୍ଗୁଣ ପରମାତ୍ମାଙ୍କୁ, ସେ କର୍ତ୍ତା ହୋଇଥିଲେ ମଧ୍ୟ ଅକର୍ତ୍ତା କହିଥାଆନ୍ତି । କେହି କେହି ସେ ସଂପର୍କରେ ସଂପୂର୍ଣ୍ଣ ମୌନ । ଏହିଭଳି ଭାବେ କର୍ତ୍ତା ସଂପର୍କରେ ସମସ୍ତଙ୍କ ମନରେ ଅଲଗା ଅଲଗା ମତ ରହିଚି । ଯିଏ ଯେଉଁ ଦେବଦେବୀଙ୍କୁ ଇଷ୍ଟ ମାନିଥାଆନ୍ତି, ସେ ତାର ଦୃଷ୍ଟିରେ ଆଦିକର୍ତ୍ତା । ତେଣୁ ଜ୍ଞାନୀ ମାତ୍ରେ ଏ ବିଷୟରେ ସାବଧାନ ହୋଇ ବିଚାର କରିବା ଉଚିତ୍ ।

ଯେଉଁ ଯେଉଁ କାର୍ଯ୍ୟ ପ୍ରସ୍ତୁତ ହୋଇଥାଏ ସେ ସବୁ କର୍ତ୍ତା କରିବାରୁ ହିଁ ହୁଏ । ପ୍ରଥମେ କର୍ତ୍ତା ତା ପରେ କାର୍ଯ୍ୟ । ସୃଷ୍ଟିରେ ଯେତେ କାର୍ଯ୍ୟ ହୁଏ ସେସବୁ ପଞ୍ଚଭୂତାତ୍ମକ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଆଦି ସକଳ ଦେବତା ପଞ୍ଚଭୌତିକ । ତେଣୁ ଏହିସବୁ ଦେବତାଙ୍କୁ ପଞ୍ଚଭୌତିକ ସୃଷ୍ଟିର କର୍ତ୍ତା ବୋଲି ସ୍ୱୀକାର କରାଯାଇ ନ ପାରେ । ପଞ୍ଚଭୌତିକ କାର୍ଯ୍ୟର କର୍ତ୍ତା ପଞ୍ଚଭୌତିକ ତତ୍ତ୍ୱଠାରୁ ଅଲଗା ବୋଲି ସ୍ୱୀକାର କରାଯିବା ଉଚିତ । ଏହି ଅଲଗା ବିଷୟଟି ହେଉଚି ନିର୍ଗୁଣ ନିରାକାର ପରବ୍ରହ୍ମ । ନିର୍ବିକାରକୁ ବିକାରୀ ବୋଲି ସ୍ୱୀକାର କରାଯାଇ ପାରିବ ନାହିଁ ଅର୍ଥାତ୍ ନିର୍ଗୁଣ ବ୍ରହ୍ମକୁ ମଧ କର୍ତ୍ତା ବୋଲି ସ୍ୱୀକାର କରାଯାଇପାରିବ ନାହିଁ । କାରଣ ଏହା ସଗୁଣ ହେବାପରେ ମଧ ପଞ୍ଚ ଭୂତାତ୍ମକ ହୋଇଯାଇଥାଏ ।

ତାହାହେଲେ କର୍ତ୍ତା କିଏ ? ଏହି ପ୍ରଶ୍ନର କୌଣସି ସମୁଚିତ ଉତ୍ତର ମିଳି ନପାରେ । ସୃଷ୍ଟି ଯଦି ମିଥ୍ୟା, ଅର୍ଥାତ୍ ମାୟାବୀ ତାହାହେଲେ ମିଥ୍ୟା ସୃଷ୍ଟିର କର୍ତ୍ତା ସମ୍ପର୍କରେ ପ୍ରଶ୍ନ ଉଠି ନପାରେ । ଦୃଶ୍ୟମାନ ସୃଷ୍ଟି ସତ୍ୟନୁହଁ, ମିଥ୍ୟା, ଭାସମାନ । ତେଣୁ ଏହାର କର୍ତ୍ତା କେହି ହୋଇନପାରେ । ସୃଷ୍ଟି ନିଜର ସ୍ୱଭାବରୁ ହିଁ ଦୃଶ୍ୟମାନ ଏକଥା କୁହାଯାଇପାରେ ଯେ, ଏହା ମିଥ୍ୟା ହୋଇଥିବାରୁ ଏହାର କେହି କର୍ତ୍ତା ହୋଇ ନ ପାରେ । ଯାହାକିଛି ଦେଖାଯାଇଥାଏ, ସେ ସବୁ ଯେ ମିଥ୍ୟା—ଏହା ଅନୁଭବ ହେବା ପରେ ଆମେ ଯେ କୌଣସି ଦେବତାଙ୍କୁ ମିଥ୍ୟା ଉପାସନାର ମିଥ୍ୟା-ଅଭିମାନ ହେତୁ ସୃଷ୍ଟିର କର୍ତ୍ତାବୋଲି ମାନିନେବା ଠିକ୍ ହେବ କି ? ସୃଷ୍ଟି ତ ମିଥ୍ୟା । କୌଣସି ମିଥ୍ୟାବସ୍ତୁର କର୍ତ୍ତା କିଏ ହେବ କିପରି—ଏହି ବିଶ୍ୱାସ ଦୃଢ଼ୀଭୂତ ହୋଇଯିବାପରେ ମନରୁ ସନ୍ଦେହ ନଷ୍ଟ ହୋଇ ଯାଇଥାଏ । ଏସବୁ ବିବେକଦ୍ୱାରା ଅନୁଭବ କରିବା ବିଷୟ । ଯାହା ହୋଇ ନାହିଁ ତାର କର୍ତ୍ତା ସଂପର୍କରେ ତର୍କ-ବିତର୍କ ଆଦି କରିବା ବୃଥା ।

ଶ୍ରୋତାଙ୍କ ପ୍ରଶ୍ନ—ଯଦି ସୃଷ୍ଟିର କେହି କର୍ତ୍ତା ବା ନିର୍ମାତା ନାହିଁ, ତାହାହେଲେ ଶରୀରରେ ଯେଉଁ ସୁଖ-ଦୁଃଖ ହୋଇଥାଏ ତାହାର ଭୋକ୍ତା କିଏ ?

ଏହାର ସମାଧାନ ଆଗାମୀ ସମାସରେ କରାଯିବ ।

## ନବମ ସମାସ
## ।। ଆତ୍ମା-ବିବେଚନ ।।

ଶରୀରର ସଂଯୋଗ ହେତୁ ହିଁ ଆତ୍ମାକୁ ଦୁଃଖ, ଚିନ୍ତାଆଦି କ୍ଲେଶ ସହିବାକୁ ପଡ଼ିଥାଏ ଏବଂ ଶରୀର ଯୋଗୁ ହିଁ ଏହାର ଜୀବନ ଚାଲିଥାଏ । ଯଦି ଶରୀରକୁ ଖାଦ୍ୟ ମିଳିବନି ତ ଆତ୍ମା ଜୀବିତ ରହିନପାରେ ଏବଂ ବିନା ଆତ୍ମାରେ ଶରୀର ମଧ୍ୟ ସଚେତନ ରହିନପାରେ । ଗୋଟିଏ ବିନା ଅନ୍ୟଟି ନିରର୍ଥକ । ଦୁହିଁଙ୍କର ସଂଯୋଗରେ ହିଁ ଜୀବନର ଧନ୍ଦା ଚାଲିଥାଏ । ଶରୀରରେ ଚୈତନ୍ୟ ଶକ୍ତି ନଥାଏ ଏବଂ ଆତ୍ମାରେ କୌଣସି ଜିନିଷକୁ ଉଠାଇ ପାରିବାର ଶକ୍ତି ନଥାଏ । ସ୍ୱପ୍ନରେ ମିଳୁଥିବା ଖାଦ୍ୟରେ କାହାର ପେଟ ପୂରେନାହିଁ । ଆତ୍ମା ସ୍ୱପ୍ନ ଓ ଜାଗୃତି ଉଭୟ ଅବସ୍ଥାରେ ବିଦ୍ୟାମାନ୍ ରହିଥାଏ । ଏହା ନିଦରେ ମଧ୍ୟ ଶରୀରକୁ ସକ୍ରିୟ ରଖିଥାଏ । ଅନ୍ୟ ରସରେ ଶରୀର ବଢ଼େ ଏବଂ ଶରୀର ସଂଗେ ସଂଗେ ବିଚାର ବୁଦ୍ଧି ମଧ୍ୟ ବଢ଼ିଥାଏ । କିନ୍ତୁ ବୃଦ୍ଧାବସ୍ଥାରେ ଶରୀର ଓ ବିଚାରଶକ୍ତି ଉଭୟ କ୍ଷୀଣ ହୋଇ ପଡ଼ିଥାଏ । ନିଶା ବା ଉତ୍ତେଜିତ ଦ୍ରବ୍ୟ ସେବନ କରୁଥିବା ଶରୀରର ସଂଗତିରେ ଆତ୍ମା ମଧ୍ୟ ଭ୍ରଷ୍ଟ ହୋଇ ନିଜ ବୁଦ୍ଧିଶୁଦ୍ଧିକୁ ନଷ୍ଟ କରି ଦେଇଥାଏ ।

ଶରୀର ବିଷପାନ କଲେ ଆତ୍ମା ମଧ୍ୟ ବାହାରି ଯାଇଥାଏ । ଶରୀର ଯୋଗୁଁ ହିଁ ଆତ୍ମାକୁ ବଢ଼ିବା, ଛିଡ଼ିବା, ଯିବା ଆସିବା, ସୁଖ-ଦୁଃଖ ଭୋଗିବାର ଅନୁଭବ ହୋଇଥାଏ ।

ପିମ୍ପୁଡ଼ି ବସା ଭଳି ଶରୀର ଫାଙ୍କା । ଏଥିରେ ଅନେକ ମୋଟା, ପତଳା ନାଡ଼ିରେ ଜାଲ ବିଛା ହୋଇଛି । ଶରୀରରେ ଅନ୍ନରସ ପ୍ରସ୍ତୁତ ହୋଇଥାଏ । ନିଃଶ୍ୱାସ ପ୍ରଶ୍ୱାସଦ୍ୱାରା ବାୟୁ ଶରୀରର ସବୁ ଆଡ଼େ ଏହି ଅନ୍ନରସକୁ ପହଞ୍ଚାଇଥାଏ । ନାଡ଼ିଦ୍ୱାରା ହିଁ ପାଣି ପ୍ରବାହିତ ହୋଇଥାଏ ଏବଂ ଏଥିରେ ବାୟୁ ମଧ୍ୟ ବିଚରଣ କରିଥାଏ ।

ଏହିଭଳି ଭାବେ ଆତ୍ମା ମଧ୍ୟ ଶରୀରର ସର୍ବତ୍ର ବିଚରଣ କରିଥାଏ । ଶୋଷ ହେଲେ ଆତ୍ମା ଶରୀରକୁ ପାଣି ପାଖକୁ ନେଇଥାଏ । ସମୟାନୁଯାୟୀ

ଆତ୍ମାହିଁ ଶରୀରକୁ ସଂଚାଳିତ କରିଥାଏ ଏବଂ ଏହା ହିଁ ଭଲ-ମନ୍ଦ କଥା କହିଥାଏ । ଏହି ଆତ୍ମା ହିଁ ସୁଖ-ଦୁଃଖ ଭୋଗ କରିଥାଏ । ଏହା ବ୍ୟତୀତ ଶରୀର କେବଳ ଶବମାତ୍ର । ମନର ଅନନ୍ତ ବୃତ୍ତିକୁ ଜାଣିବା ହେଉଚି ଆତ୍ମାର ହିଁ ଧର୍ମ । ବ୍ରହ୍ମାଣ୍ଡରେ ଯେତେ ପ୍ରାଣୀ ଅଛନ୍ତି, ଏ ସବୁଥିରେ ଏକ ଆତ୍ମା ରହିଛି । ଏହା ଜଗତରେ ସର୍ବତ୍ର ବିଚରଣ କରିଥାଏ ତେଣୁ ଜଗଦାତ୍ମା ବିଶ୍ୱରେ ବ୍ୟାପି ରହିଛି । ଏହାକୁ ବିଶ୍ୱାତ୍ମା ମଧ୍ୟ କୁହାଯାଇଥାଏ । ଏହା ପ୍ରତ୍ୟେକ ଘଟରେ ବିଦ୍ୟମାନ । ତେଣୁ ଏହାର ଅନ୍ୟ ନାମ ସର୍ବାତ୍ମା ।

ଆତ୍ମା ହିଁ ଶୁଂଘିବା, ଚାଖିବା, ଶୁଣିବା, ଦେଖିବା ଆଦି କାର୍ଯ୍ୟ କରିଥାଏ । ଏହା କୋମଳ, କଠିନ ପଦାର୍ଥକୁ ଚିହ୍ନିଥାଏ ଏବଂ ଶୀତଳ ଓ ଉଷ୍ଣକୁ ଅନୁଭବ କରିଥାଏ । ଏହା ହିଁ ଅତି ସତର୍କଭାବରେ ଅନେକ ପ୍ରକାରର ପ୍ରପଞ୍ଚ କରିଥାଏ ।

ବାୟୁ ସହିତ ସୁବାସ ଆସେ । କିନ୍ତୁ ବାୟୁ ଏହାକୁ ଛାଡ଼ି ଦେଇଥାଏ । ବାୟୁ ସହିତ ଧୂଳି ମଧ୍ୟ ଆସେ ଏବଂ ଏହା ମଧ୍ୟ ଉଡ଼ି ଅଲଗା ହୋଇଯାଇଥାଏ । ବାୟୁରେ ଶୀତଳତା, ଉଷ୍ଣତା, ସୁଗନ୍ଧ, ଦୁର୍ଗନ୍ଧ ସବୁକିଛି ମିଳିଥାଏ । କିନ୍ତୁ ଶେଷରେ ସବୁ ଉଭେଇ ଯାଏ । ଅବଶେଷରେ ରହେ କେବଳ ଶୁଦ୍ଧବାୟୁ । ଆତ୍ମା ବାୟୁଠୁ ବଳି ବିଶୁଦ୍ଧ ଓ ଚପଳ । ବାୟୁ କଠିନ ପଦାର୍ଥକୁ ଭେଦ କରିପାରେନାହିଁ । କିନ୍ତୁ ପରମାତ୍ମା ଏହାକୁ ମଧ୍ୟ ଭେଦ କରିପାରେ । ଶରୀରକୁ ସୁଖ ମିଳିଲେ ଆତ୍ମା ମଧ୍ୟ ଆନନ୍ଦ ଅନୁଭବ କରିଥାଏ । ଆତ୍ମାର ସମସ୍ତ ବାସନା ଶରୀର ମାଧ୍ୟମରେ ତୃପ୍ତ ହୋଇଥାଏ । ଦେହ ବିନା ଆତ୍ମା କିଛି କରି ପାରେନା । ଦେହ ଓ ଆତ୍ମାର ସଂଯୋଗରେ ହିଁ ବିବେକୀ ପୁରୁଷ ବ୍ରହ୍ମାଣ୍ଡର ସାର ବିଚାର କରି ମୁକ୍ତ ହୋଇଥାଏ । ଏହିଭଳି ଭାବେ ଦେହ ଓ ଆତ୍ମାର ଯୋଡ଼ି ଅଭିନ୍ନ ।

## ଦଶମ ସମାସ
## ।। ଶିକ୍ଷା ।।

ମାଳା ଅନେକ ପ୍ରକାରର । ପତ୍ର, (ତୁଳସୀଆଦି) ଫୁଲ, ଫଳ, ମଂଜି, ପଥର, ସ୍ଫଟିକ, ମଣି, ନାନାରତ୍ନ, କାଠ ଆଦିରେ ମାଳା ହୋଇଥାଏ । କିନ୍ତୁ

ସବୁମାଳାର ମାଧ୍ୟମ ହେଉଚି ସୂତା । ଏହି ଆଧାରରେ ମାଳା ଏକତ୍ର ଥୁଆ ହୋଇଥାଏ । ଗୁନ୍ଥା ନଥିଲେ ଅର୍ଥାତ୍ ସୂତା ଛିଣ୍ଡିଗଲେ ମାଳା ବିକ୍ଷିପ୍ତ ହୋଇ ଏଠି ସେଠି ପଡ଼େ । ସେହିଭଳି ଭାବେ ପଦାର୍ଥ ମାତ୍ରେ ଭିତରେ ଆତ୍ମବସ୍ତୁ ରହିଥାଏ । (ସୂତ୍ରେ ମଣିଗଣା ଇବ) । ତନ୍ତୁ ବା ସୂତା ମଣିଗୁଡ଼ିକର ମଝିରେ ହିଁ ରହିଥାଏ । କିନ୍ତୁ ଆତ୍ମବସ୍ତୁ ଶରୀରରେ ବ୍ୟାପି ରହିଥାଏ । ଏଭଳି ରହିବା ସଂଗେ ସଂଗେ ଆତ୍ମା ଚପଳ ତଥା ଚଞ୍ଚଳ କିନ୍ତୁ ସୂତା ନିର୍ଜୀବ, ନିଷ୍କ୍ରିୟ । ତେଣୁ ଆତ୍ମାକୁ ସୂତାର ଉପମା ଦେବା ଯଥାର୍ଥ ହୋଇନପାରେ । ଦେହ ଅନାତ୍ମା, ଦେହୀ ହେଉଚି ଆତ୍ମା । ପରମାତ୍ମା ଏହି ଦୁଇଟିର ଊର୍ଦ୍ଧ୍ୱରେ । ଏହି ନିରଞ୍ଜନ ପରମାତ୍ମା ଲାଗି କୌଣସି ଉପମା ପର୍ଯ୍ୟାପ୍ତ ନୁହଁ ।

ରାଜାଠାରୁ ଆରମ୍ଭ କରି ରଙ୍କୀ ପର୍ଯ୍ୟନ୍ତ ସବୁ ମଣିଷ ପ୍ରାଣୀ ହେଲେ ମଧ୍ୟ ଏସବୁକୁ ଗୋଟିଏ ଶ୍ରେଣୀରେ ଗଣନା କରାଯାଇ ନପାରେ । ଦେବ, ଦାନବ, ମାନବ, ଉଚ୍ଚ, ନୀଚ, ଉତ୍ତମ, ଅଧମ, ପାପୀ, ପୁଣ୍ୟବାନ କ'ଣ ସମସ୍ତେ ସମାନ ହୋଇପାରିବେ ? ସବୁଥିରେ ଯେ ଏକ ହିଁ ଆତ୍ମାର ଅବସ୍ଥାନ—ଏ କଥା ସତ୍ୟ । କିନ୍ତୁ ଯୋନି ଓ ଶରୀର ଭେଦ ଅନୁସାରେ ସମସ୍ତଙ୍କର ସାମର୍ଥ୍ୟ ଅଲଗା ଅଲଗା ।

କୌଣସି ପୁଣ୍ୟାତ୍ମାଙ୍କ ସଂସ୍ପର୍ଶରେ ଆସିଲେ ମନୁଷ୍ୟ ମୋକ୍ଷଲାଭ କରିଥାଏ । ସେହିଭଳି ଖରାପ ଲୋକଙ୍କ କୁସଂଗରେ ପଡ଼ି ଜୀବକୁ ନରକ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ । ବିଷ ଓ ପାଣି ଉଭୟ ହେଉଚି ଜଳତତ୍ତ୍ୱ ବୋଲି କିଏ କ'ଣ ବିଷ ପିଇବାକୁ ଇଚ୍ଛା କରିଥାଏ ? ସେହିଭଳି ପୁଣ୍ୟବାନ ଓ ପାପୀ ଉଭୟଙ୍କଠାରେ ଏକ ପରମାତ୍ମା ବିଦ୍ୟମାନ ଥିଲେ ମଧ୍ୟ ସାଧୁ ଓ ଅସାଧୁର ଭେଦ ରହିବ ହିଁ ରହିବ । ବ୍ରାହ୍ମଣ ଓ ଚଣ୍ଡାଳ ଠାରେ ଏକ ଆତ୍ମା ରହିଥିଲେ ମଧ୍ୟ ଦୁହେଁ ଏକତ୍ର ହୋଇ ନପାରନ୍ତି । ପଣ୍ଡିତ ଓ ମୂର୍ଖ, ମନୁଷ୍ୟ ଓ ଗଧ, ରାଜହଂସ ଓ କୁଆ, ରାଜା ଓ ମାଙ୍କଡ଼, ଗଙ୍ଗାଜଳ ଓ ନର୍ଦ୍ଦମା ଜଳ କ'ଣ ସମାନ ଭାବେ ପରିଗଣିତ ହେବେ ! ତେଣୁ ଶୁଦ୍ଧଆଚାର ଏବଂ ନିର୍ମଳ ବିଚାରସଂପନ୍ନ ତଥା ବୈରାଗ୍ୟବାନ୍ ସୁବୁଦ୍ଧିସଂପନ୍ନ ମହାତ୍ମାଙ୍କ ପଦ ଅଲଗା । ଶୂର ବୀର ପୁରୁଷକୁ ଛାଡ଼ି ଆମେ ଯଦି କାପୁରୁଷ ବ୍ୟକ୍ତିର ପ୍ରଶଂସା କରୁ ତାହାହେଲେ ଯୁଦ୍ଧ ସମୟରେ ଆମକୁ ଅନୁତାପହିଁ କରିବାକୁ ପଡ଼ିବ ।

ତେଣୁ ଗୁଣ କର୍ମ ଅନୁସାରେ ମନୁଷ୍ୟ ନିନ୍ଦୀୟ ଓ ବନ୍ଦନୀୟ ହୋଇଥାଏ । ବନ୍ଦନୀୟ ବ୍ୟକ୍ତିର ସୁକୀର୍ତ୍ତି ଚାରିଆଡ଼େ ବ୍ୟାପିଥାଏ । ଆମ୍ଭେମାନେ କନିଷ୍ଠ ଓ ଅନିଷ୍ଟ ବସ୍ତୁକୁ ତ୍ୟାଗକରି ଶ୍ରେଷ୍ଠ ଓ ଉତ୍କୃଷ୍ଟ ବିଷୟ ପ୍ରତି ମନଦେବା ଉଚିତ । ହରିକଥା, ପୁରାଣ ଆଦିର ଶ୍ରବଣ ମନନ କରି ନୀତିପୂର୍ବକ ଆଚରଣ କରି ଲୋକଙ୍କୁ ପୁଣ୍ୟମାର୍ଗରେ ପରିଚାଳିତ କରିବା ହିଁ ପ୍ରକୃତ ସାଧନା ।

ଅଜ୍ଞାନୀ ବାଳକକୁ ଆରମ୍ଭରୁ ତାର ରୁଚି ଅନୁସାରେ ଚଳାଇ ଧୀରେ ଧୀରେ ତାକୁ ସବୁ କଥା ଶିଖେଇବାକୁ ପଡ଼ିଥାଏ । ସେହିଭଳି ଆମେମାନେ ଜନସାଧାରଣଙ୍କୁ ମଧ ଧୀରେ ଧୀରେ ସୁଶିକ୍ଷା ଦେବା ଉଚିତ । ସମସ୍ତଙ୍କ ମନକୁ ପ୍ରସନ୍ନ ରଖିବାର କଳାଟିକୁ ହାସଲ କରିବା ଉଚିତ । କୌଣସି ଅଜ୍ଞାନୀ ବ୍ୟକ୍ତିକୁ ମୂର୍ଖ ବୋଲି ହେୟଜ୍ଞାନ କରି ତାକୁ ଅବହେଳା କରିବା ଅନୁଚିତ । ସମସ୍ତଙ୍କର ବନ୍ଧୁ ହେବା ଉଚିତ । ଯିଏ ଅନ୍ୟର ମନକୁ କିଣିପାରେ, ସେ ହେଉଚି ମହାନ୍ ଏବଂ ତା ଆଡ଼କୁ ସମସ୍ତେ ଆକୃଷ୍ଟ ହୋଇଥାଆନ୍ତି ।



# ଚତୁର୍ଦ୍ଦଶ ଦଶକ

## ପ୍ରଥମ ସମାସ
## ।। ନିସ୍ପୃହ ସାଧନା ।।

ଏବେ ମୁଁ ନିସ୍ପୃହ ପୁରୁଷର ଆଚରଣ, ତାର ବୁଦ୍ଧି ଏବଂ ଜ୍ଞାନ ସମ୍ପର୍କରେ କହୁଚି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ । ଏହା ଶୁଣିଲେ ମନର ବହୁ ସମସ୍ୟାର ସମାଧାନ ହୋଇଯାଇପାରିବ । ଛୋଟ ମଞ୍ଚ ଉପରେ ସିଦ୍ଧି ଦେଖାଇବା ଲୋକ ଠିଆ ହେବାଭଳି କିମ୍ବା ଔଷଧ ସାମାନ୍ୟ ହୋଇଥିଲେ ମଧ୍ୟ ଯେପରି ଭଲଗୁଣ କରିଥାଏ, ସେହିଭଳି ମୋର ବକ୍ତବ୍ୟ ସରଳ ହେଲେ ମଧ୍ୟ ଆପଣମାନଙ୍କର ତୃପ୍ତି ମେଣ୍ଟିପାରିବ ବୋଲି ମୋର ଆଶା । ଏହାକୁ ଶୁଣିଲେ ବହୁ ଦୁର୍ଗୁଣ ଦୂର ହୋଇ ଉତ୍ତମ ଗୁଣର ଉପଲବ୍ଧି ହୋଇପାରିବ । ଶ୍ରୋତାମାନେ ଆଳସ୍ୟ ତ୍ୟାଗକରି ମୋର ଶବ୍ଦରୂପୀ ତୀବ୍ର ଔଷଧକୁ ବିଶ୍ୱାସର ସହିତ ସେବନ କରିବାକୁ ଅନୁରୋଧ । ନିସ୍ପୃହ ବ୍ୟକ୍ତିର ଗୁଣ ସମ୍ପର୍କରେ ଯାହା ଯାହା କହିବି, ତାକୁ ଅବଶ୍ୟ ଅଭ୍ୟାସ କରିବା ଉଚିତ ।

ଥରେ ନିସ୍ପୃହତାକୁ ଗ୍ରହଣ କରିନେଲେ ତାକୁ ଛାଡ଼ିବା ଉଚିତ ନୁହଁ । ଯଦି ଛାଡ଼ିଦିଅ ତ ଆଉ ପରିଚିତ ଲୋକଙ୍କ ମଧ୍ୟରେ ରହିବା ଉଚିତ ନୁହେଁ । ନିସ୍ପୃହବ୍ୟକ୍ତିର ମନରେ ସ୍ତ୍ରୀ-ଲୋଲୁପତା, ଅର୍ଥାତ୍ ସ୍ତ୍ରୀ-ଭୋଗ ଇଚ୍ଛା ରହିବା ଅନୁଚିତ । ଏପରିକି ସ୍ତ୍ରୀ ସମ୍ବନ୍ଧୀୟ ବିଚାର ସୁଦ୍ଧା ମନରେ ଗ୍ରହଣ ପୋଷଣ କରିବା ଅନୁଚିତ । ଧୈର୍ଯ୍ୟର ସହିତ ମନକୁ ସଞ୍ଜତ କରିବାଲାଗି ଉଦ୍ୟମ କରିବା ଆବଶ୍ୟକ । ଯଦି ମନକୁ ସଂଯତ କରି ନ ପାରୁଚ, ତାହାହେଲେ ସମାଜରେ ନ ରହି ଏକାନ୍ତରେ କୌଣସି ନିର୍ଜନ ସ୍ଥାନକୁ ଯାଇ ରହିବା ଉଚିତ ।

ନିସ୍ପୃହବ୍ୟକ୍ତି କୌଣସି ଗୋଟିଏ ସ୍ଥାନରେ ଅଧିକ ସମୟ ରହିବା ଅନୁଚିତ । କାମିନୀ କାଞ୍ଚନ ଅର୍ଥାତ୍ ସ୍ତ୍ରୀ ଓ ଧନ ସମ୍ପଦପ୍ରତି ମନ ବଳାଇବା ଉଚିତ

ନୁହଁ । ନିଜ ଆଚାର ବିଚାରକୁ ଭ୍ରଷ୍ଟ କରିବା ଅନୁଚିତ । ଯଦି କେହି ଧନ ଦିଏ ତ ତାକୁ ସ୍ୱୀକାର କରିବା ଠିକ୍ ନୁହଁ । ନିଜର ବ୍ୟବହାର ଏପରି ହେବା ଆବଶ୍ୟକ; ଯେପରି କେହି କେବେ ତୁମ ସମ୍ପର୍କରେ ଆଲୋଚନା କରିବାର ସୁଯୋଗ ପାଇବେ ନାହିଁ । ଉଦରପୋଷଣ ଲାଗି ଭିକ୍ଷା ମାଗିବାକୁ ସଂକୋଚ କରନାହିଁ, କିନ୍ତୁ ଅଧିକ ଭିକ୍ଷା ପାଇବା ଲାଗି ଲୋଭ କରନାହିଁ । କିଏ ବାରମ୍ବାର ପଚାରିଲେ ମଧ୍ୟ ନିଜର ସମ୍ପୂର୍ଣ୍ଣ ପରିଚୟ ପ୍ରଦାନ କରିବା ଅନୁଚିତ । ପିନ୍ଧିବା ବସ୍ତ୍ର ବିଶେଷ ମୋଟା ହେବ ନାହିଁ କି ଛିଣ୍ଡା କିମ୍ବା ମଇଳା ହେବା ଉଚିତ ନୁହଁ । ତାହା ସଫା ଏବଂ ସାଦାସିଧା ହେବା ଆବଶ୍ୟକ ।

ନିସ୍ପୃହ ବ୍ୟକ୍ତି ଅଧିକ ମିଠା ଖାଦ୍ୟ ଖାଇବା ଅନୁଚିତ, କାରଣ ତଦ୍ଦ୍ୱାରା ଲାଳସା ଅଧିକ ବଢ଼ିଯାଇଥାଏ । କୌଣସି ବିଷୟକୁ ଦୁରାଗ୍ରହ ନ କରି ସମୟ ଅନୁସାରେ ତାର ବ୍ୟବହାର କରିବା ଉଚିତ୍ । ମନକୁ ଭୋଗବିଳାସରେ ବୁଡ଼େଇ ରଖନାହିଁ । ଶରୀରଶ୍ରମରେ ଘବଡ଼େଇ ଯାଅ ନାହିଁ । ଅଧିକକାଳ ବଞ୍ଚି ରହିବାର ଆଶା କର ନାହିଁ କିମ୍ବା ମରିବା ପାଇଁ ଭୟ କର ନାହିଁ ।

ନିସ୍ପୃହ ପୁରୁଷର ବିବେକ ଓ ଧୈର୍ଯ୍ୟ ସୁଦୃଢ଼ ହେବା ଉଚିତ୍ । ନିଜ ବିବେକକୁ ଜାଗ୍ରତ ରଖିବା ସଙ୍ଗେ ସଙ୍ଗେ ମନକୁ କଳଙ୍କିତ ହେବାକୁ ଦିଅ ନାହିଁ । କରୁଣଭାବରେ ସର୍ବଦା ଭଗବାନଙ୍କର କୀର୍ତ୍ତନ କରିବା ନିସ୍ପୃହ ବ୍ୟକ୍ତିର ଲକ୍ଷଣ । ଭଗବାନ ହିଁ ତାର ଧ୍ୟାନରେ ରହିଥାଏ । ସେ ସର୍ବଦା ସମସ୍ତଙ୍କୁ ପ୍ରେମପୂର୍ବକ ସମ୍ଭାଷଣ କରିଥାଏ । ଚିନ୍ତା କିମ୍ବା କଷ୍ଟ ଯୋଗୁଁ ସେ କେବେହେଲେ ଉଦାସ ରହେ ନାହିଁ କିମ୍ବା ତାର ମନ କ୍ଷୁବ୍ଧ ହୋଇ ପଡ଼େନା । ଯେତେ କଠିନ ସମସ୍ୟା ହେଉନା କାହିଁକି ସେ ଧୈର୍ଯ୍ୟ ହରାଏ ନାହିଁ । କେହି ଅପମାନ କଲେ ମଧ୍ୟ ସେ ଚିତ୍ତକୁ ଶାନ୍ତ ରଖିଥାଏ । ନ୍ୟାୟନୀତିରେ ଚାଲୁଥିବା ଯୋଗୁଁ ସେ ଲୋକାପବାଦକୁ ଖାତିର କରିନଥାଏ । କାହାର ଉପହାସରେ ସେ ଦୁଃଖୀ ହୋଇ ପଡ଼େନାହିଁ । ସେ ନିଜ ଶୁଦ୍ଧମାର୍ଗରେ ଅବିଚଳିତ ରହି ଦୁର୍ଜନମାନଙ୍କ ସହିତ ବାଦବିବାଦ ନ କରି ସେମାନଙ୍କଠାରୁ ଦୂରରେ ରହିଥାଏ । କାହାର ହସରେ ସେ ହସି ନ ଥାଏ । ଆତ୍ମସ୍ଥିତିରେ ସ୍ଥିର ରହିଥାଏ ସେ । ସେ କୌଣସି ଗୋଟିଏ ବେଷଭୂଷା କିମ୍ବା ଗୋଟିଏ ପ୍ରଦେଶରେ ରହି ନଥାଏ । ସେ ସବୁବେଳେ ପରିଭ୍ରମଣରେ

କାଳାତିପାତ କରିଥାଏ । କାହା ସହିତ ଅଧିକ ଘନିଷ୍ଠତା ରଖେ ନାହିଁ କିମ୍ବା କାହାର ଦାନକୁ ସ୍ୱୀକାର କରେ ନାହିଁ । ସଭାସମିତି ବା ଜନସମୂହରେ ଅଧିକ ସମୟ ବସିବାକୁ ସେ ଭଲପାଏ ନାହିଁ । ପ୍ରତିଦିନ ସେ କିଛି ସମୟ ପର୍ଯ୍ୟନ୍ତ ଏକାନ୍ତରେ ବସି ରହିଥାଏ ।

ନିସ୍ପୃହ ବ୍ୟକ୍ତିମାନେ ନୀତି-ନିୟମ ପାଳନ କରିବା ଉଚିତ; କିନ୍ତୁ ନିୟମର ଦାସ ହୋଇପଡ଼ିବା ଅନୁଚିତ । ସେ ପରମାର୍ଥର ନିଦିଧ୍ୟାସନକୁ ଛାଡ଼ିବା ଅନୁଚିତ । ଯେ କୌଣସି ପରିସ୍ଥିତିରେ ସେ ପର ଉପରେ ନିର୍ଭରଶୀଳ ରହିବା ଅନୁଚିତ । ନିଜର ସ୍ୱାତନ୍ତ୍ର୍ୟକୁ ବଳି ଦେଇ ସର୍ବଦା ପରହାତକୁ ଚାହିଁ ରହିବା ଅନୁଚିତ । କୌଣସି ମୂଲ୍ୟବାନ ଧନକୁ ଦେଖିବା ଅନୁଚିତ କାରଣ ଏହାକୁ ଦେଖିବା ଫଳରେ ତାକୁ ପାଇବାପାଇଁ ମନ ଲାଳସୀ ହୋଇ ଉଠିଥାଏ । ପଦପଦବୀ-ସୁଖ ଲୋଭରେ ପଡ଼ିବା ଉଚିତ । ସବୁଠାରୁ ଉଚିତ କାମ ହେଉଚି ଏକାନ୍ତରେ ବସି ନିଜର ସ୍ୱରୂପସ୍ଥିତି ସମ୍ପର୍କରେ ଚିନ୍ତା କରିବା ।

ନିସ୍ପୃହ ବ୍ୟକ୍ତି ସ୍ୱେଚ୍ଛାଚାରୀ ହେବା ଅନୁଚିତ । କୌଣସି ଜିନିଷ ପ୍ରତି ଆସକ୍ତ ହୋଇପଡ଼ିବା ଅନୁଚିତ । ପରମ୍ପରାକୁ କିମ୍ବା ଦୈନିକ ଉପାସନା କର୍ମକୁ ଛାଡ଼ନାହିଁ । କାହା ସହିତ ବିତଣ୍ଡା କରନାହିଁ କିମ୍ବା କ୍ରୋଧର ବଶୀଭୂତ ହୋଇ ଉପଦ୍ରବ କରନାହିଁ । ନୀତି ନ୍ୟାୟ ମାର୍ଗକୁ ଛାଡ଼ ନାହିଁ । ବାଜେ କଥାବାର୍ତ୍ତାରେ ସମୟ କଟାଅ ନାହିଁ । ଯେତିକି ଆବଶ୍ୟକ ସେତିକି କଥା କହ । ଆବଶ୍ୟକତାକୁ ବଢ଼ିବାକୁ ଦିଅ ନାହିଁ । ଯେତିକି ଆବଶ୍ୟକତା ବଢ଼େଇବା ଅନିବାର୍ଯ୍ୟ ସେତିକି ବଢ଼ାଅ; କିନ୍ତୁ ସେଥିପ୍ରତି ଆସକ୍ତ ହୋଇ ପଡ଼ନାହିଁ । ମାନ-ସମ୍ମାନର ଅଭିଳାଷ ରଖ ନାହିଁ । ନିଜକୁ ସବୁଠାରୁ ଛୋଟ ମନେକରି ସମସ୍ତଙ୍କ ସହିତ ବିନମ୍ର ଭାବରେ ବ୍ୟବହାର କର । ବିନା ଅଧିକାରରେ ଅନ୍ୟକୁ ଉପଦେଶ ଦେବା ଲାଗି ବୃଥା ଉଦ୍ୟମ କରନାହିଁ ।

ନିସ୍ପୃହ ବ୍ୟକ୍ତିଠାରେ ବୈରାଗ୍ୟ, ଅଭ୍ୟାସ ଓ ଧୈର୍ଯ୍ୟ ଅତ୍ୟନ୍ତ ଦୃଢ଼ ହେବା ଉଚିତ । ତାର ହୃଦୟ ଓ ବଚନ ମଧ୍ୟ କୋମଳ ହେବା ଆବଶ୍ୟକ । ନିଜେ ଯାହା ଆଚରଣ କରୁନାହଁ, ସେ ବିଷୟରେ ଅନ୍ୟକୁ ଉପଦେଶ ଦେବା ଅନୁଚିତ । ଶିଷ୍ୟଙ୍କଠାରୁ ଅଧିକ ଦାବୀ କରିବା ଅନୁଚିତ । ଇନ୍ଦ୍ରିୟଗୁଡ଼ିକୁ ସଙ୍ଯତ କରିବା

ଆବଶ୍ୟକ । ବିଷୟବାସନା ସମ୍ପର୍କରେ ଚିନ୍ତା କରିବା ଅନୁଚିତ । କାରଣ ତା ଫଳରେ କାମ ଆଦି ବିକାର ବଳବାନ ହୋଇପଡ଼ିଥାଏ ଏବଂ ମନ ସର୍ବଦା ବିଷୟ ବାସନାରେ ପ୍ରବୃତ୍ତ ହୋଇଥାଏ । ''ମୁଁ ମୁକ୍ତ'' ଏଭଳି ଅହଂଭାବ ପୋଷଣ କଲେ ମନୁଷ୍ୟ ସ୍ୱେଚ୍ଛାଚାରୀ ହୋଇଯାଇଥାଏ । ନିସ୍ପୃହ ବ୍ୟକ୍ତିମାନେ ସନ୍ଥ ମହାତ୍ମାମାନଙ୍କ ଯେକୌଣସି ସେବା କାର୍ଯ୍ୟ କରିବାରେ ସଙ୍କୋଚ କରିବା ଅନୁଚିତ । ଧନ ଦୌଲତ ପାଇଗଲେ ଉନ୍ମତ୍ତ ତଥା ଅହଂକାରୀ କିମ୍ବା ଜ୍ଞାନର ଅଭିମାନରେ କ୍ରୋଧୀ ହୋଇ ପଡ଼ନାହିଁ । ବଡ଼ପଣ ଦେଖାଇ ହୋଇ ଅନୁଶାସନହୀନ ହୁଅ ନାହିଁ । କେବଳ ଅନୁମାନରେ କୌଣସି କାର୍ଯ୍ୟ କରନାହିଁ । ଯଦି କେହି କିଛି ଭଲ କଥା କହୁଥାଏ ତାକୁ ଅକୁଣ୍ଠିତ ଭାବେ ସ୍ୱୀକାର କରିବା ଉଚିତ । ସର୍ବଦା ସାବଧାନ ତଥା ସତର୍କରହି କାର୍ଯ୍ୟ କରିବା ଉଚିତ । ଆଳସ୍ୟକୁ ଆନନ୍ଦ ବୋଲି ଗ୍ରହଣ କରିନେବା ନିସ୍ପୃହ ବ୍ୟକ୍ତିର ଲକ୍ଷଣ ନୁହଁ । ନିସ୍ପୃହ ବ୍ୟକ୍ତିମାତ୍ରେ କୌଣସି ଖରାପକଥା କଳ୍ପନାସୁଦ୍ଧା କରି ନ ଥାଏ । ସ୍ୱାର୍ଥଲାଗି କାହାକୁ କୌଣସି ଆଦେଶ ଦେବା ଅନୁଚିତ । ଯଦି ଆଦେଶ ଦେବା ଉଚିତ ମନେକରୁଥାଅ ତାହା ଲୋକମଙ୍ଗଳ ଲାଗି ହିଁ ଦିଆଯିବା ଉଚିତ ।

ନିସ୍ପୃହବ୍ୟକ୍ତି ଧନ ପାଇବା ଲାଳସାରେ କଥା-ପ୍ରବଚନ ଆଦି କରିବା ଅନୁଚିତ । କୌଣସି ଗ୍ରନ୍ଥକୁ ଭଲଭାବରେ ଅଧ୍ୟୟନ ନ କରି ଏବଂ ଏହାର ଭାବାର୍ଥକୁ ନବୁଝି ଅନ୍ୟମାନଙ୍କ ପାଇଁ ସେ ସମ୍ପର୍କରେ ପ୍ରବଚନ ଦେବା ଅନୁଚିତ । ଜ୍ଞାନର ଅଭିମାନ ପୋଷଣ କରି କାହାକୁ କୌଣସି ପ୍ରଶ୍ନ କରିବା ଅନୁଚିତ । କାହା ପ୍ରତି ଛଳ କରନାହିଁ କିମ୍ବା କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରନାହିଁ । ରାଜନୀତି ଦ୍ୱାରା ଜନସେବାରେ ଆଡ଼ମ୍ବର କରନାହିଁ । କାହା ପକ୍ଷରେ ଅଯଥା ବୋଝ ହେବାଭଳି ଭିକ୍ଷା ମାଗନାହିଁ କିମ୍ବା ପରମାର୍ଥ ଲାଗି ଭିକ୍ଷାବୃତ୍ତିକୁ ସ୍ୱୀକାର କରିଛି ବୋଲି ଅହଂକାର କରନାହିଁ । ବିବାହ କାର୍ଯ୍ୟରେ ମଧ୍ୟସ୍ଥ ହୋଇ ଝମେଲାରେ ପଡ଼ିବା ଅପେକ୍ଷା ସେ କାର୍ଯ୍ୟରେ ମୁଣ୍ଡ ନ ପୂରାଇବା ଶ୍ରେୟସ୍କର । ପଦ-ପଦବୀଠାରୁ ଯଥାସମ୍ଭବ ଦୂରରେ ରହ ।

ନିସ୍ପୃହ ବ୍ୟକ୍ତି ପ୍ରପଞ୍ଚକଥାଠାରୁ ସର୍ବଦା ଅଲଗା ରହିବା ଉଚିତ । ସେ ଗୁଡ଼ାଏ ଇଆଡୁ ସିଆଡୁ ଖାଇବା ମଧ୍ୟ ଅନୁଚିତ । କୌଣସି ଅତିଥି ସାଥିରେ

ନିମନ୍ତ୍ରିତ ଭୋଜିଭାତରେ ଯୋଗଦେବା ମଧ୍ୟ ଅନୁଚିତ । ବିବାହ-ଭୋଜି ସଭାରେ ସେ ଯୋଗଦେବା ଠିକ୍ ନୁହଁ । ଧନଲାଭ ଉଦ୍ଦେଶ୍ୟରେ ଭଜନ କୀର୍ତ୍ତନ, ପ୍ରବଚନ ଆଦି କରିବା ଅନୁଚିତ । ନିସ୍ପୃହଭାବରେ କର୍ତ୍ତବ୍ୟ କ'ଣ ବୁଝି କରିବା ଉଚିତ ।

ମଠମନ୍ଦିରମାନଙ୍କରେ ଅର୍ଥ ପାଇବା ଉଦ୍ଦେଶ୍ୟରେ ପୂଜକ କାର୍ଯ୍ୟ କରିବା ଅନୁଚିତ । କୌଣସି ପୁରସ୍କାର କିମ୍ବା ଇନାମ ଯଚାଗଲେ ତାକୁ ଅସ୍ୱୀକାର କରିବା ଉଚିତ । ନିସ୍ପୃହ ବ୍ୟକ୍ତି କୌଣସି ମଠାଧୀଶ ହେବାକୁ ଚାହିଁନଥାଏ । କୌଣସି ପଦପଦବୀର ଲାଳସା ନ ରଖି ସାଂସାରିକ କାର୍ଯ୍ୟ ନିର୍ଲିପ୍ତ ଭାବରେ କରିବା ଉଚିତ । ଆଳସ୍ୟ ତ୍ୟାଗ କରି ସର୍ବଦା ଉଦ୍ୟମଶୀଳ ରହିବା ଉଚିତ୍ । ଉପାସକ ଭାବରେ ଜୀବନଯାପନ କରିବା ଉଚିତ । ନିସ୍ପୃହ ବ୍ୟକ୍ତି ଅତିଗୁଡ଼ାଏ ଭାଷଣ ଦେବା ଅନୁଚିତ ।

ନିସ୍ପୃହ ବ୍ୟକ୍ତି ଅତି କଷ୍ଟ କରେନା; ଆଳସ୍ୟ ପରାୟଣ ହୋଇ ପଡ଼େନାହିଁ । ସେ ବେଶି ମୌନ ରହେନାହିଁ । ସେ ଅତିଗୁଡ଼ାଏ ଆହାର କରେ ନାହିଁ କିମ୍ବା ଅତି ଉପବାସ କରେନାହିଁ । ଅତି ନିଦ୍ରା ଯାଏ ନାହିଁ କିମ୍ବା ଅତିଶୟ ଜାଗରଣରେ ରହେନାହିଁ । ସେ ଅତିଶୟ ଜନସମ୍ପର୍କରେ ରହେନାହିଁ କିମ୍ବା ସବୁବେଳେ ନିର୍ଜନ ବନରେ ରହେନାହିଁ । ସେ ଶରୀରକୁ ଅତିଶୟ ଆଦର କରେନାହିଁ କିମ୍ବା ଅତିଶୟ ଉପେକ୍ଷା କରେନାହିଁ । ନିସ୍ପୃହବ୍ୟକ୍ତି ବହୁ ଲୋକ ସହିତ ମିଶେନାହିଁ । ସେ ସତ୍‌ସଂଗକୁ ହିଁ ଅଧିକ ଭଲପାଏ । ସେ ଅତି କର୍ମଠ ହୁଏନାହିଁ କିମ୍ବା ଅକର୍ମଣ୍ୟ ହୋଇପଡ଼େ ନାହିଁ । ସେ ଲୋକାଚାରକୁ ଛାଡ଼େନାହିଁ କିମ୍ବା ଲୋକଙ୍କ ରୁଚି ଅନୁସାରେ ଚାଲେନାହିଁ । ସେ କାହାପ୍ରତି ଅତି ନିଷ୍ଠୁର ହୋଇପଡ଼େ ନାହିଁ କିମ୍ବା କାହାକୁ ଅତିଶୟ ଭଲପାଏ ନାହିଁ । ସେ ଅତି ସନ୍ଦେହୀ ନୁହଁ କିମ୍ବା ସର୍ବଥା ନିର୍ଦ୍ୱନ୍ଦ୍ୱ କିମ୍ବା ନିଃସଂନ୍ଦେହୀ ନୁହଁ ।

ନିସ୍ପୃହବ୍ୟକ୍ତି ନିଃସଂଗ ରହିମଧ ସବୁ ଜିନିଷକୁ ଅନୁଭବ କରିବା ଉଚିତ । ମନର ସାହାଯ୍ୟ ନନେଲେ କୌଣସି କାର୍ଯ୍ୟ ହୋଇ ନ ଥାଏ । ତଥାପି ମନକୁ ଉନ୍ମନା ଅବସ୍ଥାରେ ରଖିବାଲାଗି ଅଭ୍ୟାସ କରିବା ଉଚିତ । ପରମାତ୍ମା ଅଦୃଶ୍ୟ ଅଲକ୍ଷ ହେତୁ ଦେଖାଯାଏ ନାହିଁ । କିନ୍ତୁ ତାଙ୍କୁ ପ୍ରତ୍ୟକ୍ଷ କରିବା ନିମନ୍ତେ ଜ୍ଞାନ-ଦୃଷ୍ଟି ପାଇବାଲାଗି ଅହର୍ନିଶ ଚେଷ୍ଟା କରିବା ଉଚିତ । ଏଭଳି ମନ ବୁଦ୍ଧିର ଊର୍ଦ୍ଧ୍ୱରେ ।

ତଥାପି ବୁଦ୍ଧିବିନା ଅଜ୍ଞାନ ଅନ୍ଧକାର ଦୂର କରାଯାଇ ନପାରେ ଏବଂ ଅଜ୍ଞାନ ଦୂର ନହେଲେ ସ୍ୱରୂପର ଅନୁଭବ ହୋଇପାରେନା । ବସ୍ତୁ ତର୍କର ଊର୍ଦ୍ଧ୍ୱରେ । ତଥାପି ତର୍କର ଆଶ୍ରୟ ନେବାକୁ ହିଁ ପଡ଼ିଥାଏ । ଦୃଶ୍ୟକୁ ସ୍ମରଣରେ ରଖିନପାର; କିନ୍ତୁ ସ୍ୱରୂପକୁ ଭୁଲିଯିବା ଉଚିତ ନୁହଁ । ଅତିଗୁଡ଼ାଏ ଚର୍ଚ୍ଚା କରିବା ଅନୁଚିତ ।

ଆଶା ବନ୍ଧ ବାନ୍ଧି ବିବେକହୀନ ହୋଇପଡ଼ିବା ଅନୁଚିତ । ସର୍ବଦା ଅଧ୍ୟୟନ, ମନନ, ଚିନ୍ତନ ଦ୍ୱାରା ମନକୁ ପ୍ରସନ୍ନ ରଖିବା ଉଚିତ । ମତଭେଦ ଘଟିଲେ କାହାକୁ ଅପମାନିତ କରିବା ଅନୁଚିତ । ଖରାପ ଜିନିଷ ପ୍ରତି ଆଗ୍ରହ ପ୍ରକାଶ କରିବା ଠିକ୍ ନୁହଁ । ଶ୍ରୋତାମାନଙ୍କ ବାରମ୍ବାର ପ୍ରଶ୍ନବାଣରେ ବିଚଳିତ, ସଂତପ୍ତ ହୋଇ ପଡ଼ିବା ନିସ୍ପୃହତାର ଲକ୍ଷଣ ନୁହଁ । ସବୁଜିନିଷ ପ୍ରତି ନିସ୍ପୃହ ରହି ଜୀବନନଦୀକୁ ପାରିହେବାକୁ ହିଁ ପଡ଼ିବ ।

ମୁଁ ଯାହା ଯାହା କହିଲି ମନୁଷ୍ୟ ଯଦି ତାକୁ ପାଳନ କରେ, ସେ ସୁଖୀ ହୋଇପାରିବ ଏବଂ ଅନାୟାସରେ ସେ ଶ୍ରେଷ୍ଠପଦର ଅଧିକାରୀ ହୋଇପାରିବ ।

## ଦ୍ୱିତୀୟ ସମାସ
## ।। ଭିକ୍ଷା-ବିବେକ ।।

ବ୍ରହ୍ମଚାରୀ ବ୍ରାହ୍ମଣର ମୁଖ୍ୟ ଦୀକ୍ଷା ହେଉଚି ଭିକ୍ଷାଟନ ଅର୍ଥାତ୍ ଭିକ୍ଷା ମାଗିବା । ବ୍ରତୋପନୟନ ସଂସ୍କାର ବେଳେ ବ୍ରହ୍ମଚାରୀକୁ ''ଓଁ ଭବତି ଭିକ୍ଷାଂ ଦେହି'' ଦୀକ୍ଷା ଦିଆଯାଇଥାଏ । ଏହାକୁ ସେ ଯଥାବିଧି ପାଳନ କରିବା ଉଚିତ । ଭିକ୍ଷାଦ୍ୱାରା ମିଳିବା ଅନ୍ନ ନିରାହାର ସହିତ ସମାନ । ଭିକ୍ଷାମାଗିବା ଲୋକ ପ୍ରତିଗ୍ରହ ଦୋଷରୁ ମୁକ୍ତ ରହିଥାଏ ଅର୍ଥାତ୍ ଏହାକୁ ଦାନ ଗ୍ରହଣର ଦୋଷ ଲାଗେ ନାହିଁ । ଛୋଟ ବଡ଼ ସବୁ ଗୃହସ୍ଥଙ୍କ ଘରେ ସେ ରନ୍ଧା ହୋଇଥିବା ଅନ୍ନ ଭୋଜନ କରିଥାଏ । ତାର ଏହି ଭୋଜନ ଅମୃତ ଭୋଜନ ସହିତ ସମାନ । କୁହାଯାଇଚି–

ଭିକ୍ଷାହାରୀ ନିରାହାରୀ ଭିକ୍ଷା ନୈବ ପ୍ରତିଗ୍ରହଃ ।
ଅସଂତୋ ବାପି ସଂତୋ ବା ସୋମପାନଂ ଦିନେ ଦିନେ ।।

ଭିକ୍ଷାର ମହିମା ଏଭଳି । ଭିକ୍ଷା ଶଙ୍କରଙ୍କ ପ୍ରିୟ । ଏହାର ମହିମା ଜାଣିଥିବାରୁ ସେ ମଧ ଭିକ୍ଷା ମାଗିଥାଆନ୍ତି । ଶ୍ରୀଗୁରୁ ଦତ୍ତାତ୍ରେୟ ଓ ଶ୍ରୀ ଗୋରଖନାଥ ଆଦି ସିଦ୍ଧ ଯୋଗୀମାନେ ଭିକ୍ଷାଟନ କରୁଥିଲେ । ଭିକ୍ଷାଦ୍ୱାରା ନିସ୍ପୃହଭାବ ବୃଦ୍ଧିପାଇଥାଏ । ଯିଏ ପ୍ରତ୍ୟେକ ଦିନ କେବଳ ଗୋଟିଏ ପରିବାରରେ ଭୋଜନ କରିଥାଏ; ସେ ପରାଧୀନ ହୋଇ ପଡ଼ିଥାଏ । ନିତ୍ୟ ନୂତନ ନୂତନ ପ୍ରଦେଶ, ଗାଁ ଏବଂ ଘରକୁ ଯାଇ ଭିକ୍ଷା ମାଗିବା ନିସ୍ପୃହତା, ସ୍ୱତନ୍ତ୍ରତା ଏବଂ ଦେଶ ପର୍ଯ୍ୟଟନର ଆନନ୍ଦ ମିଳିଥାଏ । ତେଣୁ ଦେଶ ଦେଶ ବୁଲି ଭିକ୍ଷାମାଗିବା ଉଚିତ । ଯାହାର ନିରନ୍ତର ଭିକ୍ଷା ମାଗିବା ଅଭ୍ୟାସ ସେ ଯେଉଁଠିକି ଗଲେ ମଧ ନିଜ ଦେଶ, ନିଜ ଘର ଭଳି ଅନୁଭବ କରିବ । କିନ୍ତୁ ସେଠାରେ ଅଟକି ରହିବ ନାହିଁ । ଭିକ୍ଷା ମାଗିବାରେ ଦୁଃଖ, ସଙ୍କୋଚ କିମ୍ବା କଷ୍ଟ ଅନୁଭବ କରିବା ଅନୁଚିତ । ଭିକ୍ଷା ପାଇବା ପରେ କୃତଜ୍ଞତା ଭାବ ଦ୍ୱାରା ପରମାତ୍ମାଙ୍କ ଗୁଣ କୀର୍ତ୍ତନ କରିବା ଉଚିତ । ଏପରି ନିସ୍ପୃହ ଭିକ୍ଷାର୍ଥୀ ସାଧୁ ବ୍ରାହ୍ମଣ (ବ୍ରହ୍ମଚାରୀ)କୁ ଦେଖିବାମାତ୍ରେ ଆବାଳ-ବୃଦ୍ଧ-ବନିତା ଚକିତ ହୋଇ ଆଦର ଅଭ୍ୟର୍ଥନା କରିଥାଆନ୍ତି ।

ଭିକ୍ଷାକୁ ସାମାନ୍ୟ କଥା ମନେ କରନାହିଁ । ଏହା ନିତ୍ୟ ଅମୃତ ଦାନକାରୀ କାମଧେନୁ । ଯିଏ ଭିକ୍ଷା କରିବାକୁ ଭଲ ପାଏନା; ସେଭଳି ଯୋଗୀ ଅଭାଗୀ ଓ ଅହଂକାରୀ ବୋଲି ଧରାଯିବ । ଭିକ୍ଷା କରିବା ଦ୍ୱାରା ବହୁ ଲୋକଙ୍କ ସହିତ ପରିଚୟ ହୋଇଥାଏ, ଅନେକ ଭ୍ରମ ଓ ସନ୍ଦେହ ଦୂର ହୋଇଥାଏ । ସାଧାରଣଭାବେ ଭିକ୍ଷା ଦେବା ମଧ କାହାପକ୍ଷରେ କଷ୍ଟକର ହୋଇ ନ ଥାଏ ।

ଭିକ୍ଷା ମାଗିବା ଦ୍ୱାରା ନିସ୍ପୃହତା, ମାୟାହୀନତା ଏବଂ ସ୍ୱାଧୀନତା ସଙ୍ଗେ ସଙ୍ଗେ ମହାନତା ମଧ ପ୍ରକଟିତ ହୋଇଥାଏ । ଭିକ୍ଷାବୃତ୍ତିଦ୍ୱାରା ଭଗବାନପ୍ରାପ୍ତି ମଧ ଘଟିଥାଏ । ଭିକ୍ଷା ଲାଗି କୌଣସି ବାଧା ମଧ ନାହିଁ । ଭିକ୍ଷା ଉପରେ ନିର୍ଭରଶୀଳ ବ୍ୟକ୍ତି ସ୍ୱାଧୀନ ରହିଥାଏ ଏବଂ ତାର ସମସ୍ତ ସମୟ ସାର୍ଥକ କାର୍ଯ୍ୟରେ ବ୍ୟୟିତ ହୋଇଥାଏ । ତେଣୁ ଭିକ୍ଷା ହେଉଚି ଅମୃତ-ବଲ୍ଲୀ । ଏହା ନାନା ଫଳରେ ସୁସଜ୍ଜିତ ରହିଥାଏ ଅର୍ଥାତ୍ ଏହାଦ୍ୱାରା ଅନେକ ଲାଭ ମିଳିଥାଏ । ଭିକ୍ଷା ସଙ୍କୋଚ ଲଜ୍ଜା ବିହୀନ ହୋଇଥିବାରୁ ଏହା ସଙ୍କଟ ସମୟରେ ବହୁତ ଉପଯୋଗୀ ଏବଂ ତାରକ ସିଦ୍ଧ ହୋଇଥାଏ ।

ପୃଥିବୀରେ ବହୁ ଦେଶ ଓ ବହୁଲୋକ– ତେଣୁ ଭିକ୍ଷାଟନ କରୁଥିବା ବ୍ୟକ୍ତି କେବେ ଭୋକିଲା ରହେ ନାହିଁ । କୃଷି, ଗୋରକ୍ଷା, ବାଣିଜ୍ୟଠାରୁ ମଧ ଭିକ୍ଷାର ପ୍ରତିଷ୍ଠା ଅଧିକ । ତେଣୁ ବ୍ରାହ୍ମଣ ଭିକ୍ଷା ଝୁଲି ଧରି ଏ ଘର ସେ ଘର ବୁଲିବାରେ ସଙ୍କୋଚ କରିବା ଅନୁଚିତ । ଭିକ୍ଷାଠୁ ବଳି ବୈରାଗ୍ୟ କିଛି ନାହିଁ ଏବଂ ବୈରାଗ୍ୟଠୁ ବଳି ସୌଭାଗ୍ୟ ମଧ କିଛି ନାହିଁ । କିନ୍ତୁ ଭିକ୍ଷା ପ୍ରତି ଲୋଭ କରିବା ଅନୁଚିତ । ଯେଉଁଠିକି ଯାଅ ଥରେ ମାଗିବ, ନ ମିଳିଲେ ଅନ୍ୟ ଘରକୁ ଯିବ । ଯିଏ ଦେଇ ନ ପାରିଲା ତା ପ୍ରତି ବିରକ୍ତ ହେବା ଅନୁଚିତ । ଭିକ୍ଷାର୍ଥୀମାତ୍ରେ ଅଳ୍ପକରେ ସନ୍ତୁଷ୍ଟ ହେବା ଉଚିତ । କେହି ଅଧିକ ଭିକ୍ଷା ଦେଲେ ଗ୍ରହଣ କରିବା ଅନୁଚିତ । ସମସ୍ତଙ୍କ ସହିତ ମଧୁର ବଚନରେ କଥାବାର୍ତ୍ତା କରିବା ଉଚିତ । ଏହା ନିସ୍ପୃହର ଲକ୍ଷଣ ।

## ତୃତୀୟ ସମାସ
## ।। କବିତା ଲକ୍ଷଣ ।।

କାବ୍ୟ ହେଉଚି ଶବ୍ଦ-ସୁମନରେ ଗ୍ରଥିତ ସୁନ୍ଦରମାଳା । ଏହାର ଅର୍ଥରୂପକ ସୁଗନ୍ଧିରେ ସନ୍ଥରୂପୀ ଭ୍ରମରକୁ ଆନନ୍ଦ ମିଳିଥାଏ । ଅନ୍ତରର ଅନ୍ତରର ଭାବ ସହିତ ଏ ମାଳାକୁ ଗୁନ୍ଥି ପ୍ରଭୁ ଶ୍ରୀରାମଙ୍କ ଚରଣରେ ସମର୍ପଣ କରିବା ଉଚିତ । ଏହା ହିଁ ପ୍ରଭୁଙ୍କର ପୂଜା । ଏହି ମାଳା ଓଁକାର ଅର୍ଥାତ୍ ପ୍ରଣବ-ପୁଷ୍ପରେ ସୁସଜ୍ଜିତ ଏବଂ ଏହା ଅଖଣ୍ଡ । କାବ୍ୟ କବିତାର ରଚନା ପରୋପକାର ଲାଗି କରାଯିବା ଉଚିତ ।

ଆଦର୍ଶ କାବ୍ୟର ଲକ୍ଷଣ କହୁଛି ଶୁଣ । ଭକ୍ତି ଓ ବୈରାଗ୍ୟପୂର୍ଣ୍ଣ କାବ୍ୟ ଲେଖିବା ପୂର୍ବରୁ ଆମେ ନିଜର ଯୋଗ୍ୟତା ଓ ଜ୍ଞାନର ବିକାଶ କରିବା ଉଚିତ । ବିନା କ୍ରିୟାରେ କେବଳ ଶବ୍ଦ-ଜାଲଦ୍ୱାରା ସଜ୍ଜନମାନଙ୍କୁ ସନ୍ତୁଷ୍ଟ କରାଯାଇ ନ ପାରେ । ତେଣୁ ଅନୁତାପଦ୍ୱାରା ପ୍ରଭୁଙ୍କୁ ପ୍ରସନ୍ନ ରଖିବା ଉଚିତ । ପ୍ରଭୁଙ୍କ ପ୍ରସାଦରେ ଯେଉଁ ଯେଉଁ ଭାବର ସ୍ଫୁରଣ ହୋଇଥାଏ, ତାକୁ ହିଁ ଶବ୍ଦ ଦ୍ୱାରା କାବ୍ୟ ଉପରେ ପ୍ରକଟ କରିବା ଉଚିତ । ଏହାକୁ ହିଁ ପ୍ରସାଦିକ କାବ୍ୟ କୁହାଯାଇଥାଏ । କାବ୍ୟ ତିନି ପ୍ରକାରର । ଚପଳ, ପାଠ ଓ ପ୍ରସାଦିକ । ମନଇଚ୍ଛା ଅର୍ଥଶୂନ୍ୟ ରଚନାକୁ ତେଢ଼ାକାବ୍ୟ କୁହାଯାଇଥାଏ । ବହୁତ ଗ୍ରନ୍ଥ ପାଠକରି ପାଠଶକ୍ତିଦ୍ୱାରା ଏହାର

ଅନୁକରଣରେ କାବ୍ୟ ରଚନାକୁ ପାଠକାବ୍ୟ କୁହାଯାଇଥାଏ । ସଙ୍ଗେ ସଙ୍ଗେ କୌଣସି ବିଷୟରେ କାବ୍ୟରଚନା କରିବା ଚପଳ ତଥା ନିଃସଙ୍କୋଚ କାବ୍ୟ ଶ୍ରେଣୀଭୁକ୍ତ । ଶୃଙ୍ଗାର, ବୀର, ହାସ୍ୟ, ବିନୋଦ ଆଦି ନବରସାତ୍ମକ କାବ୍ୟ ମଧ୍ୟ ଏହି ନିଃସଙ୍କୋଚ କାବ୍ୟ ଅନ୍ତର୍ଭୁକ୍ତ । ମନରେ ବିଷୟ ଉଦ୍ରେକ ହେବାମାତ୍ରେ ଶୃଙ୍ଗାର ପୂର୍ଣ୍ଣ କବିତା ପ୍ରଣୟନ କିମ୍ବା ଧନ ଲୋଭରେ କୌଣସି ବ୍ୟକ୍ତିର ପ୍ରଶଂସା କରାଯାଇ ରଚିତ କାବ୍ୟକୁ ଚପଳ କାବ୍ୟ କୁହାଯାଇଥାଏ । ଏପରି କାବ୍ୟ-କବିତା ଭବମୋଚକ କିମ୍ବା ଭବତାରକ ନୁହଁ ।

କାବ୍ୟ ଚପଳ-ପାଠ ପ୍ରଣାଳୀରେ କିମ୍ବା ଭିଡ଼ି ଓଟାରି ଜବରଦସ୍ତ ଉଦ୍ୟମ କରି ରଚନା କରାଯିବା ଅନୁଚିତ । ଏହା ବୁଦ୍ଧିହୀନ, ଉଦ୍ଭଟ, ବିବାଦବୁଦ୍ଧିକାରକ, ଦୃଷ୍ଟାନ୍ତହୀନ, ରୁକ୍ଷ କିମ୍ବା ରସଭଙ୍ଗକାରକ ହେବା ଅନୁଚିତ । କାବ୍ୟରେ ଆଜେବାଜେ ଭାବ କଳ୍ପନାର ବିସ୍ତାର ହେବା ଅନୁଚିତ । ଏହା ଜଟିଳତାପୂର୍ଣ୍ଣ ହେବା ଅନୁଚିତ । ଏଥିରେ ଛନ୍ଦ, ପ୍ରାସ, ଅନୁପ୍ରାସ, ବୃତ୍ତ ଆଦିକୁ ଯଥୋଚିତ ଭାବେ ସାବଧାନତା ସହିତ ରଖାଯିବା ଆବଶ୍ୟକ । ଏହା ଜ୍ଞାନ, କଳା, ତର୍କସଂପନ୍ନ, ଆକର୍ଷକ ଏବଂ ଭକ୍ତି ଓ ଜ୍ଞାନ ବୈରାଗ୍ୟରେ ବିମଣ୍ଡିତ ହେବା ଉଚିତ । ଭକ୍ତିହୀନ କାବ୍ୟ କେବଳ ବିନୋଦ ବ୍ୟତୀତ କିଛି ନୁହଁ । ଭଗବତ ପ୍ରେମ ଓ ପ୍ରୀତିହୀନ କାବ୍ୟ ନିରର୍ଥକ । ପ୍ରେମହୀନ କାବ୍ୟକୁ ଅହଂକାରାଚ୍ଛନ୍ନ ଚପଳ କାବ୍ୟ କୁହାଯିବ ।

ପ୍ରାସାଦିକ କାବ୍ୟର ଲକ୍ଷଣ ଶୁଣ । ଯାହା ପକ୍ଷରେ ସଂସାରର ବୈଭବ ତଥା କାମିନୀ କାଞ୍ଚନର ବିଳାସ ବାନ୍ତି ସହିତ ସମାନ, ଯାହାର ଚିତ୍ତ ଭଗବଦ୍ ଭଜନ ଓ ସତ୍‌ସଙ୍ଗରେ ଲାଗି ରହିଥାଏ, ଯାହା ମନରେ ଭକ୍ତି-ଭାବନା ଚନ୍ଦ୍ରକଳା ଭଳି ଉତ୍ତରୋତ୍ତର ବଢ଼ିବାରେ ଲାଗିଥାଏ, ଯାହାର ହୃଦୟ ସର୍ବଦା ଭକ୍ତିର ରଙ୍ଗରେ ରଞ୍ଜିତ ରହିଥାଏ, ଯାହାର ହୃଦୟ ସିଂହାସନରେ ଭଗବାନ ବିରାଜିତ—ଏଭଳି ଭଗବଦ୍ ଭକ୍ତି ଭାବରୁ ଯେଉଁ କାବ୍ୟ କବିତା ସହଜ ଭାବରେ ପ୍ରସୂତ ହୋଇଥାଏ ସେହି କାବ୍ୟକୁ ବ୍ରହ୍ମନିରୂପିତ କାବ୍ୟ କୁହାଯିବ । ଏଭଳି ସନ୍ଥପୁରୁଷ ଭକ୍ତି-ପ୍ରଧାନ ସରସ କାବ୍ୟ ହିଁ ଲେଖିଥାଏ । ଯାହାର ଅନ୍ତର ଭାବ ମଧୁର ତାର ବାଣୀ ମଧ୍ୟ ମଧୁର ହେବା ସ୍ୱାଭାବିକ । ଯିଏ କାରୁଣ୍ୟପୂର୍ଣ୍ଣ କୀର୍ତ୍ତନର ଉଲ୍ଲାସରେ ଦେହକୁ

ସୁଦ୍ଧା ଭୁଲିଯାଇଥାଏ, ନିଃସଙ୍କୋଚରେ ପ୍ରେମୋନ୍ମତ୍ତ ହୋଇ ନାଚି ଉଠିଥାଏ, ଯାହାର ହୃଦୟ ଅହଂକାର ଶୂନ୍ୟ, ଯିଏ ଜଗତ ଓ ଜନତାକୁ ଜନାର୍ଦ୍ଦନ ମନେ କରିଥାଏ; ଯାହାର ଚିତ୍ତରେ ଓ ନେତ୍ରରେ କେବଳ ଭଗବାନଙ୍କ ରୂପ ପ୍ରତିବିମ୍ବିତ ହୋଇଥାଏ; ଯିଏ ଇଚ୍ଛାନୁସାରେ ସର୍ବଦା ଭଗବାନଙ୍କ ରୂପ, ତାଙ୍କର ଯଶକୀର୍ତ୍ତି ଓ ପ୍ରତାପର କୀର୍ତ୍ତନ କରିଥାଏ; ଏପରି ବୈରାଗ୍ୟସମ୍ପନ୍ନ ଏବଂ ମୁକ୍ତି-ସୁଖର ଉପଭୋଗକାରୀ ଭକ୍ତର ମୁହଁରୁ ସହଜ ଭାବରେ କେବଳ ବୈରାଗ୍ୟ ଓ ଭକ୍ତିର ଭାବ କାବ୍ୟ ଆକାରରେ ପ୍ରକାଶିତ ହୋଇଥାଏ । ଏହି କାବ୍ୟକୁ ହିଁ ପ୍ରାସାଦିକ କାବ୍ୟ କୁହାଯାଏ ।

କାବ୍ୟ ନିର୍ମଳ, ସରସ ଏବଂ ସୁବୋଧ ହେବା ଆବଶ୍ୟକ । କାବ୍ୟରେ ଅହଂଭାବ ପ୍ରକଟିତ ହେବା ଅନୁଚିତ । ଏଥିରେ ଅର୍ଥ ଗୌରବ ଭଲ ଭାବରେ ରହିଥିବା ଆବଶ୍ୟକ । ଏଥିରେ ହରିଗୁଣଗାନର ପ୍ରାଧାନ୍ୟ ରହିବା ଉଚିତ । ଏହା ରମଣୀୟ, ମଧୁର, ସରଳ, ସଂକ୍ଷିପ୍ତ ନାମକ, ଶୁଦ୍ଧ, କୋମଳ କଳାପୂର୍ଣ୍ଣ ଛନ୍ଦବଦ୍ଧ ଆଦି ଗୁଣରେ ଯୁକ୍ତ ହେବା ଆବଶ୍ୟକ । ଏହା ମୁକ୍ତି-ବୁଦ୍ଧି-ସିଦ୍ଧି ସମ୍ପନ୍ନ ହେବା ଉଚିତ । ଏଥିରେ ସୁତର୍କ, ପୂର୍ବ ପକ୍ଷର ସିଦ୍ଧାନ୍ତ, ଗତି, ବିପୃତ୍ତି, ସ୍ଫୂର୍ତ୍ତି, ଧୃତି, ଧାରଣା, ଦୃଷ୍ଟାନ୍ତ, ନିଃସନ୍ଦେହ ଜ୍ଞାନର ଯଥୋଚିତ ସମନ୍ୱୟ ରକ୍ଷା ଆବଶ୍ୟକ । ପ୍ରସାଦିକ କାବ୍ୟରେ ସୁବିଚାର ଯୋଗ, ବିବରଣ ତତ୍ତ୍ୱଚର୍ଚ୍ଚା, ସଂଶୟ ଉଚ୍ଛେଦ, ପୁରଶ୍ଚରଣ ଓ ତୀର୍ଥାଟନ ଆଦିର ବର୍ଣ୍ଣନା ରହିବା ଉଚିତ । ଯେଉଁ କାର୍ଯ୍ୟରେ ପ୍ରପଞ୍ଚଭାବନା ହଟେ, ଅଜ୍ଞାନ ତୁଟେ, ଭକ୍ତି ମାର୍ଗର ଜ୍ଞାନ ହୁଏ, ଦେହବୋଧ ତୁଟେ, ମୂର୍ଖତାର ବିନାଶ ଘଟେ, ସଦ୍‌ବୁଦ୍ଧି ତଥା ବିବେକ ଉଦ୍ରେକ ହୁଏ, ସଦବୁଦ୍ଧି ହୋଇ ଭେଦଭାବ ଦୂର ହୁଏ ଏବଂ ସଂସାର ବନ୍ଧନ ଛିନ୍ନ ହୋଇ ଆତ୍ମା ସମାଧାନର ଆନନ୍ଦ ମିଳେ, ତାହା ହିଁ ପ୍ରକୃତ ଅନାବିଳ କାବ୍ୟ ।

## ଚତୁର୍ଥ ସମାସ
## ।। କୀର୍ତ୍ତନ କଳା ନିରୂପଣ ।।

କଳିଯୁଗରେ ନିରନ୍ତର ଭଗବାନଙ୍କ ଗୁଣକୀର୍ତ୍ତନ କରିବା ଉଚିତ । କୀର୍ତ୍ତନ କୋମଳ ମଧୁର ସ୍ୱରରେ ଗାନ କରାଯିବା ଆବଶ୍ୟକ । କାହା ସହିତ ଝଗଡ଼ା

କରନାହିଁ । ଭଗବଦ୍ କୀର୍ତ୍ତନ ଓ ଭଜନ ଦ୍ୱାରା ଜନତା-ଜନାର୍ଦ୍ଦନକୁ ସନ୍ତୁଷ୍ଟ କରିବା ଉଚିତ । କୀର୍ତ୍ତନକାର ତନ୍ମୟ ଭାବରେ କୀର୍ତ୍ତନ କରିବା ବେଳେ ତା ଆଖିରୁ ପ୍ରେମାଶ୍ରୁ ପ୍ରବାହିତ ହୋଇଥାଏ । ତାର ଏହି ଭାବକୁ ଦେଖି ଲୋକେ ତା ପ୍ରତି ଆପେ ଆପେ ଆକୃଷ୍ଟ ହୋଇଥାଆନ୍ତି । ଏଥିଲାଗି କାହାକୁ ଡାକିବାକୁ ପଡ଼େନାହିଁ ।

କୀର୍ତ୍ତନଲାଗି ପୂର୍ଣ୍ଣ ଆତ୍ମବିଶ୍ୱାସ ସହିତ ଦଣ୍ଡାୟମାନ ରହିବା ଉଚିତ । ଉଲ୍ଲାସପୂର୍ଣ୍ଣ ଢଙ୍ଗରେ ଏବଂ ସୁମଧୁର ଓ ସୁନ୍ଦର ସ୍ୱରରେ ଗାଇବା ଆବଶ୍ୟକ । କୀର୍ତ୍ତନରେ ଏପରି ବିଭିନ୍ନ ଅଭିନୟ ଏବଂ କୌତୁକ ଦେଖାଇବା ଉଚିତ, ଯେଉଁଥିରେ ପାପଚିନ୍ତା ଦୂର ହୋଇ ପୁଣ୍ୟ ଦିଗରେ ମନ ପ୍ରବୃତ୍ତ ହୋଇପାରିବ । କୀର୍ତ୍ତନରେ ବୃଥା ବାଜେକଥା କହିବା କିମ୍ବା କାହାର ନିନ୍ଦା କରାଯିବା ଅନୁଚିତ । ପ୍ରେମଭାବରେ ଯେଉଁ କୀର୍ତ୍ତନ କରାଯାଏ ତାକୁ ଲୋକେ ଭଲପାଇଥାଆନ୍ତି ଏବଂ ଲୋକେ ଆପେ ଆପେ ଆସି କୀର୍ତ୍ତନ ଶୁଣନ୍ତି, ପାଳି ଧରନ୍ତି । ଭଲ କୀର୍ତ୍ତନ ଦ୍ୱାରା ଲୋକଙ୍କ ହୃଦୟରେ ଈଶ୍ୱରଙ୍କ ପ୍ରତି ଭକ୍ତିଭାବ ବଢ଼ିଯାଏ; ଅନ୍ତର ନିର୍ମଳ ହୋଇ ଉଠିଥାଏ, ମନରେ ଦୟାଭାବ ଜାଗ୍ରତ ହୋଇଥାଏ । କୀର୍ତ୍ତନରେ ବୃଥା ତର୍କ ବିତର୍କ କରିବା ଅନୁଚିତ । କୀର୍ତ୍ତନକୁ ବିସ୍ତାରିତ କରି ଅର୍ଥାତ୍ ବାରମ୍ବାର ସେହି ସେହି ବିଷୟ ବୋଲି ମନକୁ ଭାରାକ୍ରାନ୍ତ କରିବା ଅନୁଚିତ । କୀର୍ତ୍ତନ ହେଉଚି ଏକପ୍ରକାରର ପ୍ରବଚନ । ତେଣୁ ବିନମ୍ର ଭାବରେ ନିଜର ତର୍କପୂର୍ଣ୍ଣ ବକ୍ତବ୍ୟଦ୍ୱାରା ଲୋକଙ୍କୁ ସନ୍ତୁଷ୍ଟ କରିବା ଉଚିତ ।

ସଜ୍ଜନମାନେ ସାହିତ୍ୟ ଓ ସଂଗୀତକୁ ବହୁତ ଭଲ ପାଇଥାଆନ୍ତି । ତେଣୁ ଶାସ୍ତ୍ର ବା ଶ୍ରୁତିଗୁଡ଼ିକର ତତ୍ତ୍ୱକୁ ସଂଗୀତଦ୍ୱାରା ସୁଗମ ସୁବୋଧ ଭାଷାରେ ଲୋକଙ୍କୁ ବୁଝେଇବା ଉଚିତ । ଯିଏ ଭଲ କୀର୍ତ୍ତନକାର ତା କଣ୍ଠ ସହିତ ଶୁଆ ସାରୀଙ୍କ କଣ୍ଠ ମଧ୍ୟ ତୁଳନୀୟ ନୁହଁ । ଆମେମାନେ କେବଳ ସାଂସାରିକ ଭୋଗ ବିଳାସ ଆନନ୍ଦରେ ମଗ୍ନ ନରହି ମନକୁ ସେହି ଅନିର୍ବଚନୀୟ, ଅଲକ୍ଷ୍ୟ ପରବ୍ରହ୍ମ ପରମାତ୍ମାଙ୍କ ପ୍ରତି ଲଗାଇବା ଉଚିତ । ଧ୍ୟାନ ଓ କୀର୍ତ୍ତନ ଦ୍ୱାରା ମନକୁ ପରବ୍ରହ୍ମ ପ୍ରତି ଲଗାଯାଇପାରେ । ଏହା କରୁ କରୁ ସମୟ ଆସିବ ଅଲକ୍ଷ୍ୟ ପରବ୍ରହ୍ମ ଅକସ୍ମାତ୍ ପ୍ରକଟିତ ହୋଇଯିବେ ।

## ପଞ୍ଚମ ସମାସ
## ।। କଥା ନିରୂପଣ ।।

ହେ ଚତୁର ଶ୍ରୋତାଗଣ ! ଏବେ ହରିକଥାର ଲକ୍ଷଣ କ'ଣ ଶୁଣ । ହରିକଥା କିପରି କରାଯିବା ଉଚିତ, ମନୁଷ୍ୟ କିପରି ରଘୁନାଥଙ୍କ କୃପାପାତ୍ର ହୋଇପାରିବ, ସେହିକଥା ବର୍ତ୍ତମାନ ମୁଁ କହୁଛି । ସୁବର୍ଣ୍ଣରେ ଯଦି ସୁବାସ ଭରି ଦିଆଯାଏ, ଆଖୁ ଗଛରେ ଯଦି ମିଠାରସଭରା ଫଳ ଫଳେ, ତାହାହେଲେ ଆନନ୍ଦର ସୀମା ରହିବ ନାହିଁ । ସେହିଭଳି ହରିଭକ୍ତ ଯଦି ବୈରାଗୀ ହୋଇଥାଏ; ଜ୍ଞାନୀବ୍ୟକ୍ତି ଯଦି ପ୍ରେମୀ ଭକ୍ତ ହୋଇଥାଏ; ବ୍ୟୁତ୍ପନ୍ନ (ବୁଦ୍ଧି ସଂପନ୍ନ) ହୋଇ ଯଦି ବାଦବିବାଦରେ ଲିପ୍ତ ରହିନଥାଏ; ତାହାହେଲେ ସେ ପରବ୍ରହ୍ମଙ୍କ ସାନିଧ୍ୟ ଲାଭ କରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ସଂଗୀତ କଳାନିପୁଣ ହେବା ସଙ୍ଗେ ସଙ୍ଗେ ବ୍ରହ୍ମଜ୍ଞାନୀ, ନିରଭିମାନୀ, ନିର୍ମତ୍ସର, ସାଧୁସନ୍ଥପ୍ରିୟ, ସୁଚତୁର ଏବଂ ଅନ୍ତର୍ନିଷ୍ଠ ହେବା ଦୁର୍ଲ୍ଲଭ । ଶ୍ରୀରାମ, ଶ୍ରୀକୃଷ୍ଣ ଆଦି ଅବତାରୀ ପୁରୁଷମାନଙ୍କ ଜୟନ୍ତୀବେଳେ ଏବଂ ପ୍ରସିଦ୍ଧ ତୀର୍ଥସ୍ଥାନମାନଙ୍କରେ ପରମାତ୍ମା ସମର୍ଥରୂପରେ ଉପସ୍ଥିତ ରହିଥାଆନ୍ତି । ତୀର୍ଥକୁ ମାନୁ ନଥିବା ପାମରମାନଙ୍କୁ ଭଗବାନ ମିଳିବେ କିପରି ? ନିର୍ଗୁଣ ଜ୍ଞାନ ସଂଦେହରେ ଘୋଡ଼େଇ ହୋଇ ପଡ଼ିଥାଏ । ସଗୁଣ ପ୍ରେମଭକ୍ତି ସାତ୍ତ୍ୱିକ ବ୍ରହ୍ମଜ୍ଞାନ ଦ୍ୱାରା ନଷ୍ଟ ହୋଇପଡ଼ିଥାଏ । ସେହିଭଳି ଅହଂକାର ଯୋଗୁଁ ପାମର ବ୍ୟକ୍ତି ନିର୍ଗୁଣ ଓ ସଗୁଣ ଆନନ୍ଦରୁ ବଞ୍ଚିତ ହୋଇପଡ଼ିଥାଏ । ସଗୁଣମୁକ୍ତି ସମ୍ମୁଖରେ ଥାଇ ମଧ୍ୟ ଯିଏ ସଗୁଣଭକ୍ତିକୁ ଛାଡ଼ି ନିର୍ଗୁଣର ପ୍ରତିପାଦନ କରିଥାଏ ସେ ପାଠପଢୁଆ ମୂର୍ଖ । ସଗୁଣମୂର୍ତ୍ତି ଆଗରେ ଆମେମାନେ କରୁଣାପୂର୍ଣ୍ଣ ଭାବରେ କୀର୍ତ୍ତନ କରିବା ଉଚିତ । ଭଗବାନଙ୍କ ରୂପର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାଙ୍କର ମହାନତାର ଏପରି ସ୍ତୁତି କରିବା ଉଚିତ, ଯାହାକୁ ଶୁଣିବାମାତ୍ରେ ଶ୍ରୋତାମାନଙ୍କ ହୃଦୟରେ ପ୍ରେମ-ସୁଖର ଆଲୋଡ଼ନ ସୃଷ୍ଟି ହୋଇପାରିବ ।

ସଗୁଣ (ସାକାର)ର ପ୍ରବଚନ ଅର୍ଥାତ୍ କଥାକୀର୍ତ୍ତନରେ ନିର୍ଗୁଣକୁ ସମ୍ମିଳିତ କରିବା ଅନୁଚିତ । ଅନ୍ୟର ଦୋଷଗୁଣର ଚର୍ଚ୍ଚା ନକରି ପ୍ରଭୁଙ୍କ ଐଶ୍ୱର୍ଯ୍ୟ,

ମହତ୍ତ୍ୱ ଓ ପ୍ରେମର ବର୍ଣ୍ଣନା କରିବା ଉଚିତ୍ । ସଂକୋଚ ଓ ଧନଲୋଭକୁ ଛାଡ଼ି ନିତ୍ୟ ଉଲ୍ଲସିତ ମନରେ ଭଗବାନଙ୍କ ଲୀଳା କୀର୍ତ୍ତନ କରିବା ଉଚିତ । ହରିମନ୍ଦିରରେ ଅକୁଣ୍ଠିତ ଚିତ୍ତରେ ପ୍ରଭୁଙ୍କୁ ସାଷ୍ଟାଙ୍ଗ ନମସ୍କାର କରିବା ଉଚିତ । ତାଳି ବଜେଇ ହସିନାଚି ପ୍ରଭୁଙ୍କ ଜୟଜୟକାର କରିବା ଦ୍ୱାରା ମନରୁ ସମସ୍ତ ଗ୍ଲାନି ହଟିଯାଇଥାଏ । କୌଣସି ଦେବତାଙ୍କ ସ୍ତୁତି ଅନ୍ୟ ଦେବତାଙ୍କ ଆଗରେ ଗାଇବା ଅନୁଚିତ । ଯଦି ସଗୁଣ ମୂର୍ତ୍ତି ଆଖି ଆଗରେ ଝଲସି ନ ଉଠେ ଏବଂ ଯଦି ଆଗରେ ସାଧୁସନ୍ଥମାନେ ବସିଥାଆନ୍ତି, ତାହାହେଲେ ଅଦ୍ୱୈତ ନିର୍ଗୁଣ ସ୍ୱରୂପର ନିରୂପଣ କରିବା ଉଚିତ । ଭବରସରେ ନିମଗ୍ନ ଭକ୍ତଙ୍କୁ ଅନୁତାପ ଏବଂ ବୈରାଗ୍ୟର ମହତ୍ୱ ବୁଝାଇବା ଆବଶ୍ୟକ । କଥାପ୍ରସଙ୍ଗରେ ମଧ୍ୟ ଶୃଂଗାର ରସ ବିଷୟ କିଛି କହିବା ଅନୁଚିତ । ଶୃଂଗାରରସ ଓ ସ୍ତ୍ରୀମାନଙ୍କ ରୂପ ବର୍ଣ୍ଣନାକୁ ପସନ୍ଦ କରୁଥିବା ବ୍ୟକ୍ତି ଈଶ୍ୱର ରସରୁ ବଂଚିତ ହୋଇଥାଏ । କୀର୍ତ୍ତନ କରୁଥିବା ଭକ୍ତକୁ ରାଗ, ତାଳ ଓ ସ୍ୱର ଆଦି କଳା ସଂପର୍କରେ ବୁଝାଇବା ଉଚିତ । ଯଦି ସେ ଏହି କଳା ଗୁଡ଼ିକୁ ପ୍ରଦର୍ଶନ କରିବା ବେଳେ ସେଥିରେ ମଗ୍ନ ରହେ ତାହାହେଲେ ସେ ପ୍ରକୃତ ଭକ୍ତ ନୁହଁ । କେବେ କେବେ ରାଗ-ଜ୍ଞାନ, ଭକ୍ତିଭାବ ଲାଗି ନିରର୍ଥକ ସିଦ୍ଧ ହୋଇଥାଏ । ରାଜାଙ୍କ ଦର୍ଶନ ଲାଗି ଗଲାବେଳେ ରାସ୍ତାରେ କୌଣସି ଭିକାରୀ ହାବୁଡ଼ରେ ପଡ଼ିଲେ ଲୋକର ଯେପରି ଦୁର୍ଦ୍ଦଶା ହୋଇଥାଏ, ସେହିଭଳି ଯେଉଁ ମନୁଷ୍ୟ ହରିକଥା କହିବାବେଳେ ଭଗବଦ୍ ପ୍ରେମକୁ ଭୁଲିଯାଇ ତାଳସ୍ୱରର ଆଡ଼ମ୍ବରରେ ଫସି ନାନା ଦୁର୍ଦ୍ଦଶା ଭୋଗ କହିଥାଏ । ଯିଏ ପ୍ରଭୁଙ୍କ ଚରଣରେ ନିଜକୁ ସମର୍ପଣ କରି ହରିକଥା କରିଥାଏ, ସେହି ଭକ୍ତ ହିଁ ଧନ୍ୟ । ହରିକଥାରେ ଯାହାର ପ୍ରେମ ନିତ୍ୟ ବଢ଼ିବାରେ ଲାଗିଥାଏ ସେ ସର୍ବେଶ୍ୱର ପରମାତ୍ମାଙ୍କୁ ଲାଭ କରିଥାଏ । ଯିଏ ଆଳସ୍ୟ, ନିଦ୍ରାକୁ ତ୍ୟାଗ କରି ତତ୍ପର ଭାବରେ ହରିକଥା ଶୁଣିବାପାଇଁ ଦୌଡ଼ିଧାଏ ସେ ପ୍ରକୃତ ଭକ୍ତ । ଏଭଳି ଭକ୍ତକୁ ପରମଦୟାଳୁ ଭକ୍ତବତ୍ସଳ ଭଗବାନ ପ୍ରତ୍ୟେକ କାର୍ଯ୍ୟରେ ପ୍ରତ୍ୟକ୍ଷ ଭାବେ ସାହାଯ୍ୟ କରିଥାଆନ୍ତି । ପ୍ରଭୁଙ୍କ ପରି ପରମପବିତ୍ର ନାମସ୍ମରଣ ଉପରେ ଯାହାର ଅଟଳ ବିଶ୍ୱାସ ସିଏ ହିଁ ହରିଦାସ ।

## ଷଷ୍ଠ ସମାସ
## ।। ଚାତୁର୍ଯ୍ୟ ନିରୂପଣ ।।

ରୂପଲାବଣ୍ୟ ଅଭ୍ୟାସ କିଂବା ପ୍ରଯତ୍ନ ଦ୍ୱାରା ଲାଭ କରାଯାଇ ନପାରେ । ଯେଉଁ ଗୁଣ ସ୍ୱାଭାବିକ ତାହା ଉଦ୍ୟମଦ୍ୱାରା ଲାଭ ହୋଇନଥାଏ; କିନ୍ତୁ ଯେଉଁ ଗୁଣ ଆଗନ୍ତୁକ ନୁହଁ, ଅର୍ଥାତ୍ ଯାହା ଆପେ ଆପେ ଆସେନାହିଁ ତାହା ଲାଭ କରିବା ଲାଗି ଅବଶ୍ୟ ପ୍ରଯତ୍ନ କରିବା ଆବଶ୍ୟକ । କଳାଲୋକ ଗୋରା ହୋଇ ନପାରେ । ଯାହା ଦେହରେ ବସନ୍ତ ଦାଗ ରହିଥାଏ ସେ ଦାଗକୁ ଦୂର କରାଯାଇ-ପାରେନା । ଘୁଂଘାବ୍ୟକ୍ତି କଥାବାର୍ତ୍ତା କରି ପାରେନା । ଅନ୍ଧ ଦେଖିପାରେନା କିଂବା ବଧୀର ବ୍ୟକ୍ତି ଶୁଣି ପାରେନା । ଏସବୁ ସ୍ୱାଭାବିକ ତ୍ରୁଟି । କିନ୍ତୁ ଦୁର୍ଗୁଣକୁ ଦୂର କରାଯାଇପାରେ ଏବଂ ଗୁଣକୁ ଗ୍ରହଣ କରାଯାଇପାରେ ।

ନିଜ ଉଦ୍ୟମଦ୍ୱାରା ଖରାପ ମାର୍ଗକୁ ଛାଡ଼ି ମନୁଷ୍ୟ ସଦ୍‌ମାର୍ଗରେ ଚାଲିପାରେ । ସଦ୍‌ମାର୍ଗରେ ଚାଲୁଥିବା ଲୋକଙ୍କୁ ସଜ୍ଜନମାନେ ସମ୍ମାନ କରିଥାଆନ୍ତି । ଶରୀରକୁ ଯେତେ ସଜାଅନା କାହିଁକି, ଯଦି ଚାତୁର୍ଯ୍ୟ ନାହିଁ ତାହାହେଲେ ସବୁ ସାଜସଜ୍ଜା ବୃଥା । ଯଦି ଭିତରେ ଭଲଲଗୁଣ ନଥାଏ ତାହାହେଲେ ବାହାରର ସାଜସଜ୍ଜାର କୌଣସି ମୂଲ୍ୟ ନାହିଁ ।

ତେଣୁ ବାହାରର ସାଜସଜ୍ଜାକୁ ଛାଡ଼ି ଅନ୍ତରର ଶୋଭା ବଢ଼ାଇବା ଉଚିତ୍ । ନାନପ୍ରକାରର ଉଦ୍ୟୋଗ ଓ କଳା ଶିକ୍ଷା କରି ସଂପତ୍ତି ଅର୍ଜନ କରିବା ସଂଗେ ସଂଗେ ଏହାର ସଦୁପଯୋଗ କରି ଆନନ୍ଦପୂର୍ବକ ଜୀବନ ବିତାଇବା ଉଚିତ । ଯେଉଁ ବ୍ୟକ୍ତି ଉଦ୍ୟମ କରେ ନାହିଁ, ଯିଏ ଜ୍ଞାନବାନ ନୁହଁ କି କଳାକୁଶଳୀ ନୁହଁ, ଯିଏ ପରିଶ୍ରମ କରେ ନାହିଁ କିଂବା ଉତ୍ତମଗୁଣରେ ଗୁଣବାନ ନୁହଁ, ସେ ସୁଖୀ ହୋଇ ନପାରେ । ଆମେ ଯାହାପ୍ରତି ଯେପରି ବ୍ୟବହାର କରିବା ତାର ପ୍ରତିଫଳ ସେହିଭଳି ପାଇବା । ଅନ୍ୟକୁ କଷ୍ଟ ଦେଲେ ଆମକୁ କଷ୍ଟ ହିଁ ଭୋଗିବାକୁ ପଡ଼ିବ । ଯିଏ ନ୍ୟାୟରେ ଚାଲିଥାଏ, ସେ ପ୍ରକୃତ ସଜ୍ଜନ । ଅନ୍ୟାୟୀମାତ୍ରେ

ଦୀନହୀନ । ଚତୁର ଲୋକେ ଚାତୁର୍ଯ୍ୟର ଲକ୍ଷଣ ଭଲ ଭାବରେ ଜାଣିଥାଆନ୍ତି । ତୁମେ ଯଦି ଚାହୁଁଥାଅ ଯେ ସମସ୍ତେ ମୋ କଥା ମାନି ଚଳନ୍ତୁ ତାହାହେଲେ ସମସ୍ତଙ୍କ ସହିତ ସୁବ୍ୟବହାର କରିବା ଆବଶ୍ୟକ । ସମାଧାନରୁ ହିଁ ସମାଧାନ ମିଳିଥାଏ ଏବଂ ମୈତ୍ରୀଭାବରୁ ହିଁ ମୈତ୍ରୀର ଆନନ୍ଦ ମିଳିଥାଏ ।

ସମସ୍ତେ ଚାହିଁଥାଆନ୍ତି ମତେ ଭଲ ଖାଇବାକୁ ମିଳୁ, ଭଲ ପିନ୍ଧିବାକୁ ମିଳୁ ଏବଂ ସମସ୍ତେ ମତେ ଆଦର କରନ୍ତୁ । କିନ୍ତୁ ଶାରିରୀକ ପରିଶ୍ରମ ନ କଲେ କିମ୍ବା ମନକୁ ସଦ୍‌ଗୁଣସମ୍ପନ୍ନ ନ କଲେ ସମାଜରେ ସେ ସମ୍ମାନିତ ହୋଇ ନ ପାରେ ।

ତେଣୁ ଆମ୍ଭେମାନେ ଅନ୍ୟକୁ ସୁଖୀ କରିବାପାଇଁ ଉଦ୍ୟମ କରିବା ଉଚିତ । ଅନ୍ୟକୁ ସୁଖ ଦେଇପାରିଲେ ନିଜେ ସୁଖ ପାଇବା ସମ୍ଭବ । ଅନ୍ୟକୁ କଷ୍ଟ ଦେଲେ ନିଜେ କଷ୍ଟର ସମ୍ମୁଖୀନ ହେବାକୁ ପଡ଼ିବ ।

ମଣିଷ ଯେତିକି ପରିଶ୍ରମ କରିବ, ସେତିକି ଭାଗ୍ୟବାନ ହୋଇପାରିବ । ଭାଗ୍ୟବାନ ହେବାର ଏକମାତ୍ର ଉପାୟ ହେଉଚି ପରିଶ୍ରମ କରିବା, ଉଦ୍ୟମ କରିବା । ଆଳସ୍ୟ ଦ୍ୱାରା ହାନି ହିଁ ହୋଇଥାଏ ଏବଂ ଉଦ୍ୟମ ଦ୍ୱାରା ସବୁକାର୍ଯ୍ୟ କ୍ରମଶଃ ସଫଳ ହୋଇଥାଏ । ସ୍ନେହ ବଢ଼ାଇବା ଦ୍ୱାରା ବନ୍ଧୁତ୍ୱ ଦୃଢ଼ ହୋଇଥାଏ ଏବଂ ବନ୍ଧୁଙ୍କ ଦ୍ୱାରା ବହୁକାର୍ଯ୍ୟ ସିଦ୍ଧ ହୋଇଥାଏ ।

ଯେଉଁବ୍ୟକ୍ତି ସଦ୍‌ମାର୍ଗରେ ଚାଲିବା ସଙ୍ଗେ ସଙ୍ଗେ ଲୋକଙ୍କ ପ୍ରତି ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର କରି ନ ଥାଏ, ବରଂ ଈର୍ଷା ଦ୍ୱେଷ ଭାବର ବିସ୍ତାର କରିଥାଏ, ତାକୁ ସୁଖ ମିଳିବ କିପରି ? ସେ ଭଗବାନ ହେବ କିପରି ? ଯାହାର କାହା ସାଙ୍ଗରେ ପଡ଼େ ନାହିଁ, ସମସ୍ତଙ୍କ ସହିତ ଯିଏ ଝଗଡ଼ା କରିବା ଲାଗି ତତ୍‌ପର, ସଂସାରରେ ତାକୁ ସଫଳତା ମିଳିବ କିପରି ? ତେଣୁ ଆମେ ସମସ୍ତଙ୍କ ସହିତ ମିଳିମିଶି, ସମସ୍ତଙ୍କ ସହିତ ପ୍ରେମପୂର୍ଣ୍ଣ ବ୍ୟବହାର କରି, ସମସ୍ତଙ୍କ ପ୍ରିୟଭାଜନ ହେବା ଉଚିତ । ଲୋକଙ୍କୁ ସଦ୍‌ମାର୍ଗରେ ଚାଲିବାପାଇଁ ଉପଦେଶ ଦେବା ସଙ୍ଗେ ସଙ୍ଗେ ଭଗବଦ୍ ଭକ୍ତିର ପ୍ରଚାର ମଧ୍ୟ କରିବା ଉଚିତ୍ ।

## ସପ୍ତମ ସମାସ
## ।। ଯୁଗ-ଧର୍ମ-ଲକ୍ଷଣ ।।

ସଂସାରରେ ବହୁତ ଦେଶ, ବହୁତ ଆଶ୍ରମ । ତେଣୁ ସମସ୍ତଙ୍କର ମୂଳକେନ୍ଦ୍ର ଗୃହସ୍ଥାଶ୍ରମ ଯୋଗୁଁ ତିନିଲୋକର ପ୍ରାଣୀଙ୍କୁ ବିଶ୍ରାମ ମିଳିଥାଏ । ଦେବ, ଋଷି, ମୁନି, ଯୋଗୀ, ତପସ୍ୱୀ, ବୈରାଗୀ, ଅତିଥି ଅଭ୍ୟାଗତ, ପିତୃପୁରୁଷ ଏହି ଗୃହସ୍ଥାଶ୍ରମରୁ ହିଁ ଜନ୍ମ ହୋଇଥାଆନ୍ତି । ଆଶ୍ରମ ବଦଳିଲେ ମଧ୍ୟ ଗୃହସ୍ଥାଶ୍ରମକୁ ହିଁ ଭିତ୍ତି କରି ଜୀବନ ଯାପନ କରିଥାଆନ୍ତି ।

ଯେଉଁ ଆଶ୍ରମରେ ଭଜନ କୀର୍ତ୍ତନ (ଯଜ୍ଞ ହବନ ଆଦି), ଅଧ୍ୟୟନ, ଅଧ୍ୟାପନା, ଦାନ କିମ୍ବା ପ୍ରତିଗ୍ରହ– ଏହି ଷଡ଼କର୍ମ ନିତ୍ୟ ଚାଲିଥାଏ, ଯେଉଁଠି ସମସ୍ତେ ମଧୁର କଥା କହିଥାନ୍ତି; ଯେଉଁଠି ସବୁପ୍ରକାରର ଆଚାର ଶାସ୍ତ୍ରାନୁସାରେ ହୋଇଥାଏ; ଯେଉଁଠି ସବୁଲୋକ ଭକ୍ତିମାର୍ଗରେ ଚାଲିଥାଆନ୍ତି; ଯେଉଁଠି ଗାୟତ୍ରୀ ଆଦି ପୁରଶ୍ଚରଣ ଦୃଢ଼ବ୍ରତପୂର୍ବକ ଏବଂ ସଂଯମ ଏବଂ ସହିଷ୍ଣୁତା ସହିତ କରାଯାଇଥାଏ; ଯେଉଁଠି କାୟମନୋବାକ୍ୟରେ ଭଗବାନଙ୍କ ଉପାସନାରେ ସମୟ ଅତିବାହିତ ହୋଇଥାଏ; ତାହାହିଁ ପ୍ରକୃତ ଗୃହସ୍ଥାଶ୍ରମ । ଏପରି ଗୃହସ୍ଥାଶ୍ରମର କାର୍ଯ୍ୟ ସୁଚାରୁରୂପେ କରୁଥିବା ବେଳେ ଯଦି କାହା ମନରେ ପ୍ରକୃତ ବୈରାଗ୍ୟଭାବ ଆସିବାରେ ସେ ଗୃହତ୍ୟାଗ କରେ, ସେ ମହାନ୍ ଭାଗ୍ୟଶାଳୀ ।

କେବଳ ବିଷୟ ସୁଖ ପ୍ରତି ଆସକ୍ତ ରହିବା ବଡ଼ ଦୁର୍ଭାଗ୍ୟଜନକ । ଭର୍ତ୍ତୃହରିଙ୍କ ଭଳି ଅନେକ ରାଜା ନିଜ ରାଜ୍ୟବୈଭବ ଛାଡ଼ି ଭଗବତପ୍ରାପ୍ତି ଲାଗି ବାହାରିଯିବାରେ ସେମାନେ କୀର୍ତ୍ତିରୂପରେ ଅମର ହୋଇଗଲେ । ସେହିଭଳି-ଭାବେ ଯୋଗେଶ୍ୱରମାନଙ୍କ ମନରେ ସଦ୍‌ବିଚାର ଉତ୍ପନ୍ନ ହେବାରେ ସେମାନେ ବହୁପ୍ରାଣୀଙ୍କ ଅନ୍ତରକୁ ପାବନ କରିଥାଆନ୍ତି । ଯେଉଁ ମହାପୁରୁଷମାନଙ୍କର ଏଭଳି ବୈରାଗ୍ୟବୃତ୍ତି, ଯେଉଁମାନେ ଆତ୍ମଜ୍ଞାନ ସଂପନ୍ନ ସେମାନଙ୍କୁ ଦର୍ଶନ କରିବାମାତ୍ରେ ମନରେ ପରମଶାନ୍ତି ଓ ସମାଧାନ ଲାଭ ହୋଇଥାଏ । ଏଭଳି ସଦ୍‌ପୁରୁଷ ଅନେକ ଲୋକଙ୍କ ଉପକାର କରିଥାଆନ୍ତି । ସେମାନେ କୌଣସି କଲ୍ୟାଣକର କାର୍ଯ୍ୟରେ

ବାଧକ ହୋଇ ନଥାନ୍ତି । ସେମାନଙ୍କ ଚିତ୍ତ ଅବିକଳଭାବେ ଭଗବାନଙ୍କ ସହିତ ସଂଯୁକ୍ତ ରହିଥାଏ । ସେ ସର୍ବଦା ନିଜ ଉପାସ୍ୟ ଦେବତାଙ୍କୁ ଧ୍ୟାନରେ ରଖି ଆତ୍ମସଂଧାନରେ ମଗ୍ନ ରହିଥାଏ ଏବଂ ଅଧ୍ୟାତ୍ମ ସମ୍ପର୍କରେହିଁ ସର୍ବଦା ଶ୍ରବଣ ମନନ କରିଥାଏ । ପୂର୍ବପୁରୁଷମାନଙ୍କ ମହାନ ପୁଣ୍ୟବଳରେ ପ୍ରପଞ୍ଚୀଜୀବ ଏଭଳି ମହାପୁରୁଷଙ୍କ ସତ୍‌ସଙ୍ଗ ଲାଭ କରିପାରେ ।

ଜ୍ଞାନ ସହିତ ଯାହାର ଆତ୍ମାନୁଭବର ପ୍ରତୀତି ନାହିଁ, ତାହା ଜ୍ଞାନ ନୁହଁ, କେବଳ ଅନୁମାନ । ଏଭଳି ଜ୍ଞାନଦ୍ୱାରା ପ୍ରାଣୀମାନଙ୍କର ପରମାର୍ଥ ସିଦ୍ଧି ହୋଇ ପାରେନାହିଁ । ତେଣୁ ପ୍ରତୀତି ଅର୍ଥାତ୍ ଅନୁଭବ ହେଉଚି ମୁଖ୍ୟ । ମୂର୍ଖ ଲୋକେ ନାନା ଦୁଃଶ୍ଚିନ୍ତାବଶତଃ ଘରଗୃହସ୍ଥୀ ଛାଡ଼ିଦେଇ ସାଧୁ ସନ୍ନ୍ୟାସୀ ହୋଇଯାଆନ୍ତି ଏବଂ ଚାରିଆଡ଼େ ପାଗଳଙ୍କଭଳି ବୁଲି ବୁଲି ମରିଯାଇଥାଆନ୍ତି । ଏଭଳି ଲୋକ ଇହଲୋକ ଓ ପରଲୋକ ଦୁଇଟିରୁ ବଞ୍ଚିତ ହୋଇପଡ଼ନ୍ତି । କେହି କେହି କ୍ରୋଧବଶତଃ ଘରସଂସାର ଛାଡ଼ି ଦେଇଥାନ୍ତି । କିନ୍ତୁ କ୍ରୋଧକୁ ଛାଡ଼ି ନପାରିବାରେ ଜୀବନସାରା ୟା ତା ସହିତ ଝଗଡ଼ା କରିଥାଆନ୍ତି । ଏଭଳି ବ୍ୟକ୍ତି ଜୀବନଯାକ କଷ୍ଟ ପାଇ ପାଇ ମରିଥାଏ । ସେ ନିଜେ ତ କଷ୍ଟପାଏ, ଅନ୍ୟକୁ ମଧ୍ୟ କଷ୍ଟ ଦେଇଥାଏ । ଯେଉଁ ଲୋକ ଖାଦ୍ୟପେୟ ଅଭାବରୁ ଜୀବନକୁ ଧିକ୍ କହି ଘରଛାଡ଼େ, ସେ ଅନ୍ୟତ୍ର ଚୋରି ଡକାୟତି କରି ଦଣ୍ଡ ଭୋଗ କରିଥାଏ । କିନ୍ତୁ ଯେଉଁ ବ୍ୟକ୍ତି ଜ୍ଞାନ-ବିବେକ ପୂର୍ବକ ସଂସାରକୁ ମିଥ୍ୟା ମନେକରି ଘରଛାଡ଼ି ସନ୍ନ୍ୟାସୀ ହୁଏ, ସେ ସଦ୍‌ଗୁଣସଂପନ୍ନ ହୋଇଥିବାରୁ ଅନ୍ୟମାନଙ୍କୁ ସଦୁପଦେଶ ଦେଇ ନିଜ ଜୀବନ ଭଳି ଅନ୍ୟମାନଙ୍କ ଜୀବନକୁ ପବିତ୍ର କରିଥାଏ । କେହି କେହି ସତ୍‌ସଙ୍ଗ ଦ୍ୱାରା ପବିତ୍ର ହୋଇ ସଂସାର ସାଗରରୁ ଉଦ୍ଧାର ପାଇଥିବା ବେଳେ, କେହି କେହି ଅସତ୍‌ସଂଗ ଦ୍ୱାରା ଭବସାଗରରେ ନିମଗ୍ନ ହୋଇ ପଡ଼ିଥିବା ଦେଖାଯାଏ । ତେଣୁ ଆମେମାନେ ସତ୍‌ପୁରୁଷଙ୍କୁ ଭଲଭାବରେ ଚିହ୍ନି ତା ସହିତ ସତ୍‌ସଂଗ କରିବା ଉଚିତ । ଅବିବେକୀ ବ୍ୟକ୍ତି ଘର ଘର ବୁଲି ଭିକ୍ଷା ମାଗିଲେ ମଧ୍ୟ ତାକୁ କେହି ଭିକ୍ଷା ଦେଇ ନଥାଆନ୍ତି । କିନ୍ତୁ ଯେଉଁ ବିବେକୀ ବ୍ୟକ୍ତି ଲୋକମଙ୍ଗଳ ଉଦ୍ଦେଶ୍ୟରେ ବିଚରଣ କରିଥାଏ, ସଂସାରରେ ତାର ଅଭାବ ବୋଲି କିଛି ରହେନା ।

ସମୟ ହେଉଚି ସବୁଠୁ ବଳବାନ୍ । ଆଜିକାଲି ତ ବହୁ ନୀଚ ଲୋକ ଗୁରୁ ସାଜିଛନ୍ତି । ତେଣୁ ଆଚାରଧର୍ମ ଲୋପ ହେବାକୁ ବସିଛି । ପ୍ରକୃତ ବ୍ରାହ୍ମଣରହିଁ ବ୍ରହ୍ମଜ୍ଞାନ ଉପଦେଶ ଦେବାର ଅଧିକାର ରହିଛି । ଚାରିବର୍ଣ୍ଣର ଗୁରୁ ହେଉଚି ବ୍ରାହ୍ମଣ । ଏକଥା ମୁଁ କହୁନି, ଶାସ୍ତ୍ର କହୁଚି । କିନ୍ତୁ ଆଜିକାଲି ବ୍ରାହ୍ମଣର ଦଶା କ'ଣ ? ବ୍ରାହ୍ମଣ ବୁଦ୍ଧିଭ୍ରଷ୍ଟ ଓ ଆଚାରଭ୍ରଷ୍ଟ ହୋଇ ପଡ଼ିଛି । ସେ ନିଜର ଗୁରୁପଦ ଛାଡ଼ି ସେ ଯାହାର ଗୁରୁ ହେବା କଥା ସେ ତାର ଶିଷ୍ୟ ହୋଇଚି । ଆଜିକାଲି ନୀଚଶ୍ରେଣୀର ଲୋକ ଗୁରୁ ଶ୍ରେଣୀ ଭୁକ୍ତ ହେବାରେ ନୀଚତାର ଜୟଗାନ ଚାଲିଚି । ଶୁଦ୍ର କହୁଚି ବ୍ରାହ୍ମଣକୁ ତୋର ଅଧୋଗତି ହୋଇଗଲାଣି ବୋଲି ! ଏହାଠୁ ବଳି ଲଜ୍ଜାକର କ'ଣ ଥାଇପାରେ ? ଆଜିକାଲି ବ୍ରାହ୍ମଣର ପରମାର୍ଥର ମହତ୍ତ୍ୱ ନାହିଁ । ଅନ୍ୟ ଜାତିଗୁଡ଼ିକ ଆଜିକାଲି ବ୍ରାହ୍ମଣକୁ ସତ୍ତ୍ୱଶୂନ୍ୟ କରି ଦେଲେଣି । ଯେଉଁ ବିଷ୍ଣୁ ଭଗବାନ ବ୍ରାହ୍ମଣର ଗୋଇଠା ମାଡ଼କୁ ଶ୍ରୀବତ୍ସ ରୂପରେ ସମ୍ମାନିତ କରିଥିଲେ, ସେହି ବିଷ୍ଣୁହିଁ ପରଶୁରାମ ଅବତାରରେ ବ୍ରାହ୍ମଣକୁ ଅଭିଶାପ ଦେଇଥିଲେ । ବ୍ରାହ୍ମଣ ଆଜି ସେହି ଫଳ ଭୋଗ କରୁଛି ।

ତେଣୁ ଆମ ପୂର୍ବପୁରୁଷମାନେ ଯାହାକିଛି ଅନାଚାର, ଭ୍ରଷ୍ଟାଚାର କରି ଯାଇଚନ୍ତି, ସେଥିଲାଗି ଅନୁତାପପୂର୍ବକ ପ୍ରାୟଶ୍ଚିତ କରି ପୁଣି ନିଜର କର୍ତ୍ତବ୍ୟ ପାଳନ ସଙ୍ଗେ ସଙ୍ଗେ ଆମ୍ଭେମାନେ ଲୋକମଙ୍ଗଳ କାର୍ଯ୍ୟରେ ପ୍ରବୃତ୍ତ ହେବା ଉଚିତ । ତାହାହେଲେ ଆମେ ପୂର୍ବବୈଭବ ଲାଭ କରିବା ସମ୍ଭବ ହେବ ।

## ଅଷ୍ଟମ ସମାସ
## ।। ଧ୍ୟାନ-ସାଧନ ।।

ପୂର୍ବ ସମାସରେ ବ୍ରାହ୍ମଣର ଅଧୋଗତି କଥା କୁହାଯାଇଛି । ବ୍ରାହ୍ମଣ ନିଜକୁ ପୁନଃ ପ୍ରତିଷ୍ଠିତ କରିବାକୁ ଚାହିଁଲେ ପୂର୍ବ ପରିସ୍ଥିତିରୁ ଶିକ୍ଷା ଗ୍ରହଣ କରିବା ଉଚିତ । ପୁନଃ ଭାଗ୍ୟୋଦୟ ଲାଗି ବ୍ରାହ୍ମଣ ପବିତ୍ର ମନରେ ଦେବତାଙ୍କ ପୂଜା କରିବା ଆବଶ୍ୟକ । ମୂର୍ଖ, ଅଜ୍ଞାନୀ, ପାଷାଣ୍ଡ, ଅବ୍ୟବସ୍ଥିତଚିତ୍ତ ବ୍ୟକ୍ତିହିଁ ଦାରିଦ୍ର୍ୟ-ଦୁଃଖ ଭୋଗ କରିଥାଏ । ପ୍ରଭୁଙ୍କୁ ହୃଦୟ ମନ୍ଦିରରେ ପ୍ରତିଷ୍ଠିତ କରି ଏକନିଷ୍ଠ ଭାବରେ ଭଜନ ପୂଜନ କରିବା ଉଚିତ । ମନରେ ଦୃଢ଼ ବିଶ୍ୱାସ ହେବା ଆବଶ୍ୟକ

ଯେ ପ୍ରଭୁହିଁ ସବୁଦିଗରୁ ସର୍ବୋତ୍ତମ । ବିବେକ ପୂର୍ବକ ଆତ୍ମା ଓ ଅନାତ୍ମାର ବିଚାର କରିବା ଆବଶ୍ୟକ । ସବୁ ଜାଣି ଶୁଣି ଦେହକୁ ରକ୍ଷା କରିବାବାଲା ଦ୍ରଷ୍ଟା, ଅନ୍ତରସାକ୍ଷୀ ଏବଂ ପଦାର୍ଥମାତ୍ରକେ ପରୀକ୍ଷା କରିବାବାଲାହିଁ ଆତ୍ମା । ସବୁ ଦେହଧାରୀଙ୍କଠାରେ ଆତ୍ମାର ନିବାସ । ଜଗଦାତ୍ମା ସମସ୍ତ ପ୍ରାଣୀଙ୍କ ଅନ୍ତରଙ୍ଗ । ତେଣୁ ସବୁ ଅନ୍ତଃକରଣଙ୍କୁ ପ୍ରଭୁଙ୍କଠାରେ ସମର୍ପଣ କରିବା ହେଉଚି ପରମାତ୍ମାଙ୍କ ପ୍ରକୃତ ପୂଜା । ଏକମାତ୍ର ପରମାତ୍ମାହିଁ ଦାତା ଓ ଭୋକ୍ତା । ସେ ସର୍ବତ୍ର ବିରାଜମାନ । କିନ୍ତୁ ଦେହ ଓ ପ୍ରକୃତି ଭିନ୍ନ ଭିନ୍ନ ହେତୁ ଏହା ଭିନ୍ନ ଭିନ୍ନ ମନେ ହୋଇଥାଏ । ଦେହର ଆକାର ଅଲଗା ଅଲଗା କିନ୍ତୁ ସମସ୍ତଙ୍କ ଅନ୍ତରାତ୍ମା ଏକ ।

ସବୁ ପ୍ରାଣୀ, ପଶୁପକ୍ଷୀ, କୀଟ ପତଙ୍ଗ, ଖେଚର (ଆକାଶରେ ଉଡୁଥିବା ପକ୍ଷୀ), ବନଚର (ଜଙ୍ଗଲରେ ବାସ କରୁଥିବା ଜୀବ), ଭୂଚର (ଭୂଇଁରେ ବିଚରଣ କରୁଥିବା ଜୀବ) ଏବଂ ଜଳଚର (ଜଳରେ ରହୁଥିବା ଜୀବ) ଏହି ଚାରି ଶ୍ରେଣୀର ପ୍ରାଣୀଙ୍କ ଜୀବନ କେବଳ ଅନ୍ତରାତ୍ମାଙ୍କ ସଂଯୋଗରୁହିଁ ଚଳିଥାଏ । ଅନ୍ତରାତ୍ମା ସବୁ ସୃଷ୍ଟିର ଅନ୍ତରରେ ଏକ । ତେଣୁ ଏହାକୁ ବଶ କରିନେଲେ ସବୁ ପ୍ରାଣୀ ନିଜର ବଶ ହୋଇଥାଆନ୍ତି । ସବୁ ପ୍ରାଣୀକୁ ବଶ କରିବାର କୌଶଳ ଆମରି ପାଖରେ ରହିଛି । ଉପାୟ ହେଉଚି ଜଗଦାତ୍ମା ଅର୍ଥାତ୍ ପରମାତ୍ମାକୁ ବଶ କରିବା । ସମସ୍ତଙ୍କୁ ପ୍ରସନ୍ନ ରଖିଲେ ପରମାତ୍ମା ପ୍ରସନ୍ନ ହୋଇ ନିଜର ବଶ ହୋଇ ପଡ଼ିଥାଆନ୍ତି । ଦୁର୍ଜନଙ୍କଠାରେ ମଧ ପରମାତ୍ମା ବିରାଜମାନ । ତେଣୁ ସେମାନଙ୍କ ଦୁଷ୍ଟ ସ୍ୱାଭାବକୁ ଦେଖି ପରମାତ୍ମାଙ୍କୁ ତିରସ୍କାର କରିବା ଅନୁଚିତ । ନାନା ବନସ୍ପତିର ଗୁଣ, ଧର୍ମ ଏବଂ ରସାସ୍ୱାଦ ଭିନ୍ନ ଭିନ୍ନ ହେଲେ ମଧ ସବୁଥିରେ ଜୀବନତତ୍ତ୍ୱ (ଜଳ) ଏକ । ସେହିଭଳି ସାକ୍ଷୀଭାବରେ ସୁଜନ ଓ ଦୁର୍ଜନଙ୍କଠାରେ ଏକ ଆତ୍ମାର ନିବାସ । ନିଜର ଅନ୍ତରାତ୍ମା ଦ୍ୱାରାହିଁ ଜଗତର ଅନ୍ତରାତ୍ମାଙ୍କ ଅନୁସଂଧାନ କରିବା ଉଚିତ । ଏହି ଅନ୍ତରାତ୍ମାଙ୍କ ବଳରେ ମନୁଷ୍ୟଠାରେ ବିବେକ ଉଦ୍ରେକ ହୋଇଥାଏ । ଜାଗୃତି ଓ ସ୍ୱପ୍ନର ସମଗ୍ର ବ୍ୟାପାର ଅନ୍ତରାତ୍ମା ଦ୍ୱାରା ସଂପନ୍ନ ହୋଇଥାଏ । ଏହି ସର୍ବାନ୍ତର୍ଯ୍ୟାମୀ ପରମାତ୍ମାଙ୍କ ଅଖଣ୍ଡ ସ୍ମରଣ ଓ ଧାନ କରାଯିବା ଉଚିତ । ପରମାତ୍ମାଙ୍କ ଅନୁସଂଧାନ ଲାଗି ଧାନ କରିବା ସହଜ । ଏଥିଲାଗି କୌଣସି ଉଦ୍ୟମ କରିବାକୁ ପଡ଼ିନଥାଏ । ''ମୁଁ ଧାନ ଲାଗି ଉଦ୍ୟମ କରୁଛି''— ଏହି ଚିନ୍ତାହିଁ ଧାନ ନ କରିବା ସହିତ ସମାନ । ପ୍ରଯତ୍ନପୂର୍ବକ ଧାନ କରିବା ଅର୍ଥ ହେଉଚି ଆତ୍ମାକ ଛାଡ଼ି ଅନାତ୍ମାର ଧାନ କରିବା । ସହଜ ଧାନହିଁ ଅନ୍ତର୍ନିଷ୍ଠ ଧାନ ।

ଅଜ୍ଞାନୀ ଲୋକେ ସ୍ଥୂଳବସ୍ତୁ ବା ଶରୀରକୁ ଧ୍ୟାନ କରି ବୃଥା ହଇରାଣ ହୋଇଥାଆନ୍ତି । ଭଗବାନଙ୍କୁ ଦେହଧାରୀ ବୋଲି ମାନିନେବା ଦ୍ୱାରା ମନ ନାନା ବିଚାରଗ୍ରସ୍ତ ହୋଇ ପଡ଼ିଥାଏ । ଦେହକୁ କଳ୍ପନା କରିବା ମାତ୍ରେହିଁ ଭୋଗ, ତ୍ୟାଗ ଓ ବିପତ୍ତି ଆଦି ନାନା ବିକଳ୍ପ ଚିନ୍ତା ମନକୁ ଗ୍ରାସ କରିଥାଏ ଏବଂ ସ୍ୱପ୍ନରେ ନାନା ବିଚିତ୍ର କଥା ସବୁ ଦେଖାଯାଇଥାଏ ।

ଧ୍ୟାନରେ ଧ୍ୟାତା ଓ ଧ୍ୟେୟ ଅନନ୍ୟ ହେବା ଉଚିତ । ବସ୍ତୁତଃ ଧ୍ୟାତା ଓ ଧ୍ୟେୟ ଅନନ୍ୟ । କିନ୍ତୁ ସାଧକ ଏହାର ଅନୁସଂଧାନ କରି ନପାରି ନାନା ଭ୍ରମରେ ପଡ଼ିଥାଏ । ଜ୍ଞାନୀ ପୁରୁଷ ଏହାର ଏକତାକୁ ଅନୁଭବ କରି ପାରୁଥିବାରୁ ତା ମନରେ କୌଣସି ସନ୍ଦେହ ରହେନାହିଁ । ମନର ସମସ୍ତ ସମସ୍ୟାର ସମାଧାନ ହୋଇଥାଏ । ସାର ଅସାର ବିବେକ ବିନା ମନୁଷ୍ୟ ମୂଢ଼ ହୋଇପଡ଼ିଥାଏ । ପ୍ରତ୍ୟୟ ଅର୍ଥାତ୍ ଅନୁଭବ ନ ଥାଇ କେବଳ ଅହଂକାର ପୂର୍ବକ ଉପଦେଶ ଦେବା ବୃଥା । ସମସ୍ତ ଅଭିମାନ ତ୍ୟାଗ କରି ବିବେକ ପୂର୍ବକ ପରମାତ୍ମାଙ୍କ ପରିଚୟ ଲାଭ କରିବା ଉଚିତ । ଏହି ପ୍ରକୃତ ଅଖଣ୍ଡ ଧ୍ୟାନହିଁ ସହଜ ସାମଧି ।

## ନବମ ସମାସ
## ।। ନିତ୍ୟାନିତ୍ୟ ଲକ୍ଷଣ ।।

ବକ୍ତା କହୁଛନ୍ତି– ଦେହର କାରବାରକୁ ତ ଆପଣମାନେ ଜାଣିଲେ । ତା ସଙ୍ଗେ ସଙ୍ଗେ ଆତ୍ମା-ଅନାତ୍ମା ସମ୍ପର୍କରେ ସବୁବିଷୟ ଆପଣମାନେ ଜାଣିଲେ । ଏଥିରୁ ବୁଝିଲେ ଯେ ପିଣ୍ଡ (ଦେହ) ଅନାତ୍ମା ଏବଂ ଆତ୍ମାହିଁ ଏହାର କର୍ତ୍ତା । ଆତ୍ମାପ୍ରତି ଅନନ୍ୟଭାବ ରଖିବାକୁ ଆପଣମାନଙ୍କୁ କୁହାଗଲା । ବିବେକଦ୍ୱାରା ଏହି ବିଶ୍ୱାସ ଦୃଢ଼ୀଭୂତ ହୁଏ ବୋଲି ମଧ୍ୟ ଜାଣିଲେ । ଏବେ ପିଣ୍ଡରୁ ବ୍ରହ୍ମାଣ୍ଡର ଉତ୍ପତ୍ତି କିପରି ହେଲା ସେହି କଥା କହୁଛି ଶୁଣ ।

ପିଣ୍ଡ ହେଉଛି କାର୍ଯ୍ୟ ଏବଂ ବ୍ରହ୍ମାଣ୍ଡ ଏହାର କାରଣ । ଏହି ଦୁହିଁଙ୍କର ସମନ୍ୱୟ କିପରି କରାଯିବା ଉଚିତ ସେହି କଥା କହିବି । ଯାହା ନଷ୍ଟ ହୋଇଥାଏ ତାହା ଅସାର ଏବଂ ଯାହା ସଦା ରହିଥାଏ ତାହା ସାର ବା ଶାଶ୍ୱତ । କଳ୍ପାନ୍ତରେ (ପ୍ରଳୟକାଳରେ) ଯାହାର ବିନାଶ ହୋଇଥାଏ ତାହା ଶାଶ୍ୱତ ହୋଇନପାରେ ।

ପୃଥ୍ୱୀ ଜଳରୁ ଉତ୍ପନ୍ନ ହୋଇଥାଏ ଏବଂ ପୁଣି ଜଳରେ ବିଲୀନ ହୋଇଯାଏ । ଜଳ ତେଜରୁ ଉତ୍ପନ୍ନ ହୁଏ ଏବଂ ଶେଷରେ ତେଜହିଁ ଜଳକୁ ଶୁଖେଇ ତାକୁ ନଷ୍ଟ କରିଦିଏ । ତେଜର ଉତ୍ପତ୍ତି ବାୟୁତତ୍ତ୍ୱରୁ ହୋଇଥାଏ ଏବଂ ବାୟୁରେହିଁ ତେଜର ଅନ୍ତ ହୋଇଥାଏ ।

ବାୟୁ ଆକାଶରୁ ଉତ୍ପନ୍ନ ହୋଇଥାଏ ଏବଂ ଶେଷରେ ଇଏ ମଧ୍ୟ ଆକାଶରେ ବିଲୀନ ହୋଇଯାଏ । ବେଦଶାସ୍ତ୍ରରେ ଏହିଭଳି ହିଁ କଳ୍ପାନ୍ତର ବର୍ଣ୍ଣନା କରାଯାଇଛି । ଗୁଣମାୟା ଏବଂ ମୂଳମାୟା ମଧ୍ୟ ପରବ୍ରହ୍ମରେ ଲୀନ ହୋଇ-ଥାଆନ୍ତି ।

ଯେଉଁ ନିର୍ଗୁଣ ପରବ୍ରହ୍ମରେ ସବୁ ଉପାଧିର ଲୟ ହୋଇଯାଇଥାଏ ଏବଂ ଯେଉଁଥିରେ ଦ୍ରଷ୍ଟାସ ଦୃଶ୍ୟର କୌଣସି ବିବାଦ ରହେନାହିଁ ଏହା ସବୁଥିରେ ସର୍ବତ୍ର ବ୍ୟାପ୍ତ । ଯେତେ କଳ୍ପାନ୍ତ ଘଟୁ ନା କାହିଁକି ନିର୍ଗୁଣ ପରବ୍ରହ୍ମର ବିନାଶ ଘଟେ ନାହିଁ । ତେଣୁ ମାୟାକୁ ତ୍ୟାଗ କରି ଏହି ପରବ୍ରହ୍ମ ଶାଶ୍ୱତ ତତ୍ତ୍ୱକୁ ଚିହ୍ନିବା ଉଚିତ । ଦେହରେ ସ୍ଥିତ ଅନ୍ତରାତ୍ମା ସଗୁଣ ଏବଂ ଏହି ସଗୁଣରେ ନିର୍ଗୁଣ ମଧ୍ୟ ମିଶି ରହିଥାଏ । ଏହି ନିର୍ଗୁଣ ପରମାତ୍ମାର ଜ୍ଞାନରୁହିଁ ବିଜ୍ଞାନ ଅର୍ଥାତ୍ ଅନୁଭବ-ଜ୍ଞାନଲାଭ ହୋଇଥାଏ । ନିର୍ମଳ ପରମାତ୍ମା କଳ୍ପନାର ଉର୍ଦ୍ଧ୍ୱରେ । ଏଥିରେ ମାୟାର ସତ୍ତା ସୁଦ୍ଧା ନଥାଏ । ସମଗ୍ର ଦୃଶ୍ୟଜଗତ ମାୟାରୁହିଁ ହୋଇଥାଏ ଏବଂ ଏହା ମିଥ୍ୟା । ଏହି ମାୟାଗ୍ରସ୍ତ ସୃଷ୍ଟିରେ ଯାହାକିଛି ଦେଖାଯାଇଥାଏ ଏବଂ ଯାହାକିଛି ଉତ୍ପନ୍ନ ହୋଇଥାଏ, ସେ ସବୁ ପରିଶେଷର ନଷ୍ଟ ହୋଇଯାଇଥାଏ । ତେଣୁ ଯାହାର ବିନାଶ ନାହିଁ, ସେହି ଶାଶ୍ୱତ ପରବ୍ରହ୍ମ ପରମାତ୍ମାକୁ ଚିହ୍ନିବାହିଁ ମନୁଷ୍ୟର ଜନ୍ମର ସାର୍ଥକତା ।

ଜ୍ଞାନ, ଅଜ୍ଞାନ ଓ ବିପରୀତ ଜ୍ଞାନ—ଏହି ତିନିକୁ ଅତିକ୍ରମ କରି ବିଜ୍ଞାନରେ ପ୍ରବେଶ କରିବା ଉଚିତ । ବେଦାନ୍ତ, ସିଦ୍ଧାନ୍ତ ଓ ଅନୁଭବ ଦ୍ୱାରା ଏହା ଅନୁଭବ ହେବା ଉଚିତ ଯେ ନିର୍ବିକାର ପରବ୍ରହ୍ମ ସର୍ବତ୍ର ବ୍ୟାପ୍ତ ଓ ପ୍ରକାଶିତ । ଏହି ପରବ୍ରହ୍ମଙ୍କୁ ଜ୍ଞାନଦୃଷ୍ଟିରେ ଅବଲୋକନ କରି ଏଥିରେ ଅନନ୍ୟଭାବରେ ଲୀନ ହୋଇ ପଡ଼ିବା ଉଚିତ । ଏହାର ନାମ ଆତ୍ମନିବେଦନ ।

ଦୃଶ୍ୟ ଆଖିରେ ଦେଖାଯାଇଥାଏ ଏବଂ ମନରେ ତାର ଆଭାସ ହୋଇଥାଏ । କିନ୍ତୁ ଅବିନାଶୀ ପରବ୍ରହ୍ମ ଦୃଶ୍ୟ ଓ ଆଭାସର ଊର୍ଦ୍ଧ୍ୱରେ । ଯଦିଓ ଏହା ଅତି ଦୂରରେଥିବା ମନେ ହୋଇଥାଏ, କିନ୍ତୁ ଏହା ସମସ୍ତଙ୍କ ଭିତରେ ଓ ବାହାରେ । ଏହା ଅନନ୍ତ । ଚଞ୍ଚଳ (ମାୟା) କେବେହେଲେ ସ୍ଥିର ହୋଇନଥାଏ ଏବଂ ନିଶ୍ଚଳ ପରବ୍ରହ୍ମ କେବେହେଲେ ଚଳାୟମାନ ନୁହଁ । ଚଞ୍ଚଳ ବାଦଲ ଆସେ ଯାଏ କିନ୍ତୁ ନିଶ୍ଚଳ ଆକାଶ ଯାହା ତାହା ।

ଯାହାର ଅନ୍ତରରେ ଭ୍ରମ ରହିଥାଏ ଏବଂ ଯିଏ ମାୟାଜାଲରେ ପଡ଼ିଥାଏ, ସେ ଏହି ବିଶାଳ ସଂସାର ଚକ୍ର ରହସ୍ୟ ବୁଝିବ କିପରି ? ତାର କୌଣସି ବ୍ୟବହାର ଓ ସିଦ୍ଧାନ୍ତର ଜ୍ଞାନ ନଥାଏ, କିମ୍ଵା ଅନ୍ତଃକରଣରେ ବାସ କରୁଥିବା ଅନ୍ତରାତ୍ମାକୁ ସେ ଚିହ୍ନିପାରିନଥାଏ ।

ଯଦି ବୈଦ୍ୟ ଉପରେ ରୋଗୀର ବିଶ୍ୱାସ ନହୁଏ ଏବଂ ସେ କହିଥିବା ଉପଚାରକୁ ପାଳନ ନ କରେ ତାହାହେଲେ ରୋଗୀର ଶେଷ ସମୟ ଆସିଗଲା ବୋଲି ଧରିନେବାକୁ ପଡ଼ିବ । ଯେଉଁ ବ୍ୟକ୍ତି ପ୍ରକୃତ ରାଜାକୁ ଚିହ୍ନିଥାଏ, ସେ ଅନ୍ୟ କୌଣସି ବ୍ୟକ୍ତିକୁ ରାଜା ବୋଲି ମାନେ ନାହିଁ । ସେହିଭଳି ଯିଏ ପରମାତ୍ମାକୁ ଚିହ୍ନିଥାଏ, ସେ ସମସ୍ତଙ୍କ ସଂଗତ୍ୟାଗ କରି ପରମାତ୍ମା ସ୍ୱରୂପ ହୋଇ ପଡ଼ିଥାଏ ।

ବିବେକପୂର୍ବକ ବିଚାର କଲେ ସବୁ ବିଷୟ ଜଣାପଡ଼େ । ଯିଏ ମାୟା ବିଜଡ଼ିତ, ତାର କେବଳ ସଂଦେହ, ସଂକୋଚ, ଭୟ ଆଦି ରହିଥାଏ । କିନ୍ତୁ ମାୟାତୀତ ଯିଏ ପରମାତ୍ମାକୁ ଜାଣେ, ତାଠାରେ ଭୟର ସ୍ଥାନ କାହିଁ ? ମିଥ୍ୟାବସ୍ତୁ ଏବଂ ପ୍ରାଣୀକୁ ଭୟ କରିବା ଏବଂ ଭ୍ରମ ଯୋଗୁଁ ବିପରୀତ ବ୍ୟବହାର କରିବା ବିବେକୀର ଲକ୍ଷଣ ନୁହଁ । ତେଣୁ ସବୁ ମିଥ୍ୟାବସ୍ତୁ ଓ ଅନିଷ୍ଟ ବସ୍ତୁକୁ ତ୍ୟାଗ କରି ସତ୍ୟବସ୍ତୁର ଅନୁସଂଧାନ କରିବା ଉଚିତ ।

ମାୟାକୁ ତ୍ୟାଗ କଲେଯାଇ ପରବ୍ରହ୍ମ ପରମାତ୍ମାଙ୍କୁ ଜାଣି ପାରିବ । ଆଗାମୀ ସମାସରେ ମାୟାର ଲକ୍ଷଣ ବିସ୍ତୃତ ଭାବରେ ବର୍ଣ୍ଣନା କରାଯିବ । ଶ୍ରୋତାମାନେ ସେ ସମ୍ପର୍କରେ ସାବଧାନ ହୋଇ ଶୁଣିବା ଉଚିତ ।

## ଦଶମ ସମାସ
## ।। ମାୟାର ଲକ୍ଷଣ ।।

ମାୟାକୁ ଯଦିଓ ଦେଖିହୁଏ କିନ୍ତୁ ଏହା ନଶ୍ୱର ଏବଂ ପରବ୍ରହ୍ମ ଅଦୃଶ୍ୟ ହେଲେ ମଧ୍ୟ ଶାଶ୍ୱତ, ଅବିନାଶୀ । ମାୟା ସତ୍ୟଭଳି ମନେହୁଏ କିନ୍ତୁ ଏହା ମିଥ୍ୟା । ଯେପରି କୌଣସି ଭିକାରୀ ମନେ ମନେ ବହୁମହଲା କୋଠାଘରର କଳ୍ପନା କରିଥାଏ, ଅଥଚ କୁଡ଼ିଆ ଘରେ ରହିଥାଏ, ସେହିଭଳି ମାୟା ହେଉଚି କଳ୍ପନାର ସୌଧ । ସ୍ୱପ୍ନରେ ସୁନ୍ଦରୀ ସ୍ତ୍ରୀ ଓ ଅମାପ ଧନ ମିଳିଥାଏ ଏବଂ ଅନେକ ପ୍ରକାରର ଭୋଗବିଳାସର ଉପଭୋଗ ହୋଇଥାଏ କିନ୍ତୁ ନିଦଭାଙ୍ଗିବା ପରେ ଏସବୁ କାଳ୍ପନିକ ତଥା ମିଥ୍ୟା ବୋଲି ଜଣାପଡ଼େ । ସେହିଭଳି ସ୍ୱରୂପର ଜାଗରଣ ହେବାମାତ୍ରେ ସମଗ୍ର ଦୃଶ୍ୟଜଗତ ମିଥ୍ୟା ଜଣାପଡ଼େ । ବହୁରୂପୀଙ୍କ ବିଭବ ପ୍ରକୃତ ମନେହେଲେ ମଧ୍ୟ ବସ୍ତୁତଃ ମିଥ୍ୟା । ଠିକ୍ ଏହିକଥା ମାୟା ସମ୍ପର୍କରେ କୁହାଯାଇପାରେ । ଯେପରି ବହୁରୂପୀ ଶ୍ରୀରାମ ସାଜି ଘର ଘର ବୁଲେ ଏବଂ ସମସ୍ତଙ୍କ ଆଗରେ ହାତ ବଢ଼େଇ ଭିକ ମାଗେ, ସେହିଭଳି ମାୟା ମନୁଷ୍ୟକୁ ନାନାଭାବରେ ଭୁଲେଇଥାଏ ।

ଯେଉଁଠି ଛାୟା ଓ ଅନ୍ଧକାର ଦୁଇଟିଯାକ ରହିଥାଏ, ସେଠି ସେ ଦୁହିଁଙ୍କର ସ୍ୱତନ୍ତ୍ରରୂପ ସମ୍ପର୍କରେ ବିଚାର କରିବା ବୃଥା । ସେହିଭଳି ମାୟା ସମ୍ପର୍କରେ ବିଚାର ନିରର୍ଥକ । କେବେ କେବେ ସୂର୍ଯ୍ୟ କିରଣର ପ୍ରକାଶରେ କାନ, ଆଙ୍ଗୁଠି, ହାତ ଗୋଡ଼ ଆଦି ବିଭିନ୍ନ ଅବୟବ ବଡ଼ ସୁନ୍ଦର ଏବଂ ଚମତ୍କାର ଦେଖାଯାଏ । ମାୟା ସମ୍ପର୍କରେ ମଧ୍ୟ ତାହା କୁହାଯାଇ ପାରେ । କେବେ କେବେ ଗେରୁଆରଙ୍ଗର ବସ୍ତ୍ରକୁ ଦେଖି ଅଗ୍ନି ବୋଲି ମନେ ହୋଇଥାଏ, କିନ୍ତୁ ବିଚାର କଲେ ଏହାର ଯଥାର୍ଥତା ଜଣାପଡ଼େ । ସେହିଭଳି ମାୟା । ମଣିଷର ମୁଣ୍ଡ ବୁଲେଇ ହେଲେ ମନେହୁଏ ପୃଥିବୀଟା ଘୂରୁଚି । କାମଳରୋଗୀକୁ ସବୁ ଜିନିଷ ହଳଦିଆ ଦେଖାଯାଇଥାଏ, ଏବଂ ସନ୍ନିପାତ ରୋଗୀର ମନେ ହୁଏ ପୃଥିବୀଟା ଭାଙ୍ଗିପଡୁଛି । ମାୟାର ମଧ୍ୟ ଏହି ଅବସ୍ଥା । ମନର ବିକାର ଅନୁଯାୟୀ ଜିନିଷରେ ନାନା ବିକୃତି ଦେଖାଯାଇ-ଥାଏ । ବାସ୍ତବରେ ଯେଉଁ ଜିନିଷ ସେହି ଜିନିଷ । ସେହିଭଳି ମାୟା । ଏଥିରୁ ନାନା ବିକାର ସୃଷ୍ଟି ହୋଇଥାଏ ।



# ପଞ୍ଚଦଶ ଦଶକ

## ପ୍ରଥମ ସମାସ
## ।। ଚାତୁର୍ଯ୍ୟ ଲକ୍ଷଣ ।। (୧)

ବକ୍ତା କହୁଛନ୍ତି— ଅସ୍ଥିମାଂସଯୁକ୍ତ ଶରୀର ଜୀବର ନିବାସ ଏବଂ ଏହା ବହୁ ମନୋବିକାରଗ୍ରସ୍ତ । ଶରୀରରେ ଗାଢ଼, ପତଳା, ସ୍ଥୂଳ ଓ ସୂକ୍ଷ୍ମପଦାର୍ଥର ଜ୍ଞାନ ରହିଥାଏ । ଉଚିତ କ'ଣ, ଅନୁଚିତ କ'ଣ ଶରୀର ଜାଣେ । କାହାକୁ ଭିକ ମାଗିବାରେ କୌଣସି ଜିନିଷ ମିଳିଥାଏ, ଆଉ କାହାକୁ କାହାକୁ ନ ମାଗିଲେ ମଧ୍ୟ ଲୋକେ ତା ମନକୁ ଆଣି ଦେଇ ଯାଇଥାଆନ୍ତି । ଅନ୍ୟ ସହିତ ମନ ମିଳେଇ ଆତ୍ମୀୟତା ପୂର୍ବକ ତାର ମନୋଭାବକୁ ବୁଝିବା ଉଚିତ । ଆପଣା ପର ଭାବଦ୍ୱାରା ସନ୍ଦେହ ବଢ଼ିଥାଏ ଏବଂ ଭବିଷ୍ୟତରେ କାର୍ଯ୍ୟରେ ଅହିତ ହୋଇଥାଏ । ବିବେକବାନ ପୁରୁଷ ଏପରି ସନ୍ଦେହ ହେବାକୁ ଦିଏନାହିଁ ଏବଂ ସମସ୍ତଙ୍କୁ ନିଜର ଆତ୍ମୀୟ ମନେକରି ସମସ୍ତଙ୍କ ସହିତ ଆତ୍ମୀୟତାପୂର୍ବକ ବ୍ୟବହାର କରିବାରେ ସମସ୍ତେ ତାର ବଶ ହୋଇଥାଆନ୍ତି ।

ଶ୍ରେଷ୍ଠ କର୍ମଦ୍ୱାରା ମନୁଷ୍ୟ ଶ୍ରେଷ୍ଠ ପଦ ଲାଭ କରିଥାଏ ଏବଂ ନୀଚକାର୍ଯ୍ୟ କରିବାଦ୍ୱାରା ନୀଚ ହୋଇଯାଇଥାଏ । ରାଜା ସର୍ବଦା ରାଜମାର୍ଗରେ ବିଚରଣ କରିଥାଏ କିନ୍ତୁ ଚୋର ଲୁଚି ଲୁଚି ଖସି ପଳାଇବାପାଇଁ ଚେଷ୍ଟା କରିଥାଏ । ନିଜର କ୍ଷୁଦ୍ର ସ୍ୱାର୍ଥଲାଗି ମୂର୍ଖ ଲୋକ ନୀଚକାର୍ଯ୍ୟରେ ପ୍ରବୃତ୍ତ ହୋଇ ନିଜର ଲୋକସାନ କରିଥାଏ । ସେ ନିଜକୁ ବୁଦ୍ଧିମାନ ମନେ କରେ କିନ୍ତୁ ଶେଷରେ ଧୋକ୍କାଖାଇ ହୀନଦଶା ଭୋଗ କରିଥାଏ ।

ଯିଏ ଜନତା ଜନାର୍ଦ୍ଦନ ଅନ୍ତଃକରଣ ସହିତ ଏକରୂପ ହୋଇ ଜନତା ସହିତ ମିଶିଯାଏ, ତାର ଅଭାବ ବୋଲି କିଛି ରହେ ନାହିଁ । ବୁଦ୍ଧିଦ୍ୱାରା ହିଁ ମନୁଷ୍ୟ ଜାଗ୍ରତ ରହି ସଂସାରର ସମସ୍ତ କାର୍ଯ୍ୟ ସମସ୍ତଙ୍କ ସହଯୋଗରେ ସ୍ୱାଭିମାନପୂର୍ବକ ସଫଳତାର ସହିତ ସମ୍ପନ୍ନ କରିଥାଏ ।

ବୁଦ୍ଧିମାନ୍ ତଥା ବିବେକୀ ପୁରୁଷ ନିଜର ଆଚରଣ ଦ୍ୱାରା ଅନ୍ୟର ବୁଦ୍ଧିକୁ ପ୍ରକାଶିତ କରିବା ଉଚିତ । ନୀତି ନ୍ୟାୟର ପ୍ରସାର କରିବା ସଙ୍ଗେ ସଙ୍ଗେ ପାଷାଣ୍ଡ ପାପିଷ୍ଠ ବୁଦ୍ଧି ଯେପରି ସମାଜରେ ନ ବ୍ୟାପେ, ସେଥିଲାଗି ଉଦ୍ୟମ କରିବା ଆବଶ୍ୟକ । ସରଳ ବ୍ୟବହାର ଓ ଉଦାର ବିଚାର ଆମମାନଙ୍କ ନୀତି ହେବା ଆବଶ୍ୟକ । ଆମେମାନେ ନିଷ୍ପୃହ ଅର୍ଥାତ୍ ନିରପେକ୍ଷ ରହିବା ସଙ୍ଗେ ସଙ୍ଗେ ସମସ୍ତଙ୍କ ବିଶ୍ୱାସଭାଜନ ହେବା ଉଚିତ । ନିଷ୍ପୃହବ୍ୟକ୍ତି କୌଣସି ଗୋଟିଏ ସ୍ଥାନରେ ନିଜକୁ ଆବଦ୍ଧ ନରଖି ବିଭିନ୍ନ ସ୍ଥାନକୁ ଯିବା ଉଚିତ । ଗୋଟିଏ ସ୍ଥାନରେ ବସି ରହିବାରେ ତାର ଲୋକମଙ୍ଗଳର ବ୍ୟାପକ ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇ ପାରିବ ନାହିଁ । ତେଣୁ ସେ ସର୍ବଦା ଭ୍ରମଣକରି ଜନସମ୍ପର୍କ ଦ୍ୱାରା ସଦ୍‌ବିଚାରର ପ୍ରଚାର କରିବା ଆବଶ୍ୟକ ।

## ଦ୍ୱିତୀୟ ସମାସ
## ।। ନିଷ୍ପୃହ ନ୍ୟାୟ ନିରୂପଣ ।।

ସଂସାରରେ ଅନେକ ପ୍ରକାରର ଛୋଟ ବଡ଼ ମନୁଷ୍ୟ ଅଛନ୍ତି । ଏମାନଙ୍କ ମନୋଭାବ ପ୍ରତି ମୁହୂର୍ତ୍ତରେ ବଦଳିବାରେ ଲାଗିଛି । ଯେତେ ମନୁଷ୍ୟ ସେତେ ପ୍ରକୃତି । ସମସ୍ତଙ୍କର ଅଲଗା ଅଲଗା ପ୍ରକୃତି ତଥା ସ୍ୱଭାବ ।

ପ୍ରକୃତି ଏବଂ ସ୍ୱଭାବର ପାର୍ଥକ୍ୟ ହେତୁ ଅନେକ ଲୋକ ଧର୍ମ ତ୍ୟାଗକରି ମୁସଲମାନ ଏବଂ କେତେକ ଲୋକ ଫିରିଙ୍ଗି (ଖ୍ରୀଷ୍ଟାନ) ହୋଇଛନ୍ତି । ଏହିଭଳି ଭାବେ ମହାରାଷ୍ଟ୍ରର ମୂଳମରାଠୀ ଲୋକ ବହୁତ କମ ବଞ୍ଚିଛନ୍ତି । ଯେଉଁମାନେ ବଞ୍ଚିଛନ୍ତି ସେମାନଙ୍କ ମଧ୍ୟରୁ ବହୁତ ଲୋକ ରାଜନୀତିରେ ପଶିଛନ୍ତି । ଏମାନେ ନିଜ ନିଜ କାର୍ଯ୍ୟରେ ଏଭଳି ବ୍ୟସ୍ତ ଯେ ଖାଇବାକୁ ମଧ୍ୟ ଫୁରସତ ମିଳୁନି । କେତେକ ଲୋକ ବୃଥା ଲଢ଼େଇ କରି ଉନ୍ମତ୍ତ ଅବସ୍ଥାରେ ରହୁଛନ୍ତି । ଏମାନେ ଦିନରାତି କେବଳ ଲଢ଼େଇ ତଥା ଝଗଡ଼ା ସମ୍ପର୍କରେ ଚର୍ଚ୍ଚା କରିବାରେ ଲାଗିଛନ୍ତି । ବ୍ୟବସାୟୀ ଲୋକେ ବ୍ୟବସାୟ-ଧନ୍ଦାରେ ଏପରି ଜଡ଼ିତ ଯେ ଏମାନଙ୍କୁ ଅନ୍ୟ କାମ ପ୍ରତି ଧ୍ୟାନ ଦେବାପାଇଁ ସମୟ ମିଳୁନି ।

ଦେଶରେ ବିଭିନ୍ନ ପ୍ରକାରର ମତ ମତାନ୍ତର । ଦର୍ଶନ ଓ ଧର୍ମ ନାମରେ ବେଦବିରୁଦ୍ଧ ପ୍ରଚାର ଜୋରସୋରରେ ଚାଲିଚି । ସର୍ବତ୍ର ପାପୀମାନଙ୍କ ଜୟ ଜୟକାର । ଇଏ ଶୈବ, ସିଏ ବୈଷ୍ଣବ—ଏଭଳି ଭାବରେ ନିଜ ନିଜ ଭିତରେ ଭାଗ ବଣ୍ଟା ମଧ୍ୟ ଚାଲିଚି । ଏହିଭଳି ଭାବେ ସମାଜରେ ଉପଦ୍ରବ ଓ କଳଙ୍କ ବ୍ୟାପି ଗଲାଣି । ଅନେକ ଲୋକ କାମନା ବଶୀଭୂତ ହୋଇ ଆସକ୍ତ ଜୀବନ ଯାପନ କରୁଛନ୍ତି । ନ୍ୟାୟ, ଅନ୍ୟାୟ, ଉଚିତ, ଅନୁଚିତ ପ୍ରତି କାହାର ଧ୍ୟାନ ନାହିଁ । ବୈଦିକ ଲୋକେ ନିଜ ହରିଭଜନରେ ମସ୍ତ । ଏମାନେ ମଧ୍ୟ ପ୍ରତ୍ୟୟାତ୍ମକ ଅନୁଭବ ଲାଗି ବ୍ରହ୍ମଜ୍ଞାନଠାରୁ ବହୁ ଦୂରରେ ।

ଏହି ପରିସ୍ଥିତିରେ ଜ୍ଞାନ ଏକାବେଳକେ ଦୁର୍ଲ୍ଲଭ । ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଏହି ଅଲଭ୍ୟ ଲାଭ ମିଳିଥାଏ । ବିଚାରଶୀଳ ବ୍ୟକ୍ତିଙ୍କ ପକ୍ଷରେ ଏହି କାର୍ଯ୍ୟ ସୁଲଭ ହୋଇଥାଏ । ବିବେକବାନ୍ ଚତୁର ପୁରୁଷ ସବୁ ପ୍ରକାର ବାଧାବିଘ୍ନକୁ ଅତିକ୍ରମ କରି ନିଜ କାର୍ଯ୍ୟରେ ସଫଳ ହୋଇଥାଏ । ଏଭଳି ଚତୁର ପୁରୁଷକୁ ସମସ୍ତେ ସମ୍ମାନ କରିଥାଆନ୍ତି । ସେ ସୁଉପଦେଶ ଦ୍ୱାରା ଲୋକଙ୍କୁ ସତ୍‌ମାର୍ଗରେ ଯିବାପାଇଁ ପ୍ରେରଣା ଦେଇଥାଏ । ସେ ନିଜର ଅନୁଭବ-ଜ୍ଞାନଦ୍ୱାରା ସମସ୍ତ ମତ ମତାନ୍ତରର ଗ୍ଲାନିକୁ ଦୂର କରି ଲୋକଙ୍କୁ ନିଜର କରି ନେଇଥାଏ । ସେ ସମୟାନୁସାରେ ଲୋକଙ୍କୁ ନୀତିଶିକ୍ଷା ଦେଇ ନିଜର ନିସ୍ପୃହ ଏବଂ ଉଦାସୀନ ସ୍ୱଭାବ ଯୋଗୁଁ ଶୀଘ୍ର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଚାଲିଯାଏ । ତାର ଅନୁଭବ-ସିଦ୍ଧ କଥାରେ ପ୍ରଭାବିତ ହୋଇ ଲୋକେ ପୁଣି ଉତ୍କଣ୍ଠାର ସହିତ ତାର ବାଟ ଚାହିଁ ବସିଥାଆନ୍ତି ଏବଂ ଅନ୍ୟ ସବୁ ମାର୍ଗ ତ୍ୟାଗ କରି ଏହାର ଶରଣ ନିଅନ୍ତି । କିନ୍ତୁ ସେ ଆଉ ଫେରେ ନାହିଁ । ସେ ଭିକ୍ଷୁକ ବେଶରେ ରହିଲେ ମଧ୍ୟ ଗୁପ୍ତ ଭାବରେ ବହୁ ପରୋପକାର କାର୍ଯ୍ୟ କରିଥାଏ । ଏଭଳି ନିରପେକ୍ଷ ପୁରୁଷର ବେଶଭୂଷା ଦୀନହୀନ ଲୋକଙ୍କ ବେଶଭୂଷା ଭଳି ହୋଇଥାଏ ।

ସେ ନ ଚାହିଁଲେ ମଧ୍ୟ ତାର ଯଶ ଖ୍ୟାତି ଚାରିଆଡ଼େ ଖେଳି ଯାଇଥାଏ । ଏହା ମନରେ କେବଳ ଲୋକକଲ୍ୟାଣ ଚିନ୍ତା ଥାଏ । ଏକାନ୍ତ ଗୁମ୍ଫାରେ ବସି ରହିଥିଲେ ମଧ୍ୟ ସେ ରାଜନୀତିକୁ ପ୍ରଭାବିତ କରିଥାଏ । ଏଭଳି ପୁରୁଷର ଅସଂଖ୍ୟ ଶିଷ୍ୟ ବିଭିନ୍ନ ସ୍ଥାନରେ ସଂଗଠିତ ଭାବରେ ପରମାର୍ଥର ପ୍ରଚାର କରିଥାଆନ୍ତି ।

ଏହାର ମାର୍ଗ ଦର୍ଶନରେ ପ୍ରାଣୀମାନଙ୍କ ଉଦ୍ଧାର ହୋଇଥାଏ । ଯିଏ ଏହିଭଳି ଭାବେ ଲୋକକଲ୍ୟାଣ କାର୍ଯ୍ୟରେ ପ୍ରବୃତ୍ତ ରହିଥାଏ, ତାହାର ଏ ସଂସାରରେ ଜନ୍ମଗ୍ରହଣ ସାର୍ଥକ ।

## ତୃତୀୟ ସମାସ
## ।। ବିକଶିତ ଅନ୍ତରାତ୍ମା ।।

ମୂଳମାୟାଠାରୁ ଆରମ୍ଭ କରି ପଞ୍ଚଭୂତାତ୍ମକ ଏ ଯେଉଁ ସଂସାରର ବିସ୍ତାର ହୋଇଛି ଏଥିରେ ଅନ୍ତରାତ୍ମା ସୂତ୍ର ରୂପରେ ବିଦ୍ୟମାନ । ରାଜଦରବାରରେ ଦି ପଟେ ଦୁଇଜଣ ସୈନ୍ୟ ଦଣ୍ଡାୟମାନ ରହିଥାଆନ୍ତି ଏବଂ ରାଜା ବସିଥାଆନ୍ତି ରାଜ-ସିଂହାସନରେ । କିନ୍ତୁ ସବୁ ଦେହ ହାଡ଼ମାଂସରେ ତିଆରି । ସୈନ୍ୟର ଦେହରେ ଯେପରି ହାଡ଼ ମାଂସ, ରାଜାଙ୍କ ଦେହରେ ମଧ୍ୟ ସେହି ହାଡ଼ ମାଂସ । କିନ୍ତୁ ରାଜାଙ୍କ କ୍ଷମତାରେ ସେନାଙ୍କ ନିୟନ୍ତଣ ହୋଇଥାଏ । ସେହିଭଳି ଅନ୍ତରାତ୍ମାଙ୍କ ଶକ୍ତିରେ ସମଗ୍ର ସୃଷ୍ଟିର ନିୟନ୍ତ୍ରଣ ହୋଇଥାଏ । ବିବେକ ଜ୍ଞାନରେ ଯିଏ ମହାନ୍ ଏହାକୁ ଲୋକେ ଅବତାର ଭାବରେ ମାନିଥାଆନ୍ତି ଏବଂ ଯାହାଠି ଜ୍ଞାନ ନଥାଏ ସେ ହେୟ ହୋଇଥାଏ । ମହାନ୍ ପୁରୁଷ ସାହସର ସହିତ ସଂଘର୍ଷମୟ ଜୀବନ ଅତିବାହିତ କରିଥାଏ, ତେଣୁ ତାକୁ ଭାଗ୍ୟବାନ୍ କୁହାଯାଏ ।

ସୁଗୁଣସଂପନ୍ନ ବ୍ୟକ୍ତି ହିଁ ମହାନ୍ । ଏହିଭଳି ସଦ୍‌ଗୁଣବାନ୍ ବ୍ୟକ୍ତିକୁ ଲୋକେ ଆଦର ଅଭ୍ୟର୍ଥନା କରିବା ଉଚିତ । ସଂସାରରେ ବୁଦ୍ଧିମାନ ଓ ସଦ୍‌ଗୁଣସଂପନ୍ନ ବ୍ୟକ୍ତିମାନଙ୍କୁ ହିଁ ଲୋକେ ସମ୍ମାନ କରିଥାନ୍ତି । ମୂର୍ଖ ତଥା ଅଜ୍ଞାନୀ ସର୍ବତ୍ର ଅପମାନିତ ହେବା ସାର ହୋଇଥାଏ ।

ଯଦି କୌଣସି ବ୍ୟକ୍ତି ଧନବାନ ହେବାକୁ ଚାହେଁ ତ ତାକୁ ବୁଦ୍ଧିମାନ ହେବାକୁ ପଡ଼ିବ । ଏପରି ବୁଦ୍ଧି ଓ ଚତୁରତା ଲାଭ ଲାଗି ଯେତେ ପରିଶ୍ରମ କରିବାକୁ ପଡୁନା କାହିଁକି, ସେଥିଲାଗି ତତ୍‌ପର ରହିବା ଉଚିତ । ଯାହାକୁ ବହୁ ଲୋକ ସମ୍ମାନ କରିଥାଆନ୍ତି, ତାକୁ ଚତୁର କୁହାଯିବ । ଏଭଳି ଚତୁର ବ୍ୟକ୍ତି ପକ୍ଷରେ ସଂସାରରେ ଦୁର୍ଲ୍ଲଭ ବୋଲି କିଛି ନାହିଁ । ଏହି ସଂସାରକୁ ଆସି ଯେଉଁ ବ୍ୟକ୍ତି ନିଜର କଲ୍ୟାଣ କରିବା ସଂଗେ ସଂଗେ ଅନ୍ୟର କଲ୍ୟାଣ କରି ନଥାଏ ତାକୁ

ଆତ୍ମଘାତୀ କୁହାଯିବ । ଏହାଠୁ ବଳି ମୂର୍ଖ ଓ ପାପୀ କେହି ନାହିଁ । ବୁଦ୍ଧିମାନ ଓ ଚତୁର ବ୍ୟକ୍ତି ନିଜ ଜୀବନକୁ ଏପରି କଷ୍ଟରେ ବିତେଇ ନଥାଏ କିଂବା ସେ କେବେହେଲେ ଲୋକଙ୍କ ଅପ୍ରିୟ ହୁଏ ନାହିଁ ।

ସାଧକମାନେ ନିଜ ଜୀବନ କିପରି ଆଦର୍ଶ ଭାବରେ ବିତେଇବା ଉଚିତ, ଏହା ସହଜ ସ୍ୱଭାବ ଏବଂ ସ୍ୱାନୁଭବକୁ ଭିତ୍ତିକରି ମୁଁ ଏକଥା କହିଲି । ଯଦି ମୋ କଥା ଉଚିତ ମନେ କରୁଥାଅ ତ ଗ୍ରହଣ କର ନଚେତ ଛାଡ଼ିଦିଅ । ଶ୍ରୋତାମାନେ ଏ ଦିଗରେ ଦକ୍ଷ ବୋଲି ମୋର ଧାରଣା । ସତ୍ୟ କ'ଣ, ଅସତ୍ୟ କ'ଣ ଆପଣମାନେ ଭଲଭାବରେ ଜାଣନ୍ତି । ତେଣୁ ଅଧିକ କହିବା ବୃଥା ।

## ଚତୁର୍ଥ ସମାସ
## ।। ଶାଶ୍ୱତ ବ୍ରହ୍ମ ।।

ପୃଥିବୀରୁ ଗଛ ହୁଏ ଏବଂ ପରେ ଗଛର କାଠ ନିଆଁରେ ପୋଡ଼ି ଏହା ଭସ୍ମରେ ପରିଣତ ହୋଇଯାଏ ଏବଂ ଗଛ ପୁଣି ପୃଥ୍ୱୀ ( ମାଟି)ରେ ପରିଣତ ହୋଇଯାଏ । ମାଟିରେ ଉଠୁଥିବା ଗଛରେ ଡାଳ, ପତ୍ର, ଫୁଲ ଆଦି ହୋଇଥାଏ ଏବଂ ପୁଣି ଶୁଖିଯାଇ ମାଟିରେ ମିଶିଯାଏ । ମନୁଷ୍ୟ ନାନା ପ୍ରକାରର ଖାଦ୍ୟ ଖାଇଥାଏ ଏବଂ ମଳଭାବରେ ତ୍ୟାଗ କରିଥାଏ । ତାହା ମଧ୍ୟ ମାଟିରେ ମିଶିଯାଇଥାଏ । ପଶୁପକ୍ଷୀଙ୍କ ଆହାରରେ ମଧ୍ୟ ଏହି ଦଶା ହୋଇଥାଏ । ମନୁଷ୍ୟ ମରିବା ପରେ ଏହାର ଶବ କୃମି, ଭସ୍ମ କିଂବା ମାଟି ହୋଇଯାଇଥାଏ । ଚାରିଶ୍ରେଣୀର ଅଗଣିତ ପ୍ରାଣୀଙ୍କ ଦେହ ମଧ୍ୟ ଏହିଭଳି ଭାବେ ପୃଥିବୀକୁ ଫେରିଆସେ ଅର୍ଥାତ୍ ମାଟି ପାଲଟି ଯାଇଥାଏ । ଘାସ, ଲଟା ଆଦି ସଢ଼ିପଚି, କୀଟପତଙ୍ଗ ଆଦି ମରି ମାଟିରେ ମିଳେଇ ଯାଇଥାଏ । ପୃଥ୍ୱୀ ବ୍ୟତୀତ ଏମାନଙ୍କର ଅନ୍ୟ କୌଣସି ଆଶ୍ରୟ ନାହିଁ । ଉତ୍ପତ୍ତି, ସ୍ଥିତି ଓ ସଂହାର ନାମରେ ସଂବୋଧିତ ସବୁ ପ୍ରାଣୀ ଓ ପଦାର୍ଥ ଯେଉଁମାନଙ୍କର ଅସ୍ତିତ୍ୱ ଦେଖାଯାଇଥାଏ, ସବୁ ପୃଥ୍ୱୀ ଗର୍ଭରେ ଲୀନ ହୋଇଥାଏ ।

ଲକ୍ଷ ଲକ୍ଷ ବୃକ୍ଷର ଅଙ୍କୁରୋଦ୍‌ଗମ ହୋଇଥାଏ ଏବଂ ଛୋଟ ବୀଜରୁ ଗଗନଚୁମ୍ବୀ ବୃକ୍ଷ ହୋଇ ପରିଶେଷରେ ପୃଥିବୀରେ ଲୁପ୍ତ ହୋଇଯାଇଥାଏ ।

ଅନେକ ପ୍ରକାରରର ଧାତୁ, ସୁବର୍ଣ୍ଣ, ପାଷାଣ ଆଦି ସବୁ ହେଉଚି ପୃଥିବୀର ଅଙ୍ଗବିଶେଷ । ମାଟିରୁ ହିଁ ସୁବର୍ଣ୍ଣ, ପାଷାଣ ଆଦି ଉତ୍ପନ୍ନ ହୋଇଥାଏ । ପୁଣି ପ୍ରଖର ଅଗ୍ନିତାପରେ ଏହା ତରଳି କିଂବା ଭସ୍ମ ହୋଇ ପୃଥିବୀରେ ହିଁ ମିଳେଇ ଯାଇଥାଏ । ସୁନାର ଜରି ହୋଇ ଏହା ସଢ଼ିଯାଏ । ପୃଥିବୀରୁ ବାହାରୁଥିବା ଅନେକ ଧାତୁ ଅଗ୍ନିର ସଂସର୍ଗରେ ରସ ପାଲଟି ପୁଣି ଜମାଟ ବାନ୍ଧି ଶେଷରେ ମାଟିରେ ମିଶିଯାଏ । ଜଳର ଗନ୍ଧ ମଧ୍ୟ ପୃଥ୍ୱୀର ରୂପ । ଜଳ ଶୁଖି ମାଟି ହୋଇଯାଏ । ପ୍ରାଣୀ ପତ୍ର, ପୁଷ୍ପ, ଫଳ ଆଦିକୁ ଭକ୍ଷଣ କରେ ଏବଂ ମରିବାପରେ ପୃଥ୍ୱୀରୂପ ଧାରଣ କରେ । ଯେଉଁ ଯେଉଁ ଆକାର ଦେଖାଯାଏ, ପ୍ରାଣୀମାନଙ୍କର ଯେଉଁ ସବୁ ଅସ୍ତିତ୍ୱର ବିନାଶ ଘଟେ, ସବୁ ପୃଥିବୀରେ ପରିବର୍ତ୍ତିତ ହୋଇଥାଆନ୍ତି । ଉତ୍ପତ୍ତି ଓ ସଂହାର—ଏ ସବୁର ବୀଜ ଏହି ପୃଥିବୀରେ ହିଁ ରହିଛି ।

ପାଣି ଶୁଖି ପୃଥିବୀ ରୂପ ଧାରଣ କରିଥାଏ ଏବଂ ପୃଥିବୀ ପୁଣି ଜଳରେ ବିଲୀନ ହୋଇଥାଏ । ଜଳ ତେଜରୁ ସୃଷ୍ଟି ହୁଏ ଏବଂ ଶେଷରେ ତେଜ ହିଁ ଜଳକୁ ଶୋଷଣ କରିଥାଏ । ତେଜ ବାୟୁଦ୍ୱାରା ପ୍ରକଟିତ ହୋଇଥାଏ ଏବଂ ବାୟୁ ହିଁ ଏହାକୁ ନିଜ ଦେହରେ ମିଶେଇ ଦେଇଥାଏ । ବାୟୁ ଆକାଶରୁ ଉତ୍ପନ୍ନ ହୋଇଥାଏ ଏବଂ ଆକାଶରେ ହିଁ ମିଶିଯାଇଥାଏ । ଏହାକୁ ଉତ୍ପତ୍ତି ଓ ସଂହାର ପ୍ରକ୍ରିୟା କୁହାଯାଏ । ଯାହା ଯାହା ଯେଉଁଠି ଉତ୍ପନ୍ନ ହୋଇଥାଏ, ତାହା ସେଇଠି ସମାପ୍ତ ହୋଇଥାଏ । ଏହିଭଳି ଭାବେ ପଞ୍ଚ ମହାଭୂତର ବିନାଶ ଘଟିଥାଏ ।

ଭୂତର ଅର୍ଥ ହେଉଚି ଉତ୍ପନ୍ନ ହେବା ଏବଂ ଯେଉଁଠି ଉତ୍ପତ୍ତି, ସେଇଠି ବିନାଶ ନିଶ୍ଚିତ । ଉତ୍ପତ୍ତି ବିନାଶ ବିରହିତ ଶାଶ୍ୱତ ତତ୍ତ୍ୱ କେବଳ ପରବ୍ରହ୍ମ । ଏହି ପରବ୍ରହ୍ମଙ୍କ ପରିଚୟ ନ ପାଇବା ପର୍ଯ୍ୟନ୍ତ ଜନ୍ମମୃତ୍ୟୁ ଚକ୍ରରୁ କେହି ତ୍ରାହି ପାଇ ନପାରେ । ସବୁ ପ୍ରାଣୀଙ୍କ ଜନ୍ମମୃତ୍ୟୁ ଅଟଳ । ଜଡ଼ର ମୂଳ ଚଞ୍ଚଳ ଅର୍ଥାତ୍ ଭୌତିକ ପଦାର୍ଥର ମୂଳ ଅନ୍ତରାତ୍ମା ଏବଂ ଚଞ୍ଚଳର ମୂଳ ନିଶ୍ଚଳ ପରବ୍ରହ୍ମ । ପରମାତ୍ମାର କୌଣସି ମୂଳ ନାହିଁ । ଏହା ଅନାଦି ଓ ଅନନ୍ତ । ସଂସାର ସତ୍ୟ—ଏହା ହେଉଚି ପୂର୍ବପକ୍ଷ ଏବଂ ସଂସାର ମିଥ୍ୟା—ଏହା ହେଉଚି ସିଦ୍ଧାନ୍ତ । ଏହି ଦୁଇଟିଯାକ ଊର୍ଦ୍ଧ୍ୱରେ ପରମବ୍ରହ୍ମ । ଏସବୁ କଥା ଅନୁଭବ ଦ୍ୱାରା ହିଁ ଜାଣି ହେବ । ସବୁକାର୍ଯ୍ୟ ବିବେକ ଦ୍ୱାରା ହୋଇପାରେ ।

ବିବେକକୁ ଛାଡ଼ି ଇତଃସ୍ତତଃ ହେବା କିଂବା ତର୍କବିତର୍କ କରିବା ମୂର୍ଖତା । ଜଡ଼ର ଚଞ୍ଚଳତା ଅର୍ଥାତ୍ ମାୟାର ପ୍ରଭାବରେ ଯିଏ ଦବିଯିବ, ସେ ଜ୍ଞାନୀ ହୋଇଥିଲେ ମଧ୍ୟ ନିଶ୍ଚଳ ପରବ୍ରହ୍ମଙ୍କୁ ପାଇପାରିବ ନାହିଁ । ସେ ମାୟା ସଂପର୍କରେ ବହୁତ କଥା କହୁନା କାହିଁକି, ପ୍ରକୃତି ଜ୍ଞାନୀ ନୁହେଁ । ମାୟା ନିଃଶେଷ ହେବାପରେ କି ଅବସ୍ଥା ହୋଇଥାଏ ସେ କଥା ଜ୍ଞାନୀ ପୁରୁଷ ଭଲଭାବରେ ବିଚାର କରିବା ଉଚିତ । ମାୟା ଦୂର ହେଲେ ଅର୍ଥାତ୍ ମାୟାର ନିରସନ ଘଟିଲେ ହିଁ ପ୍ରକୃତ ଆତ୍ମନିବେଦନ ହୋଇଥାଏ । ସେତେବେଳେ ବାଣୀର କୌଣସି ଆବଶ୍ୟକତା ରହେନା । ତେଣୁ ବ୍ରହ୍ମ-ଲୀନ ସ୍ଥିତିର ବା ସ୍ୱରୂପ ସ୍ଥିତିର ବର୍ଣ୍ଣନା କରାଯିବ କିପରି ? ଯେଉଁ ବ୍ୟକ୍ତି ମାନସର ପ୍ରବାହରେ ଭାସିବାରେ ଲାଗିଥାଏ ସେ ପରିଶେଷରେ ଅନୁମାନ ଓ ସନ୍ଦେହର ଭଉଁରୀରେ ବୁଡିଯାଇଥାଏ । ତେଣୁ ବିବେକପୂର୍ବକ ଏବଂ ସ୍ୱାନୁଭବକୁ ଭିତ୍ତିକରି ଆମେମାନେ ସତ୍ୟବସ୍ତୁ ପରବ୍ରହ୍ମ ପରମାତ୍ମାଙ୍କ ଅନୁସଂଧାନ ତଥା ଅବଲୋକନ କରିବା ଉଚିତ । ଏହାହିଁ ଜୀବନର ସାର୍ଥକତା ।

## ପଞ୍ଚମ ସମାସ
## ।। ଚଞ୍ଚଳବୃତ୍ତି ନିରୂପଣ ।।

ପ୍ରକୃତି ଆଉ ପରୁଷ, ଜଡ଼ ଓ ଚେତନ ଅନୁଯାୟୀ ତିନୋଟି ଯାକ ଗୁଣ । ନିର୍ଗୁଣରୁ ଅଷ୍ଟଧା ପ୍ରକୃତିର ଉତ୍ପନ୍ନ ହୋଇଥାଏ— ଏହା ଉଚ୍ଚ ଓ ନିମ୍ନ ଦୁଇ ସ୍ଥାନକୁ ଛାଡ଼ି ଅନ୍ତରୀକ୍ଷରେ ରହିଥାଏ । ଅଗ୍ନି ଦେହକୁ ରକ୍ଷଣ କରିଥାଏ ଏବଂ ଭୂତତତ୍ତ୍ୱ ଏହା ଯେଉଁଠୁ ଉତ୍ପନ୍ନ ତାକୁ ଖାଇଥାଏ । ଚାରିତତ୍ତ୍ୱର ଅଧିପତି ଆକାଶ ଅଦୃଶ୍ୟ ରହିଥାଏ । ଦେବତା (ଅନ୍ତରାତ୍ମା) ଦେବାଳୟ (ଦେହ)ରେ ରହିଥାଆନ୍ତି । ତେଣୁ ଦେହରୂପୀ ଦେବାଳୟର ପୂଜା ଏହି ଦେବାଳୟରେ ପ୍ରତିଷ୍ଠିତ ଦେବତା ହିଁ ପାଇଥାଆନ୍ତି । ଏହି କଥା ପ୍ରତ୍ୟେକ ପ୍ରାଣୀପ୍ରତି ପ୍ରଯୁଜ୍ୟ । ଲୋକେ ପ୍ରକୃତି ଓ ପୁରୁଷକୁ ଅଲଗା ଅଲଗା କଳ୍ପନା କରିନେଇଛନ୍ତି; କିନ୍ତୁ ବସ୍ତୁତଃ ଏହି ଦୁଇଟିଯାକ ଏକ । ଏହି ପରମାତ୍ମା, ପୁରୁଷ ନୁହଁ କି ସ୍ତ୍ରୀ ନୁହଁ । ଲୋକେ ନଦୀକୁ ସ୍ତ୍ରୀ ଓ ନାଳକୁ ପୁରୁଷବାଚକ ବୋଲି ମାନିନେଇ ଥାଆନ୍ତି; କିନ୍ତୁ ବାସ୍ତବରେ ଏ ଦୁଇଟିରେ କୌଣସି ପ୍ରଭେଦ ନାହିଁ । ଉଭୟରେ ସେହି ଏକ ଜଳତତ୍ତ୍ୱ ।

ଆମ୍ଭେମାନେ ନିଜ ସଂପର୍କରେ କିଛି ଜାଣି ନାହୁଁ । ବ୍ରହ୍ମ ଏକରୁ ଅନେକ ଏବଂ ଅନେକରୁ ଏକ; କିନ୍ତୁ ଏହା ମାୟାର ପ୍ରପଞ୍ଚକୁ ତିଳେ ହେଲେ ସହ୍ୟ କରିପାରେନା । ଏହି ଚୈତନ୍ୟ-ଶକ୍ତି ଏକମାତ୍ର ହେଲେ ମଧ୍ୟ ଏହା ସର୍ବତ୍ର ବ୍ୟାପ୍ତ । ବନସ୍ପତିରେ ଜଳ ଅଦୃଶ୍ୟରୂପରେ ବିଦ୍ୟମାନ । ବିନା ଜଳର ଶୀତଳତାରେ ବନସ୍ପତି ଜୀବିତ ରହିପାରେ ନାହିଁ । ଯଦିଓ ବଡ଼ ବନ ବୃକ୍ଷ ବଢ଼ି ଖୁବ ଉଚ୍ଚା ହୋଇଥାଏ ଏବଂ ପୃଥିବୀ (ମାଟି) ଠାରୁ ଅଲଗା ଦେଖାଯାଏ, ତଥାପି ଜଳହିଁ ଏହାର ଜୀବନ । ଜଳର ପ୍ରଭାବରୁ ହିଁ ଏହା ଶାଖା ପ୍ରଶାଖା ମେଲି ବଢ଼ିଥାଏ । ଏହି ଜଳରୂପୀ ଅନ୍ତରାତ୍ମାର ବଳରେ ହିଁ ବୃକ୍ଷ ଜୀଇଁରହେ ଏବଂ ଏହା ନ ରହିବାରେ ଏହା ଶୁଖି ଶୁଖି କାଠ ହୋଇଯାଏ । ଏକପ୍ରକାର ବୃକ୍ଷଉପରେ ଆଉ ଏକ ବୃକ୍ଷ ବଢ଼ିଗଲେ—ଯାହାର ମୂଳ ମାଟିରେ ନଥାଏ, ଏହାର ପୋଷଣ ମାଟିରେ ଥିବା ପ୍ରଥମ ବୃକ୍ଷଦ୍ୱାରା ହିଁ ହୋଇଥାଏ ।

ଆମେ ଏକଥା ବୁଝିବା ଆବଶ୍ୟକ ଯେ ଯିଏ ଯେଉଁ ରୂପରେ ଥାଉନା କାହିଁକି ସବୁଥିରେ ଅନ୍ତରାତ୍ମାଙ୍କ ନିବାସ । ଏବେ ଆମେ ଅନୁଭବ କରିବା ଉଚିତ ଯେ ଏ ସବୁର ଉତ୍ପାଦକ କିଏ ? ଏହି ଜ୍ଞାନ ହେବାମାତ୍ରେ ହିଁ ମନୁଷ୍ୟ ସତ୍ ସ୍ୱରୂପକୁ ଚିହ୍ନିପାରେ । ଅନ୍ତର୍ନିଷ୍ଠ ମହାପୁରୁଷମାନଙ୍କ ପଦ ବହୁଉଚ୍ଚରେ ଏବଂ ବହିର୍ମୁଖୀ ଲୋକଙ୍କର ଅର୍ଥାତ୍ ଯିଏ କେବଳ ବାହାର ଜିନିଷର ବିଚାର କରିଥାଏ ଏବଂ ଅନ୍ତରାତ୍ମାଙ୍କ ଅନୁଭବ କରି ନଥାଏ ଏହାର ପାଖ ମାଡ଼ିବା ଉଚିତ ନୁହେଁ । ଏସବୁ ସଂପର୍କରେ ମୂର୍ଖ ବ୍ୟକ୍ତିମାନଙ୍କର ଜ୍ଞାନ କାହିଁ ? ଚତୁର ଲୋକେ ହିଁ ଏହାର ରହସ୍ୟ ଜାଣି ପାରନ୍ତି ।

ଏହି ପରମାତ୍ମା ସହିତ ଅନନ୍ୟ ହୋଇଯିବା ପରେ ହିଁ ଏହି ନିରଂଜନର ଦର୍ଶନ ସଂଭବ ହୋଇଥାଏ ଏବଂ ମାୟାରୂପୀ ଚଞ୍ଚଳଚକ୍ରକୁ ଭେଦକରି ମନୁଷ୍ୟ ପରମପ୍ରଭୁଙ୍କ ନିକଟରେ ପହଞ୍ଚିଥାଏ ।

ଥରେ ପରବ୍ରହ୍ମଙ୍କ ଝଲକ ପାଇଯିବାପରେ ଏହା ସର୍ବତ୍ର ଏବଂ ସର୍ବଦା ପରିପୂର୍ଣ୍ଣ ଅବସ୍ଥାରେ ଥିବା ଜଣାପଡ଼ିବ; କିନ୍ତୁ ଏହା ଚର୍ମଚକ୍ଷୁଦ୍ୱାରା ଦୃଷ୍ଟିଗୋଚର ହୋଇନଥାଏ । ଏଥିଲାଗି ଜ୍ଞାନଦୃଷ୍ଟି ବା ଦିବ୍ୟଦୃଷ୍ଟି ଆବଶ୍ୟକ । ଚଞ୍ଚଳମାୟା ହିଁ ସବୁ ଶରୀରରେ ହଲଚଲ ସୃଷ୍ଟି କରିଥାଏ । ଅର୍ଥାତ୍ ଏହି ପରବ୍ରହ୍ମ ସବୁସ୍ଥାନରେ

ଏବଂ ସବୁ ପରିବେଶରେ ସର୍ବଦା ସନ୍ନିହିତ ରହିଥାଏ; କିନ୍ତୁ ଏହି ଚଞ୍ଚଳ ତତ୍ତ୍ୱର ଅନୁସଂଧାନ କରାଯାଇ ନ ପାରେ ।

ଯେପରି ଆକାଶକୁ ନିକ୍ଷେପ କରାଯାଉଥିବା ଆକାଶବାଣୀ ଆକାଶକୁ ଭେଦ କରିପାରେ ନାହିଁ, ସେହିଭଳି ଏକଦିଗଦର୍ଶୀତତ୍ତ୍ୱ ସର୍ବବ୍ୟାପକ ତତ୍ତ୍ୱକୁ କଳନା କରିପାରେ ନାହିଁ । ଏକଦିଗଦର୍ଶୀ ମନୋଧର୍ମସଂପନ୍ନ ମନୁଷ୍ୟ ମଧ୍ୟ ଏହି ନିର୍ଗୁଣକୁ ଭୁଲି ଅନ୍ତରାତ୍ମାକୁ ହିଁ ପରବ୍ରହ୍ମ ବୋଲି ମାନି ନେଇଥାଏ । ଯିଏ ଅସାରକୁ ଛାଡ଼ି ସାରଭୂତ ନିର୍ଗୁଣ ବ୍ରହ୍ମକୁ ଚିହ୍ନି ପାରେନା, ସେ ଅନ୍ଧକାରରେ ହିଁ ରହିଥାଏ । ତେଣୁ ଅସତ୍ୟକୁ ଛାଡ଼ି ସତ୍ୟକୁ ଗ୍ରହଣ କରିବା ହିଁ ସୁଜ୍ଞ ପୁରୁଷଙ୍କ ଧର୍ମ । ବ୍ରହ୍ମାଣ୍ଡର ଉପାଦାନ ମହାକରଣ ମୂଳମାୟାରୁ ହିଁ ପଞ୍ଚଭୂତର ଉତ୍ପତ୍ତି ହୋଇଛି, ଯଦିଓ ମହାବାକ୍ୟର ବିଚାର ଏହାଠାରୁ ବିଲ୍‌କୁଲ୍ ବିପରୀତ ।

ମହତ୍ ତତ୍ତ୍ୱକୁ ହିଁ ମହତ୍‌ଭୂତ କୁହାଯାଇଥାଏ ଏବଂ ଏହାକୁ ହିଁ ପରବ୍ରହ୍ମ ବୋଲି ବୁଝିବା ଉଚିତ । ଏହି ପରମପଦରେ ପହଞ୍ଚିବାପରେ ଉପାସନା, ଭକ୍ତି, ସାଧନା ଆଦି ସବୁ କର୍ମକାଣ୍ଡ ସମାପ୍ତ ହୋଇଥାଏ । ବେଦରେ କର୍ମ-ଉପାସନା ଏବଂ ଜ୍ଞାନର ତ୍ରିଗୁଣାତ୍ମକ ଉପାସନାର ବର୍ଣ୍ଣନା କରାଯାଇଛି । ତେଣୁ ଏହାକୁ ସମସ୍ତେ ସ୍ୱୀକାର କରି ତଦନୁସାରେ ଆଚରଣ କରିବା ଉଚିତ । କିନ୍ତୁ ପରବ୍ରହ୍ମରେ ପହଞ୍ଚିବା ପରେ ଜ୍ଞାନ, ବିଜ୍ଞାନ, ଭକ୍ତି, ଉପାସନା, ମନନ-ଚିନ୍ତନ, ସାଧ୍ୟ-ସାଧନ ଆଦି ସବୁ ଦ୍ୱୈତଭାବର ପରିସମାପ୍ତି ଘଟିଥାଏ ଏବଂ ଶେଷରେ ରହେ ଏକ ସତ୍‌ସ୍ୱରୂପ ପରବ୍ରହ୍ମ ।

## ଷଷ୍ଠ ସମାସ
## ।। ଚାତୁର୍ଯ୍ୟ ଲକ୍ଷଣ ।। (୨)

ହଳଦିଆ ରଙ୍ଗରୁ ହିଁ କାଳି ବା ସ୍ୟାହି ପ୍ରସ୍ତୁତ ହୋଇଛି ଏବଂ ଏଥିରେ ଅନେକ ବେଦଶାସ୍ତ୍ର ପୁରାଣ ଲେଖାଯାଇଛି । ଏହି ମହାନ ଗ୍ରନ୍ଥବିନା ଜ୍ଞାନପ୍ରାପ୍ତି ସମ୍ଭବ ନୁହଁ । କାଳି ବା ସ୍ୟାହି ଏକ ସାଧାରଣ ବସ୍ତୁ ହେଲେ କ'ଣ ହେଲା, ଏଥିରେ ବ୍ରହ୍ମାଣ୍ଡର ସମସ୍ତ ଜ୍ଞାନ ସଂଗୃହିତ ହୋଇପାରିଛି ।

ଗ୍ରନ୍ଥମାନଙ୍କରେ ରାମ, କୃଷ୍ଣ ଆଦି ଅବତାରୀ ପୁରୁଷମାନଙ୍କ ସଦ୍‌ଗୁଣ ଏବଂ ରାବଣ, କଂସ ଆଦି ଦୁରାତ୍ମାମାନଙ୍କ ଅଧମଗୁଣର ବର୍ଣ୍ଣନା କରାଯାଇଛି । ମହୀସୂତ ଅର୍ଥାତ୍ ପୃଥିବୀଗର୍ଭରୁ ଉତ୍ପନ୍ନ କଲମ ଦ୍ୱାରା ଲେଖନ କାର୍ଯ୍ୟ ସମ୍ପନ୍ନ କରାଯାଇଛି । ଶ୍ୱେତ କାଗଜ, ଅଶ୍ୱେତ କଲମ ଏବଂ କୃଷ୍ଣ ଅର୍ଥାତ୍ କାଳିସ୍ୟାହି ସଂଯୋଗରେ ଲେଖନ, ବାଚନ, ଅର୍ଥବୋଧ ଆଦିର ଲାଭ ମିଳିଛି । ଯିଏ ଏହି ସଦ୍‌ଗ୍ରନ୍ଥଗୁଡ଼ିକର ସ୍ୱାଧ୍ୟାୟ କରିବ ସେ ମୂର୍ଖ ହୋଇଥିଲେ ମଧ୍ୟ ଜ୍ଞାନୀ ହୋଇଯାଇ ପାରିବ ଏବଂ ସ୍ୱାଧ୍ୟାୟର ମନନ ଚିନ୍ତନଦ୍ୱାରା ପରମାର୍ଥର ଅଧିକାରୀ ହୋଇ ମାନବଜନ୍ମକୁ କୃତାର୍ଥ କରିପାରିବ ।

ଜ୍ଞାନଦ୍ୱାରା ମନୁଷ୍ୟ ନିଜ ଭାଗ୍ୟ ବଦଳେଇ ଦେଇପାରେ । ଏ ସଂସାରରେ ଯିଏ ସମସ୍ତଙ୍କ କଥା ଶୁଣିଲେ ମଧ୍ୟ ସତ୍ୟାସତ୍ୟକୁ ବିଚାର କରି ଯାହା ଗ୍ରାହ୍ୟ ତାକୁ ଆଚରଣ କରିଥାଏ, ସେ ପ୍ରକୃତ ଜ୍ଞାନୀ । ଆମ୍ଭେମାନେ ସଦ୍‌ବିଚାର ଦ୍ୱାରା କେବଳ ଯେ ନିଜର ପରମାର୍ଥ ସାଧ କରିପାରିବା ତା ନୁହଁ, ଜନ୍ମରୁ ଯିଏ ଅଜ୍ଞାନୀ ସେଭଳି ଲୋକ ମଧ୍ୟ ସତ୍‌ମାର୍ଗରେ ଚାଲିବା ଲାଗି ଅଭ୍ୟାସ କଲେ ତା ଜନ୍ମ ସାର୍ଥକ ହେବ ।

ପ୍ରଥମେ ଆମ୍ଭେମାନେ ଲୋକଙ୍କ ଭଲ ମନ୍ଦ କଥା ଧୀରେ ସ୍ଥିରେ, ଶାନ୍ତ ଭାବରେ ଶୁଣିବା ଆବଶ୍ୟକ । ତା ପରେ ତାକୁ ନିଜର ବିଚାର ଦ୍ୱାରା ପ୍ରଭାବିତ କରି ତାକୁ ବଶ କରିବା ଉଚିତ । ଏହିଭଳି ଭାବରେ ଅନ୍ୟକୁ ପରମାର୍ଥ ମାର୍ଗ ଦେଖାଇ ତାର କଲ୍ୟାଣ କରିବା ଉଚିତ । ବିତଣ୍ଡାବାଦ କରିବା ବୃଥା । ବିତଣ୍ଡାବାଦ ଦ୍ୱାରା ଦ୍ୱେଷ ଓ କଳହ ବଢ଼ିଥାଏ । ତେଣୁ ଅନ୍ୟର ଆକ୍ଷେପ, ବିରୋଧ, ଅପଶବ୍ଦ ଆଦି ସହ୍ୟ କରିଯିବା ଉଚିତ । ଏହା କରିବାଦ୍ୱାରା ପରେ ବିରୋଧୀମାନେ ଅନୁତାପ କରି ତୁମର ବିଚାରକୁ ଗ୍ରହଣ କରିନେବେ । ଅବସର ପାଇବା ମାତ୍ରେ ଲୋକଙ୍କୁ ଉପଦେଶ ଦେବା ଉଚିତ; କିନ୍ତୁ ସେଥିଲାଗି ଜ୍ଞାନର ଅଭିମାନ କରିବା ଅନୁଚିତ । ସବୁଜାଗାରେ ସମସ୍ତଙ୍କ ସହିତ ନମ୍ରତାପୂର୍ବକ ବ୍ୟବହାର କରିବା ଉଚିତ । ସବୁଆଡ଼େ ବୁଲି ଭିକ୍ଷା ମାଧ୍ୟମରେ ସମସ୍ତଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିବା ଆବଶ୍ୟକ । ଯାହାଠଁ ଯେଉଁ ଗୁଣ ଦେଖାଯାଉନା କାହିଁକି, ତାକୁ ନିରଂହକାର ବୃତ୍ତିରେ ଗ୍ରହଣ କରି ସମସ୍ତଙ୍କୁ ସ୍ନେହ କରିବା ଉଚିତ ।

ଘରେ ଅଳସୁଆଙ୍କ ଭଳି ବସି ରହିଲେ କୌଣସି ଜ୍ଞାନ ଉପଲବ୍ଧି ହୋଇପାରେନା । ତେଣୁ ନିତ୍ୟ ଦେଶଭ୍ରମର ଏବଂ ସତ୍‌ସଙ୍ଗ କରିବା ଉଚିତ । ଭ୍ରମଣ କରିବା ସଙ୍ଗେ ସଙ୍ଗେ ବହୁଗ୍ରନ୍ଥର ପରିଶୀଳନ, ଭଜନ ଆଦିର ଅଭ୍ୟାସ କରିବା ସଙ୍ଗେ ସଙ୍ଗେ ଜନତାକୁ ସଦ୍‌ମାର୍ଗରେ ପରିଚାଳିତ କରିବା ଉଚିତ । ଯଦି କେହି ଉତ୍ତମ ଉପଦେଶ ଓ ଭଜନ ଆଦି ଲେଖି ଦେବାକୁ ଅନୁରୋଧ କରେ, ତାକୁ ଲେଖିକରି ଦେବା ଉଚିତ । ଏହି କାର୍ଯ୍ୟରେ କଦାପି ଆଳସ୍ୟ କିମ୍ବା ଅବହେଳା କରିବା ଅନୁଚିତ । ଏହା ବଡ଼ ପରୋପକାର ଓ ପୁଣ୍ୟ କାର୍ଯ୍ୟ । ଯିଏ ଯାହା ଚାହିଁଲା, ସେପରି ଜିନିଷ ଯଦି ତୁମ ପାଖରେ ଥାଏ ତାକୁ ଦାନ କରିଦେବା ଉଚିତ । ଏପ୍ରକାର ବ୍ୟବହାର କଲେ ମନୁଷ୍ୟ ସମସ୍ତଙ୍କ ଆଦରର ପାତ୍ର ହୋଇପାରିବ ।

ସଂସାରରେ ଯିଏ ସର୍ବମାନ୍ୟ ଓ ଲୋକମାନ୍ୟ ତାକୁ ଆଦର କରିବ ନାହିଁ କିଏ ? ଅନେକ ଲୋକ ଏପରି ସତ୍‌ପୁରୁଷଙ୍କ ଶିଷ୍ୟ ହୋଇଥାଆନ୍ତି ଏବଂ ଏଭଳି ଲୋକଙ୍କ କୀର୍ତ୍ତି ଚାରିଆଡ଼େ ଖେଳିଯାଏ । ସେ ଅମର ରହେ । ଚତୁର ଅର୍ଥାତ୍ ଜ୍ଞାନୀ ପୁରୁଷର ଏହାହିଁ ଲକ୍ଷଣ । ଯାହାଠି ଏସବୁ ଲକ୍ଷଣ ରହିଥାଏ, ସେ ଯେଉଁଠିକି ଗଲେ ମଧ୍ୟ ଲୋକେ ଆପେ ଆପେ ତାର ଯାହା ଆବଶ୍ୟକ ଅକୁଣ୍ଠିତ ଚିତ୍ତରେ ଦେଇଥାଆନ୍ତି । ଏଭଳି ଦିଗ୍‌ବିଜୟୀ ପକ୍ଷରେ ସଂସାରରେ କିଛିହେଲେ ଅଭାବ ରହେ ନାହିଁ ।

## ସପ୍ତମ ସମାସ
## ।। ଅଧଃ-ଊର୍ଦ୍ଧ୍ୱ ନିରୂପଣ ।।

ନାନା ବିକାରର ମୂଳ ଅର୍ଥାତ୍ ଆଦି ବିକାରର ମୂଳ ହେଉଚି ମାୟା । ମାୟା ହିଁ ନିଶ୍ଚଳ ପରବ୍ରହ୍ମରେ ଅତିସୂକ୍ଷ୍ମ ରୂପରେ ଚଞ୍ଚଳ । ଏହା କେବଳ ଅନୁଭୂତିରୂପ ମୂଳ ବ୍ରହ୍ମର ବାୟୁରୂପୀ ସଂକଳ୍ପମାତ୍ର । ଏହି ମୂଳମାୟାକୁ ଷଡ଼ଗୁଣେଶ୍ୱର, ପ୍ରକୃତି-ପୁରୁଷ, ଶିବଶକ୍ତି, ଅର୍ଦ୍ଧନାରୀ ନଟେଶ୍ୱର ଆଦି ନାମରେ ସମ୍ବୋଧନ କରାଯାଇଥାଏ । ସଂକଳ୍ପର ସ୍ଫୁରଣ ହିଁ ମୂଳମାୟା । ଏହା ବାୟୁରୂପ ହୋଇଥିଲେ ମଧ୍ୟ ଏଥିରେ ତ୍ରିଗୁଣ ଏବଂ ପଞ୍ଚଭୂତାତ୍ମକ ଅଷ୍ଟଧା ପ୍ରକୃତି ଅତି ସୂକ୍ଷ୍ମରୂପରେ ସନ୍ନିହିତ । କୌଣସି କୌଣସି ଗଛର ଚେର ବହୁତ ଗଭୀରକୁ ଯାଇଥାଏ । ଏହି

ଗଛରେ ପତ୍ର, ପୁଷ୍ପ, ଫଳଆଦିର ବିସ୍ତାର ହୋଇଥାଏ । ଅର୍ଥାତ୍ ଏସବୁ ଜିନିଷ ଏଥିରେ ବିଦ୍ୟମାନ ରହିଥାଏ । ସେହିଭଳି ଭାବେ ନାନାରଙ୍ଗ, ଆକାର, ବିକାର, ସ୍ୱାଦ, ସୁଗନ୍ଧ ଆଦି ସବୁ ଏହି ଜଡ଼ ବା ବୃକ୍ଷରେ ବୀଜରୂପରେ ଛପି ରହିଥାଏ । ବୀଜକୁ ଫଟେଇ ଦେଖିଲେ ଏଥିରେ ଗଛପତ୍ର ଆଦି ଦେଖାଯାଇ ନଥାଏ; କିନ୍ତୁ ଏହାକୁ ଲଗାଯିବା ପରେ ଅଙ୍କୁରିତ, ପଲ୍ଲବିତ ହୋଇ ପତ୍ର ପୁଷ୍ପ ଓ ଫଳରେ ପରିପୂର୍ଣ୍ଣ ବୃକ୍ଷ ହୋଇ ଉଠିଥାଏ ।

ସେହିଭଳି ମୂଳମାୟାର ବିଷୟ । ଏଥିରେ ତିନିଗୁଣ ଏବଂ ପଞ୍ଚଭୂତ ସୂକ୍ଷ୍ମ ରୂପରେ ସମାବିଷ୍ଟ । କିନ୍ତୁ ଏସବୁ କେବଳ ବିବେକ ଦ୍ୱାରା ହିଁ ଜଣାଯାଇଥାଏ । ଜଡ଼ମୂଳରେ ବୀଜ, ବୀଜରେ ଜଳରୂପରେ ବୀଜ, ଏବଂ ଶେଷରେ ଫଳରୂପରେ ବୀଜ—ଏହି ଭଳି ଭାବେ ସବୁର ବିସ୍ତାର । ବୀଜରୁ ଉତ୍ପନ୍ନ ସୃଷ୍ଟି ଅର୍ଥାତ୍ ପତ୍ର, ପୁଷ୍ପ, ଫଳ ଆଦିର ବିସ୍ତାରରୁ ମୂଳ ବସ୍ତୁ ସ୍ଥିତିର ସନ୍ଧାନ ମିଳିଥାଏ । ଯିଏ ଯେଉଁଠି ଉତ୍ପନ୍ନ ହୋଇଥାଏ, ସିଏ ସେଇଠି ସମାପ୍ତ ହୋଇଥାଏ ।

ଏହିଭଳି ଭାବେ ମୂଳମାୟାରୁ ଉତ୍ପନ୍ନ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ନାନା ଜୀବର ସୃଷ୍ଟି ଏହି ମୂଳ ମାୟାରେ ବିଲୀନ ହୋଇଯାଇଥାଏ । ଏହିଭଳି ଭାବେ ଜନ୍ମମରଣ ଚକ୍ର ଚାଲିଥାଏ । ଯିଏ ଆତ୍ମ-ଜ୍ଞାନୀ, ତାକୁ ଏହି ସଂସାର-ବନ୍ଧନ ଏବଂ ଜନ୍ମ-ମୃତ୍ୟୁର ଭୋଗ ଭୋଗିବାକୁ ପଡ଼ିନଥାଏ । ଏ ସବୁ ଆତ୍ମଜ୍ଞାନରୁ ହିଁ ହୋଇଥାଏ; କିନ୍ତୁ ଆତ୍ମଜ୍ଞାନ ଏତେ ସୁଲଭ ନୁହଁ ।

ଅନ୍ତରାତ୍ମାର ଆଧାରରୁ ହିଁ ସଂସାରର ସମସ୍ତ କାର୍ଯ୍ୟ ଚାଲିଥାଏ । ଏହାରି ବଳରେହିଁ ସମସ୍ତ ପ୍ରକାରର ଭୋଗ ଉପଭୋଗ କରିବାକୁ ପଡ଼ିଥାଏ । କିନ୍ତୁ ଆମେ ସ୍ଥୂଳ କାର୍ଯ୍ୟ ଏବଂ ବସ୍ତୁଠାରୁ ଦୃଷ୍ଟି ଏଡ଼େଇ ତାକୁ ସୂକ୍ଷ୍ମପ୍ରତି ଲଗେଇବା ଉଚିତ । ଅନ୍ତରାତ୍ମା ଜଗତର ଏବଂ ନିଜର ଏକ । ଶରୀରଭେଦରୁ ଏହା ଭିନ୍ନ ଭିନ୍ନ ଦେଖାଯାଇଥାଏ । ଆତ୍ମ-ଜ୍ଞାନଦ୍ୱାରା ହିଁ ଏହା ପ୍ରତୀତ ହୋଇଥାଏ ।

କେବେ କେବେ ରଖାଯାଇଥିବା ବସ୍ତୁର ବିସ୍ମରଣର କାରଣ ମିଳିଥାଏ । ଏସବୁ ଅନୁଭବର ବିଷୟ । ନିଜ କଥା ନିଜର ମନେ ପଡ଼େ ନାହିଁ । ମନରେ ଏପରି ଅନେକ ପ୍ରକାରର ବିଚାର ତରଙ୍ଗ ଉଠିଥାଏ, ଯାହାପ୍ରତି ଆମର ଧ୍ୟାନ ନଥାଏ । ଚଞ୍ଚଳ ମାୟାର ଏସବୁ ଖେଳ । ସମସ୍ତଙ୍କର ସ୍ମରଣ ଓ ବିସ୍ମରଣ

ହୋଇଥାଏ । ଯାହାର ନିତ୍ୟ ସ୍ମରଣ ରହିଥାଏ, ତାକୁ କୁହାଯାଏ ଦେବତା ବା ଦୈବପୁରୁଷ ଏବଂ ଯାହାର ବିସ୍ମରଣ ଘଟିଥାଏ, ତାକୁ କୁହାଯାଏ ଦାନବ । କିଛି ସ୍ମରଣ ଓ କିଛି ବିସ୍ମରଣ ହେଉଥିବା ଜୀବର ନାମ ମନୁଷ୍ୟ ।

ଏହିଭଳି ଭାବେ ଦୈବୀ ଓ ଆସୁରୀ—ଏହି ଦୁଇ ପ୍ରକାରର ସମ୍ପଦ ରହିଥାଏ । ବିବେକଦ୍ୱାରା ହିଁ ଏହାର ବିଚାର କରାଯାଇପାରେ । ଯେପରିଭାବେ ଦର୍ପଣରେ ଆଖିଦ୍ୱାରା ଆଖିକୁ ଦେଖାଯାଇଥାଏ, ସେହିଭଳି ଭାବେ ବିବେକ ଦ୍ୱାରା ବିବେକ ଏବଂ ଆତ୍ମାଦ୍ୱାରା ଆତ୍ମାର ପରିଚୟ ହୋଇଥାଏ । ଜୀବ ଏକଦିଗଦର୍ଶୀ ହୋଇଥିବାରୁ ତାର ଦୃଷ୍ଟି ବ୍ୟାପକ ହୋଇପାରେ ନାହିଁ ଏବଂ ସେ ଆତ୍ମଜ୍ଞାନ ଅଭାବରୁ ସର୍ବତ୍ର ପହଞ୍ଚିପାରେ ନାହିଁ । ବିସ୍ମରଣ ଏହାର ସ୍ୱଭାବ । ତୁରୀୟ ଅବସ୍ଥା ସ୍ମରଣରୂପ ଏବଂ ସୁଷୁପ୍ତି ଅବସ୍ଥା ବିସ୍ମରଣରୂପ ଏବଂ ଜୀବଠାରେ ଏହି ଦୁଇଟିଯାକ ରହିଛି ।

## ଅଷ୍ଟମ ସମାସ
## ।। ସୂକ୍ଷ୍ମ-ଜୀବ-ଲକ୍ଷଣ ।।

ସଂସାରରେ କୃମି, କୀଟ, ଜନ୍ତୁଙ୍କ ସଂଖ୍ୟା ଅସଂଖ୍ୟ । ଏଗୁଡ଼ିକ ମଧ୍ୟରୁ କେହି କେହି ଅତି ସୂକ୍ଷ୍ମ, ଅତି କ୍ଷୁଦ୍ର; କିନ୍ତୁ ଏମାନଙ୍କ ଆୟୁଷ ଏବଂ ବୁଦ୍ଧି ଅତି ଅଳ୍ପ ହୋଇଥାଏ । ଏହି ଜନ୍ତୁ ସାମାନ୍ୟ ଆଖିରେ ଦେଖାଯାଏ ନାହିଁ ତଥାପି ଏ ସମସ୍ତଙ୍କଠାରେ ଅନ୍ତଃକରଣ ପଞ୍ଚକ (ଅନ୍ତଃକରଣ, ମନ, ବୁଦ୍ଧି, ଚିତ୍ତ, ଅହଂକାର)ର ଅସ୍ତିତ୍ୱ ଥାଏ । ଏମାନଙ୍କ ଜ୍ଞାନ , ବିଷୟବୁଦ୍ଧି, ଇନ୍ଦ୍ରିୟଆଦି ଆନୁପାତିକ ଭାବେ ଅତି ଛୋଟ ହୋଇଥାଏ । ଏହିଭଳି ପକ୍ଷୀ, ସର୍ପ, ମାଛ ଆଦି ବହୁ ଜୀବ ରହିଛନ୍ତି ଏବଂ ସେଗୁଡ଼ିକଠାରୁ ହାତୀ ବାଘ ଆଦି ବହୁତ ବଡ଼ । ଅନେକ ରଙ୍ଗର, ଅନେକ ଆକାରର ପ୍ରାଣୀଙ୍କ ମଧ୍ୟରୁ କେହି କେହି ଦେଖିବାକୁ ସୁନ୍ଦର ତ କେହି କେହି କୁତ୍ସିତ, କୁରୂପ । କେତେକ ଜୀବ କୋମଳ, କେତେକ କଠୋର । ଏହିଭଳି ଭାବରେ ଜଗଦୀଶଙ୍କଦ୍ୱାରା ସୃଷ୍ଟ ହୋଇଥିବା ଜୀବ ଅଗଣିତ ।

ଶରୀର, ଆହାର, ବାଣୀ, ଗୁଣ ଆଦିର ନାନା ପାର୍ଥକ୍ୟ ସତ୍ତ୍ୱେ ସମସ୍ତଙ୍କଠାରେ ଏକ ଅଭିନ୍ନ ଅନ୍ତରାତ୍ମାଙ୍କ ନିବାସ । ନାନା ପ୍ରକାର ଚିତ୍ର ବଚିତ୍ର

ଜୀବଙ୍କୁ ଦେଖି ପରମାତ୍ମାଙ୍କ କାରିଗରୀ ଅତି ଆଶ୍ଚର୍ଯ୍ୟ ଓ କୌତୂହଳ ମନେ ହୋଇଥାଏ । ପଶୁପକ୍ଷୀ, କୀଟ ଆଦି ଅସଂଖ୍ୟ ପ୍ରାଣୀଙ୍କ ଠିକଣା ପାଇବ କିଏ ? ପ୍ରତ୍ୟେକ ପ୍ରାଣୀର ଅଳ୍ପେ ବହୁତେ ଜ୍ଞାନ ରହିଥାଏ । ଏହି ନବଖଣ୍ଡ ପୃଥ୍ୱୀ ଏବଂ ଏହାର ଚାରିଆଡ଼େ ବ୍ୟାପି ରହିଥିବା ସପ୍ତ ସାଗରର ବିଶାଳତାକୁ କଳନା କରିବ କିପରି ? ସମୁଦ୍ରରେ ଅସଂଖ୍ୟ ଜୀବ ରହିଥାଆନ୍ତି । ଯେଉଁଠି ଜଳ, ସେଇଠି ଜୀବନ । ପୃଥ୍ୱୀ ଗର୍ଭରେ ମଧ୍ୟ ଜଳ ଭରି ରହିଛି । ତଳେ ମଧ୍ୟ ଅସଂଖ୍ୟ ଜୀବ । କେତେକ ପକ୍ଷୀ ପକ୍ଷ ବାହାରିବାମାତ୍ରେ ଆକାଶରେ ଉଡ଼ିଥାଆନ୍ତି । ପୁଣି ଫେରି ଆସି ପୃଥିବୀରେ ରହନ୍ତି । ପୃଥ୍ୱୀରେ ଖେଚର, ଭୂଚର, ବନଚର, ଜଳଚର ଆଦି ୮୪ ଲକ୍ଷ ପ୍ରକାରର ଅଗଣିତ ପ୍ରାଣୀର ସନ୍ଧାନ ପାଇବା ସମ୍ଭବ ନୁହେଁ । ପ୍ରତ୍ୟେକ ଜୀବ କେବଳ କଳ୍ପନାରୁ ଉତ୍ପନ୍ନ ହୋଇଥାଆନ୍ତି । କେତେକ ତାପସ-ସାମର୍ଥ୍ୟରୁ ହୋଇଥାଆନ୍ତି । ଅନେକ ଇଚ୍ଛାମାତ୍ରେ ହୋଇଥାଆନ୍ତି । କେହି ଶାପଭ୍ରଷ୍ଟ ହୋଇ ଜନ୍ମଗ୍ରହଣ କରିଥାଆନ୍ତି । ପ୍ରତ୍ୟେକ ଦେବ ମାୟାବୀ । ପ୍ରତ୍ୟେକ ଦେବତା ଅନେକ ଦେହ ଧାରଣ କରିଥାଆନ୍ତି । କ୍ରୋଧ, ତାପ, ଉତ୍ତପରୁ କେତେକ ଦେହ ଉତ୍ପନ୍ନ ହୋଇଥାଏ ।

ଭଗବାନଙ୍କ ଲୀଳା ବଡ଼ ବିଚିତ୍ର । ତାଙ୍କରି ମାୟା ବଳରୁ ହିଁ ଏ ସବୁ ହୋଇଥାଏ । ସୃଷ୍ଟି ରଚନା ଭଗବାନଙ୍କ ବିଚିତ୍ର କାରିଗରୀ । କିନ୍ତୁ ମନୁଷ୍ୟ ଜୀବନ-ନିର୍ବାହ ସମ୍ପର୍କରେ ସ୍ୱଳ୍ପଜ୍ଞାନ ଲାଭ କରି ନିଜକୁ ଜ୍ଞାତା ବୋଲି ଅଭିମାନ କରିଥାଏ । ବାସ୍ତବରେ ସବୁ ପ୍ରାଣୀ ମଧ୍ୟରେ ସର୍ବାତ୍ମଭାବରେ ବ୍ୟାପ୍ତ ଅନ୍ତରାତ୍ମା ହିଁ ସର୍ବଜ୍ଞାତା । ଏହାଙ୍କ ମହିମାକୁ ମାନବୀ ବୁଦ୍ଧି ଦ୍ୱାରା କଳନା କରାଯାଇପାରିବ କିପରି ?

ଆମର ପିଣ୍ଡ (ଶରୀର)ରେ ମଧ୍ୟ ଅନେକ ଜୀବଜନ୍ତୁ ରହିଥାଆନ୍ତି । ସେ ସମ୍ପର୍କରେ ତ ଆମର ଜ୍ଞାନ ନାହିଁ, ସମଗ୍ର ବ୍ରହ୍ମାଣ୍ଡର ଜୀବଜଗତ ସମ୍ପର୍କରେ ଜ୍ଞାନ ହେବ କିପରି ? ମନୁଷ୍ୟ ଅଳ୍ପ ଜ୍ଞାନରେ ମଧ୍ୟ ଅହଂକାରୀ ଓ ଉଚ୍ଛୃଙ୍ଖଳ ହୋଇଥାଏ । ସେ ଭାବେ ସୂକ୍ଷ୍ମ ତୁଳନାରେ ମନୁଷ୍ୟ ଏକ ବିରାଟ ପୁରୁଷ । ସେମାନଙ୍କ ତୁଳନାରେ ମନୁଷ୍ୟର ଆୟୁଷ କେତେ ବେଶି ? ପରମେଶ୍ୱରଙ୍କ ଲୀଳା ବିଚିତ୍ର । ଏହି ବିଚିତ୍ର ଲୀଳା ଅନୁମାନ କରିବା କଠିନ । ଦୁଷ୍ଟ ଅହଂକାରୀ ଜୀବକୁ

ସେ ନାନା ଭାବରେ ନଚାଇଥାଆନ୍ତି । ତେଣୁ ଅହଂକାରକୁ ଛାଡ଼ି ପରମାତ୍ମାଙ୍କ ଗୁଣକୀର୍ତ୍ତନ କରିବା ଉଚିତ । ଅଳ୍ପ ଆୟୁ, କ୍ଷଣଭଙ୍ଗୁର ଦେହ, କାହା ଉପରେ ଭରସା କରାଯାଇ ନ ପାରେ । ତୁମର କ'ଣ ଅଛି ଯେ ଅହଂକାର କରିବ ? ଏ ଦେହ ଅପବିତ୍ର ଏବଂ ଆଧିବ୍ୟାଧିରେ ପୀଡ଼ିତ । ଲୋକେ ଏ ଦେହ ପାଇଁ ବୃଥା ଅହଂକାର କରିଥାଆନ୍ତି । କାୟା ମାୟା ସବୁ ଦୁଇ ଦିନର ଖେଳ । ଏହା କେବଳ ଭେଲିକି । ଲୋକେ ନିଜ ଶରୀରକୁ ନାନା ବସ୍ତ୍ର ଓ ଅଳଙ୍କାରରେ ସଜେଇଥାଆନ୍ତି, କିନ୍ତୁ ମୃତ୍ୟୁ ବେଳକୁ ଲଙ୍ଗଳା ଫୁଙ୍ଗୁଳା ହୋଇ ଯାଇଥାଆନ୍ତି । ମୃତ୍ୟୁପରେ ଶରୀର ଦୁର୍ଗନ୍ଧ ହୋଇ ପଡ଼ିଥାଏ । ବିବେକ ସହିତ ଯିଏ ଏସବୁ ଚିନ୍ତା କରିଥାଏ ସିଏ ଧନ୍ୟ । ବ୍ୟର୍ଥ ଝଗଡ଼ା ନ କରି ଅହଂକାରକୁ ଛାଡ଼ି ବିବେକପୂର୍ବକ ବ୍ରହ୍ମ ଅନୁସନ୍ଧାନ କରିବା ହିଁ ସର୍ବୋତ୍ତମ ପନ୍ଥା ।

## ନବମ ସମାସ
## ॥ ପିଣ୍ଡୋତ୍ପତ୍ତି ନିରୂପଣ ॥

ଅସଂଖ୍ୟ ପ୍ରାଣୀ ଉତ୍ପନ୍ନ ହୁଅନ୍ତି ଏବଂ ମରନ୍ତି । ସମସ୍ତଙ୍କ ବିକାଶ ଜଳତତ୍ତ୍ୱରୁ ହିଁ ହୋଇଥାଏ । ଅନ୍ତରାତ୍ମା ସହିତ ସମଗ୍ର ଶରୀର ପଞ୍ଚତତ୍ତ୍ୱର ଏକ ପୁଟୁଳି; କିନ୍ତୁ ଏହାର ମୂଳତତ୍ତ୍ୱ ହେଉଚି ଜଳ । ଅନ୍ନରସରୁ ଦେହରସ ଏବଂ ଦେହ ରସରୁ ରକ୍ତ ଏବଂ ଶୁକ୍ର ଆଦି ଧାତୁ ପ୍ରସ୍ତୁତ ହୋଇଥାଏ । ପରେ ଏହି ଶୁକ୍ର ଧାତୁରୁ ହିଁ ଶିଶୁର କୋମଳ ଶରୀର ପ୍ରସ୍ତୁତ ହୋଇଥାଏ । ପରେ କଠିନ ଅବୟବାଦି ଏହି ଜଳତତ୍ତ୍ୱରୁ ଆକାର ଗ୍ରହଣ କରୁ କରୁ କ୍ରମଶଃ ପୂର୍ଣ୍ଣ ଶିଶୁ ରୂପରେ ପ୍ରକଟିତ ହୋଇଥାଏ । ଜନ୍ମଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ସବୁ ଜୀବର ଏକକ୍ରମ । ଜଳରୁ ବୃକ୍ଷ ଆଦି ବୀଜ ଅଙ୍କୁରିତ ହୋଇ ଚେର ତଳେ ବା ପାତାଳରେ ଏବଂ ଡାଳ ପତ୍ର ପୁଷ୍ପ ଫଳ ଆଦି ବାହାରେ ବିସ୍ତାରିତ ହୋଇଥାଏ । ଫଳଠୁ ଆରମ୍ଭ କରି ଚେର ପର୍ଯ୍ୟନ୍ତ ବିଚାର କଲେ ଫଳ ଆଗରୁ ପୁଷ୍ପ, ପୁଷ୍ପ ଆଗରୁ ପତ୍ର, ପତ୍ର ଆଗରୁ ଡାଳ ଏବଂ ଡାଳ ଆଗରୁ ମୂଳର ଉତ୍ପତ୍ତି ହୋଇଥାଏ । ମୂଳର ପୋଷଣକାର୍ଯ୍ୟ ଜଳଦ୍ୱାରା ହୋଇଥାଏ ଏବଂ ଜଳକୁ ପୃଥିବୀ ଧାରଣ କରିଥାଏ । ତେଣୁ ପୃଥ୍ୱୀ ହେଉଚି ସବୁର ମୂଳଧାର । ପଛରୁ ହିସାବ କଲେ ପୃଥ୍ୱୀ ଆଗରୁ

ଜଳ, ଜଳ ପୂର୍ବରୁ ଅଗ୍ନି (ତେଜ), ଅଗ୍ନି ଆଗରୁ ବାୟୁ ଏବଂ ବାୟୁ ଆଗରୁ ଆକାଶ ଅର୍ଥାତ୍ ଅନ୍ତରାତ୍ମାଙ୍କ ସ୍ୱଭାବ ରହିଥାଏ । ତାତ୍ପର୍ଯ୍ୟ ହେଉଚି ସମସ୍ତଙ୍କର ମୂଳ ଅନ୍ତରାତ୍ମା ।

ଯିଏ ଏହି ସର୍ବଭୂତରେ ଅବସ୍ଥିତ ଅନ୍ତରାତ୍ମାଙ୍କୁ ଚିହ୍ନି ନ ଥାଏ ସେ ହେଉଚି ଦୁରାତ୍ମା । ଯିଏ ଏହି ଅନ୍ତରାତ୍ମାଙ୍କୁ ଅନୁଭବ କରି ପାରେ ନାହିଁ ସେ 'କୋଳରେ ପିଲାଥାଇ ଗାଁଟା ଯାକ ମୋ ପିଲା ଗଲା କୁଆଡ଼େ' ବୋଲି ରଡ଼ି ଛାଡ଼ିବା ଭଳି ଭ୍ରାନ୍ତ । ଏହି ଭ୍ରମ ଯୋଗୁଁ ମନୁଷ୍ୟ ଦେବଦୁର୍ଲ୍ଲଭ ନରଦେହକୁ ବୃଥାରେ ନଷ୍ଟ କରି ଦେଇଥାଏ । ତେଣୁ ସମସ୍ତେ ଅନ୍ତର୍ଯ୍ୟାମୀ ଅନ୍ତରାତ୍ମା ସହିତ ଅନନ୍ୟ ହୋଇ ରହିବା ଲାଗି ଉଦ୍ୟମ ତଥା ଅଭ୍ୟାସ କରିବା ଉଚିତ । ଏହା କରିବା ଦ୍ୱାରା ପ୍ରକୃତି ବା ସ୍ୱଭାବ ମଧ୍ୟ ବଦଳିବା ଆରମ୍ଭ ହୋଇଥାଏ । ଏହାଦ୍ୱାରା ଆମର ଧ୍ୟାନ ଓ ନିଦିଧ୍ୟାସ ଭଂଗ ହୋଇ ନ ଥାଏ କିମ୍ବା ଚାଲିଚଳନରେ କୌଣସି ତ୍ରୁଟି ହୋଇନଥାଏ ।

ଏହି ସର୍ବାନ୍ତର୍ଯ୍ୟାମୀ ଅନ୍ତରାତ୍ମା ନାରାୟଣଙ୍କୁ ସର୍ବଦା ସ୍ମରଣ କରିବା ଉଚିତ । ଯେଉଁଠି ନାରାୟଣ, ସେଇଠି ଲକ୍ଷ୍ମୀ । ଲକ୍ଷ୍ମୀ ଚଞ୍ଚଳା ହେଲେ ମଧ୍ୟ ନାରାୟଣ ସ୍ମରଣକାରୀକୁ କେବେହେଲେ ଛାଡ଼ି ଯାଇ ନଥାନ୍ତି । ସାରା ସଂସାରରେ ନାରାୟଣ ବିଦ୍ୟମାନ । ସବୁ ପ୍ରାଣୀଙ୍କଠାରେ ନାରାୟଣଙ୍କୁ ଦେଖିବା ଅର୍ଥାତ୍ ଅନ୍ତରାତ୍ମାକୁ ଦେଖିବା ଦ୍ୱାରା ଚିରଶାନ୍ତି ମିଳିଥାଏ । ଏହାହିଁ ନାରାୟଣ-ପୂଜା । ଉପାସନା ଅର୍ଥାତ୍ ସମସ୍ତ ପ୍ରାଣୀଙ୍କୁ ସୁଖ ଦେବା ହିଁ ନାରାୟଣ ସେବା । ଶିବନାଥଙ୍କ ଦର୍ଶନ ଓ ସେବାହିଁ ପ୍ରକୃତ ଉପାସନା । ଯାହା କିଛି ଦେଖାଯାଉଛି ସବୁ ହେଉଚି ପ୍ରଭୁଙ୍କ ରୂପ— ଏହି ଭାବନାରେ ଲୋକମଙ୍ଗଳ ଲାଗି ଯେଉଁ କାର୍ଯ୍ୟ କରାଯିବ ସେସବୁ ହେବ ପ୍ରଭୁଙ୍କ ଉପାସନା ସହିତ ସମାନ । କର୍ମୋପାସନା ମଧ୍ୟ ଏହିଭଳି ।

ଏହିଭଳି ଭାବେ ଅନ୍ତରାତ୍ମା-ନାରାୟଣଙ୍କ ଉପାସନା କ୍ରମଶଃ ବଢ଼ି ବଢ଼ି ଅନ୍ତରକୁ ମୂଳମାୟାତୀତ ନିଂରଜନ, ନିର୍ଗୁଣ, ବିମଳ ବ୍ରହ୍ମଠାରେ ପହଞ୍ଚାଇ ଦେଇଥାଏ । ସମସ୍ତ କ୍ରିୟା-କାଣ୍ଡ, ଧ୍ୟାନ ସମାଧି ଆଦି କେବଳ ଏହି ଅନ୍ତରାତ୍ମା ନାରାୟଣ ଲାଗି । ଉପାସନା ହେଉଚି ତାଙ୍କର, ଉପାସକ ମଧ୍ୟ ସିଏ । ଏହାର ପ୍ରାପ୍ତି ଲାଗି ଜ୍ଞାନୀ ଓ ଜ୍ଞାନ ନିମିତ୍ତ ମାତ୍ର । ଅନେକ ଶାସ୍ତ୍ର ଓ ପୁରାଣରେ ମଧ୍ୟ

ଏହାଙ୍କର ବିସ୍ତୃତ ବର୍ଣ୍ଣନା ରହିଛି । ସବୁ ହେଉଚି ଏହାଙ୍କ ମହିମା । ନିଜର ଅଧିକାର ଅନୁସାରେ ଏହାଙ୍କ ଅନୁସନ୍ଧାନ ଲାଗି ଉଦ୍ୟମଶୀଳ ହେବା ଆମର ଏକମାତ୍ର କର୍ତ୍ତବ୍ୟ । ଆବାହନ (ମୂଳମାୟାରୁ ବ୍ରହ୍ମାଣ୍ଡର ଉତ୍ପତ୍ତି) ଓ ବିସର୍ଜନ (ବ୍ରହ୍ମାଣ୍ଡର ସଂହାର) କିପରି ହୋଇଥାଏ— ନିର୍ବିକାର, ଅଲିପ୍ତ ଓ ଅନାସକ୍ତ ଦୃଷ୍ଟିରେ କେବଳ ଦ୍ରଷ୍ଟା ଭାବରେ ଦେଖିବା ହେଉଚି ପରବ୍ରହ୍ମ ପରମାତ୍ମାଙ୍କ ଉପାସନା । ଏହା ହେଲା ପୂର୍ବପକ୍ଷ । ଏହା ପରେ ସିଦ୍ଧାନ୍ତ ଅନୁସାରେ ଶାସ୍ତ୍ର, ଗୁରୁ ଏବଂ ସ୍ୱୟଂ ନିଜର ପ୍ରତୀତି (ଅନୁଭବ) ଦ୍ୱାରା ପ୍ରାଣୀମାତ୍ରେ ଏକାତ୍ମତାକୁ ଚିହ୍ନିବା ଏବଂ ଅନ୍ତତଃ ପଞ୍ଚୀକରଣଦ୍ୱାରା ପିଣ୍ଡ ବ୍ରହ୍ମାଣ୍ଡର ବିଚାର କରି ଏ ସମ୍ପର୍କରେ 'ଅନୁଭବ'କୁ ମଧ୍ୟ ତ୍ୟାଗ କରି ମହାବାକ୍ୟ ଓ ବିବେକଦ୍ୱାରା ବ୍ରହ୍ମସ୍ୱରୂପରେ ଲୀନ ହେବା ହିଁ ସର୍ବଶ୍ରେଷ୍ଠ ସ୍ଥିତି ଅର୍ଥାତ୍ ମୁକ୍ତାବସ୍ଥା । ଏହାକୁ ହିଁ କୁହାଯାଏ ସହଜ ସମାଧି ।

## ଦଶମ ସମାସ
## ।। ସିଦ୍ଧାନ୍ତ ଲକ୍ଷଣ ।।

ଘଟାକାଶରେ ସବୁକିଛି ଘଟିତ ହୋଇ ରହିଥାଏ; କିନ୍ତୁ ଆକାଶ ଭଳି କେହି ସ୍ଥାୟୀ ହୋଇ ରହିନଥାନ୍ତି । ସେହିଭଳି ନିଶ୍ଚଳ ପରବ୍ରହ୍ମରେ ଚଞ୍ଚଳମାୟା ସ୍ଥାୟୀ ଭାବେ ରହିପାରେନା । ଘନ ଅନ୍ଧାରରେ ଆକାଶ କଳା ଦେଖାଯାଇଥାଏ ଏବଂ ସୂର୍ଯ୍ୟ କିରଣରେ ଏହା ହଳଦିଆ ଦେଖାଯାଏ । ବରଫପାତ ହେବାମାତ୍ରେ ଆକାଶ ଶୀତଳ ମନେହୁଏ; ଗ୍ରୀଷ୍ମ ଋତୁରେ ତପ୍ତ ମଧ୍ୟାହ୍ନରେ ମନେହୁଏ ଆକାଶ ଯେପରି ଶୁଖିଯାଇଛି, କିନ୍ତୁ ଆକାଶ ଏସବୁ ସ୍ଥିତିର ଉର୍ଦ୍ଧ୍ୱରେ । ଏଥିରେ କୌଣସି ପରିବର୍ତ୍ତନ ହୋଇନଥାଏ ।

ଆକାଶ ଅଖଣ୍ଡ ଓ ନିରାଭାସ । ସମସ୍ତ ଆଭାସ ମିଥ୍ୟା । ସେହିଭଳି ଜଳ ବାୟୁ ଆଦି ତତ୍ତ୍ୱ ବାହାରେ ବିସ୍ତାରଲାଭ କରିଥିଲେ ମଧ୍ୟ ଏହା ଭାସିତ ହୋଇଥାଏ, କିନ୍ତୁ ମୂଳରୂପରେ ଏହା ନିରାଭାସ । ଚଞ୍ଚଳ କିଏ, ନିଶ୍ଚଳ କିଏ ଏହାର ଅନୁସଂଧାନ କରିବାକୁ ଲାଗିଲେ ଏହା ଧୀରେ ଧୀରେ ଅନୁଭୂତ ହୋଇଥାଏ । ବିବେକଦ୍ୱାରା ତତ୍ତ୍ୱବିଚାର କରୁ କରୁ ନିବୃତ୍ତି ପଦରେ ସ୍ଥିତ

ହେବାପରେ କେହି ସେଥିରୁ ବିଚଳିତ ହୋଇନଥାଏ । ପରମାତ୍ମାଙ୍କ ଅନୁସଂଧାନ ଦ୍ୱାରା ହିଁ ମନୁଷ୍ୟ ଚଞ୍ଚଳରୁ ନିଶ୍ଚଳ ହୋଇଥାଏ । ତାପରେ ଭକ୍ତ ଓ ଭଗବାନ-ଏହି ଦ୍ୱୈତ ଭାବନା ଲୋପ ପାଇଥାଏ । ଅଜ୍ଞାନ-ବୃତ୍ତି ସହିତ ଜ୍ଞାନ-ବୃତ୍ତି ମଧ୍ୟ ନଷ୍ଟ ହୋଇ କେବଳ ନିବୃତ୍ତିପଦ ଶେଷ ରହିଥାଏ । ଏଥିରେ ଆଉ ଚଞ୍ଚଳତା ରହେନାହିଁ । ଏହାହିଁ ମୁଖ୍ୟ ଶକ୍ତିପାତ ।

ମହାବାକ୍ୟ (ତତ୍ତ୍ୱମସି)ର ଅଧିକାର କେବଳ ସନ୍ନ୍ୟାସୀର । ଯାହାପ୍ରତି ପ୍ରଭୁଙ୍କ କୃପା ହୋଇଥାଏ କେବଳ ସେ ଏହାର ବିବରଣ କରିପାରେ । ଯିଏ ଷଡ଼ରିପୁ (କାମ, କ୍ରୋଧ, ଲୋଭ, ମୋହ, ମଦ ଏବଂ ମତ୍ସର) ନ୍ୟାସ (ତ୍ୟାଗ) କରିଥାଏ ସିଏ ହିଁ ପ୍ରକୃତ ସନ୍ନ୍ୟାସୀ । ସେ ଜିତେନ୍ଦ୍ରିୟ, ବାସନାରହିତ, ବିବେକୀ ପୁରୁଷ । ଏଭଳି ବିବେକୀ ପୁରୁଷ ନିଃସଙ୍ଗ ରହିଥାଏ । ସେ ସଂସାରର ସମସ୍ତ କାର୍ଯ୍ୟ କରୁଥିଲେ ମଧ୍ୟ ନିର୍ଲିପ୍ତ ରହିଥାଏ । ଏହାର ବିପରୀତରେ ଦେହାଭିମାନୀର ଦେହାଭିମାନହିଁ ବଢ଼ିବାରେ ଲାଗିଥାଏ ।

ବ୍ରହ୍ମବସ୍ତୁ ଆକାଶଭଳି ଶବ୍ଦାତୀତ, କଳ୍ପନାତୀତ ଏବଂ ମନ ଓ ବୁଦ୍ଧିର ଅତୀତ । ଅନ୍ତର୍ଯ୍ୟାମୀଙ୍କୁ ବିଚାର କଲେ ଏହା ଅନୁଭୂତ ହୋଇଥାଏ । ପୁଣି ଅନୁଭବ -କଥା ମଧ୍ୟ ବ୍ୟର୍ଥ ହୋଇଯାଇଥାଏ । ଅନୁଭବ ମଧ୍ୟ ବ୍ରହ୍ମ ପଦରେ ସମାପ୍ତ ହୋଇଥାଏ । ତେଣୁ ଏହି ଅନ୍ତରାତ୍ମା ପରବ୍ରହ୍ମଙ୍କ ସୂକ୍ଷ୍ମତମ ଅନୁଭବକୁ ଶବ୍ଦ ଦ୍ୱାରା ବର୍ଣ୍ଣନା କରାଯିବ କିପରି ? ଜ୍ଞାନୀ ଶାଶ୍ୱତ ବସ୍ତୁର ଅନୁସନ୍ଧାନ କରି କରି ଜ୍ଞାନ ସ୍ୱରୂପ ହୋଇଯାଏ । ବିକାର ତ୍ୟାଗ ଦ୍ୱାରା ନିର୍ବିକାରରେ ଲୀନ ହୋଇଯାଇଥାଏ । ଜାଗୃତିରେ ଦୁଃସ୍ୱପ୍ନ ଖଣ୍ଡିତ ହୋଇଯାଇଥାଏ । ପୁରାତନ ସ୍ମୃତିସବୁ ମିଥ୍ୟା ପ୍ରତୀତ ହୋଇଥାଏ ।

ପ୍ରାରବ୍ଧ ଯୋଗୁଁ ବ୍ରହ୍ମଲୀନ ଜ୍ଞାନୀର ଶରୀର ରହୁ ବା ନରହୁ ସେଥିପ୍ରତି ଚିନ୍ତା ନଥାଏ । ଜ୍ଞାନୀର ବାସନା ବୀଜ ଜ୍ଞାନାଗ୍ନିରେ ଜଳିପୋଡ଼ି ବିଲୁପ୍ତ ହୋଇଯାଇଥାଏ । ଏହା ପୁଣି ଅଙ୍କୁରିତ ହୁଏ ନାହିଁ । କେବଳ ବୁଦ୍ଧିଦ୍ୱାରା ଆତ୍ମ-ଚିନ୍ତନ କରିବାମାତ୍ରେ ସେ କୃତକାର୍ଯ୍ୟ ହୁଏ । ପଞ୍ଚଭୌତିକ ବସ୍ତୁପ୍ରତି ଯାହାର ଧ୍ୟାନ ରହିଥାଏ ସେ ପଞ୍ଚଭୌତିକ ସଂସାରରେ ଲଟପଟ ହୋଇ ଜନ୍ମମୃତ୍ୟୁ ଚକ୍ରରେ

ଘାଣ୍ଟି ହୋଇଥାଏ । ଯିଏ ଚଞ୍ଚଳ ଅନ୍ତରାତ୍ମାକୁ ଧ୍ୟାନ କରେ ସେ ଚଞ୍ଚଳ ଏବଂ ଯିଏ ନିଶ୍ଚଳ ପରମାତ୍ମାଙ୍କୁ ଧ୍ୟାନ କରେ ସେ ନିଶ୍ଚଳ ପରମପଦ ଲାଭ କରିଥାଏ । ଯାହାର ନିଶ୍ଚଳ ବ୍ରହ୍ମର ପରମଲାଭ ହୁଏ, ସେହିଭଳି ଅନ୍ତର୍ନିଷ୍ଠ ଜ୍ଞାନୀକୁ ମିଥ୍ୟାମାୟା କୌଣସିମତେ ଆକୃଷ୍ଟ କରିପାରେ ନାହିଁ । ମିଥ୍ୟାମାୟାର ବୋଧ ବା ଜ୍ଞାନ ହେବା ମାତ୍ରେ ସେ ମାୟାର ଭୟରେ ଅଭୟ ହୋଇଉଠେ । ଏହି ପରମଲାଭ ହିଁ ପରମାତ୍ମାଙ୍କ ଉପାସନା । ଘଟଘଟରେ ବ୍ୟାପ୍ତ ପରମାତ୍ମାଙ୍କ ଉପାସନା ଏହାକୁ ହିଁ କୁହାଯାଏ । ସଦ୍‌ଭକ୍ତମାତ୍ରେ ଏହାକୁ ହିଁ ଉପାସନା ମାର୍ଗ ଭାବରେ ଗ୍ରହଣ କରିଥାଆନ୍ତି ।

ପୂର୍ବ ସମାସରେ ଅନ୍ତରାତ୍ମାଙ୍କ ଆବାହନ (ଉତ୍ପତ୍ତିର ବର୍ଣ୍ଣନା) କରିଥିଲି । ଏହି ସମାସରେ ବିସର୍ଜନ ବା ସଂହାରର ବର୍ଣ୍ଣନା କରାଗଲା । ଶବ୍ଦ ମାଧ୍ୟମରେ ଅପାଣମାନଙ୍କୁ ଆଉ କ'ଣ ବା କୁହାଯାଇପାରିବ ? ଅନ୍ତର୍ମୁଖ ହୋଇ ଅର୍ଥାତ୍ ଅର୍ନ୍ତଦୃଷ୍ଟି ସହିତ ସବୁକଥାକୁ ଅନୁଭବ କରିବା ଦ୍ୱାରା ସଦ୍‌ବସ୍ତୁ ସଂପର୍କରେ ଜ୍ଞାନ ହୋଇପାରିବ ।



# ଷୋଡ଼ଶ ଦଶକ

## ପ୍ରଥମ ସମାସ
## ।। ମହର୍ଷି ବାଲ୍ମୀକି ସ୍ତୁତି ।।

ବକ୍ତା କହୁଛନ୍ତି— ଋଷିମାନଙ୍କ ମଧ୍ୟରେ ପୁଣ୍ୟଶ୍ଳୋକ ତ୍ରୈଲୋକ୍ୟପାବନ ବାଲ୍ମୀକି ଋଷି ଧନ୍ୟ । ଆଜିକାଲି ସଂସାରରେ ଏଭଳି କୌଣସି ସାହିତ୍ୟରେ ଏପରି ଉଦାହରଣ ନାହିଁ ଯେଉଁଥିରେ ଗ୍ରନ୍ଥକର୍ତ୍ତାଙ୍କ ଭବିଷ୍ୟତବାଣୀ ଶହେକେ ଶହେ ସତ୍ୟ ପ୍ରତିପାଦିତ ହୋଇପାରିଚି । ସାମାନ୍ୟ ଭବିଷ୍ୟତବାଣୀ ବାଜୁ ବାଜୁ ସତ ହୋଇଗଲେ ତାର ଡିଣ୍ଡିମ ବାଜୁଥିବା ଦେଖାଯାଏ । କିନ୍ତୁ ମହର୍ଷି ବାଲ୍ମୀକି ରାମଙ୍କ ଅବତାର ପୂର୍ବରୁ ସମଗ୍ର ରାମାୟଣ ସବିସ୍ତୃତ ଭାବେ ଲେଖି ସାରିଥିଲେ । ବାଲ୍ମୀକିଙ୍କର ଏହି ସାହିତ୍ୟ ସାଧନାକୁ ଦେଖି ଭଗବାନ ଶଙ୍କର ସନ୍ତୁଷ୍ଟ ହେବାରେ ତିନି ଲୋକରେ ରାମାୟଣ କେତେ ଯେ ପ୍ରସାର ଲାଭ କଲା ତାହା ଅକଳନୀୟ । ବାଲ୍ମୀକିଙ୍କ କାବ୍ୟପ୍ରତିଭାକୁ ଶଙ୍କର ହିଁ ଜାଣିଥିଲେ । ଅବଶ୍ୟ ଅନ୍ୟମାନେ ଏହାର ଗୂଢ଼ ଜ୍ଞାନକୁ ଜାଣିପାରନ୍ତି ନାହିଁ; ତଥାପି ରାମଭକ୍ତ ମାତ୍ରେ ଏହାକୁ ପାଠ କରି ସଂତୋଷ ଲାଭ କରିଥାଆନ୍ତି । ବାଲ୍ମୀକଙ୍କ ଭଳି କବିଶ୍ରେଷ୍ଠ ଏ ପର୍ଯ୍ୟନ୍ତ ସଂସାରରେ ଜନ୍ମ ଗ୍ରହଣ କରିନାହାନ୍ତି । ଭବିଷ୍ୟତରେ ମଧ୍ୟ ହୋଇପାରିବାଭଳି ମନେ ହେଉ ନାହିଁ ।

ପୁଣ୍ୟ କରିବା ବେଳେ ମଧ୍ୟ ଛୋଟକାଟର ପାପ ହୋଇଯାଇଥାଏ । କିନ୍ତୁ ରାମନାମରେ ଏହି ପାପ ପୁଣ୍ୟରେ ପରିଣତ ହୋଇଥାଏ । ଦୃଢ଼ ଶ୍ରଦ୍ଧାର ସହିତ ଶ୍ରୀରାମଙ୍କ ନାମସ୍ମରଣ ଦ୍ୱାରା ଅସୀମ ପୁଣ୍ୟ ହୋଇଥାଏ ।

ବାଲ୍ମୀକି ପୂର୍ବରୁ ମନୁଷ୍ୟ ହତ୍ୟା କରୁଥିଲେ । ସେ ଜଣେ ପାମର ଡାକୁ ଥିଲେ; କିନ୍ତୁ ପରେ ସେ ହେଲେ ଶ୍ରେଷ୍ଠ ଜ୍ଞାନୀ ଓ ସର୍ବବନ୍ଦନୀୟ ।

ପ୍ରଖର ବୈରାଗ୍ୟ ଓ ପଶ୍ଚାତ୍ତାପ ଫଳରେ ବାଲ୍ମୀକିଙ୍କର ସବୁ ପାପ ଭସ୍ମହୋଇ ତାଙ୍କର ପୁନର୍ଜନ୍ମ ହେଲା ଏବଂ ସେ ହୋଇ ଉଠିଲେ ପୁଣ୍ୟସ୍ୱରୂପ । ତାଙ୍କର କଠୋରତମ ତପସ୍ୟାକୁ ଦେଖି ବଡ଼ ବଡ଼ ତପସ୍ୱୀ ମଧ୍ୟ ଘବଡ଼େଇ ଗଲେ । ଏହି ତପସ୍ୟା ବଳରେ ସେ ହୋଇ ଉଠିଲେ କବୀଶ୍ୱର । ତାଙ୍କର ବାଣୀ ସଂନ୍ଦେହ ରହିତ ଏବଂ ନିଶ୍ଚୟାତ୍ମକ । ତାଙ୍କର ଅସାଧାରଣ ରାମଭକ୍ତି ଏବଂ ଧାରଣାଶକ୍ତି ଦେଖି ସାଧକମାନଙ୍କ ଆସ୍ଥା ଦୃଢ଼ ହୋଇଥାଏ ।

ସମର୍ଥ (ରାମଭକ୍ତ ରାମଦାସ)ଙ୍କ କବୀଶ୍ୱର ଋଷିଶ୍ରେଷ୍ଠ ବାଲ୍ମୀକି ଧନ୍ୟ । ତାଙ୍କୁ ମୋର ବାରମ୍ବାର ସାଷ୍ଟାଙ୍ଗ ପ୍ରଣିପାତ । ଯଦି ବାଲ୍ମୀକି ଋଷି ରାମାୟଣ ଲେଖି ନଥାଆନ୍ତେ ଆମ୍ଭେମାନେ ଏହି ପବିତ୍ର କଥା ଜାଣି ଥାଆନ୍ତେ କିପରି ? ବାଲ୍ମୀକି ଋଷି ରାମାୟଣଦ୍ୱାରା ଭଗବାନ ଶ୍ରୀରାମଙ୍କ ଯଶମହିମା ସମଗ୍ର ବ୍ରହ୍ମାଣ୍ଡରେ ଖେଳେଇ ଦେଇ ପାରିଲେ । ରାମଭକ୍ତମାତ୍ରେ ଏହାକୁ ପାଠ କରି ସୁଖୀ । ଯିଏ ଏହାକୁ ବାରମ୍ବାର ପାଠ କରିଥାଏ ତାର ଜୀବନ ସାର୍ଥକ । ବାଲ୍ମୀକ ଯେପରି ଶ୍ରେଷ୍ଠ ରାମଭକ୍ତ, ମୁଁ ସେହିଭଳି ସମସ୍ତଙ୍କର ଦାସାନୁଦାସ । ଶ୍ରୀରାମଙ୍କ କୃପାପ୍ରସାଦରୁ ହିଁ ମୁଁ ଏହି ଗ୍ରନ୍ଥ ରଚନାର ଧୃଷ୍ଟତା କରିଛି । ମତେ ଅଜ୍ଞାନୀ ମନେ କରି ଆପଣମାନେ ମୋ ତ୍ରୁଟି ଲାଗି କ୍ଷମା ଦେବେ ବୋଲି ଆଶା ।

## ଦ୍ୱିତୀୟ ସମାସ
## ।। ସୂର୍ଯ୍ୟ ସ୍ତୁତି ।।

ସବୁବଂଶ ମଧ୍ୟରୁ ସୂର୍ଯ୍ୟବଂଶ ପରମ ଓ ଶ୍ରେଷ୍ଠ । ଏହି ବଂଶର ମୂଳ ପୂର୍ବଜ ସୂର୍ଯ୍ୟନାରାୟଣଙ୍କ ଆଲୋକ ସମଗ୍ର ଭୂ-ମଣ୍ଡଳରେ ବିଚ୍ଛୁରିତ । ଚନ୍ଦ୍ରରେ କଳଂକ-କାଳିମା ରହିଛି । କୃଷ୍ଣପକ୍ଷରେ ଚନ୍ଦ୍ର କ୍ଷୀଣ ହୋଇ ଆସିଥାଏ ଏବଂ ସୂର୍ଯ୍ୟ ଆଗରେ ଏହା ନିସ୍ତେଜ ହୋଇ ପଡ଼ିଥାଏ । ତେଣୁ ସୂର୍ଯ୍ୟର ସମକକ୍ଷ କେହି ନାହିଁ ।

ସୂର୍ଯ୍ୟଠାରୁ ହିଁ ପ୍ରତ୍ୟେକ ପ୍ରାଣୀ ଆଲୋକ ପାଇଥାଆନ୍ତି । ସବୁ ପ୍ରକାରର ସରଳ, କଠିନ, ଭଲମନ୍ଦ, ଧର୍ମକର୍ମ ଏବଂ ବ୍ରତନିୟମାଦି ସୂର୍ଯ୍ୟଙ୍କ ଯୋଗୁଁ ସଂପନ୍ନ ହୋଇଥାଏ । ବେଦଶାସ୍ତ୍ର, ପୁରାଣ, ମଂତ୍ର ତଂତ୍ର, ଅନେକ ପ୍ରକାରର ସାଧନା, ସ୍ନାନ ସଂଧ୍ୟା, ଜପ-ଧ୍ୟାନ, ନାନାପ୍ରକାରର ଯୋଗ ଏବଂ ସାଂସାରିକ ଓ

ପରମାର୍ଥିକ ସମସ୍ତ କାର୍ଯ୍ୟ ସୂର୍ଯ୍ୟୋଦୟ ଅନୁସାରେ ଚାଲିଥାଏ । ସୂର୍ଯ୍ୟଙ୍କ ଅଧିଷ୍ଠାନ ନେତ୍ର । ନେତ୍ରବିନା ସବୁ ଅନ୍ଧକାର । ସୁରଦାସ ପ୍ରଭୃତି ଅନ୍ଧଭକ୍ତ ମଧ୍ୟ କାବ୍ୟ ରଚନା କରିଥାଆନ୍ତି । କିନ୍ତୁ ସେମାନଙ୍କ ବୁଦ୍ଧିକୁ ଆଲୋକ ଦିଏ ଏହି ସୂର୍ଯ୍ୟ । ବୁଦ୍ଧିରେ ଉଷ୍ଣତା (ତେଜ) ନ ରହିଲେ ଏହା ପ୍ରକାଶିତ ହେବ କିପରି ? ଉଷ୍ଣ ଆଲୋକ ସୂର୍ଯ୍ୟଠାରୁ ଏବଂ ଶୀତଳ କିରଣ ଚନ୍ଦ୍ରଠାରୁ ମିଳିଥାଏ । ଶରୀରରେ ଉଷ୍ଣତା ନ ରହିଲେ ଏହା ଜୀବିତ ରହିନପାରେ । ତେଣୁ ସୂର୍ଯ୍ୟବିନା ସଂସାରର ଅସ୍ତିତ୍ୱ ଅସମ୍ଭବ ।

ପୃଥିବୀରେ ହରିହର ଓ ଶିବଶକ୍ତିର ବହୁ ଅବତାର ହୋଇ ସାରିଲାଣି; କିନ୍ତୁ ଏମାନଙ୍କ ପୂର୍ବରୁ ସୂର୍ଯ୍ୟ ଥିଲେ ଏବଂ ଆଜିକାଲି ଯେଉଁ ଦେହଧାରୀ ସଂସାରକୁ ଆସୁଛନ୍ତି, ସେମାନଙ୍କ ସାରାଜୀବନ ଏହି ସୂର୍ଯ୍ୟର ପ୍ରଭାବରେ ହିଁ ଚଳି ଆସୁଛି । ସୂର୍ଯ୍ୟ ରହିଛି, କିନ୍ତୁ ସମସ୍ତେ ମରଣଧର୍ମୀ । ତେଣୁ ସୂର୍ଯ୍ୟ ହିଁ ସମଗ୍ର ବିଶ୍ୱର ନେତ୍ର । ସୂର୍ଯ୍ୟ ଆଲୋକର ଅଭାବରେ ସର୍ବଦା ଅନ୍ଧକାର ରହିଲେ ମନୁଷ୍ୟର ସାର ଅସାର ବିବେକ ନଷ୍ଟ ହୋଇଯିବ । ସୂର୍ଯ୍ୟ ଭଗବାନ ସର୍ବୋପକାରକ । ସୂର୍ଯ୍ୟ ରଘୁକୁଳଭୂଷଣ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ପୂର୍ବଜ । ପାମର ମନୁଷ୍ୟ ଏହାଙ୍କ ଅଗାଧ ମହିମାକୁ ବର୍ଣ୍ଣନା କରିବ କିପରି ?

ରଘୁବଂଶ ଅନାଦି ଓ ମହାନ୍ । ଏହି ବଂଶରୁ ଏକାଧିକ ବିଭୂତିସଂପନ୍ନ ଯୋଗଜନ୍ମାଙ୍କ ଜନ୍ମ ହୋଇଛି । ଏଭଳି ପବିତ୍ର ବଂଶର କେତେ ବା ବର୍ଣ୍ଣନା କରାଯାଇପାରିବ ? ରାମଭକ୍ତ ସମ୍ମିଳନୀରେ ମୋ ଚିତ୍ତ ଲାଗି ରହିଥାଉ । ଭଗବାନ ସୂର୍ଯ୍ୟଙ୍କୁ ପ୍ରତିଦିନ ନମସ୍କାର କଲେ ସର୍ବଦୋଷ ଖଣ୍ଡନ ହୋଇଥାଏ । ନିତ୍ୟ ସୂର୍ଯ୍ୟଦର୍ଶନ ଓ ନମସ୍କାର ଦ୍ୱାରା ମନ ପ୍ରଫୁଲ୍ଲ ରହେ ।

## ତୃତୀୟ ସମାସ
## ॥ ପୃଥିବୀ-ସ୍ତୁତି ॥

ଏ ପୃଥିବୀ ଧନ୍ୟ । ଏହାର ମହିମା ମଧ୍ୟ ଅପାର । ସମସ୍ତ ପ୍ରାଣୀ ଏହା ସାହାଯ୍ୟରେ ଜୀବିତ । କେତେ ପ୍ରାଣୀ ଅନ୍ତରୀକ୍ଷରେ ଉଡ଼ି ବୁଲୁଥିଲେ ମଧ୍ୟ ସେମାନଙ୍କ ଆଶ୍ରୟ ଓ ବିଶ୍ରାମ ସ୍ଥଳ ଏହି ପୃଥିବୀ । ଏମାନଙ୍କ ଦେହ ପୃଥିବୀରେ

ଜାତ । ପୃଥିବୀ ଉପରେ ଲୋକେ ନିଆଁ ଜାଳନ୍ତି, ଏହାକୁ ଚଷୁଚନ୍ତି, ଖୋଳୁଚନ୍ତି, ଏହାଉପରେ ମଳମୂତ୍ର ମଧ ତ୍ୟାଗ କରୁଛନ୍ତି । ଗରମ, ଶୀତଳ, ତରଳ ପଦାର୍ଥ ମଧ ଏହା ଉପରେ ଢଳାଯାଏ । ମୃତ୍ୟୁପରେ ଶବକୁ ମଧ ଏହା ଉପରେ, ଭିତରେ ରଖାଯାଉଛି । ତେଣୁ ଭଲ ମନ୍ଦ ସବୁର ଆଧାର ଏହି ପୃଥ୍ୱୀ । ପୃଥିବୀର ଗର୍ଭରେ ନାନା ପ୍ରକାରର ଧାତୁ ମଧ ରହିଛି । ଏହା ଉପରେ ଜଣେ ଅନ୍ୟକୁ ହତ୍ୟା ମଧ କରୁଛି । ସବୁ ସହି ନେଉଛି ପୃଥିବୀ । ତାଛଡ଼ା ପୃଥିବୀ ଯିବ କୁଆଡ଼େ ?

ପୃଥିବୀ ଉପରେ ବହୁ ପୁରପଲ୍ଲୀ ଅବସ୍ଥିତ । ଦେବ, ଦାନବ, ମାନବ ସମସ୍ତେ ପୃଥିବୀନିବାସୀ । ଅନେକ ପ୍ରକାରର ରତ୍ନ, ହୀରା, ସ୍ୱର୍ଣମଣି ପ୍ରଭୃତି ବହୁ ମୂଲ୍ୟବାନ ଧାତୁ ଏହି ପୃଥିବୀ ଉଦରରେ ରହିଛି । ମେରୁ, ମନ୍ଦିର, ହିମାଚଳ ପ୍ରଭୃତି ଛୋଟ ବଡ଼ ବହୁ ପର୍ବତ ଏବଂ ନାନା ପ୍ରକାରର ପଶୁପକ୍ଷୀ ରହିଛନ୍ତି ପୃଥିବୀରେ ।

ନାନା ପ୍ରକାରର ଧାତୁର ଖଣି, ରତ୍ନଭଣ୍ଡାର, କଳ୍ପତରୁ, ଚିନ୍ତାମଣି, ଅମୃତକୁଣ୍ଡ, ଅନେକ ଦ୍ୱୀପ ଦ୍ୱୀପାନ୍ତର, ଭୂଖଣ୍ଡ, ଅରଣ୍ୟ ସବୁ ଏହି ପୃଥିବୀ ଉପରେ । ଚନ୍ଦ୍ରଗିରି, ଦ୍ରୋଣଗିରି, ମୈନାକ ଆଦି ବିଖ୍ୟାତ ପର୍ବତ ଏହି ପୃଥିବୀ ଉପରେ ରହିଆସିଛନ୍ତି । ଏହି ବସୁନ୍ଧରା ଅନେକ ରତ୍ନରେ ଭରପୂର । ତେଣୁ ପୃଥ୍ୱୀ ଅତି ମହାନ୍ । ଏହି ପୃଥିବୀରେ ଅନେକ ପ୍ରକାରର ଧନଧାନ୍ୟ ଶସ୍ୟାଦି ଉତ୍ପନ୍ନ ହୋଇଥାଏ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ—ତିନିଲୋକର ଆଧାର ହେଉଛି ପୃଥିବୀ । ପୃଥିବୀରେ ସର୍ବତ୍ର ଏକମାତ୍ର ଜଗଦୀଶ୍ୱର ପରମାତ୍ମାଙ୍କ ନିବାସ ।

ସଂସାରରେ ବହୁ ଶକ୍ତିଶାଳୀ ସମ୍ରାଟ ଜନ୍ମ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ସମଗ୍ର ପୃଥିବୀରେ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଉଦ୍ୟମ କରିଛନ୍ତି; କିନ୍ତୁ ସମସ୍ତେ ଅସଫଳ ହୋଇଛନ୍ତି । ସେଥିଲାଗି କ୍ରୋଧ ମଧ ପ୍ରକାଶ କରିଛନ୍ତି; କିନ୍ତୁ ପୃଥିବୀକୁ ନିଜର ଆୟତ୍ତରେ ରଖିବା ଲାଗି କେହି ସମର୍ଥ ହୋଇପାରି ନାହାନ୍ତି । ଅବତାର ମାନଙ୍କ ଜୀବନର ଆଧାର ମଧ ଏହି ପୃଥିବୀ । ବହୁଲୋକ ନିଜକୁ ଭୂସ୍ୱାମୀ ମନେ କରିଥାଆନ୍ତି; କିନ୍ତୁ ପରିଶେଷରେ ସେମାନଙ୍କୁ ଏହି ଭୂମି ଛାଡ଼ିବାକୁ ପଡୁଛି । କେତେ ନା କେତେ ଯୁଗ ବିତିଗଲାଣି; କିନ୍ତୁ ପୃଥିବୀ

ଯିମିତି ସିମିତି । ପୃଥ୍ୱୀକୁ ଅନେକ ଶକ୍ତିଶାଳୀ ସମ୍ରାଟ ଆସିଛନ୍ତି, ଯାଇଛନ୍ତି । କିନ୍ତୁ କେହି ପୃଥିବୀକୁ ବିଗାଡ଼ି ପାରିନାହାନ୍ତି । ଏହା ହିଁ ପୃଥିବୀର ମହିମା । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ଆମେ ସମସ୍ତେ ପୃଥିବୀମାତାଙ୍କ ଆଶ୍ରିତ ।

## ଚତୁର୍ଥ ସମାସ
## ।। ଜଳ-ସ୍ତୁତି ।।

ବକ୍ତା କହୁଛନ୍ତି—ଏଥର ସମସ୍ତଙ୍କ ଜନ୍ମସ୍ଥାନ, ସବୁ ଜୀବଙ୍କ ଜୀବନ ଆପୋନାରାୟଣ (ଜଳତତ୍ତ୍ୱ)ଙ୍କ ସ୍ତବନ କରୁଛି । ପୃଥିବୀକୁ ସପ୍ତ ସାଗର ଘେରି ରହିଛନ୍ତି । ଏହାର ଜଳ ଏବଂ ମେଘରୁ ବର୍ଷା ହେଉଥିବା ପାଣି— ସବୁ ରହିଥାଏ ପୃଥିବୀରେ । ବହୁଦେଶରେ ବହୁ ନଦୀ । ସବୁ ନଦୀର ପାଣି ବହି ବହି ଶେଷରେ ସମୁଦ୍ରରେ ଯାଇ ପଡ଼ିଥାଏ । ନଦୀମାନଙ୍କ ମଧ୍ୟରୁ କେତେକ ନଦୀ ଅତି ପବିତ୍ର ଏବଂ ସେଗୁଡ଼ିକର ମହିମା ଅବର୍ଣ୍ଣନୀୟ । ହ୍ରଦ, ସରୋବର, ନାଳ, ଝରଣା, ପ୍ରପାତ, କୂପ ଆଦି ଜଳରେ ଭରପୂର ରହିଥାଏ । କେଉଁଠି କେଉଁଠି ଜଳ ବରଫଭଳି ଶୀତଳ ତ କେଉଁଠି କେଉଁଠି ଭୀଷଣ ଗରମ । ବେଲ ଆଦି ଫଳ, ପୁଷ୍ପ, କନ୍ଦମୂଳ ଆଦିରୁ ଔଷଧ ଭଳି ଯେଉଁ ଗୁଣକାରୀ ରସ ମିଳିଥାଏ, ସେ ରସ ଜଳର ଅଂଶ । ଖାରିଆ, ମିଠା,* କଡ଼ା ଓ ଅମୃତତୁଲ୍ୟ—ଏହି ଭଳି ଭାବେ ଅନକେପ୍ରକାର ଜଳ ମିଳିଥାଏ । ଆଖୁ ଆଦି ଅନେକ ପ୍ରକାରର ସୁସ୍ୱାଦୁ ଶସ୍ୟ, ଫଳ, ଦୁଧ, ଦିହ, ଘିଅ ଆଦି ଗୋ-ରସ; ଗୁଡ଼, ସର୍କରା ଆଦି ପଦାର୍ଥ ଜଳତତ୍ତ୍ୱରୁ ହିଁ ଉତ୍ପନ୍ନ ହୋଇଥାଏ । ମୋତି, ରତ୍ନ, ଶସ୍ତ୍ର ଆଦି ଜକ୍‌ଜକ୍ କରିବା ଲାଗି ପାଣିରେ ମଜା ଯାଇଥାଏ । ରକ୍ତ, ଶୁକ୍ରଧାତୁ, ରେତ, ଲାଳ, ମୂତ୍ର, ଝାଳ ଆଦି ହେଉଚି ଜଳର ଅଂଶ । ଏ ଦେହ ଜଳରୁ ହିଁ ଉତ୍ପନ୍ନ । ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର ଆଦି ଗ୍ରହ ଜଳରୁ ହିଁ ଉତ୍ପନ୍ନ । କ୍ଷୀରସାଗର, ସୁରାସିନ୍ଧୁ (ମଦ), ଆଜ୍ୟସିନ୍ଧୁ (ଘୃତସମୁଦ୍ର), ଇକ୍ଷୁସିନ୍ଧୁ (ଆଖୁରସ), ତିକ୍ତ ସିନ୍ଧୁ ଓ ଦଧି ସିନ୍ଧୁ (ଦହି) ଓ ଶୁଦ୍ଧୋଦକ ସିନ୍ଧୁ - ଏହି ସପ୍ତ ସମୁଦ୍ର ଜଳର ହିଁ ପ୍ରକାର ଭେଦ । ସବୁ ଜଳରେ ପରିପୂର୍ଣ୍ଣ । କେଉଁଠି ଏହା ପ୍ରକଟ ତ କେଉଁଠି ଅପ୍ରକଟ, ଗୁପ୍ତ । ଏହା ଯେଉଁ ବୀଜରେ ମିଶେ, ତାହା ସେହି ଗୁଣ ନେଇ ଉଠେ । ଆଖୁ ସହିତ ଏହା ମିଠା ହୋଇଥାଏ ଏବଂ କଲରା

ସହିତ ଏହା ପିତା ହୋଇଥାଏ । ଶରୀର ମଧ୍ୟ ଜଳରେ ଗଢ଼ିଉଠେ, ଜଳରେ ହିଁ ବଢ଼େ । ଜଳ ତାରକ, ମାରକ । ଏହା ଅତ୍ୟନ୍ତ ସୁଖଦ ମଧ୍ୟ । ତେଣୁ ଏହା ଅମୂଲ୍ୟ ।

ପୃଥିବୀ ତଳେ ରହିଛି କେବଳ ପାଣି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିଲୋକରେ ଏକ ମହାନଦୀ ବହି ଚାଲିଚି । ମେଘୋଦକର ଅନ୍ତରାଳରେ ବୃଷ୍ଟି ହୋଇଥାଏ । ପୃଥିବୀର ମୂଳ ପାଣି, ପାଣିର ମୂଳ ଅଗ୍ନି, ଅଗ୍ନିର ମୂଳ ବାୟୁ ଏବଂ ବାୟୁର ମୂଳ ବା ଉପରେ ପରମେଶ୍ୱର (ଆଗାଶ ବା ଅନ୍ତରାତ୍ମା) । ଏହି ସବୁର ଅନ୍ତିମ ଆଧାର ପରାତ୍ପର ପରବ୍ରହ୍ମ ପରମାତ୍ମା ।

## ପଞ୍ଚମ ସମାସ
## ।। ଅଗ୍ନି-ସ୍ତୁତି ।।

ସମର୍ଥ ବକ୍ତା କହୁଛନ୍ତି— ଧନ୍ୟ ପ୍ରଭୁ ବୈଶ୍ୱାନର ଅଗ୍ନି ଦେବ ! ଅଗ୍ନି ହିଁ ବିଶ୍ୱାବ୍ୟାପକ ବିଶ୍ୱମ୍ଭର । ଏହାଙ୍କ ମୁଖ ଦ୍ୱାରା ହିଁ ଭଗବାନ ହବିଷାନ୍ନ (ଯଜ୍ଞର ଆହୂତି) ଗ୍ରହଣ କରିଥାଆନ୍ତି । ଯାଗଯଜ୍ଞାଦି କରିବା ଦ୍ୱାରା ଋଷିମାନେ କୃତାର୍ଥ ତଥା ଉପକୃତ ହୋଇଥାଆନ୍ତି । ଅଗ୍ନି ହିଁ ଅନ୍ଧକାର, ଶୀତଳତା ତଥା ରୋଗ ନିବାରଣ କରିଥାଏ । ପ୍ରାଣୀଙ୍କ ଭିତରେ ବହୁ ବର୍ଣ୍ଣଭେଦ ରହିଥିଲେ ମଧ୍ୟ ସବୁ ଜୀବ ତଥା ବ୍ରହ୍ମବାଦୀଙ୍କ ପକ୍ଷରେ ଅଗ୍ନି ହେଉଛି ଅଭେଦ ଏବଂ ଏକରୂପ । ଅଗ୍ନି ଯୋଗୁଁ ହିଁ ସୃଷ୍ଟିର ସଞ୍ଚାଳନ ହୋଇଥାଏ । ଲୋକେ ଏହି ଅଗ୍ନିର ସହାୟତାରେ ଖାଦ୍ୟ ରାନ୍ଧି ତୃପ୍ତିଲାଭ କରିଥାଆନ୍ତି । ଶରୀରରେ ଅଗ୍ନିତତ୍ତ୍ୱ ରହିଥିବାରୁ ଏହା ଜୀବିତ ରହିଥାଏ । ଅଗ୍ନି ହିଁ ଜଳକୁ ଶୋଷଣ କରି ଏହି ଭୂମଣ୍ଡଳକୁ ନିର୍ମାଣ କରିଛି, ଯାହା ଫଳରେ ପ୍ରାଣୀମାନେ ବସବାସ କରିବା ପାଇଁ ସ୍ଥାନ ପାଇ ପାରିଛନ୍ତି । ଛୋଟ ବଡ଼ ଦୀପ ଏବଂ ଦିହୁଡ଼ିଆଦି ଅଗ୍ନି ଦ୍ୱାରା ହିଁ ପ୍ରଦୀପ୍ତ । ଉଦରରେ ଜଠରାଗ୍ନି ଯୋଗୁଁ ହିଁ ଜୀବ କ୍ଷୁଧା ଅନୁଭବ କରିଥାଏ । ଅଗ୍ନି ସବୁଠି ପୂରି ରହିଛି । ଉଷ୍ଣତା ନ ଥିଲେ କିମ୍ବା ଅତି ଉଷ୍ଣତାରେ ଜୀବ ବଞ୍ଚି ପାରେନା । ଉଷ୍ଣତା ଶେଷ ହୋଇଗଲେ ଜୀବର ଜୀବନ ମଧ୍ୟ ଶେଷ ହୋଇଯାଏ । ଅଗ୍ନି ମାନ୍ଦ୍ୟ (ମନ୍ଦାଗ୍ନି) ହେଲେ ଲୋକ ମରଣାପନ୍ନ ହୁଏ । ଅଗ୍ନି ବଳରେ ଶତ୍ରୁର ବିନାଶ ସାଧନ କରାଯାଇଥାଏ । ଅଗ୍ନି ଅଛି ତ ଜୀବନ ଅଛି । ଅଗ୍ନି ନାହିଁ ତ ଜୀବନ ନାହିଁ ।

ଅନେକପ୍ରକାର ଔଷଧର ରସ ଅଗ୍ନିରେହିଁ ପ୍ରସ୍ତୁତ କରାଯାଇଥାଏ ଏବଂ ଏଥିରେ ଅନେକ ଅସାଧ ରୋଗୀଙ୍କୁ ଆରୋଗ୍ୟ କରାଯାଇଥାଏ । ସର୍ବଶ୍ରେଷ୍ଠ ସୂର୍ଯ୍ୟରୁ ଅଗ୍ନିର ପ୍ରକାଶ । ଅନ୍ଧାର ରାତିରେ ଅଗ୍ନିହିଁ ବାଟ ଦେଖେଇଥାଏ । ଅଗ୍ନିରେ ତିଳେହେଲେ ଦୋଷ ନାହିଁ; କିନ୍ତୁ ଏହା ଅନେକ ପ୍ରକାରର ଦୋଷ ଦୂର କରିଥାଏ । ତେଣୁ ଅଗ୍ନି ପବିତ୍ର, ପାବନ । ଯାଗଯଜ୍ଞ, ଅଗ୍ନିହୋତ୍ର ଆଦି କାର୍ଯ୍ୟ ଅଗ୍ନିଦ୍ୱାରା ହିଁ ସମ୍ପନ୍ନ ହୋଇଥାଏ । ଅଗ୍ନିଦେବତା ତୃପ୍ତ ହେଲେ ପ୍ରସନ୍ନ ହୋଇ ସଂସାରର କଲ୍ୟାଣ ସାଧନ କରିଥାଆନ୍ତି । ଦେବ, ଦାନବ ଓ ମାନବ ସମସ୍ତଙ୍କ ଲାଗି ଅଗ୍ନିର ଆବଶ୍ୟକତା ଅନିବାର୍ଯ୍ୟ । ବିବାହ ବ୍ରତ କିମ୍ବା ଅନ୍ୟ ମହୋତ୍ସବମାନଙ୍କରେ ଯେଉଁ ଆତସବାଜି ଫୁଟାଯାଏ, ସେ ସବୁ ଅଗ୍ନିର ଚମତ୍କାରିତା । ପ୍ରାଣୀମାନଙ୍କଠାରେ ଏହା ଜଠରାନଳ, ସମୁଦ୍ରରେ ବଡ଼ବାନଳ, ପୃଥିବୀରେ ଆବରଣାନଳ, ଅରଣ୍ୟରେ ଦାବାନଳ, ଶିବଙ୍କ ତୃତୀୟ ନେତ୍ରରେ ବିଦ୍ୟୁଲ୍ଲତା ଭାବରେ ଏହି ଅଗ୍ନି ହିଁ ବିଦ୍ୟମାନ । କାଚରେ ମଧ୍ୟ ଅଗ୍ନି ପ୍ରକଟିତ । କାଠ, ପଥର, ଝିକ୍‌ମିକ୍ ପଥରକୁ ଘଷିଲେ କିମ୍ବା ରଗଡ଼ିଲେ ଅଗ୍ନି ପ୍ରଜ୍ୱଳିତ ହୋଇଥାଏ ।

ଅଗ୍ନିର ସଦୁପଯୋଗ କରାଯାଇପାରେ । ଦୁରପଯୋଗ ମଧ୍ୟ କରାଯାଇପାରେ । ବିବେକ ବିନା ଏହାର ପ୍ରୟୋଗ ହାନିକାରକ ହୋଇଥାଏ । ଅଗ୍ନି ଜୀବିତାବସ୍ଥାରେ ମନୁଷ୍ୟକୁ ସୁଖଶାନ୍ତି ପ୍ରଦାନ କରିଥାଏ ଏବଂ ମରିବାପରେ ଏହାର ଶବକୁ ଜଳେଇ ଭସ୍ମ କରି ଦେଇଥାଏ । ଅଗ୍ନି ସର୍ବଭକ୍ଷକ । ତେଣୁ ଏହାର ମହିମାକୁ କେତେ ବର୍ଣ୍ଣନା କରିବି ? ପ୍ରଳୟ କାଳରେ ଅଗ୍ନି ହିଁ ସମଗ୍ର ସୃଷ୍ଟିର ସର୍ବନାଶ କରିଥାଏ । ଅଗ୍ନିରୁ କୌଣସି ଜିନିଷ ରକ୍ଷା ପାଇ ନ ପାରେ । ଅଷ୍ଟଧା ପ୍ରକୃତି ଓ ତିନି ଲୋକରେ ଅଗ୍ନିର ସଞ୍ଚାର । ତେଣୁ ଶାସ୍ତ୍ରରେ କୁହାଯାଇଛି ଅଗ୍ନିର ବହୁ ଚକ୍ଷୁ, ବହୁ ପାଦ, ବହୁ ଶିର ଓ ବହୁ ହସ୍ତ । ଏସବୁ କ'ଣ କୌଣସି ବିନା ପ୍ରମାଣରେ କୁହାଯାଇଛି ? ସକଳ କଲ୍ୟାଣକାରୀ, ସର୍ବସଂହାରକ ଅଗ୍ନି ଦେବତାଙ୍କ ସମ୍ପର୍କରେ ମୁଁ ମୋର ଅଳ୍ପବୁଦ୍ଧିରେ ଅତି ସଂକ୍ଷେପରେ ବର୍ଣ୍ଣନା କଲି । ଯାହାକିଛି ତ୍ରୁଟିଥିବ ଉଦାର ଶ୍ରୋତାଗଣ ମତେ କ୍ଷମା କରିବେ ।

## ଷଷ୍ଠ ସମାସ
## ।। ବାୟୁ-ସ୍ତୁତି ।।

ବାୟୁଦେବ ମଧ ଧନ୍ୟ । ଏହାଙ୍କ ସ୍ୱଭାବ ବଡ଼ ବିଚିତ୍ର । ବାୟୁ ଅଛି ବୋଲି ପ୍ରାଣୀ ଜୀବିତ ରହିଛି । ବାୟୁ ଯୋଗୁଁ ହିଁ ଜୀବମାତ୍ରେ ନିଃଶ୍ୱାସ ପ୍ରଶ୍ୱାସ ନେଇଥାଆନ୍ତି । ବାୟୁବଳରେ ଶରୀର ହଲଚଲ ହୋଇଥାଏ । ଚଳନ, ବଳନ, ଧାବନ, ପ୍ରସାରଣ ଏବଂ ସକୁଞ୍ଚନ ତଥା ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ଏବଂ ନାଗ, କୁର୍ମ, କୃକଳ, ଦେବଦତ୍ତ ଓ ଧନଞ୍ଜୟ ଆଦି ବାୟୁର ଅନେକ ସ୍ୱଭାବ । ଚଳନ ଅର୍ଥାତ୍ ଚାଲିବା; ବଳନ ଅର୍ଥାତ୍ ବଳିବା, ମୋଡ଼ିବା; ଧାବନ ଅର୍ଥାତ୍ ଦୌଡ଼ିବା; ପ୍ରସାରଣ ଅର୍ଥାତ୍ ପ୍ରଶସ୍ତ ହେବା; ସଙ୍କୁଚନ ଅର୍ଥାତ୍ କମି ଆସିବା-ଇଏ ହେଉଚି ବାୟୁର ପଞ୍ଚତତ୍ତ୍ୱ ଅର୍ଥାତ୍ ଧର୍ମ । ବାୟୁର ପ୍ରାଣ-ପଞ୍ଚକକୁ ବୁଝ । ପ୍ରାଣ ଜୀବର ହୃଦୟପୀଠରେ ରହିଥାଏ । ଦିନରାତି ୨୧୬୦୦ ଥର ନିଃଶ୍ୱାସ ପ୍ରଶ୍ୱାସ ନେବା ଏହାର କାମ । ଅପାନ ଗୁହ୍ୟସ୍ଥାନରେ ରହିଥାଏ । ମଳ ବିସର୍ଜନ କରିବା ଏହାର କାମ । ବ୍ୟାନ ଶରୀର ସାରା ଘୂରି ବୁଲୁଥାଏ । ଶରୀର ସନ୍ଧି (ଗଣ୍ଠି)କୁ ଆଗ ପଛ କରେଇବା, ହଲେଇବା ଆଦି ଏହାର କାମ । ଉଦାନ ରହେ କଣ୍ଠ ସ୍ଥାନରେ । ଅନ୍ନରସକୁ ବିଭାଜନ କରିବା, ହିତା ନାମକ ନାଡ଼ିଦ୍ୱାରା ହାକୁଟି କରେଇବା ଏବଂ ସ୍ୱପ୍ନ ଦେଖାଇବା ଏହାର କାମ । ସମାନ ନାଭିସ୍ଥାନରେ ରହିଥାଏ । ନାଡ଼ିମାନଙ୍କ ଦ୍ୱାରା ଖାଦ୍ୟରସକୁ ଦେହର ଅନ୍ଦିକନ୍ଦି ସବୁ ଜାଗାରେ ପହଞ୍ଚାଇବା ଏହାର କାମ ।

ଏହାପରେ ନାଗ, କୁର୍ମ ଆଦି ପଞ୍ଚ ଉପପ୍ରାଣ ରହିଛି । ନାଗବାୟୁ ଦ୍ୱାରା ଏଉଡ଼ି ଆସିଥାଏ । କୁର୍ମଦ୍ୱାରା ଆଖିର ପତା ପଡ଼େ ଉଠେ । କୃକଳ ଦ୍ୱାରା ଛିଙ୍କ ଆସେ । ଦେବଦତ୍ତ ଦ୍ୱାରା ହାଇ ହୁଏ ଏବଂ ଧନଞ୍ଜୟ ଦ୍ୱାରା ଶରୀର ପୁଷ୍ଟ ହୋଇଥାଏ ଏବଂ ଶରୀର ମୋଟା ହୋଇ ଭାରି ହୋଇଥାଏ । ସ୍ୱର୍ଗର ଦେବତା, ରାଜା ମହାରାଜାଠାରୁ ଆରମ୍ଭ କରି ଦୀନଦରିଦ୍ର ପର୍ଯ୍ୟନ୍ତ ସବୁ ମଣିଷ, ପଶୁ, ବନଚର, ଜଳଚର, ଖେଚର ଆଦି ସବୁ ପ୍ରାଣୀଙ୍କଠାରେ ବାୟୁର ସଞ୍ଚାର । ଅଗ୍ନିର ଜ୍ୱଳନ ବାୟୁଦ୍ୱାରା ହିଁ ହୋଇଥାଏ । ବାୟୁଯୋଗୁଁ ହିଁ ମେଘ ସୃଷ୍ଟିହୁଏ ଏବଂ ବାୟୁଯୋଗୁ ହିଁ ମେଘରୁ ବର୍ଷାହୁଏ । ବ୍ୟାପକତା ଦୃଷ୍ଟିରୁ ବାୟୁ ସହିତ କେହି

ତୁଳନୀୟ ନୁହନ୍ତି । ମେଘ ପର୍ବତଶିଖରକୁ ଉଠି ବିଜୁଳି ଘଡ଼ଘଡ଼ି ସହିତ ଘୋର ବର୍ଷା କରାଏ । ଇଏ ସବୁ ବାୟୁର ପ୍ରତାପ । ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ମେଘମଣ୍ଡଳ ଏସବୁର ଅସ୍ତିତ୍ୱ କେବଳ ବାୟୁଦ୍ୱାରା ସମ୍ଭବ ହୋଇଥାଏ ।

ପଞ୍ଚଭୂତର ଯେଉଁ ମିଶ୍ରଣ ହୋଇଛି, ସେଥିରୁ କୌଣସି ଗୋଟିକୁ ପୃଥକ କରାଯାଇ ନପାରେ । ଏସବୁ ବାୟୁର ହିଁ କରାମତି । ତୋଫାନ ଆସେ, ମୂଷଳଧାରାରେ ବର୍ଷା ହୁଏ, ବଜ୍ରପଡ଼େ— ଏସବୁ ବାୟୁର ପ୍ରାବଲ୍ୟ ଯୋଗୁଁ ଘଟେ । ତେତିଶ କୋଟି ଦେବତା, ଅଠାଇଶ ହଜାର ମୁନିଋଷି, ସିଦ୍ଧଯୋଗୀ ହେଉଚନ୍ତି ବାୟୁରୂପ । ନଅକୋଟି କାତ୍ୟାୟନୀ, ଛପନକୋଟି ଚାମୁଣ୍ଡୀ, ସାଢ଼େ ତିନିକୋଟି ଭୂତଯୋନି ପ୍ରାଣୀ, ଭୂତ ପିଶାଚ ଏବଂ ଅନେକ ଶକ୍ତି ସବୁ ହେଉଚନ୍ତି ବାୟୁରୂପ । ପିଣ୍ଡ ଓ ବ୍ରହ୍ମାଣ୍ଡରେ ସମ୍ପୂର୍ଣ୍ଣଭାବେ ପରିପୂର୍ଣ୍ଣ ରହି ଏବଂ ବ୍ରହ୍ମାଣ୍ଡ ବାହାରେ ମଧ୍ୟ ଏହାର ଆବରଣ ଭାବରେ ବାୟୁ ରହି ଆସିଛି । ତେଣୁ ବାୟୁ ସର୍ବବ୍ୟାପୀ ପରମ ସମର୍ଥତତ୍ତ୍ୱ । ଏହି ବାୟୁର ପୁତ୍ର ହିଁ ପବନତନୟ ହନୁମାନ । ଏହି ହନୁମାନ ନିଜ ତନ୍‌ମନ ଭଗବାନ ରାମଙ୍କଠାରେ ଅର୍ପଣ କରି ଦେଇଥିଲେ । ବୀର ହନୁମାନ ମଧ୍ୟ ଏକ ଅବତାର । ସିଂହାସନ ଉପରେ ବିରାଜମାନ ଅହଂକାରୀ ରାବଣର ପିଠିରେ ଗଦା ପ୍ରହାର କରି ପାରିବା ଭଳି ଶକ୍ତିଥିଲା ତାଙ୍କଠାରେ । ହନୁମାନ ଲଙ୍କା ଯିବା ବେଳେ ସମୁଦ୍ର ମଧ୍ୟ ତାଙ୍କୁ ଅଟକାଇ ପାରି ନ ଥିଲା । ଏହି ମହାନ୍ ପରାକ୍ରମୀ ମହାବୀର ହନୁମାନ ବାୟୁ ଦେବତାଙ୍କର ହିଁ ସୁପୁତ୍ର ।

## ସପ୍ତମ ସମାସ
## ।। ମହାଭୂତ ଲକ୍ଷଣ ।।

ପୂର୍ବ ସମାସମାନଙ୍କରେ ମୁଁ ବହୁବାର କହିଛି ଯେ ପୃଥିବୀର ମୂଳ ଜୀବନ (ଜଳ), ଜଳର ମୂଳ ଅଗ୍ନି, ଅଗ୍ନିର ମୂଳ ପବନ (ବାୟୁ) ଏବଂ ପବନର ମୂଳ ପରମାତ୍ମା । ଏହି ପରମାତ୍ମା ସର୍ବବ୍ୟାପୀ । ଅତି ଚଞ୍ଚଳ ମଧ୍ୟ । ଏହା ଯିବା ଆସିବା କରେ; କିନ୍ତୁ କାହାକୁ ଦେଖାଦେଇ ନ ଥାଏ କିମ୍ବା କୌଣସିଠି ସ୍ଥିର ରହି ନ ଥାଏ । ଏହାର ରୂପ କିପରି ଶ୍ରୁତି ପୁରାଣ ଶାସ୍ତ୍ରମାନଙ୍କରେ ମଧ୍ୟ ଅନୁମାନ କରାଯାଇ ପାରି ନାହିଁ । ପରବ୍ରହ୍ମରୁ ମୂଳସ୍ଫୁରଣ ହୋଇ ଯେଉଁ ଆଦି ସଙ୍କଳ୍ପ ହେଲା, ତାହା

ଅନ୍ତରାତ୍ମାଙ୍କ ସ୍ୱରୂପ । ସିଏ ହିଁ ଜଗଦୀଶ୍ୱର । ଏଥିରୁ ହିଁ ସତ୍ୱ, ରଜ, ତମ—ଏହି ତିନିଗୁଣର ଉତ୍ପନ୍ନ । ଏହି ତ୍ରିଗୁଣରୁ ପରେ ପଞ୍ଚଭୂତ ଅର୍ଥାତ୍ ପଞ୍ଚତତ୍ତ୍ୱ ପ୍ରକଟିତ । ପଞ୍ଚମହାଭୂତରେ ମଧ୍ୟ ରହିଛି ସର୍ବ ପ୍ରକାଶକ ଆକାଶତତ୍ତ୍ୱ ।

ଏହି ଆକାଶ ତତ୍ତ୍ୱ (ଅନ୍ତରାତ୍ମା)କୁ ''ଏକୋବିଷ୍ଣର୍ମହଦ୍‌ଭୂତମ୍'' କୁହାଯାଇଥାଏ । ଏହା ସର୍ବବ୍ୟାପକ । ଅନୁସଂଧାନ କଲେ ହିଁ ଏହାକୁ ଅନୁଭବ କରାଯାଇପାରେ । ଏହାର ଚଞ୍ଚଳତା ଆଗରେ ବାୟୁର ଚଞ୍ଚଳତା କିଛି ନୁହଁ କହିଲେ ଚଳେ । ଆତ୍ମା ଦେଖାଯାଏ ନାହିଁ ସତ କିନ୍ତୁ ଏହାବିନା କୌଣସି କାର୍ଯ୍ୟ ହୋଇ ନ ଥାଏ ।

ଏହା ଗୁପ୍ତ ରହି ମଧ୍ୟ ସବୁ ବିଚାର କରିଥାଏ । ଏହା ପିଣ୍ଡ ବ୍ରହ୍ମାଣ୍ଡରେ ପରିପୂର୍ଣ୍ଣ ଭାବରେ ରହି ଅଗଣିତ ଶରୀରରେ ବିଳାସ କରିଥାଏ । ବିବେକୀ ପୁରୁଷ ହିଁ ଏହାର ସଂସାରକୁ ଅନୁମାନ କରିପାରେ । ଏହାବିନା ଦେହ ହଲଚଲ ହୋଇ ନପାରେ । ଅଷ୍ଟଧା ପ୍ରକୃତିରୁ ଉତ୍ପନ୍ନ ଅଗଣିତ ଜୀବ ଏହା ଯୋଗୁହିଁ ପ୍ରତ୍ୟକ୍ଷଭାବେ ଦେଖାଯାଇଥାଆନ୍ତି । ମୂଳମାୟାରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ (ଜୀବର ଦେହଯାଏଁ) ସବୁ ହେଉଚି ଆତ୍ମାର ଖେଳ । ଆତ୍ମାର ଊର୍ଦ୍ଧ୍ୱରେ କେବଳ ପରମାତ୍ମା ଅର୍ଥାତ୍ ନିର୍ବିକଳ୍ପ ପରବ୍ରହ୍ମ । ଆତ୍ମା ଶରୀରରେ ରହି ଇନ୍ଦ୍ରିୟକୁ ସଂଚାଳନ କରିଥାଏ ଏବଂ ଦେହକୁ ନାନା ସୁଖ ଦୁଖ ଭୋଗେଇଥାଏ । ଆତ୍ମାହିଁ ଶବ୍‌ଦ ଶୁଣେ, ଏହାର ଅର୍ଥ ବୁଝେ ଏବଂ ବୁଝିସୁଝି ପ୍ରଶ୍ନର ଉତ୍ତର ଦେଇଥାଏ । ଏହା ଚର୍ମଦ୍ୱାରା ଶୀତଳ ଓ ଉଷ୍ଣତାକୁ ଜଣାଇ ଦେଇଥାଏ । ଏହା ଆଖିଦ୍ୱାରା ଦେଖିଥାଏ ଏବଂ ପଦାର୍ଥକୁ ପରୀକ୍ଷା କରିଥାଏ ।

ଚକ୍ଷୁର କ୍ରୂରତା, ସୌମ୍ୟ, ପ୍ରକଟ, ଦୟା ଆଦି ବୃତ୍ତି ଏହି ଆତ୍ମାଦ୍ୱାରା ହିଁ ହୋଇଥାଏ । ସ୍ୱାଦ, ଗନ୍ଧ, ଦୁର୍ଗନ୍ଧ ଆଦି ବ୍ୟାପାର ଏହା ଦ୍ୱାରା ହିଁ ହୋଇଥାଏ । ଏହାର ବ୍ୟାପକତା ଅବର୍ଣ୍ଣନୀୟ । ସବୁବିଦ୍ୟା, କଳା କୌଶଳ, ସୃଷ୍ଟିର ସମସ୍ତ କାରବାର ଏବଂ ପରଲୋକର ବିଚାର ଏହି ଆତ୍ମା ହିଁ ଜାଣେ । ନାନା ପ୍ରକାରର ମତ ମତାନ୍ତର, ବାଦ ବିବାଦର ନିର୍ଣ୍ଣୟ ଏହି ଆତ୍ମା ହିଁ କରିଥାଏ ।

ଆତ୍ମା ବହୁରଂଗୀ, ବହୁରୂପୀ । ମହାପ୍ରତାପୀ ଏହି ଆତ୍ମା, କାପୁରୁଷ ମଧ୍ୟ ଏହି ଆତ୍ମା । ଇଏ ନିଜ ଖେଳ ନିଜେ ଦେଖିଥାଏ । ଦଂପତ୍ତିଭାବରୁ ଏହ

ଆତ୍ମା ସ୍ତ୍ରୀ ପୁରୁଷ ଉଭୟଙ୍କଠି ଏକରୂପ । ପୁରୁଷ ଚାହେଁ ସ୍ତ୍ରୀ, ସ୍ତ୍ରୀ ଚାହେଁ ପୁରୁଷ । ଦୁହେଁ ମିଶି ଆନନ୍ଦ ଉପଭୋଗ କରିବାକୁ ଚାହିଁଥାଆନ୍ତି । ସେଥିଲାଗି ଦୁହିଁଙ୍କଠାରେ ଭିନ୍ନ ଭିନ୍ନ ଲିଙ୍ଗ ରହିଥିଲେ ମଧ୍ୟ ଅଭେଦ ରୂପରେ ଦୁହେଁ ଏକ । ସ୍ଥୂଳ ଦୃଷ୍ଟିରୁ ଦୁହିଁଙ୍କ ମଧ୍ୟରେ ଅବଶ୍ୟ ପ୍ରଭେଦ ରହିଛି କିନ୍ତୁ ସୂକ୍ଷ୍ମଦୃଷ୍ଟିରେ କୌଣସି ପାର୍ଥକ୍ୟ ନାହିଁ । ପୁରୁଷର ଇଚ୍ଛାରେ ପ୍ରକୃତିର ଏବଂ ପ୍ରକୃତିର ଇଚ୍ଛାରେ ପୁରୁଷର ଆକର୍ଷଣ ରହିଥାଏ । ଦ୍ୱୈତର ଇଚ୍ଛା ମୂଳମାୟାରେ ହିଁ ରହିଥାଏ (ମୂଳମାୟା ପ୍ରକୃତି ପୁରୁଷାତ୍ମକ) ତେଣୁ ଏହା ସ୍ଥୂଳ ଶରୀରରେ ମଧ୍ୟ ଦ୍ୱୈତାତ୍ମକ ଦେଖା ଯାଇଥାଏ । ସୃଷ୍ଟିରେ ସ୍ତ୍ରୀ ପୁରୁଷର ଯେଉଁ ପାର୍ଥକ୍ୟ ଦେଖାଯାଏ, ଏହା ମୂଳ ମାୟାରେ ମଧ୍ୟ ରହିଥାଏ । ତେଣୁ ଆମ୍ଭେମାନେ ସବୁକଥା ନିଗୂଢ଼ ଭାବରେ ବିଚାରକରିବା ଉଚିତ । ମୋର ଆଶା, ପ୍ରକୃତି ଓ ପୁରୁଷ ସଂପର୍କରେ ଯେଉଁ ବିବେଚନା କରାଗଲା ସେଥିରେ ଶ୍ରୋତାମାନଙ୍କ ସଂନ୍ଦେହ ଦୂର ହୋଇପାରିବ ।

## ଅଷ୍ଟମ ସମାସ
## ।। ଅନ୍ତରାତ୍ମା ସ୍ପଷ୍ଟୀକରଣ ।।

ମଙ୍ଗଳ ମୂର୍ତ୍ତି ଶୁଭଦାୟକ ଶ୍ରୀଗଣେଶଙ୍କ ବନ୍ଦନା କରୁଛି । ଶ୍ରୀଗଣେଶହିଁ ବୁଦ୍ଧିକୁ ପ୍ରେରଣା ଦେଇ ଆମଙ୍କୁ ଅନ୍ତରାତ୍ମାଙ୍କ ଗୁଣାନୁବାଦ କରିବାକୁ ଉତ୍ସାହିତ କରିଥାଆନ୍ତି ।

ଶ୍ରୀ ଗଣେଶଙ୍କ ବନ୍ଦନା କରିବା ସଙ୍ଗେ ସଙ୍ଗେ ମାତା ସରସ୍ୱତୀଙ୍କର ମଧ୍ୟ ବନ୍ଦନ କରୁଛି । ଜନନୀ ସରସ୍ୱତୀ ହିଁ ବୁଦ୍ଧିର ପ୍ରକାଶିକା, ନାନା ବିଦ୍ୟାଦାୟିନୀ । ସେ ସର୍ବଦା ମନକୁ ଉତ୍‌ଫୁଲ୍ଲ ରଖିଥାଆନ୍ତି । ସଂସାରରେ ରାମନାମ ସର୍ବଶ୍ରେଷ୍ଠ । ରାମନାମର ପ୍ରଭାବରେ ହିଁ ଶଙ୍କରଙ୍କ ଶରୀରର ଉତ୍ତେଜନା ହ୍ରାସ ପାଇବାରେ ସେ ଆରାମ ଲାଭକଲେ । ନାମସ୍ମରଣର ମହିମା ବିଲକ୍ଷଣ । ଏହାଦ୍ୱାରା ପରାତ୍ପର ପରମେଶ୍ୱର ଅର୍ଥାତ୍ ତ୍ରୈଲୋକ୍ୟ ନିବାସୀ ଆତ୍ମାରାମ ଯେ ସର୍ବ ଦେହରେ ବିଦ୍ୟମାନ ତାହା ଅନୁଭବ କରିବା ସଂଭବ ହୋଇଯାଇଚି । ଶିବାତ୍ମା, ପରମାତ୍ମା, ଜଗଦାତ୍ମା, ବିଶ୍ୱାତ୍ମା, ସୂକ୍ଷ୍ମାତ୍ମା ଆଦି ସବୁ ଅନ୍ତରାତ୍ମାଙ୍କର ଭିନ୍ନ ଭିନ୍ନ ନାମ । ଦେବ, ଦାନବ, ମାନବ ସର୍ବତ୍ର ଏହା ବ୍ୟାପ୍ତ ।

ଅବତାରୀ ମହାତ୍ମାମାନଙ୍କ ଅସାମାନ୍ୟ ଅସାଧାରଣ କାର୍ଯ୍ୟର କର୍ତ୍ତା ଏହି ଅନ୍ତରାତ୍ମା । ବ୍ରହ୍ମାଦି ସମସ୍ତ ଦେବ ଏହି ଅନ୍ତରାତ୍ମା ଦ୍ୱାରା ବ୍ୟବହାର କରିଥାଆନ୍ତି । ନାଦ, ଜ୍ୟୋତି, ସାକ୍ଷୀତ୍ୱ, ସତ୍ତାଆଦି ସବୁ ହେଉଛି ଏହାଙ୍କ ରୂପ । ନରୋତ୍ତମ, ବୀରୋତ୍ତମ, ପୁରୁଷୋତ୍ତମ, ରଘୁତ୍ତମ, ସର୍ବୋତ୍ତମ, ସବୁ ଏହାର ବିଶ୍ଳେଷଣ । ଏହାର ଅଭାବରେ ସବୁ ଶୂନ୍ୟ ଏବଂ ଜଡ଼ ହୋଇଯିବ । ଆତ୍ମଜ୍ଞାନୀ ପୁରୁଷ ସବୁ ଲୋକଙ୍କଠାରେ ଏହାକୁ ଦର୍ଶନ କରିଥାଆନ୍ତି ।

ପତି ସୁନ୍ଦରୀ ଭାର୍ଯ୍ୟା ପ୍ରତି ମୋହିତ ହୋଇଥାଏ— କିନ୍ତୁ ପତ୍ନୀର ଦେହରେ ଆତ୍ମାଥିବା ପର୍ଯ୍ୟନ୍ତ ଏହି ମୋହ । ଆତ୍ମା ଅଲଗା ହୋଇଯିବାପରେ ଏହି ପତ୍ନୀକୁ ଶବ କୁହାଯାଇଥାଏ । ଆତ୍ମାର ବଳରେହିଁ ମନ ନାନା କଳ୍ପନା ଓ ବିଚାର କରିଥାଏ । ଆତ୍ମା ଶରୀରରେ ରହିଥାଏ ଏବଂ ସାରା ବ୍ରହ୍ମାଣ୍ଡର ବିଚାର କରିଥାଏ । ଏଥିରେ ନାନା ବାସନା ଏବଂ ଭାବନା ଉତ୍ପନ୍ନ ହୋଇଥାଏ । ଅଗଣିତ ପ୍ରାଣୀଙ୍କର ଅନନ୍ତ କଳ୍ପନା । ରାଜନୀତି, ସୁବୁଦ୍ଧି, କୁବୁଦ୍ଧି, ଗୁପ୍ତବିଚାର, ଧୋକ୍କାବାଜି— ସବୁ ହେଉଚି ଆତ୍ମାର ପ୍ରବୃତ୍ତି । ଜଣେ ଜଣଙ୍କର କ୍ଷତି କରିଥାଏ, ଶତ୍ରୁତା କରିଥାଏ । କେହି କେହି ପରୋପକାରରେ ମଗ୍ନ ରହିଥାଆନ୍ତି, କିନ୍ତୁ ଏହି ଭେଦମୟ ପ୍ରବୃତ୍ତିଗୁଡ଼ିକରେ ଆତ୍ମାର ଅଭେଦତ୍ୱ ଅଟଳ । ସବୁ ପ୍ରାଣୀଙ୍କ ଶରୀରରେ ଆହାର, ବିହାର, ସୁଖାନୁଭବରେ ଯଦିଓ ପ୍ରଭେଦ ରହିଥାଏ, ସମସ୍ତଙ୍କଠାରେ ଏକ ଆତ୍ମା । ଏହା ଅଭେଦ ଏବଂ ଏକରୂପ । ଦେହ ଓ ଆତ୍ମାର ସଂଯୋଗରେ ଯେଉଁ ଯେଉଁ କାର୍ଯ୍ୟ ହୋଇଥାଏ, ସୂକ୍ଷ୍ମଭାବରେ ଏହାର ଅନୁସଂଧାନ କଲେ ଅନ୍ତରାତ୍ମାଙ୍କ ଅନୁମାନ କରାଯାଇପାରିବ । ଅନ୍ତରାତ୍ମାଙ୍କ ପ୍ରତ୍ୟୟ ଅର୍ଥାତ୍ ଅନୁଭବ ଲାଗି ଏ ବିଷୟରେ ଏତିକି ନିରୂପଣ କରାଗଲା ।

## ନବମ ସମାସ
## ।। ବିଭିନ୍ନ ଉପାସନା ।।

ଶ୍ରୋତାଙ୍କ ପ୍ରଶ୍ନ— ସଂସାରରେ ତ ଅନେକ ପ୍ରକାରର ଲୋକ । ସମସ୍ତଙ୍କର ଅଲଗା ଅଲଗା ପୂଜା ପଦ୍ଧତି । ପ୍ରତ୍ୟେକ ଲୋକ ନିଜର ଭାବନା ଓ ଶ୍ରଦ୍ଧା ଅନୁସାରେ ନିଜ ନିଜ ଦେବତାଙ୍କ ଉପାସନା କରିଥାଆନ୍ତି । ଭଜନ

କରିଥାଆନ୍ତି । ଅନେକ ଲୋକ ନିର୍ଗୁଣ ଉପାସକ । ଏ ସମସ୍ତଙ୍କୁ ଏକାଠି କରାଯିବ କିପରି ?

ସମର୍ଥ ବକ୍ତା କହୁଛନ୍ତି— ଯାହା କହିଲ ଉପାସନାର ସ୍ୱଭାବ ଠିକ୍ ତାହା । ''ପିଣ୍ଡେ ପିଣ୍ଡେ ମତିଭିନ୍ନ '' । ପ୍ରତ୍ୟେକ ବ୍ୟକ୍ତିର ଅଲଗା ଅଲଗା ସ୍ୱଭାବ ଏବଂ ଭିନ୍ନ ଭିନ୍ନ ରୁଚି । ଏଥିରେ କୌଣସି କ୍ଷତି ନାହିଁ । ନିର୍ଗୁଣ ଅର୍ଥାତ୍ ବହୁଗୁଣ, ସବୁଗୁଣ ଏବଂ ବହୁଗୁଣ ଅର୍ଥାତ୍ ଅନ୍ତରାତ୍ମା । ସବୁ ଦେବତା ଏହି ଅନ୍ତରାତ୍ମାର ଅଂଶମାତ୍ର । ତେଣୁ ଯେ କୌଣସି ଦେବତାଙ୍କ ଉପାସନା କରନା କାହିଁକି, ଅନ୍ତତଃ ଏବଂ ତତ୍ତ୍ୱତଃ ଏହି ଅନ୍ତରାତ୍ମାଙ୍କର ହିଁ ଉପାସନା କରାଯାଇଥାଏ ।

ଶ୍ରୋତାଙ୍କର ସନ୍ଦେହ ଏବଂ ପ୍ରଶ୍ନ— ଯଦି ସବୁଦେବତାଙ୍କ ଉପାସନାକୁ ନିର୍ଗୁଣ ଅନ୍ତରାତ୍ମାଙ୍କ ଉପାସନା ବୋଲି ଧରାଯାଏ, ତାହାହେଲେ ସମସ୍ତେ ନିର୍ଗୁଣକୁ ଭଜନ କରୁନାହାନ୍ତି କାହିଁକି ? ଅନେକେ ନାନା ଦେବଦେବୀଙ୍କୁ ପୂଜା କରି ଭ୍ରମଜାଲରେ ପଡୁ ଛନ୍ତି କାହିଁକି ? ଯେପରି ଗଛମୂଳରେ ଜଳସେଚନ କଲେ ଏହା ପତ୍ର ପର୍ଯ୍ୟନ୍ତ ପହଞ୍ଚିଥାଏ, ସେହିଭଳି ଏକ ନିର୍ଗୁଣଙ୍କୁ ପୂଜା କଲେ ତ ତାହା ସବୁଦେବତା ପାଇ ପାରନ୍ତେ ।

ବକ୍ତା କହୁଛନ୍ତି—ଏ କଥା ଠିକ୍ । କିନ୍ତୁ ତୁଳସୀଗଛର ପତ୍ର ଉପରେ ପାଣି ଢାଳିଲେ ଏହା ତୁଳସୀଗଛର ମୂଳକୁ ମଧ୍ୟ ଯାଇଥାଏ । ସେହିଭଳି ଯେଉଁ ଦେବତାଙ୍କ ପୂଜା କରନା କାହିଁକି ସେହି ପୂଜା ମୁଖ୍ୟ ପରମାତ୍ମାଙ୍କ ପାଖରେ ପହଞ୍ଚେ । ସଗୁଣ-ନିର୍ଗୁଣ ବିବେକ ଅତ୍ୟନ୍ତ ସୂକ୍ଷ୍ମ । ଏହା ଶବ୍ଦାତୀତ । ମତ ମତାନ୍ତର ବିବାଦ ତ ଲାଗି ରହିବ । ଏହି ସୃଷ୍ଟିରେ ଅନେକ ଦେଶ, ଅନେକ ଭାଷା, ଅନେକ ମୁନିଋଷି ଏବଂ ବିଚାରକମାନଙ୍କ ଦ୍ୱାରା ପ୍ରକଟିତ ଭିନ୍ନ ଭିନ୍ନ ମତ ରହିଛି । ଏହାକୁ କେତେଦୂର ବିଶ୍ଳେଷଣ କରାଯାଇ ପାରେ ? ପଞ୍ଚଭୂତାତ୍ମକ ତ୍ରିଗୁଣସମ୍ପନ୍ନ ସୃଷ୍ଟି ମୂଳମାୟାରୁ ହିଁ ପ୍ରକଟିତ ହୋଇ ଅନନ୍ତ ପ୍ରକୃତିରେ ପରିଣତ ହୋଇଛି । ତେଣୁ ଗୋଟି ଗୋଟି କରି କେତେ ବା ବର୍ଣ୍ଣନା କରାଯିବ ? ଆଲୋକ ଓ ଅନ୍ଧକାର, ବିଚାର ଓ ଅବିଚାର, ନ୍ୟାୟ ଓ ଅନ୍ୟାୟ, ଅନୁଭବ ଓ ଅନୁମାନର ଝମେଲା ସଂସାରରେ ଲାଗି ରହିଥିବ । ତେଣୁ ବିବେକଦ୍ୱାରା ହିଁ ସତ୍ୟ ଅସତ୍ୟକୁ ନିର୍ଣ୍ଣୟ କରି ଅସାରକୁ ତ୍ୟାଗକରି ଯାହା ସାର, ଶାଶ୍ୱତ ଏବଂ ନିର୍ଗୁଣ ପରମାତ୍ମା, ତାଙ୍କୁ ହିଁ ସ୍ୱୀକାର କରିବା ଉଚିତ ।

## ଦଶମ ସମାସ
## ।। ଗୁଣଭୂତ ବିବେଚନ ।।

ବକ୍ତା କହୁଛନ୍ତି—ଏ ସଂସାର ପଞ୍ଚମହାଭୂତଙ୍କର ଏକ ମେଳା । ପଞ୍ଚଭୂତର ବିନାଶ ଘଟିଲେ ସଂସାରରେ ରହିବ କ'ଣ ?

ଶ୍ରୋତାଙ୍କ ପ୍ରଶ୍ନ—ଆପଣ ପଞ୍ଚଭୂତର ବହୁ ମହିମା ବର୍ଣ୍ଣନା କରିଛନ୍ତି କିନ୍ତୁ ତିନିଗୁଣର ମହିମା କ'ଣ ?

ବକ୍ତା କହୁଛନ୍ତି – ଅନ୍ତରାତ୍ମା ପଞ୍ଚଭୂତାତ୍ମକ । ତିନିଗୁଣ ଏହାର ଅନ୍ତର୍ଗତ । ଯାହା କିଛି ପ୍ରକଟ ହୋଇଥାଏ ତାହା ଏହି ତତ୍ତ୍ୱର ଖେଳ । ଏଥିରେ ତିନିଗୁଣ ମଧ୍ୟ ସମାବିଷ୍ଟ । ସୃଷ୍ଟିରେ ପଞ୍ଚଭୂତଠାରୁ ଭିନ୍ନ କିଛି ନାହିଁ । ପଞ୍ଚଭୂତ ଗୋଟିଏ ଅନ୍ୟ ସହିତ ମିଳେଇ ରହିଛନ୍ତି । ଗୋଟିଏ ସହିତ ଅନ୍ୟର ସଂଯୋଗ ବିନା କୌଣସି ବସ୍ତୁ ବା ପ୍ରାଣୀର ଅସ୍ତିତ୍ୱ ନାହିଁ । କୁହାଯାଇଚି ଯେ ଆତ୍ମାରୁ ପବନ ବା ବାୟୁର ଉତ୍ପତ୍ତି ହୋଇଛି । ପବନରୁ ଅଗ୍ନି, ଅଗ୍ନିରୁ ଜୀବନ ବା ଜଳର ଉତ୍ପତ୍ତି । ସୂର୍ଯ୍ୟର ଉତ୍ତାପରେ ଜଳ ଶୁଖିଯାଏ । ଅଗ୍ନି ତଥା ବାୟୁର ସଂଯୋଗରେ ତିଆରି ହୋଇଛି ଏହି ଭୂମଣ୍ଡଳ । ଯଦି ଅଗ୍ନି, ବାୟୁ ଓ ସୂର୍ଯ୍ୟ ନ ଥାଆନ୍ତେ ତ ସୃଷ୍ଟି କେବଳ ଶୀତଳ ହୋଇ ରହିଥାଆନ୍ତା । ପରମାତ୍ମା ଅତ୍ୟନ୍ତ କୁଶଳତା ସହିତ ବିଚିତ୍ର ସଂସାର ରଚନା କରିଛନ୍ତି । ଯଦି ସର୍ବତ୍ର କେବଳ ଶୀତଳତା ରହିଥାଆନ୍ତା । ସଂସାରରେ କୌଣସି ପ୍ରାଣୀ ଜୀବିତ ରହି ପାରନ୍ତେ ନାହିଁ । ଯଦି କେବଳ ଉତ୍ତାପ ରହିଥାଆନ୍ତା ତାହା ହେଲେ ତା'ର ପ୍ରକୋପରେ ସବୁ ଜଳିଯାଆନ୍ତା ।

ଯେତେବେଳେ ସୂର୍ଯ୍ୟଙ୍କ ଉତ୍ତାପରେ ସମଗ୍ର ଭୂମଣ୍ଡଳ ଶୁଖିଗଲା, ସେତେବେଳେ ଏହାକୁ ସଜୀବ ରଖିବା ପାଇଁ ସେ ଉପାୟ କଲେ । ରଚନା କଲେ ବର୍ଷାଋତୁ, ତାହା ଫଳରେ ସୃଷ୍ଟି ପାଇଲା ଶୀତଳତା । ଅତି ଶୀତ ହେବାରେ ଜୀବଜଗତ କଷ୍ଟ ପାଇବାରେ ସୃଷ୍ଟି କଲେ ଗ୍ରୀଷ୍ମଋତୁ । ସେଥିରେ ଦିନଟିକୁ ବିଭକ୍ତ କରି ସୃଷ୍ଟିକଲେ ପ୍ରାତଃକାଳ, ମଧ୍ୟାହ୍ନ, ସନ୍ଧ୍ୟା । ଦିନ ଭିତରେ କେତେ ସମୟ ଶୀତଳ ତ କେତେ ସମୟ ଉଷ୍ଣ ରଖିଲେ । ଏହିଭଳି ଭାବେ ସେ ସବୁ ବିଷୟ ସୁସଙ୍ଗତ ଓ ନିୟମିତ କରିଛନ୍ତି ।

ଅନେକ ପ୍ରକାରର କଠିନ ରୋଗରେ ମନୁଷ୍ୟ ଯେତେବେଳେ ପୀଡ଼ିତ ହେବାକୁ ଲାଗିଲା, ତାର କଷ୍ଟ ନିବାରଣ ଲାଗି ପରମାତ୍ମା ସୃଷ୍ଟି କଲେ ନାନା ଔଷଧି, ବନସ୍ପତି । ଏବେ ଜୀବ-ସୃଷ୍ଟିର ବିବରଣୀ ଶୁଣ । ଦେହର ମୂଳ ହେଉଚି ରକ୍ତ ଓ ରେତ (ବୀର୍ଯ୍ୟ) । ଜଳତତ୍ତ୍ୱରେ ଏହା ପ୍ରସ୍ତୁତ । ଏହି ଜଳତତ୍ତ୍ୱରେ ହିଁ ଦାନ୍ତ ବାହାରେ । ସମସ୍ତଙ୍କ ମୂଳ ଜୀବନ ଜଳ । ମୁକ୍ତାଫଳ (ମୋତି), ଶୁକ୍ରତାରା ଭଳି ଝଟକୁଥିବା ହୀରା, ମଣି-ମାଣିକ୍ୟ, ଇନ୍ଦ୍ରନୀଳ ଆଦି ହେଉଚି ରତ୍ନ । ଏହି ସବୁଥିରେ ନିହିତ ପଞ୍ଚଭୂତ । କେଉଁଥିରେ ଭୂତତତ୍ତ୍ୱ କମ ତ କେଉଥିରେ ବେଶି ।

ଅନ୍ତରାତ୍ମା ସମସ୍ତଙ୍କ ପାଳନ ପୋଷଣ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ସଂଚାଳିତ କରିଥାଆନ୍ତି । ଯେଉଁଠି ଆତ୍ମା ନାହିଁ ସେଠି କିଛି ନାହିଁ । ଆତ୍ମାର ଅଭାବରେ ତିନିଲୋକର ପ୍ରାଣୀ ମୃତ । ଆତ୍ମାବିନା କୌଣସି କଥା ବିବେକ ପୂର୍ବକ ବୁଝାଯାଇ ନ ପାରେ ।

ତେଣୁ ସମସ୍ତେ ଜଗଦୀଶ୍ୱରଙ୍କ ଭଜନ କରିବା ଉଚିତ । ସବୁ ମନୁଷ୍ୟ ଲାଗି ପରବ୍ରହ୍ମ ପରମାତ୍ମାଙ୍କ ଉପାସନା ହିଁ ସବୁଠାରୁ ବଡ଼ ସମ୍ବଳ । ଏହା ବିନା ସମସ୍ତେ ନିରାଶ୍ରିତ । ପରମାତ୍ମାଙ୍କ ଅବଲମ୍ବନ ବିନା ଅନ୍ୟ କୌଣସି ଉପାୟରେ ସିଦ୍ଧି ଲାଭ ହୋଇନପାରେ । ସର୍ବସମର୍ଥ ପରମାତ୍ମାଙ୍କ ଅବଲମ୍ବନ ବିନା କୌଣସି ବ୍ୟକ୍ତି, ପ୍ରାଣୀ ଓ ବିଷୟ ତିଷ୍ଠି ନ ପାରେ । ତେଣୁ ଚାଲିଥିବାବେଳେ, ବସିବା ଉଠିବାବେଳେ ଅର୍ଥାତ୍ ନିରନ୍ତର ଭଜନ ତଥା ନାମ ସ୍ମରଣ କରିବା ଉଚିତ । ଭଜନ, ସାଧନ ଓ ଅଭ୍ୟାସ ଦ୍ୱାରା ହିଁ ପରଲୋକ ସୁନ୍ଦର ହୋଇପାରେ । ଯାହାସବୁ କୁହାଗଲା ସେଥିପ୍ରତି ଆପଣମାନଙ୍କ ପୂର୍ଣ୍ଣ ଆସ୍ଥା ରହିବା ଉଚିତ ।



# ସପ୍ତଦଶ ଦଶକ

## ପ୍ରଥମ ସମାସ
## ।। ଦେବବଳ ନିରୂପଣ ।।

ନିଶ୍ଚଳ ବ୍ରହ୍ମରୁ ଚଞ୍ଚଳ ଆତ୍ମା (ମୂଳମାୟା) ଉତ୍ପନ୍ନ । ଏହି ପରବ୍ରହ୍ମ ପଞ୍ଚଭୂତ ନିର୍ଗୁଣାତୀତ । ପରମାତ୍ମା, ଚୈତନ୍ୟ, ସାକ୍ଷୀ, ଜ୍ଞାନାତ୍ମା ଷଡ଼ଗୁଣେଶ୍ୱର ଆଦି ଏହାର ଅନେକ ନାମ । ଏହା ସମଗ୍ର ଜଗତର ଈଶ । ତେଣୁ ଏହାଙ୍କୁ ଜଗଦୀଶ୍ୱର କୁହାଯାଇଥାଏ । ଏହିଥିରୁ ସୃଷ୍ଟିର ବିସ୍ତାର । ଶିବ-ଶକ୍ତି, ଜଗଦୀଶ୍ୱରୀ, ପ୍ରକୃତି ପୁରୁଷ, ମୂଳମାୟା, ଗୁଣମାୟା, କ୍ଷେତ୍ରଜ୍ଞ, ଦ୍ରଷ୍ଟା, କୂଟସ୍ଥ ଶୁଦ୍ଧ ସତ୍ତ୍ୱ, ମହତ-ତତ୍ତ୍ୱ ଆଦି ସବୁ ନାମ ଏହି ଚଞ୍ଚଳ ଆତ୍ମା ଅର୍ଥାତ୍ ଅନ୍ତରାତ୍ମାର । ଏହା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଅନ୍ତପିଣ୍ଡ ଜୀବ ତଥା ସବୁ ପ୍ରାଣୀଙ୍କୁ ଜାଣେ । ଦେହ ମନ୍ଦିରରେ ବସି ଯିଏ ଏହାଙ୍କ ଉପାସନା କରି ନ ଥାଏ, ତାକୁ ଦଣ୍ଡ ଦିଏ । ତେଣୁ ଲୋକେ ଭୟରେ ଏହାକୁ ଭଜନ କରନ୍ତି । ଭଜନରେ ତ୍ରୁଟି କଲେ ସେ ନାନା ତାଡ଼ନା ଦିଏ । ତେଣୁ ସମସ୍ତେ ଏହା ନିକଟରେ ବିନମ୍ର ଭାବରେ ନତମସ୍ତକ ହୋଇ-ଥାଆନ୍ତି । ଏହାକୁ ଯାହା ମାଗିଲେ ମିଳେ, ତେଣୁ ଲୋକେ ଏହାର ଶରଣାପନ୍ନ ହୋଇଥାଆନ୍ତି । ଏହା ଲାଗି ଶବ୍ଦାଦି ପଞ୍ଚ ବିଷୟର ନୈବେଦ୍ୟ ସର୍ବଦା ପ୍ରସ୍ତୁତ ରଖିବାକୁ ପଡ଼ିଥାଏ । ନଚେତ୍ ଏହା ଦେହକୁ ଅନେକ ରୋଗଦ୍ୱାରା ପୀଡ଼ିତ କରିପକାଏ । ଏହି ନୈବେଦ୍ୟ ନ ମିଳିଲେ ଏହା ରୁଷ୍ଟ ହୋଇ ନାନା ପ୍ରକାରର ଭୋଗ ପଦାର୍ଥ, ବୈଭବ ଆଦି ଛାଡ଼ି ଚାଲିଯାଇଥାଏ । ଇଏ କିମିତି ଚାଲିଯାଏ, କେହି ଜାଣି ପାରନ୍ତି ନାହିଁ । ଏହା ସହିତ ଏକାକାର ନ ହେଲେ ସେ କାହାକୁ ନିଜରୂପ ଦେଖାଇ ନ ଥାଏ । ଏହି ଦେବତାଙ୍କ ଦର୍ଶନ ଲାଗି ଅନେକ ମନ୍ଦିରକୁ ଯାଇଥାଆନ୍ତି । ଏହା କୌଣସି କୌଣସି ସାଧୁସନ୍ଥ ସଦ୍‌ଗୁରୁଙ୍କଠାରେ ମଧ୍ୟ

ପ୍ରକଟିତ ହୋଇଥାଏ । ମନ୍ଦିର ହେଉଚି ଏହି ଶରୀର । ଏଥିରେ ଜୀବେଶ୍ୱର ରହିଥାଆନ୍ତି । ଶରୀର ଅନନ୍ତ ଓ ଭିନ୍ନ ଭିନ୍ନ । ଏହି ଯିବା ଆସିବା କରୁଥିବା ମନ୍ଦିରରେ ଭଗବାନ ରହିଥାଆନ୍ତି । ସବୁ ଶରୀରରୂପୀ ମନ୍ଦିରରେ ଅନ୍ତରାତ୍ମା ଦେବତାଙ୍କ ନିବାସ । ଏକଥା ଆମ୍ଭେମାନେ ଭଲଭାବେ ଜାଣିବା ଉଚିତ । ମତ୍ସ୍ୟ, କଚ୍ଛପ, ବରାହ ତଥା ଭୂମଣ୍ଡଳର ସମସ୍ତ ପ୍ରାଣୀ ଦେହରେ ଏହି ଅନ୍ତରାତ୍ମା ବିଦ୍ୟମାନ । କୌଣସି କୌଣସି ଶରୀରରେ ଏହା କେବଳ ସୁଖ ଇଚ୍ଛା କରିଥାଏ, କିନ୍ତୁ ଏହା ସ୍ଥାୟୀ ନୁହଁ । ମନୁଷ୍ୟମାତ୍ରେ ଅନ୍ତରାତ୍ମାଙ୍କୁ ନିଜର ସ୍ୱାମୀ ବା ପ୍ରଭୁ ମାନିବା ଉଚିତ । ଯିଏ ଏହାପ୍ରତି ଉନ୍ମୁଖ ହୋଇପଡ଼େ, ସେ ଏହା ସହିତ ଅଭେଦ, ଅଭିନ୍ନ ହୋଇ ଉଠେ ଏବଂ ବିମୁଖ ହେଲେ ଦୁଃଖସାଗରରେ ବୁଡିଯାଏ । ଏହିଭଳି ଭାବେ ଏହା ସହିତ ଦୁଃଖ ସୁଖର ସମ୍ପର୍କ ।

ନିତ୍ୟ ଓ ଅନିତ୍ୟ ବିବେକଦ୍ୱାରା ଯିଏ ଇହଲୋକ ଓ ପରଲୋକ (ପ୍ରପଞ୍ଚ ଓ ପରମାର୍ଥ) ଉଭୟକୁ ସାଧି କରି ନେଇପାରେ, ତାର ଜନ୍ମ ସାର୍ଥକ । ମନନଶୀଳ ପୁରୁଷ ସର୍ବଦା ପରମେଶ୍ୱରଙ୍କ ନିକଟତର । ଯାହାକୁ ପହଁରା ଆସୁଛି, ସେ ଅନ୍ୟ ବ୍ୟକ୍ତିକୁ ପାଣିରେ ବୁଡିବାକୁ ଦେବା ଉଚିତ ନୁହେଁ । ବୁଡି ଯାଉଥିବା ଦେଖିବାମାତ୍ରେ ତାକୁ ଉଦ୍ଧାର କରିବାକୁ ଚେଷ୍ଟା କରିବା ଉଚିତ ।

ସ୍ଥୂଳ ଓ ସୂକ୍ଷ୍ମ ତତ୍ତ୍ୱକୁ ଏବଂ ବିବେକ ଦ୍ୱାରା ପିଣ୍ଡ ବ୍ରହ୍ମାଣ୍ଡକୁ ବିଶ୍ଳେଷଣ କରି ଆତ୍ମାନୁଭବ ଲାଭ କରିବା ବ୍ୟକ୍ତି ବିରଳ କହିଲେ ଚଳେ । ଯାହାକୁ ଏପରି ବିବେକୀ ମହାତ୍ମାଙ୍କ ସତ୍‌ସଙ୍ଗ ମିଳେ ସେ ଧନ୍ୟ । ଏହାଙ୍କ ମୁହଁରୁ ପ୍ରତିପାଦିତ ସିଦ୍ଧାନ୍ତ ନିରୂପଣ ଶୁଣି ପ୍ରାଣୀଙ୍କର ଉଦ୍ଧାର ହୋଇଥାଏ । ସତ୍‌ସଙ୍ଗ ଓ ସଦ୍‌ଗ୍ରନ୍ଥର ଶ୍ରବଣ ଦ୍ୱାରା ମନୁଷ୍ୟ ମନରେ ପରୋପକାର ପ୍ରବୃତ୍ତି ସୃଷ୍ଟି ହୋଇଥାଏ । ଏଭଳି ମନୁଷ୍ୟ ପରମାତ୍ମାଙ୍କ ଅଂଶ ବୋଲି ସ୍ୱୀକାର କରାଯାଇଥାଏ । ଏହିମାନେ ହିଁ ସଂସାରରେ ବ୍ୟାପ୍ତ ଅଧର୍ମ, ଅନାଚାରକୁ ହଟେଇ ଧର୍ମ ସଂସ୍ଥାପନା କରିଥାଆନ୍ତି । ଏହି ମହାତ୍ମା ପୁରୁଷ ସାର, ଅସାର ବିବେକଦ୍ୱାରା ଜୀବକୁ ଉଦ୍ଧାର କରି ନିଜେ ନିଃସଙ୍ଗ ରହି ବ୍ରହ୍ମ ସ୍ୱରୂପରେ ବିଲୀନ ହୋଇଯାଆନ୍ତି ।

## ଦ୍ୱିତୀୟ ସମାସ
## ।। ଶିବ-ଶକ୍ତି ସ୍ୱରୂପ ।।

ବକ୍ତା କହୁଛନ୍ତି— ବ୍ରହ୍ମ ଆକାଶଭଳି ନିଶ୍ଚଳ, ନିର୍ମଳ, ନିରାକାର ଓ ନିର୍ବିକାର । ଏହା ଅନନ୍ତ, ଅନାଦି ଓ ଅବିନାଶୀ । ଏହା ଭାଙ୍ଗିପଡ଼େନା କିମ୍ବା ଖସି ପଡ଼େନା । ଏଥିରେ ଜ୍ଞାନ ନାହିଁ କି ଅଜ୍ଞାନ ନାହିଁ । ସ୍ମରଣ ନାହିଁ କି ବିସ୍ମରଣ ନାହିଁ । ଏହା ଅଖଣ୍ଡ ଏବଂ ନିର୍ଗୁଣ । ଏଥିରେ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ରାଦି ନାହିଁ । ଆଲୋକ ନାହିଁ କି ଅନ୍ଧାର ନାହିଁ । ଏଭଳି ଏହି ବ୍ରହ୍ମ । ଏହା ଅଦ୍ୱୈତ ଏବଂ ସକଳ ଉପାଧିରହିତ । ନିଶ୍ଚଳରେ ଯେଉଁ ଚଳନ, ସ୍ମରଣ, ଚୈତନ୍ୟର କଳ୍ପନା ସହିତ ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣର ବିକାଶ ହୋଇଛି, ଏହାକୁ ଗୁଣମାୟା ସଂଜ୍ଞା ଦିଆଯାଇଛି । ଏହି ସ୍ମରଣ, ଚୈତନ୍ୟ ଏବଂ ଚଞ୍ଚଳତାକୁ ମୂଳମାୟା ମଧ୍ୟ କୁହାଯାଇଥାଏ । ନିର୍ଗୁଣରେ, ଆକାଶରେ ମେଘ ଭଳି ଯେଉଁ ବିକାର ସୃଷ୍ଟି ହେଲା, ଏହାକୁ ଷଡ଼ଗୁଣେଶ୍ୱର, ଅର୍ଦ୍ଧନାରୀନଟେଶ୍ୱର, ଶିବଶକ୍ତି ଆଦି ନାମ ଦିଆଯାଇଛି । ଏହାହିଁ ମୂଳ ସୃଷ୍ଟି ରଚନାର ସର୍ବଶକ୍ତି ଏବଂ ଏହିଥିରୁ ମାୟାଫଳରେ ଅନେକ ତତ୍ତ୍ୱର ଉଦୟ ହୋଇଛି ।

ଯେପରି ବୀଜରୁ ଫଳ ହୋଇଥାଏ କିନ୍ତୁ କେଉଁଭଳି ଏହା ବିକଶିତ ହୁଏ ଦେଖାଯାଏ ନାହିଁ, ସେହିଭଳି ପିଣ୍ଡରେ ବ୍ରହ୍ମାଣ୍ଡର ରଚନା ହେଉଥିଲେ ମଧ୍ୟ ଏହା ପ୍ରତ୍ୟକ୍ଷ ଦେଖାଯାଏ ନାହିଁ । ତାତ୍ପର୍ଯ୍ୟ ହେଉଚି ସ୍ଥୂଳରେ ସୂକ୍ଷ୍ମକୁ, ଦୃଷ୍ଟରେ ଅଦୃଷ୍ଟକୁ କଳ୍ପନା କରିବା ଉଚିତ । କଳ୍ପନାରେ ହିଁ ସୃଷ୍ଟିର ରଚନା ହୋଇଛି ବୋଲି ବେଦଶାସ୍ତ୍ର କହେ, କିନ୍ତୁ କଳ୍ପନା ଦେଖାଯାଏ ନାହିଁ । ସେଥିଲାଗି ବେଦଶାସ୍ତ୍ରକୁ ଆମ୍ଭେମାନେ ମିଥ୍ୟା କହିବା ଅନୁଚିତ । ପ୍ରତ୍ୟେକ ଜନ୍ମ ଗୋଟିଏ ଗୋଟିଏ ପରଦା । ଏହିଭଳି ଭାବରେ ବହୁ ଜନ୍ମର ପରଦାର ଆବରଣ ହୋଇଯିବାରେ ମୂଳବସ୍ତୁର ବିଚାର ଜ୍ଞାତ ହୋଇ ପାରେନା । ନିଶ୍ଚିତ ରହସ୍ୟ ମାତ୍ରେ ଗୂଢ଼ । ବିବେକ ବିନା ଏହା ଅବଗତ ହୋଇ ନ ଥାଏ । ପିଣ୍ଡରେ ସ୍ତ୍ରୀ-ପୁରୁଷ ମଧ୍ୟରେ ଗୋଟିକର ଅନ୍ୟପ୍ରତି ଆକର୍ଷଣ ରହିଥାଏ । ସ୍ତ୍ରୀର ସ୍ତ୍ରୀ ପ୍ରତି ଏବଂ ପୁରୁଷର ପୁରୁଷ ପ୍ରତି ଆକର୍ଷଣ ହୋଇନଥାଏ । ପିଣ୍ଡରେ ଭିନ୍ନ ଭିନ୍ନ ବାସନା ରହିଥାଏ, କିନ୍ତୁ ବାସ୍ତବରେ ବାସନା ଅଭିନ୍ନ; କିନ୍ତୁ ଦେହସମ୍ବନ୍ଧରୁ ଏହା ଭିନ୍ନ ଦେଖାଯାଇଥାଏ । ଦେହ ସମ୍ବନ୍ଧ

ନଷ୍ଟ ହେବାମାତ୍ରେ ବାସନାର ଭେଦ ମଧ୍ୟ ସମାପ୍ତ ହୋଇଯାଏ । ଯେତେ ଉପାଧି ରହିଛି ସବୁ ସ୍ତ୍ରୀ ଯୋଗୁଁ । ପ୍ରେମ, ପ୍ରୀତି, ଅନୁରାଗ, ପ୍ରଣୟ ଆଦି ପ୍ରପଞ୍ଚରେ ପୁରୁଷକୁ ଜଡ଼ିତ କରି ରଖିବା ହେଉଚି ସ୍ତ୍ରୀର କାମ । ବାସନା ସ୍ତ୍ରୀ ଓ ପୁରୁଷକୁ ଏକତ୍ର ବାନ୍ଧି ରଖିଥାଏ । ମୂଳମାୟାରେ ଶିବ-ଶକ୍ତିର ସୂକ୍ଷ୍ମ ଭେଦ ରହିଥାଏ । ଏହା ଉତ୍ପତ୍ତିର କାରଣ । ସୂକ୍ଷ୍ମରେ ଯାହା ଶିବ ଶକ୍ତି, ସ୍ଥୂଳରେ ତାହା ନରନାରୀ । ଏହିଥିରୁହିଁ ୮୦ଲକ୍ଷ ଜୀବ-ଯୋନିର ନିର୍ମାଣ ।

ଏଠାରେ ଶିବ ଶକ୍ତିର ଯେଉଁ ସ୍ୱରୂପ କୁହାଗଲା, ଆପଣମାନେ ସେ ସମ୍ପର୍କରେ ଭଲଭାବରେ ମନନ ଚିନ୍ତନ କରିବା ଉଚିତ ।

## ତୃତୀୟ ସମାସ
## ।। ଶ୍ରବଣ-ନିରୂପଣ ।।

ସବୁ ଶ୍ରବଣ ମଧ୍ୟରେ ଶ୍ରେଷ୍ଠ ହେଉଚି ଅଧ୍ୟାତ୍ମ-ଶ୍ରବଣ । ଏକାଗ୍ରଚିତ୍ତରେ ଗ୍ରନ୍ଥ ଅଧ୍ୟୟନ ଆବଶ୍ୟକ । ପ୍ରଥମେ ଶ୍ରବଣର ମନନ, ତାପରେ ମନନର ନିଦିଧ୍ୟାସନ (ଚିନ୍ତନ) କରାଯିବା ଉଚିତ । ନିଦିଧ୍ୟାସନ କରୁ କରୁ ସାକ୍ଷାତ୍କାର ହୋଇଯାଇଥାଏ । ମୋକ୍ଷ କୌଣସି ଧାରଉଧାର କାରବାର ନୁହଁ । ମନରେ ପ୍ରତ୍ୟୟକୁ ତତ୍କାଳ ଅନୁଭବ କରାଯିବା ଉଚିତ । ନାନା ରତ୍ନ— ଯଥା ହୀରା, ମୋତି, ସୁନା-ଆଦିକୁ ସାବଧାନତା ସହିତ ପରୀକ୍ଷା କରିବାକୁ ପଡ଼ିଥାଏ । ଅଧ୍ୟାତ୍ମଗ୍ରନ୍ଥର ବିବରଣ ଲାଗି ତାଠାରୁ କୋଟି କୋଟି ଗୁଣରେ ସାବଧାନତା ଓ ବୁଦ୍ଧିର ସୂକ୍ଷ୍ମତା ଆବଶ୍ୟକ ହୋଇଥାଏ । କଥା କାହାଣୀ, ଅବତାରମାନଙ୍କ ଚରିତ୍ର-ବର୍ଣ୍ଣନଠାରୁ ଆଧ୍ୟାତ୍ମ୍ୟବିଦ୍ୟା ଶ୍ରେଷ୍ଠ । କଥା ପୁରାଣରୁ କଣ ମିଳେ ? ସେଥିରେ ପୁଣ୍ୟଲାଭ କିପରି ହୁଏ ସେହିକଥା ହିଁ ବର୍ଣ୍ଣନା କରାଯାଇଥାଏ, କିନ୍ତୁ ପୁଣ୍ୟ ଦେଖାଯାଇ ନ ଥାଏ । ଆଧ୍ୟାତ୍ମ କଥା ଏଭଳି ନୁହଁ । ଅଧ୍ୟାତ୍ମବିଦ୍ୟା ହିଁ ଲୋକଙ୍କ ତତ୍କାଳ ମୋକ୍ଷଫଳ ପ୍ରଦାନ କରିଥାଏ । ଏହା ଅନୁଭୂତ ହେବାମାତ୍ରେ ଅନୁମାନଗ୍ରସ୍ତ ସଂଶୟ-ଜ୍ଞାନ ନଷ୍ଟ ହୋଇଯାଇଥାଏ । ବଡ଼ ବଡ଼ ଲୋକେ ଆତ୍ମଲାଭ ଲାଗି ପ୍ରୟାସ କରିଥାଆନ୍ତି । ଏହି ଆତ୍ମାର ମହିମା ଅବର୍ଣ୍ଣନୀୟ । ଯୁଗଯୁଗାନ୍ତର ଧରି ଏକାକୀ ଏହି ଆତ୍ମା ହିଁ ତ୍ରିଲୋକକୁ ସଞ୍ଚାଳନ କରି ଆସୁଛି ।

ତେଣୁ ଆତ୍ମ-ଜ୍ଞାନ ହିଁ ସର୍ବଶ୍ରେଷ୍ଠ ଜ୍ଞାନ । ପୃଥ୍ୱୀ, ଆପ, ତେଜ, ବାୟୁ- ଏସବୁ ତତ୍ତ୍ୱଠାରୁ ଆକାଶତତ୍ତ୍ୱ (ଅନ୍ତରାତ୍ମା) ପୃଥକ୍ । ଏହା ସବୁ ତତ୍ତ୍ୱର ବୀଜ । ଯିଏ ବାୟୁ ତତ୍ତ୍ୱର ଉର୍ଦ୍ଧ୍ୱରେ ବିଚାର କରିବ, ତା ପକ୍ଷରେ ଅନ୍ତରାତ୍ମା ନିକଟତର ପ୍ରତୀତ ହେବ । ବାୟୁର ଉର୍ଦ୍ଧ୍ୱରେ ଆକାଶ ଏବଂ ଏହାର ଉର୍ଦ୍ଧ୍ୱରେ ଗୁଣମାୟା । ତାପରେ ପ୍ରକୃତି-ପୁରୁଷ ଅର୍ଥାତ୍ ମୂଳମାୟା । ଏହାର ଉତ୍ତରୋତ୍ତର ସୂକ୍ଷ୍ମ । ସୂକ୍ଷ୍ମରୂପରେ ହିଁ ଏହା ଅନୁଭବ କରାଯିବା ଉଚିତ । ମାୟାର ଜଞ୍ଜାଳରେ ଜଡ଼ିତ ହୋଇ ପଡ଼ିବାରେ ଜୀବ ସୂକ୍ଷ୍ମବିଚାର କରିବାକୁ ସମର୍ଥ ହୋଇପାରେନା । କିନ୍ତୁ ଯିଏ ବିବେକପୂର୍ବକ ସୂକ୍ଷ୍ମରେ ପ୍ରବେଶ କରିବ ସେ ନିଃସନ୍ଦେହ ହୋଇପାରିବ । ପଦାର୍ଥ ରମଣୀୟ ଦେଖାଯାଇଥାଏ, କିନ୍ତୁ ଏହା ବିନାଶଶୀଳ । ପଦାର୍ଥ ଜ୍ଞାନ ମାତ୍ରେ ଆନୁମାନିକ । ତେଣୁ ଏସବୁ ଛାଡ଼ି ନିରଞ୍ଜନଙ୍କୁ ଧ୍ୟାନ କରିବା ଆବଶ୍ୟକ । ଅଷ୍ଟାଙ୍ଗଯୋଗ ଓ ପିଣ୍ଡଜ୍ଞାନ ନିମ୍ନଶ୍ରେଣୀର । ତାଠାରୁ ତତ୍ତ୍ୱ-ଜ୍ଞାନ ଉଚ୍ଚରେ ଏବଂ ଆତ୍ମ-ଜ୍ଞାନ ସବୁଠାରୁ ଶ୍ରେଷ୍ଠ । ମୂଳମାୟାର ଶେଷରେ ବିମାନ-ବ୍ରହ୍ମ । ଏହାଦ୍ୱାରା ଆଦି ସଂକଳ୍ପ ଉଠିଥାଏ । ସାଧକ ଉପାସନା- ଯୋଗଦ୍ୱାରା ସର୍ବସ୍ୱ ଅର୍ପଣ କରିବା ଉଚିତ । ସବୁରି ଉପରେ ନିଶ୍ଚଳବ୍ରହ୍ମ । ଏହା ସର୍ବତ୍ର ବ୍ୟାପ୍ତ । ଅତ୍ୟନ୍ତ ସୂକ୍ଷ୍ମ-ବିଚାରଦ୍ୱାରା ପିଣ୍ଡବ୍ରହ୍ମାଣ୍ଡର ନିରସନ ହେଲେ ଯାଇ ଏହାକୁ କଳନା କରାଯାଇ-ପାରେ । ସମସ୍ତ ତତ୍ତ୍ୱବିଶ୍ଳେଷଣ କରି ସାର-ଅସାର ବିଚାରଦ୍ୱାରା ଶୁଦ୍ଧ ବ୍ରହ୍ମର ଅନୁଭବ କରିବା ଉଚିତ ।

## ଚତୁର୍ଥ ସମାସ
## ।। ଅନୁମାନ-ବକ୍ତୃତ୍ୱ ନିରୂପଣ ।।

ଯଦି କୌଣସି ଶ୍ରୋତା ''ବହୁଜନ-ସୁଖାୟ ବହୁଜନ ହିତାୟ'' ଅର୍ଥାତ୍ ଜନକଲ୍ୟାଣ କଥା ପଚାରେ, ବକ୍ତା ସେଥିରେ କ୍ଷୁବ୍ଧ ହେବା ଉଚିତ ନୁହେଁ କିମ୍ବା ଭାଷଣ ଦେଉଥିବା ସମୟରେ ଏହି ପ୍ରଶ୍ନକୁ ଏଡ଼େଇ ଦେଇ ଅନ୍ୟ ବିଷୟର ଅବତାରଣା କରିବା ଅନୁଚିତ । ବକ୍ତାମାତ୍ରେ ଲୋକଙ୍କ ସନ୍ଦେହ ଦୂର କରିବା ଆବଶ୍ୟକ । ବିଷୟ ପ୍ରତିପାଦନ ବେଳେ ପରସ୍ପର ବିରୋଧୀ କଥା କହିବା ଅନୁଚିତ । ସ୍ଥୂଳଠାରୁ ଆରମ୍ଭକରି ସୂକ୍ଷ୍ମ ପର୍ଯ୍ୟନ୍ତ ସମଗ୍ର ସିଦ୍ଧାନ୍ତକୁ ବକ୍ତା ଏପରି

କୁଶଳତା ସହିତ ବିବେଚନ କରିବା ଉଚିତ, ଯେଉଁଥିରେ ଶ୍ରୋତାର ମନରେ ଥିବା ସନ୍ଦେହର ସମାଧାନ ହୋଇପାରିବ । ସୂକ୍ଷ୍ମତତ୍ତ୍ୱ ସମ୍ପର୍କରେ ଯାହାସବୁ କହିବ, ତାର ରୂପ ସମ୍ପର୍କରେ ଶ୍ରୋତାମାନଙ୍କୁ ଯଥାର୍ଥ ଜ୍ଞାନ ଦେବା ବିବେକବାନ୍ ବକ୍ତାର କର୍ତ୍ତବ୍ୟ ।

ବିବେକୀ ବକ୍ତା ବିଷୟକୁ ଅଧିକ ବିସ୍ତାରିତ କିମ୍ବା ଚର୍ବିତଚର୍ବଣ ନ କରି ଅନିର୍ବଚନୀୟ ବ୍ରହ୍ମସ୍ୱରୂପ ସମ୍ପର୍କରେ ଶ୍ରୋତାମାନଙ୍କୁ ଉପଯୁକ୍ତ ଭାବରେ ବୁଝେଇବା ଉଚିତ ।

କେତେକ ତଥାକଥିତ ବାଗ୍ମୀ ବକ୍ତା କଥନ-କୌଶଳ ଦ୍ୱାରା କେତେ-ବେଳେ ବ୍ରହ୍ମକୁ ନିଶ୍ଚଳ ତ କେତେବେଳେ ଏହାକୁ ସାକ୍ଷୀ, କେବେ କେବେ ନିଶ୍ଚଳକୁ ଚଞ୍ଚଳ ଏବଂ ଚଞ୍ଚଳକୁ ନିଶ୍ଚଳ କହିଥାଆନ୍ତି । ଏଭଳି ଭାବେ ସେମାନେ ଅସଂଲଗ୍ନ କଥା ସବୁ କହିଥାଆନ୍ତି, କିନ୍ତୁ କେବେହେଲେ ନିଶ୍ଚୟାତ୍ମକ କଥା କହି ନଥାଆନ୍ତି । ଏଭଳି ବକ୍ତା ଯିଏ ନିଜେ ଅସଂଯତ, ଶ୍ରୋତାଙ୍କୁ ନିଶ୍ଚୟାତ୍ମକ ଜ୍ଞାନ ଦେବେ କିପରି ? ଏଭଳି ବକ୍ତା ଭ୍ରମକୁ ପରବ୍ରହ୍ମ ଏବଂ ପରବ୍ରହ୍ମକୁ ଭ୍ରମ ବୋଲି କହିଥାଆନ୍ତି । ଏମାନେ ଶାସ୍ତ୍ର-ବଚନକୁ ଉଦ୍ଧାର କରି ବଡ଼ ବଡ଼ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବଚନ ଦେଇଥାଆନ୍ତି, କିନ୍ତୁ ଏମାନଙ୍କ ଅନୁଭବ-ଘର ବିଲକୁଲ ଶୂନ୍ୟ । ଧନପ୍ରାପ୍ତି ଲାଗି ପଣ୍ଡିତପଣିଆ ଦେଖାଉଥିବା ଲୋକ ପରମ ପରବ୍ରହ୍ମକୁ ବୁଝେଇ ପାରିବେ କିପରି ? ବୈଦ୍ୟ ନିଜ ଔଷଧର ପ୍ରଶଂସା କଲେ କ'ଣ ହେବ, ସେଥିରେ ଯଦି ରୋଗୀର ରୋଗ ଭଲ ନ ହୁଏ ଲାଭ କ'ଣ ? ସେହିଭଳି ଲମ୍ବା ଲମ୍ବା ଭାଷଣ ଦେଲେ କ'ଣ ହେବ, ସେଥିରେ ଯଦି ଶ୍ରୋତାଙ୍କର ସନ୍ଦେହ ଦୂର ନ ହୋଇପାରିଲା, ଅଧ୍ୟାତ୍ମଜ୍ଞାନ ଲାଗି ପ୍ରେରଣା ନ ମିଳିଲା, ତାହାହେଲେ ଭାଷଣ ନିରର୍ଥକ ନୁହଁ କି ?

ଯେଉଁ ଜ୍ଞାନଦ୍ୱାରା ସାର-ଅସାର ନିର୍ଣ୍ଣୟ ହୋଇ ନ ପାରୁଚି, ଏହା ଜ୍ଞାନ ନୁହଁ, ଅଜ୍ଞାନ । ''ସର୍ବବ୍ରହ୍ମ'' ପ୍ରତିପାଦନ କରୁଥିବା ବ୍ୟକ୍ତି ପକ୍ଷରେ ପାପ-ପୂଣ୍ୟ, ସ୍ୱର୍ଗ-ନରକ, ବିଚାର-ଅବିଚାର ସବୁ ସମାନ ହୋଇଥାଇପାରେ, କିନ୍ତୁ ସେଥିରେ ସତ୍ୟ ଓ ମିଥ୍ୟାର ବିଶ୍ଳେଷଣ ହୋଇପାରିବ କିପରି ? ସର୍ବସଙ୍ଗ ପରିତ୍ୟାଗ ଏବଂ ସ୍ୱେଚ୍ଛାଚାରକୁ ଏକ ବୋଲି ମାନିଲେ ସାଧକ ନିଶ୍ଚୟ କରିପାରିବ କିପରି ? ତେଣୁ ସାବଧାନ ଏବଂ ସ୍ୱାନୁଭବୀ ବକ୍ତାଠାରୁ ହିଁ ଜ୍ଞାନ ଗ୍ରହଣ କରିବା ଉଚିତ । ଫଳରେ ସ୍ୱରୂପଲାଭ ଦିଗରେ ପ୍ରତୀତି ତତ୍କାଳ ହୋଇପାରିବ ।

## ପଞ୍ଚମ ସମାସ
## ।। ଅଜପା-ସାଧନ ।।

ବକ୍ତା କହୁଛନ୍ତି— ପ୍ରତ୍ୟେକ ପ୍ରାଣୀର ନିତ୍ୟ ନିଃଶ୍ୱାସ ପ୍ରଶ୍ୱାସ ଚାଲିଥାଏ । ଏଥିପ୍ରତି ଏକାଗ୍ରଚିତ୍ତରେ ଧ୍ୟାନ ଦେବାକୁ ହିଁ "ଅଜପା" ଜପ କୁହାଯାଇଥାଏ । ବିଚାର କଲେ ଏହି ସାଧନା କଠିନ ନୁହଁ । ମୁଖ ଓ ନାସିକାରେ ପ୍ରାଣ ରହିଥାଏ । ଏହା ଦେଇ ନିଃଶ୍ୱାସ—ପ୍ରଶ୍ୱାସ ଦିନରାତି ଚାଲିଥାଏ । ଏହାକୁ ସୂକ୍ଷ୍ମ ଦୃଷ୍ଟିରେ ନିତ୍ୟ ନିରୀକ୍ଷଣ କରିବା ଉଚିତ । ମୂଳରେ ସ୍ୱର ଏକ । ଏହା ତାର, ମନ୍ଦ୍ର ଓ ଘୋର- ଏହିଭଳି ତିନି ପ୍ରକାରର । (ଷଡ଼ଜ ତିନିପ୍ରକାର) । ଏହି ସ୍ୱରଭେଦରେ ମଧ୍ୟ ଅଜପାର ବିଚାର ସୂକ୍ଷ୍ମ । ନାଭିସ୍ଥଳରେ ସ୍ଥିତ ପରାବାଣୀର ଅନ୍ୟ ପଟେ ହୃଦୟ- ସ୍ଥଳରେ ସ୍ଥିତ ପଶ୍ୟନ୍ତିବାଣୀର ତଳେ ଅର୍ଥାତ୍ ନାଭି ଓ ହୃଦୟର ମଧ୍ୟସ୍ଥଳରେ ସ୍ୱରର ଉତ୍ପତ୍ତିସ୍ଥଳ । ନିର୍ଜ୍ଜନ ସ୍ଥାନରେ ଶାନ୍ତ ଓ ସ୍ଥିର ହୋଇ ବସିଲେ ଏହାକୁ ଅନୁଭବ କରିପାରିବ । ବାୟୁ ଭିତରକୁ ଯାଏ, ପୁଣି ବାହାରକୁ ଆସେ । ଏହାହିଁ ନିଃଶ୍ୱାସ-ପ୍ରଶ୍ୱାସ । ମୌନ ଭାବରେ ରହି ଅତି ସୂକ୍ଷ୍ମଭାବରେ ଶ୍ରବଣ କଲେ "ସୋଽହଂ ସୋଽହଂ" ଧ୍ୱନି ଶୁଣି ପାରିବ । ବିନା ଉଚ୍ଚାରଣରେ ଏହି ଧ୍ୱନି ପ୍ରକଟିତ ହୋଇଥାଏ । ତେଣୁ ଏହାକୁ "ସହଜ-ଶବ୍ଦ" କୁହାଯାଇଥାଏ । ଏହି ଶବ୍ଦ ଅନୁଭୂତ ହୋଇଥାଏ, କିନ୍ତୁ ଏହାର ନାଦ ନ ଥାଏ । ଏହାକୁ ମଧ୍ୟ ଛାଡ଼ି ଯିଏ ଶାନ୍ତ ରହେ ସେ ପ୍ରକୃତ "ମୌନୀ" । ଏହିଥିଲାଗି ହିଁ ଯୋଗାଭ୍ୟାସ ଦ୍ୱାରା ସାଧନା କରାଯାଇଥାଏ । ଧ୍ୟାନସ୍ଥ ହେଲେ ଏହା ସ୍ପଷ୍ଟ ଜଣାପଡ଼ିବ ଯେ "ସୋଽହଂ" ଶବ୍ଦ ଭିତରେ ଅଖଣ୍ଡ ଜପ ଚାଲିଚି । ନିଃଶ୍ୱାସ ନେଲାବେଳେ "ସଃ" ଏବଂ ନିଃଶ୍ୱାସ ଛାଡ଼ିବା ବେଳେ (ପ୍ରଶ୍ୱାସ) "ଅହମ୍"- ଏହିଭଳି ଭାବେର "ସୋଽହଂ"ର ନିରନ୍ତର ଜପ ଚାଲିଚି ।

ସୃଷ୍ଟିରେ ଜାରଜ, ଅଣ୍ଡଜ, ସ୍ୱେଦଜ, ଉଦ୍‌ଭିଦଜ— ଏହିଭଳି ଭାବରେ ଚାରିପ୍ରକାରର ପ୍ରାଣୀ ରହିଛନ୍ତି । ଏସବୁ ପ୍ରାଣୀଙ୍କ ଭିତରେ ଏହି ଜପ ସହଜ ଭାବରେ ଚାଲିଛି । ବିନା ନିଃଶ୍ୱାସ-ପ୍ରଶ୍ୱାସରେ ପ୍ରାଣୀମାନଙ୍କ ଜୀବନ ଅସମ୍ଭବ । ଏହି ସହଜ ଜପକୁ ଛାଡ଼ି ପ୍ରଯତ୍ନପୂର୍ବକ ଅନ୍ୟ ଜପ କରିବାର ଆବଶ୍ୟକତା ନାହିଁ । ଏହି ଜପଦ୍ୱାରା ସହଜରେ ନିଶ୍ଚଳ ପରବ୍ରହ୍ମ ପରମାତ୍ମାଙ୍କୁ ଅନୁଭବ କରିହେବ ।

ପ୍ରଯତ୍ନଦ୍ୱାରା ମନରେ ଯେଉଁ ଈଶ୍ୱରଙ୍କୁ ଗଢ଼ାଯାଇଥାଏ ତାହା ଭାଙ୍ଗିଯାଇଥାଏ, ତୁଟି ଯାଇଥାଏ । ଏଭଳି ବିନାଶଶୀଳ ଈଶ୍ୱର ଉପରେ ବିଶ୍ୱାସ ଅଟଳ ରହିପାରିବ କି ? ଜଗଦ୍‌ବ୍ୟାପୀ ଅନ୍ତରାତ୍ମାଙ୍କ ଦର୍ଶନଲାଭ ପରେ ସହଜ ଧ୍ୟାନ ଅଖଣ୍ଡ ହୋଇ ଆସେ । ଏହାଙ୍କ ଇଚ୍ଛାନୁସାରେ ପ୍ରାଣୀମାନଙ୍କ ଜୀବନ ବ୍ୟବହାର ଚଳିଥାଏ ।

ଆମର ଖିଆପିଆ, ଭୋଗ ବିଳାସ ଆଦି ଦ୍ୱାରା ଏହାର ସମାଧାନ ହୋଇଥାଏ । ବୁଦ୍ଧିପୂର୍ବକ ଅର୍ପଣ କର ନ କର ଅଜାଣତରେ ସବୁ ହୋଇଥାଏ । କରାଯାଉଥିବା ସବୁ କର୍ମ ଏହି ଆତ୍ମାରାମଙ୍କଠାରେ ହିଁ ସମର୍ପିତ । ନିଜ ଉଦରରେ ବୈଶ୍ୱାନର ନାମକ ଯେଉଁ ଯଜ୍ଞ ପୁରୁଷ, ତାଙ୍କୁ ହିଁ ସବୁ ଆହୂତି ଅର୍ପଣ କରାଯାଇଥାଏ । ସବୁ କିଛି ତାଙ୍କରି ଆଦେଶାନୁସାରେ ହୋଇଥାଏ । ଜପ, ଧ୍ୟାନ, ସ୍ତୁତି, ସ୍ତବନ ଆଦି କ୍ରିୟା ଆମ ଭିତରେ ସହଜ ଭାବରେ ହୋଇଥାଏ । ଯେଉଁ ଯେଉଁ କାର୍ଯ୍ୟ ସହଜ ଭାବରେ ହୁଏ, ସବୁ ଭଗବାନଙ୍କର ଗ୍ରହଣୀୟ ହୋଇଥାଏ । ଯାହା ସହଜରେ ହୋଇଥାଏ, ତାକୁ ପ୍ରଯତ୍ନ ପୂର୍ବକ ଜାଣିବା ଲାଗି କେହି କେହି ହଠଯୋଗକୁ ଅବଲମ୍ବନ କରିଥାଆନ୍ତି ।

ଧନ କେଉଁଠି ଗଡ଼ା ହେଉଚି, ତାର ସଠିକ ଠିକଣା ନ ପାଇବା ଫଳରେ ମନୁଷ୍ୟ ଅଯଥା ଦାରିଦ୍ର୍ୟ ଅନୁଭବ କରିଥାଏ । ସିଏ ଯେଉଁଠି ବସିଚି, ଠିକ୍ ତା ତଳେ ଧନର ଭଣ୍ଡାର ରହିଛି । କିନ୍ତୁ ଅଜ୍ଞାନବଶତଃ ସେ ଭିକାରୀଙ୍କ ଭଳି ଜୀବନ ଅତିବାହିତ କରିଥାଏ । କ'ଣ କରାଯିବ ସେ ଜାଣି ପାରେନା । ସବୁଠି ଧନ ଭର୍ତ୍ତି ହୋଇ ରହିଛି । ଲକ୍ଷ୍ମୀଙ୍କ ନିବାସରେ ବସିଥିଲେ ମଧ୍ୟ ଅଜ୍ଞାନୀଅଭାଗା ମନୁଷ୍ୟ ଦାରିଦ୍ର୍ୟରେ ସଢ଼ିଥାଏ । ଏସବୁ ଅବିବେକିତାର କାରଣ । ହୃଦୟରେ ତ ନାରାୟଣ ! ଲକ୍ଷ୍ମୀ ଯିବେ କୁଆଡ଼େ ? ତେଣୁ ଲକ୍ଷ୍ମୀ ଯାହାର ଦାସୀ ସେହି ନାରାୟଣ ଭଗବାନଙ୍କୁ ଅନ୍ତଃକରଣରେ ଧାରଣ କରିଛୁ ବୋଲି ଅନୁଭବ କରିବା ହେଉଚି ପ୍ରକୃତ ବିବେକ ।

## ଷଷ୍ଠ ସମାସ
## ।। ଦେହାତ୍ମ-ନିରୂପଣ ।।

ଅନ୍ତରାତ୍ମା ଦେହରେ ରହି ଅନେକ ସୁଖ ଦୁଃଖ ଭୋଗ କରେ ଏବଂ ଶେଷରେ ଏକାବେଳକେ ଶରୀର ଛାଡ଼ି ପଳାଏ । ଏହାର ଯୁବାବସ୍ଥାରେ ଶକ୍ତି

ରହିଥିବାରୁ ସୁଖ ଭୋଗ କରିଥାଏ, ବୃଦ୍ଧାବସ୍ଥାରେ ଶକ୍ତିର କ୍ଷୟ ହେବାରେ ଦୁଃଖ ଭୋଗିଥାଏ । ଏହି ଦୁଃଖ ଅତ୍ୟନ୍ତ ଦୁଃସହ ହୋଇପଡ଼େ । ମୃତ୍ୟୁ ଇଚ୍ଛା ନ ହେବାରେ ଦେହତ୍ୟାଗ ସମୟରେ ଏହା ହାତଗୋଡ଼ ଛଟପଟ କରେ । ଦେହ ଓ ଆତ୍ମାର ସମାଗମରେ କିଛି ସୁଖ ଉପଭୋଗ କରି ଆତ୍ମା ଅନ୍ତ ସମୟରେ ଛଟପଟ ହୋଇ ଦେହତ୍ୟାଗ କରେ । ଏହି ଯେଉଁ ଆତ୍ମା ଇଏ ମଧ ଚାରିଦିନର ଭ୍ରମ, କିନ୍ତୁ କେହି କେହି ଏହାକୁ ପରମାତ୍ମା ମନେ କରିଥାଆନ୍ତି । ଅଳ୍ପ ସମୟ ସୁଖ ଭୋଗ କରିବା-ପରେ ଦୁଃଖଭୋଗ କରିବା ନିଶ୍ଚିତ । ଜନ୍ମଠାରୁ ମନୁଷ୍ୟ କେତେ ଦୁଃଖଭୋଗ କରିଥାଏ, ବିଚାର କରିବା ଉଚିତ । କିଛି ସୁଖ ତ କିଛି ଦୁଃଖ ଏହା ଜୀବନର ଅନୁଭବ । ଅନେକ ବିଷୟ ଇଚ୍ଛା ବିରୁଦ୍ଧରେ ଘଟିଥାଏ । ବହୁ ବ୍ୟକ୍ତିଙ୍କ ବିୟୋଗ ସହ୍ୟ କରିବାକୁ ପଡ଼େ । ଅନେକ ଲୋକ କୃମି, କୀଟ, ବିଛା, ସାପ, ବାଘ ଏବଂ ଦୁର୍ଜନଙ୍କ ଦ୍ୱାରା କଷ୍ଟ ଭୋଗିଥାଆନ୍ତି । ଅନ୍ତରାତ୍ମା କାନ୍ଦେ, ରଡ଼ିଛାଡ଼େ, ଛଟପଟ ହୁଏ ଏବଂ କଷ୍ଟରେ ପ୍ରାଣତ୍ୟାଗ କରେ, ତଥାପି ଅଜ୍ଞାନୀ ଲୋକ ଏହାକୁ ପରବ୍ରହ୍ମ କହିଥାଆନ୍ତି ।

କିନ୍ତୁ ପରବ୍ରହ୍ମ ତ ଅଚଳ । ଏହା କାହାକୁ ଦୁଃଖ ଦେଇନଥାଏ । ଏହାଠାରେ ନିନ୍ଦା, ସ୍ତୁତିର ସ୍ଥାନ ନାହିଁ । ବଜାରରେ ଅନେକ ଜିନିଷ ବିକ୍ରୀ ହୋଇଥାଏ, କିନ୍ତୁ ଚତୁର ଲୋକ ବାଛି ବାଛି ଭଲ ଜିନିଷ କିଣିଥାଏ । ଏହିଭଳି ଭାବେ ଅନ୍ନ, ବସ୍ତ୍ର, ଦେବାର୍ଚ୍ଚନ, ବ୍ରହ୍ମଜ୍ଞାନ ଆଦି ପ୍ରାରବ୍ଧ ଅନୁସାରେ ହିଁ ମିଳିଥାଏ । ସମସ୍ତେ ସଂସାରରେ ଯିମିତି ସିମିତି ନିଜ ଜୀବନ ନିର୍ବାହ କରିଥାଆନ୍ତି ଏବଂ ସୁଖ-ଦୁଃଖରେ ଜୀବନ କଟେଇ ଥାଆନ୍ତି । ରାଜାର ବୈଭବ ତ ସମସ୍ତଙ୍କୁ ମିଳେ ନାହିଁ, କିନ୍ତୁ ରାଜା ହେଉ ବା ପ୍ରଜା ହେଉ, ଧନୀ ହେଉ ବା ଦରିଦ୍ର ହେଉ ସମସ୍ତଙ୍କୁ ସମାନ ଭାବରେ ମୃତ୍ୟୁବରଣ କରିବାକୁ ପଡ଼ିଥାଏ । ଯୁବାବସ୍ଥାରେ ସୁଖ ଭୋଗ କରିବାର ଅନ୍ତିମ ସମୟରେ ଅର୍ଥାତ୍ ବୃଦ୍ଧାବସ୍ଥାରେ ଦୁଃଖଭୋଗ ଅତ୍ୟନ୍ତ କଷ୍ଟକର ହୋଇଥାଏ । ମୃତ୍ୟୁ-ଦୁଃଖ ସମସ୍ତଙ୍କ ପକ୍ଷରେ କଷ୍ଟଦାୟକ ହୋଇଥାଏ । ରୂପର ସୌନ୍ଦର୍ଯ୍ୟ ଚାଲିଯାଏ, ଶରୀରର ବଳ କ୍ଷୀଣ ହୋଇପଡ଼େ । କେହି ପାଖରେ ନ ରହିବା ଫଳରେ ବହୁ ଦୁଃଖ କଷ୍ଟରେ ମରିବାକୁ ପଡ଼େ । ଅନ୍ତିମ ସମୟରେ ସମସ୍ତେ ଦୀନ ହୋଇପଡ଼ନ୍ତି । ଏହିଭଳି ଏହି ଅନ୍ତରାତ୍ମା ଦୁର୍ଭୋଗ ଓ ଦୁଃଖକାରକ । ଏହା ଭୋଗ କରୁଥିଲେ ମଧ୍ୟ ଏହାକୁ ଯେଉଁମାନେ

'ଅଭୋକ୍ତା' କହିଥାଆନ୍ତି ସେମାନେ ଅଜ୍ଞାନୀ । ବାସ୍ତବରେ ଅନ୍ତ ସମୟରେ ପ୍ରାଣୀ ଅତି ଦୀନହୀନ ଭିକାରୀ ଭଳି ଦୟନୀୟ ଦଶା ଭୋଗ କରିଥାଏ ।

## ସପ୍ତମ ସମାସ
## ।। ଜଗ-ଜୀବନ-ନିରୂପଣ ।।

ଜଳ ମୂଳତଃ ନିର୍ମଳ, କିନ୍ତୁ ଅନେକ ବୃକ୍ଷ, ଲତା ଓ ମୃତ୍ତିକାର ସଂସ୍ପର୍ଶରେ ଏହା ଖଟା, ମିଠା, ଖାରିଆ, ଲୁଣିଆ ଆଦି ହୋଇଥାଏ । ସେହିଭଳି ଆତ୍ମା ଆତ୍ମରୂପରେ ନିର୍ବିକାର ଓ ନିର୍ମଳ; କିନ୍ତୁ ଦେହର ସଂସର୍ଗରେ ଏହାର ବିକାରଗ୍ରସ୍ତ ହୋଇପଡ଼େ ଏବଂ ଅହଂକାରବଶତଃ ଅସତ୍‌ମାର୍ଗରେ ଚାଲିଥାଏ । ଆଖୁରେ ଜଳ ଥିଲେ ମଧ୍ୟ ଏହା ଯେପରି ମିଠା; ସତ୍‌ସଙ୍ଗ ଦ୍ୱାରା ଆତ୍ମା ସତ୍ ରହେ, କିନ୍ତୁ ଦୁର୍ଜନ ସଂସର୍ଗରେ ଏହା ବିଷବଲ୍ଲୀ ଭଳି ଦୁର୍ଗୁଣୀ ହୋଇ ନଷ୍ଟ ହୋଇପଡ଼େ ।

ଆତ୍ମା ସ୍ୱୟଂ ନିଜର ମିତ୍ର ଏବଂ ସେ ନିଜେ ନିଜର ଶତ୍ରୁ ମଧ୍ୟ । ତେଣୁ ଆମ୍ଭେମାନେ ବିବେକପୂର୍ବକ ନିଜର କଲ୍ୟାଣ ଅକଲ୍ୟାଣ କଥା ଚିନ୍ତାକରି ନିଜେ ନିଜକୁ ରକ୍ଷା କରିବା ଉଚିତ । ଯିଏ ଏହା କରେ ସେହି ମନୁଷ୍ୟ ଧନ୍ୟ । ପୁଣ୍ୟବାନଙ୍କୁ ସତ୍‌ସଙ୍ଗ ଏବଂ ପାପୀମାନଙ୍କୁ ଅସତ୍‌ସଙ୍ଗ ମିଳିଥାଏ । ସଂଗହିଁ ସଦ୍‌ଗତି ଓ ଦୁର୍ଗତିର କାରଣ । ତେଣୁ ସର୍ବଦା ସତ୍‌ସଙ୍ଗ କରିବା ଉଚିତ । ଜ୍ଞାନୀ ପୁରୁଷ ନିଜ ବିବେକ ବୁଦ୍ଧିରେ କିପରି ମୁକ୍ତ ହୋଇଥାଆନ୍ତି, ସେ ସମ୍ପର୍କରେ ମନନ ଚିନ୍ତନ କରିବା ଉଚିତ । ଉତ୍ତମ ସଙ୍ଗତିରୁ ସୁଖ ଏବଂ ଅଧମ ସଙ୍ଗତିରୁ ଦୁଃଖ ମିଳିଥାଏ । ତେବେ ଆନନ୍ଦ ତ୍ୟାଗ କରି ଦୁଃଖ ଶୋକ ଦେଉଥିବା ମାର୍ଗ ଅନୁସରଣ କରିବ କାହିଁକି ?

ଏହି ବସୁନ୍ଧରା ପୃଥିବୀରେ ବହୁ ରତ୍ନ ରହିଛି ଅର୍ଥାତ୍ ପୃଥିବୀରେ ଅନେକ ଜ୍ଞାନୀ ସତ୍‌ପୁରୁଷ ରହିଥାଆନ୍ତି । ତେଣୁ ଏହି ସଜ୍ଜନ ଏବଂ ଜ୍ଞାନୀମାନଙ୍କ ସତ୍‌ସଙ୍ଗରୁ ଲାଭ ଉଠାଇବା ଉଚିତ । ଏ ସଂସାରରେ ଦୁଃଖୀ ବା ଦୁର୍ବଳ ଏବଂ ସୁଖୀ ବା ସମ୍ପନ୍ନ— ଦୁଇ ପ୍ରକାର ଲୋକ ରହିଥାଆନ୍ତି । କେତେକ ସମ୍ପନ୍ନ ବ୍ୟକ୍ତିଙ୍କର ସର୍ବନାଶ ଘଟିଥାଏ, କେତେକ ଦୁଃଖୀ ଦରିଦ୍ର ଭାଗ୍ୟଶାଳୀ ମଧ୍ୟ ହୋଇଥାଆନ୍ତି । ସଂସାରର

କାଳଚକ୍ର ଏହିଭଳି ଚାଲିଥାଏ । ଧନ ସମ୍ପତ୍ତି କ୍ଷଣଭଙ୍ଗୁର । ଆୟୁ କ୍ଷୀଣ ହୋଇ ଆସିଥାଏ । ବାଲ୍ୟ, ଯୁବା ଏବଂ ବୃଦ୍ଧାବସ୍ଥା ବିତିବା ପରେ ମୃତ୍ୟୁର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଏକଥା ଜାଣି ମନୁଷ୍ୟ ସତ୍‌ସଙ୍ଗଦ୍ୱାରା ଜୀବନକୁ ସାର୍ଥକ କରିବା ଉଚିତ । ପ୍ରଯତ୍ନଦ୍ୱାରା ହିଁ କାର୍ଯ୍ୟସିଦ୍ଧି ହୋଇଥାଏ । ଏକଥା ଜାଣି ମନୁଷ୍ୟ ନିଜ ଦୁଃଖକୁ ବିବେକପୂର୍ବକ ନିଜେ ନିରାକରଣ କରିବା ଉଚିତ ।

## ଅଷ୍ଟମ ସମାସ
## ।। ତତ୍ତ୍ୱ ସାର ।।

ନାଭି-ସ୍ଥଳରେ ଯେଉଁ ପ୍ରଥମ ସ୍ଫୁରଣ ହୋଇଥାଏ ତାକୁ କୁହାଯାଏ ପରାବାଣୀ । ଏହା ହୃଦୟ-ସ୍ଥାନରେ ଧ୍ୱନିରୂପ ଧାରଣ କରେ । ଏହାକୁ କୁହାଯାଏ ''ପଶ୍ୟନ୍ତୀ'' । ଏହା କଣ୍ଠକୁ ଆସି ନାଦରୂପ ଧାରଣ କରେ । ଏହାକୁ କୁହାଯାଏ ମଧ୍ୟମା । ଏହା ଜିହ୍ୱାରେ ଉଦ୍‌ଗାର ରୂପରେ ରହେ । ଏହାର ନାମ ''ବୈଖାରୀ'' । ନାଭି ସ୍ଥାନରେ ହିଁ ସହଜ ସ୍ଫୁରଣ ହୋଇଥାଏ ।

ହଁ ନା ନାହିଁ, କରିବି କି କରିବି ନାହିଁ— ଏପ୍ରକାର ଚଞ୍ଚଳ ପ୍ରବୃତ୍ତି ହେଉଚି ମନ । କରିବି କି କରିବି ନାହିଁ— ଏହି ପ୍ରଶ୍ନକୁ ନିଶ୍ଚିତ କରିଥାଏ ବୁଦ୍ଧି । ଯାହା କରିବା ଲାଗି ନିଶ୍ଚୟ କରାଯାଏ, ସେ ଚିନ୍ତା କରିବା ଚିତ୍ତର କାମ । ଅଭିମାନ ସହିତ ଅର୍ଥାତ୍ 'ମୁଁ' କରିପାରେ ମନରେ ଏହି ଅଭିମାନ ରଖି କାର୍ଯ୍ୟରେ ପ୍ରବୃତ୍ତ ହେବା ଅହଂକାର ।

ଏହାକୁ ଅନ୍ତଃକରଣ ପଞ୍ଚକ କୁହାଯାଏ । ଏହିଭଳି ଭାବେ ପାଞ୍ଚଟି ପଞ୍ଚକ ରହିଛି ଯଥା— ଅନ୍ତଃକରଣ ପଞ୍ଚକ, ପ୍ରାଣ ପଞ୍ଚକ, ଜ୍ଞାନେନ୍ଦ୍ରିୟ ପଞ୍ଚକ, କର୍ମେନ୍ଦ୍ରିୟ ପଞ୍ଚକ, ଏବଂ ବିଷୟ ପଞ୍ଚକ । ଅନ୍ତଃକରଣ ପଞ୍ଚକର ପାଞ୍ଚଟି ତତ୍ତ୍ୱ । ଯଥା— ଅନ୍ତର, ମନ, ବୁଦ୍ଧି, ଚିତ୍ତ ଓ ଅହଂକାର । ପ୍ରାଣ ପଞ୍ଚକର ପାଞ୍ଚତତ୍ତ୍ୱ । ଯଥା— ବ୍ୟାନ, ଅପାନ, ଉଦାନ, ସମାନ ଓ ପ୍ରାଣ । ଜ୍ଞାନେନ୍ଦ୍ରିୟ ପଞ୍ଚକ,ଯଥା— ଶ୍ରବଣ, ତ୍ୱଚା (ଚର୍ମ), ଚକ୍ଷୁ, ଜିହ୍ୱା, ଘ୍ରାଣ । କର୍ମେନ୍ଦ୍ରିୟ ପଞ୍ଚକ-ବଚନ, ହସ୍ତ, ପାଦ, ଶିସ୍ନ ଓ ଗୁଦ (ଗୁହ୍ୟଦ୍ୱାର) । ବିଷୟ ପଞ୍ଚକ—ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ।

ଏହିଭଳି ଭାବେ ପାଞ୍ଚ ପଞ୍ଚର ପଚିଶତତ୍ତ୍ୱ ମିଶି ସୂକ୍ଷ୍ମ ଦେହ ହୋଇଥାଏ । ଏବେ ସ୍ଥୂଳ ଦେହର ପଚିଶ ତତ୍ତ୍ୱକଥା କହୁଚି ଶୁଣ । ଆକାଶରୁ— କାମ, କ୍ରୋଧ, ଶୋକ, ମୋହ ଓ ଭୟ । ବାୟୁରୁ— ଚଳନ, ବଳନ, ପ୍ରସାରଣ, ନିରୋଧ ଓ ସଂକୋଚନ । ତେଜରୁ— କ୍ଷୁଧା, ତୃଷା, ଆଳସ୍ୟ, ନିଦ୍ରା ଓ ମୈଥୁନ । ଆପ ବା ଜଳରୁ— ଶୁକ୍ର, ଶୋଣିତ, ଲାଳ, ମୂତ୍ର ଓ ସ୍ୱେଦ । ପୃଥ୍ୱୀରୁ— ଅସ୍ଥି, ମାଂସ, ନାଡ଼ି, ରୋମ ଓ ତ୍ୱଚା (ଚର୍ମ) ।

ସୂକ୍ଷ୍ମ ଦେହର ପଚିଶ ଓ ସ୍ଥୂଳ ଦେହର ପଚିଶ ତତ୍ତ୍ୱ କୁହାଗଲା । ଏହା ବ୍ୟତୀତ ତୃତୀୟ କାରଣ ହେଉଚି ଦେହ ଅର୍ଥାତ୍ ଅଜ୍ଞାନ ଏବଂ ଚତୁର୍ଥ ମହାକରଣ ଦେହ ଅର୍ଥାତ୍ ଜ୍ଞାନ । ଏହି ଚାରି ଦେହର ନିରସନ ହୋଇ ଦେହଠାରୁ ଆତ୍ମା ଅଲିପ୍ତ । ଏହି ଜ୍ଞାନ ହୋଇଗଲେ ଅର୍ଥାତ୍ ଅହଂକାର ଭାବ ତୁଟିଗଲେ ପରିଶେଷରେ ରହେ ପରବ୍ରହ୍ମ । ଏହା ସହିତ ଏକାକାର ହୋଇଯିବା ଅନୁଭୂତି ହିଁ ଆତ୍ମା-ନିବେଦନ । ଏହି ବିବେକ-ଧାରଣା ଦ୍ୱାରା ଜନ୍ମମୃତ୍ୟୁର ବନ୍ଧନ ତୁଟିଯାଇଥାଏ ଏବଂ ନରଦେହ ସାର୍ଥକ ହୋଇ ପରବ୍ରହ୍ମ ପ୍ରାପ୍ତି ଘଟିଥାଏ । ଏହି ପଞ୍ଚକରଣ ସମ୍ପର୍କରେ ନିଦିଧ୍ୟାସନ କରାଯିବା ଉଚିତ । ସେହିଥିରେ ହିଁ ଜୀବନ ଧନ୍ୟ ହୁଏ ।

## ନବମ ସମାସ
## ।। ଶରୀର ଚତୁଷ୍ଟୟ-ନିରୂପଣ ।।

ଦେହ ଚାରିପ୍ରକାରର— ସ୍ଥୂଳ, ସୂକ୍ଷ୍ମ, କାରଣ ଓ ମହାକାରଣ । ଦେହର ଚାରୋଟି ଅବସ୍ଥା ଯଥା— ଜାଗୃତି, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ । ଦେହର ଚାରି ଅଭିମାନ— ବିଶ୍ୱ, ତେଜସ, ପ୍ରାଜ୍ଞ ଏବଂ ପ୍ରତ୍ୟାଗମନ । ନେତ୍ର, କଣ୍ଠ, ହୃଦୟ ଓ ମସ୍ତକରେ ଏଗୁଡ଼ିକର ସ୍ଥାନ । ସ୍ୱପ୍ନଭୋଗ, ସ୍ଥୂଳଭୋଗ, ଆନନ୍ଦଭୋଗ ଏବଂ ଅନନ୍ଦାଭାସ ଭୋଗ— ଏଭଳି ଭାବେ ଚାରି ପ୍ରକାରର ଭୋଗ । ଅକାର, ଉକାର, ମକାର ଓ ଅର୍ଦ୍ଧମାତ୍ରା ହେଉଚି ଏହାର ଚାରିମାତ୍ରା । ତମଗୁଣ, ସତ୍ୱଗୁଣ ଏବଂ ଶୁଦ୍ଧ ସତ୍ୱଗୁଣ— ଏହିଭଳି ଦେହର ଚାରିଗୁଣ । କ୍ରିୟାଶକ୍ତି, ଦ୍ରବ୍ୟଶକ୍ତି, ଇଚ୍ଛାଶକ୍ତି ଓ ଜ୍ଞାନଶକ୍ତି— ଏହିଭଳି ଦେହର ଚାରିଶକ୍ତି ।

ଏହିଭଳି ଭାବେ ଚାରିଦେହର ୮x ୪ = ୩୨ ତତ୍ତ୍ୱ । ପୂର୍ବରୁ କୁହାଯାଇଥିବା ସ୍ଥୂଳ ଦେହର ୨୫ ଏବଂ ସୂକ୍ଷ୍ମ ଦେହର ୨୫ ତତ୍ତ୍ୱକୁ ମିଶେଇ ପଚାଶ ତତ୍ତ୍ୱ । ଅନ୍ୟାନ୍ୟ ତତ୍ତ୍ୱକୁ ମିଶେଇଲେ ମୋଟ ତତ୍ତ୍ୱସଂଖ୍ୟା ୮୨, କିନ୍ତୁ ଏସବୁ ତତ୍ତ୍ୱ ମାୟିକ । ତେଣୁ ଆମ୍ଭେମାନେ ଏହାକୁ ଚିହ୍ନି କେବଳ ଏସବୁର ଦ୍ରଷ୍ଟା ରହିବା ଉଚିତ । ଦ୍ରଷ୍ଟାପଣ ବା ସାକ୍ଷୀଭାବହିଁ ଜ୍ଞାନ । ଏହି ଜ୍ଞାନଦ୍ୱାରା ଆମ୍ଭେମାନେ ଅଜ୍ଞାନର ନିରାକରଣ କରି ଉପରୋକ୍ତ ୮୨ ତତ୍ତ୍ୱର ନିରସନ କରିବା ସଙ୍ଗେ ସଙ୍ଗେ ପରିଶେଷରେ ସାକ୍ଷୀଭାବ ଦ୍ୱାରା ଜ୍ଞାନକୁ ମଧ ଲୋପ କରି ନିଃସଙ୍ଗ ରହିବା ଆବଶ୍ୟକ ।

ବିରାଟ, ହିରଣ୍ୟଗର୍ଭ, ଅବ୍ୟାକୃତ ଓ ମୂଳମାୟା ବ୍ରହ୍ମାଣ୍ଡର ଚାରିଦେହକୁ ବୁଝେଇବା ପାଇଁ କଳ୍ପିତମାତ୍ର । ବିବେକଦ୍ୱାରା ଏସବୁର ମଧ ନିରସନ ଅବଶ୍ୟକ । ଆତ୍ମ, ଅନାତ୍ମ, ବିବେକ ଅର୍ଥାତ୍ ସାରଅସାର ବିବେକ ଦ୍ୱାରା ବ୍ରହ୍ମାଣ୍ଡର ନିରସନ (ଦୂରକରିବା) କରି ବ୍ରହ୍ମାନୁଭବ ଦ୍ୱାରା ଆତ୍ମାନନ୍ଦରେ ଲୀନ ହୋଇଯିବା ସମସ୍ତଙ୍କର ଲକ୍ଷ୍ୟ ହେବା ଉଚିତ । ସ୍ଥୂଳ, ସୂକ୍ଷ୍ମ ଆଦି ସମସ୍ତ ତତ୍ତ୍ୱକୁ ଭଲଭାବେ ମନନ ଚିନ୍ତନ ଦ୍ୱାରା ମୂଳବସ୍ତୁ ପରବ୍ରହ୍ମଙ୍କ ଅନୁସନ୍ଧାନକରି ମୁକ୍ତାବସ୍ଥାକୁ ଅନୁଭବ କରିବା ଉଚିତ ।

## ଦଶମ ସମାସ
## ।। ଅଜ୍ଞାନୀ ସିଦ୍ଧ ଲକ୍ଷଣ ।।

ଜବଦ୍ୱୀପ ଆଦି ସାତ ଦ୍ୱୀପ ମିଶି ପୃଥ୍ୱୀ ଏବଂ ପୃଥିବୀର ଚାରିଆଡ଼େ କ୍ଷୀରସାଗର, ସୁରାସାଗର, ଘୃତସାଗର, ଦଧିସାଗର, ଇକ୍ଷୁସାଗର, କ୍ଷାରସାଗର ତଥା ଶୁଦ୍ଧଜଳର ସାତସମୁଦ୍ରର ଆବରଣ । ଏହା ମଝିରେ ହଟକେଶ୍ୱର ନାମକ ଶଙ୍କରଙ୍କ ପାତାଳ ଲିଙ୍ଗ । ତାଙ୍କୁ ଏହିଠାରୁ ମୋର ନମସ୍କାର । ଏହାଙ୍କ ମହିମା ଅପାର । ସେ ପର୍ଯ୍ୟନ୍ତ ପହଞ୍ଚିବା ମନୁଷ୍ୟ ପକ୍ଷରେ ଅସମ୍ଭବ । ଦେହଦ୍ୱାରା ଏହାଙ୍କୁ ଦର୍ଶନ କରାଯାଇ ନ ପାରେ । ତେଣୁ ବିବେକ ଦ୍ୱାରା ହିଁ ଧ୍ୟାନ କରିବା ଉଚିତ । ସାତ ସମୁଦ୍ରର ଆବରଣ ଆରପାରିରେ ଏହି ବିସ୍ତୀର୍ଣ୍ଣ ଭୂମି । ଏଠାରେ ଭୂମଣ୍ଡଳର ଖଣ୍ଡ ତୁଟିଯାଇ ଅଲଗା ଅଲଗା ହୋଇଯାଇଛି । ଏଠାରେ ପହଞ୍ଚିବା ଅସମ୍ଭବ ।

ତେଣୁ ବିବେକୀ ପୁରୁଷ ସତ୍‌ସଙ୍ଗଦ୍ୱାରା ଘରେ ବସି ବ୍ରହ୍ମାଣ୍ଡକୁ ଧ୍ୟାନ କରି ସନ୍ତୋଷ ଲାଭ କରିବା ଉଚିତ । ଯାହା ଚର୍ମଚକ୍ଷୁରେ ଦେଖାଯାଇ ନ ଥାଏ ତାକୁ ଜ୍ଞାନଚକ୍ଷୁରେ ଦେଖିବା ଉଚିତ । ବ୍ରହ୍ମାଣ୍ଡ ମଧ୍ୟରେ ଭୂମିର ଅବରୋଧ ରହିଥାଏ ତେଣୁ ଉପରେ ଆକାଶ ଏବଂ ତଳେ ପାତାଳ । ଏହି ଅବରୋଧର କଳ୍ପନା ତ୍ୟାଗ କରିଦେଲେ ସର୍ବତ୍ର କେବଳ ଆକାଶ ଥିବା ଭଳି ମନେ ହେବ ।

ଏହି ଉପାଧିରହିତ ଆକାଶ ହିଁ ପରବ୍ରହ୍ମ । ଏଠାରେ ଦୃଶ୍ୟ ସୃଷ୍ଟିର କୌଣସି ସ୍ଥାନ ନାହିଁ । ଦୃଷ୍ଟିରେ ଯାହା ଦେଖାଯାଇଥାଏ, ଏହି ଦୃଶ୍ୟ ଓ ମନ ଦ୍ୱାରା ଯେଉଁ ଆଭାସ ହୋଇଥାଏ ତାହା ଆଭାସ ମାତ୍ର, କିନ୍ତୁ ପରବ୍ରହ୍ମ ଦୃଶ୍ୟ ଓ ଆଭାସର ଅତୀତ । ଏହା ମନ ଓ ଇନ୍ଦ୍ରିୟାତୀତ । କେବଳ ବିବେକ ଦ୍ୱାରା ହିଁ ଏଠାରେ ପହଞ୍ଚି ହୁଏ । ଆକାଶର ଊର୍ଦ୍ଧ୍ୱରେ କେବଳ ବ୍ରହ୍ମକୁ ଦେଖିବା ଦର୍ଶକ ବିରଳ ।

ଗୁଣ ବିନାଶଶୀଳ, ନିର୍ଗୁଣ ଅବିନାଶୀ । ସ୍ଥୂଳ ଅପେକ୍ଷା ସୂକ୍ଷ୍ମ ଦୃଷ୍ଟିରେ ଅବଲୋକନ କରିବା ହିଁ ବିଶେଷତ୍ୱ । ଯାହା ଚର୍ମଚକ୍ଷୁରେ ଦେଖାଯାଏ ନାହିଁ, ତାକୁ ଶ୍ରବଣ, ମନନ ଏବଂ ଚିନ୍ତନ ଦ୍ୱାରା ଜାଣିବା ଲାଗି ପ୍ରଯତ୍ନ କରିବା ଉଚିତ । ଅଷ୍ଟଧା ପ୍ରକୃତିରୁ ହିଁ ଏହି ବିବିଧ ନିର୍ମାଣ, କିନ୍ତୁ ସାମଗ୍ରିକ ଭାବେ ଏହାକୁ ଦର୍ଶନ କରିବ କିପରି ? ଯିଏ ମୂର୍ଖ, ଅଜ୍ଞାନୀ ବିବେକଦ୍ୱାରା ସାରବସ୍ତୁର ନିର୍ଣ୍ଣୟ ତା ପକ୍ଷରେ ସମ୍ଭବ ନୁହେଁ । ସେ ବିବେକ ଓ ଅବିବେକ ଉଭୟକୁ ସମାନ ମନେ କରିଥାଏ । ନାନା ପ୍ରକାର ଜ୍ଞାନଦ୍ୱାରା ମୋକ୍ଷର ପ୍ରକୃତ ମାର୍ଗ ମିଳିପାରେନା ।

ପରମାତ୍ମା ସୃଷ୍ଟିରେ ବହୁ ପ୍ରଭେଦ ରଖିଛନ୍ତି । ଏ ସୃଷ୍ଟି ଭେଦ ଉପରେ ହିଁ ଅଧିଷ୍ଠିତ । ତେଣୁ ପ୍ରକୃତ ପରୀକ୍ଷକ ହିଁ ଏହାକୁ ପରୀକ୍ଷା କରି ସତ୍ୟ ଅସତ୍ୟର ନିର୍ଣ୍ଣୟ କରିପାରେ । ଅଜ୍ଞାନୀଲୋକ ଏହାକୁ ଚିହ୍ନିବ କିପରି ? ଯିଏ ସନ୍ଥ ସଜ୍ଜନ ସେ ଅସାରବସ୍ତୁକୁ ବୃଥାରେ ପରୀକ୍ଷା କରି ସମୟ ନଷ୍ଟ କରିବ କାହିଁକି ? ଯିଏ ସ୍ୱୟଂ ନିର୍ମଳ ନୁହଁ, ସେ ଅନ୍ୟକୁ ନିର୍ମଳ ହେବା ପାଇଁ ଉପଦେଶ ଦେଇପାରିବ କି ? ସେ ବେଦ, ପୁରାଣ, ଶାସ୍ତ୍ର ଆଦିକୁ ଜାଣିଲେ ମଧ୍ୟ ମୂର୍ଖ ।

ତେଣୁ ପ୍ରଥମେ ଆଚାର ବିଚାର ଶୁଦ୍ଧ ହେବା ଆବଶ୍ୟକ । ତା ପରେ ନିର୍ମଳ ଅନ୍ତଃକରଣ ଦ୍ୱାରା ଏବଂ ସତ୍‌ସଙ୍ଗ ଦ୍ୱାରା ସଦ୍‌ବସ୍ତୁର ମନନ ଚିନ୍ତନ କରିବା ଉଚିତ । ଆଚାର ବିଚାରରେ ସମତା ଓ ଶୁଚିତା ଆସିବା ପରେ ହିଁ ଆମ୍ଭେମାନେ ପରମାତ୍ମାଙ୍କ ଅନୁସନ୍ଧାନ ଏବଂ ସାକ୍ଷାତ୍‌କାର କରିପାରିବା । ନିୟମାନୁସାରେ ଚଳୁଥିବା ଲୋକ ପକ୍ଷରେ ଯାହାକୁ ପାଇବା କଠିନ, ତାକୁ ବାହ୍ୟ ଆଚରଣକାରୀ ଅବିବେକୀ ପୁରୁଷ ପାଇବ କିପରି ?

ଅମୃତ ଓ ବିଷ ମଧ୍ୟରେ ସମତା ଆସିପାରେ କି ? ପାପ ପୁଣ୍ୟ ସ୍ୱର୍ଗ ନରକ, ବିବେକ ଅବିବେକ ଏକ ହେବ କିପରି ? ବିଷ ପ୍ରାଣ ହରଣ କରିବା ଭଳି କୁକର୍ମରୁ ମିଳେ ଅପଯଶ, ସତ୍‌ମାର୍ଗରୁ ମିଳେ କୀର୍ତ୍ତି । ଯାହାଠାରେ ଇହଲୋକ ଓ ପରଲୋକର ବିବେକ ନାହିଁ ତା ଜନ୍ମ ବ୍ୟର୍ଥ ।

ତେଣୁ ସର୍ବଦା ସତ୍‌ସଙ୍ଗ ସଦ୍‌ଗ୍ରନ୍ଥର ଶ୍ରବଣ ମନନ ଦ୍ୱାରା ଜୀବନକୁ ପରିପୂର୍ଣ୍ଣ କରିବା ଉଚିତ ।



# ଅଷ୍ଟାଦଶ ଦଶକ

## ପ୍ରଥମ ସମାସ
## ।। ବହୁ ଦେବସ୍ଥାନ ନିରୂପଣ ।।

ବୁଦ୍ଧିଦାତା ଶ୍ରୀଗଣେଶ ଏବଂ ସମସ୍ତ ବଚନକୁ ସ୍ଫୂର୍ତ୍ତି ଦେଉଥିବା ଶାରଦାଙ୍କ ବନ୍ଦନା କରି ଏହି ସମାସରେ ଅନେକ ଉପାସ୍ୟ ଦେବତାଙ୍କୁ ଧନ୍ୟବାଦ ଜଣାଉଚି ।

ଚତୁର୍ମୁଖ ବ୍ରହ୍ମା ଧନ୍ୟ । ସେ ସମଗ୍ର ସୃଷ୍ଟିର ନିର୍ମାତା ଏବଂ ସେ ଭିନ୍ନ ଭିନ୍ନ ବେଦଶାସ୍ତ୍ରକୁ ପ୍ରକଟ କରିଛନ୍ତି । ସମଗ୍ର ସଂସାରକୁ ପାଳନ ପୋଷଣ କରି ସବୁ ଜୀବକୁ ବଢ଼ଉଥିବା ଭଗବାନ ବିଷ୍ଣୁଙ୍କୁ ଧନ୍ୟବାଦ । ଭୋଳାନାଥ, ବଦାନ୍ୟବର, ରାମନାମର ଅଖଣ୍ଡ ଜପ ଚଳେଇଥିବା ଶଙ୍କରଙ୍କୁ ମଧ୍ୟ ଧନ୍ୟବାଦ । ଇନ୍ଦ୍ର ଓ ଯମଙ୍କୁ ଧନ୍ୟବାଦ । ଏହିଭଳି ଭାବେ ବିଭିନ୍ନ ଉପାସ୍ୟ ଦେବଦେବୀଙ୍କୁ ଧନ୍ୟବାଦ । ଏମାନଙ୍କ କୃପା ପ୍ରସାଦରେ ଭକ୍ତମାନଙ୍କ କଲ୍ୟାଣ ହୋଇଥାଏ । ରାମକୃଷ୍ଣଆଦି ଅବତାରମାନଙ୍କ ମହିମା ଅପାର । ଏମାନଙ୍କ ଉପାସନା ଲାଗି କୋଟି କୋଟି ଲୋକ ତତ୍‌ପର । ଭାରତରେ ଏହିଭଳି ଭାବେ ନାନା ଦେବଦେବୀଙ୍କ ଉପାସନା ଚଳିଆସିଛି, କିନ୍ତୁ ଏସବୁ ଉପାସନାର ମୂଳ ପୁରୁଷ ହେଉଚି ଅନ୍ତରାତ୍ମା ।

ସବୁ ଦେବତା ଏବଂ ଏମାନଙ୍କ ଶକ୍ତିର ମୂଳ ଅଧିଷ୍ଠାତା ହେଉଚି ଅନ୍ତରାତ୍ମା । ଏହି ଅନ୍ତରାତ୍ମା ହିଁ ସବୁ ପ୍ରକାର ବୈଭବର ଭୋକ୍ତା । ସ୍ତୁତି-ନିନ୍ଦା, କୀର୍ତ୍ତି-ଅପକୀର୍ତ୍ତି ଆଦି ସବୁ ଭୋଗ ଲାଭ କରିଥାଏ ଅନ୍ତରାତ୍ମା । କେତେକ ଶରୀରରେ ଏହା କାର୍ଯ୍ୟର କର୍ତ୍ତା ତ କେତେକ ଶରୀରରେ ଏହା ଭୋଗ-ଭୋକ୍ତା । ଭୋଗୀ ଓ ତ୍ୟାଗୀ ସବୁ ହେଉଚି ଏହି ଅନ୍ତରାତ୍ମା । ପ୍ରାଣୀ ଯେ ଦେଖି

ଦେହାଭିମାନୀ ହୋଇପଡ଼େ ଏବଂ ମୁଖ୍ୟ ସଞ୍ଚାଳନ ଅନ୍ତରାତ୍ମା ଯେ ସର୍ବଦେହରେ ସମାନଭାବରେ ବିଦ୍ୟମାନ ଜାଣି ସୁଦ୍ଧା ଭୁଲିଯାଏ– ତାହାହିଁ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ।

ଏହି ସର୍ବବ୍ୟାପୀ ଅନ୍ତରାତ୍ମାର ପ୍ରବୃତ୍ତିଗୁଡ଼ିକୁ ଦେଖିବାବାଲା କିଏ ? ଅଗାଧ ପୂଣ୍ୟବଳରେ ଏହି ଅନିର୍ବଚନୀୟ ପରବ୍ରହ୍ମ ପରମାତ୍ମାଙ୍କ ଅନୁସନ୍ଧାନ କରାଯାଇପାରେ । ଏହି ଅନୁସନ୍ଧାନ ଦ୍ୱାରା ହିଁ ଅସଂଖ୍ୟ ପାପର ବିନାଶ ଘଟିଥା, । ତେଣୁ ଅନ୍ତର୍ନିଷ୍ଠ ଜ୍ଞାନୀପୁରୁଷହିଁ ଏହି ଅନୁସନ୍ଧାନ କରିପାରେ । ଅନ୍ତର୍ନିଷ୍ଠ ପୁରୁଷ ହିଁ ଏହି ସଂସାର-ସାଗରକୁ ଆନନ୍ଦରେ ଅତିକ୍ରମ କରିପାରେ । ଅନ୍ତର୍ଭ୍ରଷ୍ଟ ଅର୍ଥାତ୍ ବହିର୍ମୁଖ ଲୋକ ବାହ୍ୟ ଲୋକାପଚାରରେ ଲିପ୍ତ ରହି ଜୀବନକୁ ନଷ୍ଟ କରିଦେଇଥାଆନ୍ତି ।।

## ଦ୍ୱିତୀୟ ସମାସ
## ।। ସର୍ବଜ୍ଞ ସଙ୍ଗନିରୂପଣ ।।

ଅଜ୍ଞାନ ଅବସ୍ଥାରେ ତ ବହୁ ପ୍ରମାଦ ହୋଇଯାଇଥାଏ, କିନ୍ତୁ ସବୁକଥା ଜାଣି ସାରିବା ପରେ ଅନ୍ତତଃ ଅନୁଶାସନପୂର୍ବକ ଚାଲିବା ଲାଗି ଉଦ୍ୟମ କରିବା ଉଚିତ । ଜ୍ଞାନୀ ପୁରୁଷଙ୍କ ସତ୍‌ସଙ୍ଗ ଦ୍ୱାରା ଜ୍ଞାନ ସମ୍ପର୍କୀୟ ସମସ୍ତ ବିଷୟ ଆପେ ଆପେ ପ୍ରକଟିତ ହୋଇଥାଏ । ତେଣୁ ଜ୍ଞାନୀ ପୁରୁଷଙ୍କ ସେବା କରି ସେମାନଙ୍କ ସଦୁପଦେଶ ଗ୍ରହଣ କରିବା ଉଚିତ । ସେମାନେ ଯାହା କହିଥାନ୍ତି ତାକୁ ଲିପିବଦ୍ଧ କରିବା ଏବଂ ପାଠ କରିବା ମଧ୍ୟ ଏକପ୍ରକାରର ସେବା । ଏହାଦ୍ୱାରା ମନରୁ ନାନା ସନ୍ଦେହ ଦୂର ହୋଇଥାଏ । ଜ୍ଞାନୀମାନଙ୍କ ସାନ୍ନିଧ ଲାଭ କରି ଏବଂ କଷ୍ଟ ସ୍ୱୀକାର କରି ଆନନ୍ଦରେ ମଗ୍ନ ରହିବା ଦିଗରେ ଅଭ୍ୟାସ କରିବା ଉଚିତ । ଏମାନଙ୍କୁ ନିଜର ଏକମାତ୍ର ଆଶ୍ରୟ ମନେ କରିବା ବିଧେୟ ।

ଜ୍ଞାନୀ ସାଧୁ ସନ୍ଥମାନେ କିପରି ବାସ କରିଥାଆନ୍ତି, ସେମାନେ କିପରି ସବୁ ଦୁଃଖକଷ୍ଟକୁ ଆନନ୍ଦରେ ସହି ନେଇଥାଆନ୍ତି, ସେସବୁ ଅନୁସରଣ କରିବା ଉଚିତ । ଏହାଙ୍କ କଥାବାର୍ତ୍ତା, ଉପଦେଶ, ସଂଭାଷଣ, ବ୍ୟବହାରରୁ ଉଚିତ ଶିକ୍ଷା

ଗହଣ କରିବା ଆବଶ୍ୟକ । ଜ୍ଞାନୀପୁରୁଷ ଲୋକଙ୍କ ମନର ସମସ୍ୟାକୁ କିପରି ସମାଧାନ କରିଥାଆନ୍ତି, କିପରି ଲୋକଙ୍କୁ ସନ୍ତୋଷ ଦିଅନ୍ତି, ସେହି ସୂକ୍ଷ୍ମ ବିଷୟକୁ ଅଧ୍ୟୟନ ଦିଗରେ ଅଭ୍ୟାସ କରିବା ଉଚିତ । ତାଙ୍କ ଉତ୍ସାହ, ଧୈର୍ଯ୍ୟ, ଶୌର୍ଯ୍ୟ, ଭକ୍ତି, ଯୋଗ, ଜ୍ଞାନ, ଧ୍ୟାନ, ବୁଦ୍ଧି, ସହିଷ୍ଣୁତା, ଦୀର୍ଘସୂତ୍ରତା, ଅଧ୍ୟାତ୍ମ ବିବେକ, ଅନାସକ୍ତି, ବୈରାଗ୍ୟ ଆଦି ଗୁଣକୁ ଅବଲମ୍ବନ କରିବା ଦରକାର । ସର୍ବସାକ୍ଷୀ ଯେଉଁ ଅନ୍ତରାତ୍ମା ତାହାର ଗୁଣାନୁବାଦ କରିବା ଉଚିତ । ଏହି ଜଗଦୀଶ୍ୱର ସଂସାରରେ ଯେଉଁ ଯେଉଁ ବସ୍ତୁ ନିର୍ମାଣ କରିଛନ୍ତି, ଏହାର ମୂଳତତ୍ତ୍ୱକୁ ଅନୁସନ୍ଧାନ କରି ଏସବୁ ପଦାର୍ଥଠାରୁ ଏପରିକି, ଶରୀର, ପ୍ରାଣ, ମନ, ଇନ୍ଦ୍ରିୟଠାରୁ ମଧ୍ୟ ନିଜକୁ ନିର୍ଲିପ୍ତ ରଖିବା ଉଚିତ । ଏ କଥାଗୁଡ଼ିକ ପ୍ରତି ଯିଏ ଅହର୍ନିଶ ଅଭ୍ୟାସ-ପୂର୍ବକ ଧ୍ୟାନ ଦେଇଥାଏ, ସେ ହେଉଚି ପ୍ରକୃତ ପ୍ରଭୁଭକ୍ତ । ଏଭଳି ବ୍ୟକ୍ତି ହିଁ ଜଗତର କଲ୍ୟାଣ ସାଧନ କରିପାରେ ।

ତେଣୁ ଆମ୍ଭେମାନେ ସମସ୍ତେ ସାଂସାରିକ କର୍ମ ସମ୍ପୂର୍ଣ୍ଣ କର୍ତ୍ତବ୍ୟ-ଭାବନା ଏବଂ ତତ୍‌ପରତା ସହକାରେ ସମ୍ପନ୍ନ କରି ମଧ୍ୟ ନିଜର ବାସ୍ତବିକ ସ୍ୱରୂପକୁ ଭୁଲିବା ଉଚିତ ନୁହେଁ । ଆମେ ଶରୀର ନୋହୁଁ, ପ୍ରାଣ ନୋହୁଁ, ଇନ୍ଦ୍ରିୟ ନୋହୁଁ, ଏପରିକି ଅନ୍ତରାତ୍ମା ମଧ୍ୟ ନୋହୁ, ଏ ସମସ୍ତଙ୍କ ଅତୀତ ବିଶ୍ୱାତ୍ମା ଅର୍ଥାତ୍ ସ୍ଥାବର ଅସ୍ଥାବର, ଚଳ ଅଚଳ ସବୁଥିରେ ବ୍ୟାପ୍ତ ପରମାତ୍ମାଙ୍କର ହିଁ ଅଂଶ ଏବଂ ପରିଶେଷରେ ଏହିଥିରେ ହିଁ ବିଲୀନ ହେବାକୁ ପଡ଼ିବ । ଏହି ତଥ୍ୟକୁ ସର୍ବଦା ଧ୍ୟାନରେ ରଖି ଆତ୍ମାନନ୍ଦରେ ଲୀନ ରହି ପରମାତ୍ମା-ସୁଖ-ବ୍ରହ୍ମାନନ୍ଦ ଅନୁଭବ କରିବା ଉଚିତ ।

## ତୃତୀୟ ସମାସ
## ।। ନିସ୍ପୃହ-ପ୍ରେରଣା ନିରୂପଣ ।।

ନର ଦେହ ଦୁର୍ଲ୍ଲଭ, ଏହାର ଆୟୁ ମଧ୍ୟ ଦୁର୍ଲ୍ଲଭ । ତେଣୁ ଏହାକୁ ମୁହୂର୍ତ୍ତେ ସୁଦ୍ଧା ନଷ୍ଟ କରିବା ଅନୁଚିତ । ଆୟୁ ଅତି ମୂଲ୍ୟବାନ୍ । ତେଣୁ ବିବେକ ସହିତ ସର୍ବଦା କାମ କରିବା ଉଚିତ । ବିବେକ ବିନା ପ୍ରାଣୀ ଦୀନହୀନ । ଆଳସ୍ୟ, ପ୍ରମାଦ ଏବଂ କୁସଂଗରେ ଆମେ ନିଜର ସର୍ବନାଶ ଘଟାଇବା ମୂର୍ଖତା । ବିଶୃଙ୍ଖଳା,

ସ୍ୱଚ୍ଛନ୍ଦତା ଏବଂ ଅବିବେକୀ ଯୁବାବସ୍ଥାର ପରିଣାମ ହେଉଚି ଦୈନ୍ୟାବସ୍ଥା । ଇଚ୍ଛା କରୁଥିବା ପଦାର୍ଥକୁ ନ ପାଇବା ହିଁ ଦୈନ୍ୟ । ଅନ୍ନ, ବସ୍ତ୍ର, ଉତ୍ତମ ଗୁଣ, ଶିଷ୍ଟାଚାର ଆଦିର ଅଭାବ ଦୈନ୍ୟାବସ୍ଥାର ଲକ୍ଷଣ । ଯାହାର ସମୟ ପ୍ରତି ଧ୍ୟାନ ନାହିଁ, ଶରୀର ଓ ମନ ଉପରେ ଯାହାର ନିୟନ୍ତ୍ରଣ ନାହିଁ, ଯାହାର ଲେଖନ-ବଚନ-ଶ୍ରବଣ ମନନର ଅଭ୍ୟାସ ନାହିଁ, ଯିଏ ନିଜେ ମୂର୍ଖ ହୋଇ ମଧ୍ୟ ସଜ୍ଜନମାନଙ୍କ ନିନ୍ଦା କରିଥାଏ—ଏଭଳି ମନୁଷ୍ୟର ପରମାର୍ଥ ସଫଳ ହେବ କିପରି ?

ତେଣୁ ଯିଏ ସ୍ୱୈରାଚାର ପରେ ପଶ୍ଚାତାପ କରିଥାଏ, ସେ ଭବିଷ୍ୟତରେ ବିବେକସମ୍ପନ୍ନ ହେବା ଦିଗରେ ଅଭ୍ୟାସ କରିବା ଉଚିତ । ଉତ୍ତମୋତ୍ତମ ଗ୍ରନ୍ଥ ପଠନ କରି ଏହାର ଗଭୀରାର୍ଥକୁ ମନନ ଚିନ୍ତନ କରିବା ଆବଶ୍ୟକ । ଦୁର୍ଗୁଣକୁ ତ୍ୟାଗକରି ସୁଗୁଣ ସଂଗ୍ରହ କରିବା ଉଚିତ । ଅନେକ ଲକ୍ଷଣର ଶ୍ଳୋକ, ପଦ, ଭଜନ ଆଦି କଣ୍ଠସ୍ଥ କରିବା ଉଚିତ । ଏଥିରେ ମନ ଆନନ୍ଦିତ ରହିଥାଏ । କେଉଁ ସମୟରେ କାହାକୁ କ'ଣ କହିବା ଉଚିତ ସେ ବିବେକ ରହିବା ଦରକାର । ଅନ୍ୟର ମନୋଭାବକୁ ବୁଝି ଯାହାର ଶୁଣିବା ପାଇଁ ଆଗ୍ରହ, ତାକୁ ହିଁ ଭଜନ କୀର୍ତ୍ତନ ଶୁଣାଇବା ଉଚିତ । ସମୟ ଅନୁକୂଳ ନହେଲେ ଭଜନ ଗାଇବା ମୂର୍ଖତାର ଲକ୍ଷଣ । ଯିଏ ଯେଉଁ ଦେବତାଙ୍କ ଉପାସନା ପ୍ରିୟ, ଯାହାଙ୍କ ଭଜନ ଗାଇବାକୁ ଭଲ ଲାଗେ, ସେହି ଦେବତାଙ୍କ ଗୁଣକୀର୍ତ୍ତନ କରିବା ଉଚିତ ।

ଗୀତ, ତାଳ, ସ୍ୱର ଓ ରାଗଆଦିକୁ ଭଲଭାବରେ ଅଭ୍ୟାସ କରି ଗାଇଲେ ଶ୍ରୋତାମାନଙ୍କୁ ମନ ଆନନ୍ଦିତ ହୋଇଥାଏ । ସାହିତ୍ୟ, ସଙ୍ଗୀତ ମାଧ୍ୟମରେ ଶ୍ରୋତାମାନଙ୍କୁ ପ୍ରେମ-ସୁଖ ପାନ କରାଇବା ଉଚିତ । ପ୍ରବଚନ ଓ ଭଜନ ସହିତ ଲୋକଙ୍କୁ ଏହାର ଅର୍ଥ ବୁଝେଇ ଦେବା ଉଚିତ । ମୁଖସ୍ଥ ଭଜନର ଉପଯୁକ୍ତ ଅଭ୍ୟାସ କରି ଭାଷଣ-କଳା ଦ୍ୱାରା ଲୋକଙ୍କୁ ପରମାର୍ଥ ଜ୍ଞାନ ପ୍ରଦାନ କରିବା ଆବଶ୍ୟକ । ସତ୍‌ସଙ୍ଗ ଦ୍ୱାରା ଶୁଣିଥିବା କଥାକୁ ଧ୍ୟାନର ସହିତ ମନେରଖି ତା ଅର୍ଥ ଉପରେ ଗଭୀର ଭାବେ ଚିନ୍ତନ କରିବା ଉଚିତ । ସର୍ବଦା ଭଲ ଭଲ ଗ୍ରନ୍ଥର ପଠନ-ପାଠନ କରାଯିବା ଆବଶ୍ୟକ ଏବଂ ଏହାକୁ ବିବେକପୂର୍ବକ ଅନୁସନ୍ଧାନ କରି ଅନୁଭବ ଦ୍ୱାରା ପରମ ଆନନ୍ଦ ଲାଭ କରିବା ଉଚିତ ।

## ଚତୁର୍ଥ ସମାସ
## ।। ମାନବ ଶରୀରର ଶ୍ରେଷ୍ଠତା ।।

ମନୁଷ୍ୟ ନିଜ ଦେହ ଲାଗି ନାନା ଧନ୍ଦା କରିଥାଏ । ଭଗବତ୍ ଭକ୍ତି, ଅଧ୍ୟୟନ, ଗ୍ରନ୍ଥ-ରଚନା, ସତ୍ସଙ୍ଗ, ତୀର୍ଥାଟନ, ଶ୍ରବଣ ମନନ, କର୍ମ ଜ୍ଞାନ-ଉପାସନା ଆଦି ମାର୍ଗ ଏବଂ ଇହଲୋକ, ପରଲୋକ, ବିଭିନ୍ନ ସାଧନା, ପାପ, ପୁଣ୍ୟ, ସତ୍ମାର୍ଗ, ତ୍ୟାଗଭୋଗ, ଭକ୍ତି-ମୁକ୍ତି-ଯୁକ୍ତି ଏବଂ ନାନା ପ୍ରକାରର ବିଦ୍ୟା ଓ କଳା ସବୁ ହେଉଚି ଦେହ ଲାଗି । ଦେହ ବିନା ସବୁ ବ୍ୟର୍ଥ । ଦେହ ଏହି ବ୍ରହ୍ମାଣ୍ଡର ଫଳ । ତେଣୁ ଯେଉଁ ପ୍ରଭୁ-ସଙ୍କଳ୍ପ ଭୁଲରେ ହୋଇଥାଏ, ତାକୁ ଫଳରେ ଦେଖିବା ଉଚିତ । ଲତାର ମୂଳରେ ବୀଜ ଏବଂ ଫଳରେ ମଧ୍ୟ ରହିଥାଏ ବୀଜ । ମଝିରେ ଜଳରୂପରେ ଲତା ଦେଖାଯାଇଥାଏ । ମୂଳରୁ ଫଳ, ପୁଣି ଫଳରୁ ମୂଳ ଏହିଭଳି ସୃଷ୍ଟିର ବ୍ୟାପାର ଚାଲିଥାଏ । ଦେହବିନା କିଛି କରାଯାଇ ନ ପାରେ, ତେଣୁ ଦେହକୁ ସାର୍ଥକ କରିବା ଉଚିତ । ଆତ୍ମା ଯୋଗୁଁ ଦେହ ଓ ଦେହ ଯୋଗୁଁ ଆତ୍ମା, ଏହିଭଳି ଭାବେ ଉଭୟର ସମ୍ପର୍କ ରକ୍ଷା ଫଳରେ ସୃଷ୍ଟିର କାର୍ଯ୍ୟ ଚାଲିଚି । ଆତ୍ମାକୁ ଲୁଚେଇ ଗୁପ୍ତ ଭାବରେ କୌଣସି କାର୍ଯ୍ୟ କରାଯାଇ ନ ପାରେ । କାରଣ ସମସ୍ତ କର୍ତ୍ତୃତ୍ୱ ହେଉଚି ଆତ୍ମାର ।

ଦେହରେ ଆତ୍ମାର ନିବାସ । ଦେହକୁ ସମ୍ମାନ ଦେବା ମାତ୍ରେ ଆତ୍ମା ସନ୍ତୁଷ୍ଟ ହୋଇଥାଏ ଏବଂ ଦେହକୁ କଷ୍ଟ ଦେଲେ ଆତ୍ମା ଦୁଃଖିତ ହୋଇପଡ଼େ । ତେଣୁ ଜନତା ମଧ୍ୟରେ ଜନାର୍ଦ୍ଦନଙ୍କୁ ଅନୁଭବ କରି ସମସ୍ତଙ୍କୁ ସନ୍ତୋଷ ଓ ସୁଖ ଦେବା ଲାଗି ଉଦ୍ୟମ କରିବା ଉଚିତ । ପୁଣ୍ୟଶୀଳ ପୁରୁଷଙ୍କଠାରୁ ପ୍ରାଣୀମାତ୍ରେ ସଦ୍ବିଚାର ଲାଭ କରିଥାଆନ୍ତି ଏବଂ ଅନେକ ଲୋକ ତାଙ୍କ ଅନୁସାରେ ଚାଲିବାରେ ମହତ୍ କାର୍ଯ୍ୟ ସମ୍ପାଦନ କରିଥାଆନ୍ତି । ତେଣୁ ପୂଜା ଉପାସନା ଏବଂ ସମ୍ମାନ ଲାଗି ସନ୍ଥ-ସଜ୍ଜନ-ମାନେ ହିଁ ଅଧିକାରୀ ।

କହିଚି, ଜନତାକୁ ଜନାର୍ଦ୍ଦନ ମନେ କରି ସମସ୍ତଙ୍କୁ ସନ୍ତୋଷ ଦେବା ଉଚିତ, କିନ୍ତୁ ସମସ୍ତଙ୍କୁ ସମାନ ଭାବେ ସମ୍ମାନ ଦେଇ ହେବନି । ତେଣୁ ପୁଣ୍ୟ ପୁରୁଷର ହିଁ ପୂଜା କରିବା ଏବଂ ଅନ୍ୟ ଜୀବକୁ ସନ୍ତୋଷ ଦେବା ଉଚିତ । ଅନ୍ୟ

କାହାକୁ ଦୁଃଖ ଦେବା ଅନୁଚିତ୍ । ସବୁଥିରେ ବ୍ୟାପ୍ତ ଅନ୍ତରାତ୍ମାକୁ ଯଦି କଷ୍ଟ ଦେବ ତ, କେହି ସଂସାରରେ ଶାନ୍ତିରେ ରହିନପାରେ— ଏହି ବିଷୟଟି ପ୍ରତି ଧ୍ୟାନ ଦେଇ ମନୁଷ୍ୟକୁ ମନୁଷ୍ୟର ଆଶ୍ରୟରେ ଏବଂ ପରସ୍ପର ସହଯୋଗରେ କାର୍ଯ୍ୟ କରିବା ଉଚିତ ।

ପରମେଶ୍ୱରଙ୍କ ଗୁଣ ଅନନ୍ତ । ଏହାର ବର୍ଣ୍ଣନା କରାଯାଇ ନ ପାରେ । ଅଧ୍ୟାତ୍ମ ଗ୍ରନ୍ଥ ଅଧ୍ୟୟନ ଦ୍ୱାରା ହିଁ ଜ୍ଞାନ ଓ ଅନୁଭବ ହୋଇପାରେ ।

## ପଞ୍ଚମ ସମାସ
## ।। ଆଗାମୀ ପରୀକ୍ଷା ।।

ଯେତେ ବଡ଼ ଥାଳିରେ ଯେତେ ଅନ୍ନ ରଖ ନା କାହିଁକି ଥାଳି ସେଥିରୁ ଦାନାଏ ସୁଦ୍ଧା ଖାଇପାରେନା । ସେହିଭଳି ହଜାର ହଜାର ଗ୍ରନ୍ଥ ପାଠ କରିବା, ହଜାର ହଜାର ଶ୍ଳୋକ ମୁଖସ୍ଥ କରି ସେଗୁଡ଼ିକୁ ହୃଦୟଙ୍ଗମ ନ କଲେ କୌଣସି ଉପକାର ହୋଇ ନ ଥାଏ । କେତେକ ଲୋକ ଅନର୍ଗଳ ଭାବରେ ଶହ ଶହ କବିତା, ପଦ, ଭଜନ ଆବୃତ୍ତି କରିଥାଆନ୍ତି, କିନ୍ତୁ ସେସବୁର ଅର୍ଥ ପଚାରିଲେ କିଛି କହି ପାରନ୍ତି ନାହିଁ । ଏହିଭଳିଭାବେ ଶବ୍ଦ-ଜ୍ଞାନ ଓ ଅନୁମାନର କୌଣସି ମୂଲ୍ୟ ନାହିଁ । କେବଳ ଶବ୍ଦାଡ଼ମ୍ବରରେ ବୁଡ଼ି ରହିବା ବୃଥା । ଶବ୍ଦ ରତ୍ନକୁ ଭଲଭାବରେ ପରୀକ୍ଷା କରି ଯାହା ଅନୁଭବସିଦ୍ଧ, ତାକୁ ହିଁ ଆତ୍ମସ୍ଥ କରିବା ଉଚିତ । ନାମ, ରୂପକୁ ଛାଡ଼ି, କ୍ରମଶଃ ମୂଳ-ବସ୍ତୁର ଧ୍ୟାନ କରିବା ଆବଶ୍ୟକ । ଲେଖକଙ୍କ ଭାବାର୍ଥକୁ ଭଲଭାବରେ ବୁଝିନେବା ଉଚିତ । ଅର୍ଥକୁ ନ ବୁଝି କେବଳ ପାଠ କରିବା ମଧ୍ୟ ମୂର୍ଖତା । ବହୁ ଗ୍ରନ୍ଥ ପଢ଼ି, କିଛିହେଲେ ଅନୁଭବ କରି ନ ପାରିଲେ, ସେ ପାଠପଢ଼ା ବୃଥା । ଯିଏ ସ୍ୱାନନ୍ଦ, ଚିନ୍ତନ ବିନା ମୁହୂର୍ତ୍ତେ ମଧ୍ୟ ସମୟ ନଷ୍ଟ କରି ନ ଥାଏ ସେ ପ୍ରକୃତ ଜ୍ଞାନୀ । ଏଭଳି ପୁରୁଷ ସଂସାରରେ ଧନ୍ୟ ।

ଅଧ୍ୟୟନ କରୁଥିବା ବେଳେ ଆଧ୍ୟାତ୍ମ ଶାସ୍ତ୍ରର ସୂକ୍ଷ୍ମ ଶବ୍ଦର ଗହନ ଅର୍ଥକୁ ମନେ ରଖି ଏହାର ବିଚାର ବିବେଚନା କରିବା ଆବଶ୍ୟକ । ଶ୍ରୋତାଙ୍କ ମନରୁ ସନ୍ଦେହ ଦୂର କରି ସେମାନଙ୍କୁ ସନ୍ତୋଷ ଦେବା ଉଚିତ । ଅନୁଭବବିନା ଜ୍ଞାନ-ଉପଦେଶ ଦେବା ବ୍ୟର୍ଥ । ସଂସାରରେ ସତ୍ୟ ହିଁ ସମ୍ମାନିତ ହୋଇଥାଏ । ତେଣୁ

ସର୍ବଦା ସତ୍ୟବସ୍ତୁ ଓ ସତ୍ୟାଚରଣର ଆଶ୍ରୟ ନେବା ଉଚିତ । ସତ୍ୟ ହିଁ ବ୍ରହ୍ମ ସ୍ୱରୂପ ଏବଂ ଅସତ୍ୟ ହିଁ ପାପ । ଯିଏ ଅଖଣ୍ଡ ସାଧନାବ୍ରତୀ, ମନନ ଚିନ୍ତନରେ ମଗ୍ନ ସେ କେବଳ ସତ୍ୟ ଜ୍ଞାନ ଲାଭ କରିଥାଏ ଏବଂ ସତ୍ୟକୁ ଉପଲବ୍ଧି କରିଥାଏ ।

ନିତ୍ୟାନିତ୍ୟ ଦ୍ୱାରା ପିଣ୍ଡର ଏବଂ ସାର ଅସାର ବିବେକ ଦ୍ୱାରା ବ୍ରହ୍ମାଣ୍ଡର ବିଚାର କରିବା ଉଚିତ । ମାୟାର ନିରସନ ଲାଗି ହିଁ ସମଗ୍ର ପ୍ରଯତ୍ନ ଆବଶ୍ୟକ । ମାୟା ହଟିଯିବା ପରେ ଆଉ ବିବେକର ଆବଶ୍ୟକତା ରହେ ନାହିଁ । ସବୁ କାର୍ଯ୍ୟ ସହଜ ପ୍ରବୃତ୍ତିରେ ଯଥୋଚିତ ରୀତିରେ ସମ୍ପନ୍ନ ହୋଇଗଲେ ତତ୍ତ୍ୱବିଚାର ଦ୍ୱାରା ସମାଧାନ ହେବା ପରେ ମହାବାକ୍ୟ (ତତ୍ତ୍ୱମସି)ରେ ପ୍ରବେଶ ପଥ ପ୍ରଶସ୍ତ ହୋଇଉଠେ । ତା ପରେ ଭକ୍ତ ଆତ୍ମ-ନିବେଦନ ଭକ୍ତି ଦ୍ୱାରା ପରମଆନନ୍ଦ ଉପଲବ୍ଧି କରିଥାଏ ।

## ଷଷ୍ଠ ସମାସ
## ।। ଶ୍ରେଷ୍ଠ ବ୍ୟକ୍ତିର ପରିଚୟ ।।

(ଆଫଜଲ୍ ଖାଁଙ୍କୁ ହତ୍ୟା କରି ଛତ୍ରପତି ଶିବାଜୀ ଆସିଥିଲେ ଗୁରୁ ଶ୍ରୀ ସମର୍ଥ ରାମଦାସଙ୍କ ଦର୍ଶନ ଲାଗି । ସେତେବେଳେ ସମର୍ଥ ତାଙ୍କୁ ଏହି ଉପଦେଶ ଦେଇଥିଲେ ।)

ଯେପରି ବସ୍ତ୍ର, ଅଳଙ୍କାର ଆଦିରେ ଶରୀରକୁ ସଜାଯାଇଥାଏ, ସେହିଭଳି ବିବେକ, ବିଚାର ଏବଂ ରାଜନୀତିରେ ଅନ୍ତରକୁ ସଜେଇବା ଉଚିତ । ଶରୀର ସୁନ୍ଦର, ସତେଜ ଏବଂ ବସ୍ତ୍ରାଦି ଭୂଷଣରେ ସୁସଜ୍ଜିତ ହେଲେ କ'ଣ ହେବ, ଯଦି ଅନ୍ତରରେ ଚାତୁର୍ଯ୍ୟ ଓ ସାବଧାନତା ନ ଥାଏ, ବାହ୍ୟାଡ଼ମ୍ବର, ବାହ୍ୟଶୃଙ୍ଗାରର କୌଣସି ମୂଲ୍ୟ ନାହିଁ । ବାଚାଳତା ଜିଦ୍‌ଖୋର, କଠୋର କର୍କଶଭାଷୀ, ଅହଂକାରୀ, ସ୍ୱେଚ୍ଛାଚାରୀ, ମିଥ୍ୟାବାଦୀ, ପାପୀ, ଶୀଘ୍ରକୋପୀ, ପରପୀଡ଼କ ଏବଂ ରାଜନୀତିରେ ସମନ୍ୱୟ ରକ୍ଷା କରିବାରେ ଅସମର୍ଥ ବ୍ୟକ୍ତି ରାକ୍ଷସ ସହିତ ସମାନ । ତେଣୁ ତାକୁ ପାଖ ସୁଦ୍ଧା ମଡ଼େଇବା ଉଚିତ ନୁହେଁ । ଜୀବନରେ ଅନେକ ପ୍ରକାରର ଅବସର ଆସିଥାଏ । ସର୍ବଦା ନୀତି, ନିୟମ ପାଳନ କରିବା ସମ୍ଭବ ହୋଇ ନ

ଥାଏ । ନୀତି ନିୟମ ପାଳନ କରିବାରେ ରାଜନୀତି ମଧ୍ୟ ବାଧକ ହୋଇଥାଏ । ତେଣୁ କୌଣସି କଥାରେ ସୀମାତିକ୍ରମ ନ କରି, ସମୟ ତଥା ପ୍ରସଙ୍ଗ ଅନୁସାରେ ବ୍ୟବହାର କରିବା ଉଚିତ । ବିବେକୀ କାର୍ଯ୍ୟକର୍ତ୍ତା କେବେହେଲେ ଜିଦ୍‌ଖୋର ହେବ ଅନୁଚିତ । ସେ କାହାକୁ ଘୃଣା କରିବା ଅନୁଚିତ । ଅଡ଼ି ବସିଲେ ବିଭେଦ ସୃଷ୍ଟି ହୋଇଥାଏ ଏବଂ କୌଣସି କାର୍ଯ୍ୟ ସଫଳ ହୁଏ ନାହିଁ ।

ସବୁବେଳେ ଅନୁଭବ କରିବା ଉଚିତ ଯେ ପ୍ରଭୁ ତୁମ ସଙ୍ଗେ ସଙ୍ଗେ ରହିଛନ୍ତି । ଖାସ୍‌କରି ମାତା ଭବାନୀ-ତୁମର ବରଦହସ୍ତ । ତଥାପି ଯେ କୌଣସି କାର୍ଯ୍ୟ ବିଚାରପୂର୍ବକ କରିବା ଉଚିତ । ସର୍ବଦା ସାବଧାନ ରହିବା ଆବଶ୍ୟକ । ଏହାଠୁ ତୁମକୁ ଅଧିକ କ'ଣ କହିବି ? ମହାନ୍ ବ୍ୟକ୍ତିଙ୍କ ନିକଟକୁ ବହୁଲୋକ ଆସିଥାଆନ୍ତି । ସମସ୍ତଙ୍କ ସହିତ ଆତ୍ମୀୟତାପୂର୍ଣ୍ଣ ବ୍ୟବହାର କରିବା ଉଚିତ । ଏ ସବୁ ମ୍ଳେଚ୍ଛଲୋକ ଅତିଦୁଷ୍ଟ । ଗତ କେତେଦିନ ଧରି ଏମାନେ ଉତ୍ପାତ କରିବାରେ ଲାଗିଛନ୍ତି । ତେଣୁ ସେମାନଙ୍କ ପ୍ରତି ସାବଧାନ । ଈଶ୍ୱର ସର୍ବମୟ କର୍ତ୍ତା । ଯାହାକୁ ସେ ସ୍ୱୀକାର ତଥା ଅଙ୍ଗୀକାର କରିଥାଆନ୍ତି, ତାର ମନୋଭାବ ସନ୍ଥଲୋକ ଜାଣି ପାରନ୍ତି । ଏକଥା ମାନିବା ଉଚିତ ଯେ ଯଶ, କୀର୍ତ୍ତି, ବଳବିକ୍ରମ ଆମର କର୍ତ୍ତୃତ୍ୱର ଫଳ ନୁହଁ; ଏସବୁ ପରମେଶ୍ୱରଙ୍କ ଅବଦାନ । ସାବଧାନ ହୋଇ ନିଜର ପରାକ୍ରମ ପ୍ରକାଶ କରିବା, ଧୈର୍ଯ୍ୟର ସହିତ କଠିନ ସମସ୍ୟାର ସମ୍ମୁଖୀନ ହେବା ଅସାମାନ୍ୟ ଲୋକୋତ୍ତର, ପରୋପକାର କାର୍ଯ୍ୟରେ କଷ୍ଟ ସ୍ୱୀକାର କରିବା ଏବଂ ଏହାକୁ ସାର୍ଥକ କରିବା-ସବୁକାର୍ଯ୍ୟ ଈଶ୍ୱରଙ୍କ ପ୍ରେରଣାରେ ହିଁ ହୋଇଥାଏ ।

ଯଶ, କୀର୍ତ୍ତି, ପ୍ରତାପ, ମହିମା, ବହୁ ସଦ୍‌ଗୁଣ, ଦେବ ବ୍ରାହ୍ମଣ ପ୍ରତି ଦୟାଭାବ, ଜନସେବା, ପରୋପକାର ବୃତ୍ତି, ପ୍ରପଞ୍ଚ-ପରମାର୍ଥ ମଧ୍ୟରେ ସମନ୍ୱୟ ରକ୍ଷା, ଅଖଣ୍ଡ ସାବଧାନତା, ସହନଶୀଳତା, ପ୍ରଜାପାଳନ ଆଦି ସମସ୍ତ ପ୍ରବୃତ୍ତି ହେଉଚି ''ଈଶ୍ୱରୀୟ-ଦାନ'' । ଧର୍ମ-ସ୍ଥାପନା କରୁଥିବା ମହାପୁରୁଷ ଈଶ୍ୱରଙ୍କ ଅବତାର । ଅତୀତରେ ଏପରି ଅନେକ ଅବତାର ହୋଇଛି । ବର୍ତ୍ତମାନ ମଧ୍ୟ ବିଦ୍ୟମାନ ଏବଂ ଭବିଷ୍ୟତରେ ମଧ୍ୟ ହୋଇ ଚାଲିଥିବ । ଏହି ମହାତ୍ମାମାନଙ୍କ ଜନ୍ମ ମଧ୍ୟ ''ଈଶ୍ୱରୀୟ ଦାନ ।'' ଗୁଣ ଗ୍ରାହକତା, ତୀବ୍ର ତୀକ୍ଷ୍ଣ ତର୍କବୁଦ୍ଧି, ସ୍ୱଚ୍ଛ ବିବେକ ଏବଂ ପ୍ରଖର ଧର୍ମ ବୁଦ୍ଧି ଆଦି ପୁଣ୍ୟଶ୍ଳୋକ ସତ୍‌ପୁରୁଷମାନଙ୍କ ଦୈବୀଗୁଣ । ଏସବୁ ଈଶ୍ୱରୀକ ବରଦାନ । ଏ ସଂସାରରେ ଅନେକ ପ୍ରବୃତ୍ତି ।

ସେଗୁଡ଼ିକୁ ନିତ୍ୟାନିତ୍ୟ ବିବେକ ଏବଂ ସାରାସର ବିଚାରର କଷଟି ପଥରରେ କଷି ପରୀକ୍ଷା କରିନେବା ଉଚିତ । ଏହାଦ୍ୱାରା ଇହଲୋକ ଓ ପରଲୋକ ଉଭୟ ସାଧନ ସୁଗମ ହୋଇଥାଏ । ଏହି ସଦ୍‌ଗୁଣ-ସମ୍ପଦ ଜୀବନର ପ୍ରକୃତ ଶୋଭା, ପ୍ରକୃତ ସୁଗନ୍ଧ । ଏହାହିଁ ଜୀବନର ସାର୍ଥକତା । ଏକଥା କେବେହେଲେ ଭୁଲିବ ନାହିଁ ।

## ସପ୍ତମ ସମାସ
## ।। ଜନ-ସ୍ୱଭାବ ବିବେଚନ ।।

ଲୋଭ କରିବା, ଲାଳସା କରିବା ହେଉଚି ମଣିଷର ପ୍ରକୃତି । କିଛି ପାଇବା ଆଶାରେ ହିଁ ମନୁଷ୍ୟ ଦେବତାଙ୍କ ପୂଜା ଅର୍ଚ୍ଚନା, ଉପାସନା, ପ୍ରାର୍ଥନାଆଦି କରିଥାଏ । ମାଲିକର କାମ ନ କରି, କେବଳ ଖୋସାମଦ କରି ବେତନ ଦାବୀ କରିବା ଯେପରି ମୂର୍ଖତା, ସେହିଭଳି ନିଃସ୍ୱାର୍ଥପର ତଥା ନିଷ୍କାମ ଭାବରେ ଭକ୍ତି ନ କରିବା ଅର୍ଥ ପ୍ରଭୁଙ୍କ କରୁଣାରୁ ବଞ୍ଚିତ ହେବା । ବିନା ପରିଶ୍ରମରେ କୌଣସି ଫଳ ମିଳି ନପାରେ । ନ କଲେ କୌଣସି କାର୍ଯ୍ୟ ହୋଇପାରେ କି ? ଆଳସ୍ୟ ପ୍ରମାଦଦ୍ୱାରା କାର୍ଯ୍ୟର ବିନାଶ ହିଁ ଘଟିଥାଏ । ଏହା ହେଉଚି ପ୍ରତ୍ୟକ୍ଷ ଅନୁଭୂତି । କଷ୍ଟ ଓ ଦୁଃଖ ସହିବା ପରେ ସୁଖର ମିଠାଫଳ ମିଳିଥାଏ । ଯିଏ ପ୍ରଥମେ ଆଳସ୍ୟପରାୟଣ ଭାବରେ ସୁଖ ଉପଭୋଗ କରିଥାଏ, ତାକୁ ପରେ ଦୁଃଖକଷ୍ଟର ସମ୍ମୁଖୀନ ହେବାକୁ ପଡ଼ିଥାଏ । ପ୍ରପଞ୍ଚ ହେଉ କିମ୍ବା ପରମାର୍ଥ ହେଉ, ଉଭୟ କ୍ଷେତ୍ରରେ ବିବେକପୂର୍ଣ୍ଣ ଭାବେ କାମ କରିବା ଉଚିତ । ମନୁଷ୍ୟମାତ୍ରେ ଦୂରଦୃଷ୍ଟି ସମ୍ପନ୍ନ ଏବଂ ଦୀର୍ଘସୂତ୍ରୀ ହେବା ଉଚିତ । ଯାହା ମିଳିବ, ତାକୁ ସଙ୍ଗେ ସଙ୍ଗେ ସାରିଦେବାରେ ଦୀନହୀନ ଭାବରେ ଭୋକରେ ମରିବା ସାର ହୋଇଥାଏ । ତେଣୁ ଧନ, ସାଧନ ଆଦିର ସଞ୍ଚୟ କରିବା ସଙ୍ଗେ ସଙ୍ଗେ ପରଲୋକ ଲାଗି ପରୋପକାର ଦ୍ୱାରା ପରମାର୍ଥ ସଞ୍ଚୟ କରିବା ମଧ୍ୟ ଉଚିତ । ବିନା ସଞ୍ଚୟରେ ମନୁଷ୍ୟ ଜୀବିତ ରହିଥିଲେ ମଧ୍ୟ ମୃତ ସହିତ ସମାନ ।

ମନୁଷ୍ୟ ସଂସାରରେ ରହିବା ସଙ୍ଗେ ସଙ୍ଗେ ଜନ୍ମ ମରଣ ଯାତନାରୁ ପିଣ୍ଡ ଛାଡ଼ିବାଲାଗି ପରମାର୍ଥର ସାଧନ କରିବା ଉଚିତ । ସବୁକିଛି ପରମାତ୍ମାଙ୍କ

ଇଚ୍ଛାରେ ହୋଇଥାଏ, ଏକଥା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପ୍ରଭୁଙ୍କ ଉପାସନା କରି ଏହାକୁ ପାଇବା ଲାଗି ପ୍ରଯତ୍ନ କରିବା ଆବଶ୍ୟକ । ବିବେକଦ୍ୱାରା ହିଁ ପରମାତ୍ମା ଲାଭ ହୋଇପାରେ । ବସ୍ତୁତଃ ପରମାତ୍ମାହିଁ ଏକମାତ୍ର ଧ୍ୟେୟ । ଏହାଙ୍କଠାରୁ ଅନେକ ଦେବ ଦେବୀଙ୍କ ବିସ୍ତାର । ତେଣୁ ଆମେ ଏକ ପରମାତ୍ମାଙ୍କ ଧ୍ୟାନ କରିବା ଉଚିତ । ଅନ୍ତରାତ୍ମା ଓ ପରମାତ୍ମାଙ୍କ କର୍ତ୍ତୃତ୍ୱକୁ ଠିକ୍ ମାର୍ଗରେ ଅନୁସନ୍ଧାନ କରିବା ଆବଶ୍ୟକ । ସାଧାରଣ ଲୋକ ଯିଏ ପରମାତ୍ମାଙ୍କୁ ନଜାଣି କିମ୍ବା ହେୟଜ୍ଞାନ କରି ଅନ୍ୟ ଦେବତାଙ୍କ ଗୁଣଗାନ କରିଥାଏ, ସେ କେବଳ ନିଜର ଅଜ୍ଞାନକୁ ଘୋଡ଼େଇବା ପାଇଁ ଏଭଳି ଆଡ଼ମ୍ବର ରଚନା କରିଥାଏ । ପରମାତ୍ମା ଲାଭ ଲାଗି କଷ୍ଟ କରିବାକୁ ପଡ଼େ । ଯିଏ କଷ୍ଟ କରେ ସେ ହୁଏ ଭାଗ୍ୟବାନ, ଯିଏ କେବଳ କଥା ବଖାଣିବାରେ ଲାଗିଥାଏ ସିଏ ଭାଗ୍ୟହୀନ । ଜ୍ଞାନୀ ପୁରୁଷ ଅଭାଗାର ଦୁର୍ଭାଗ୍ୟକୁ ବୁଝିପାରେ, କିନ୍ତୁ ଜ୍ଞାନୀର ସୌଭାଗ୍ୟକୁ ଅଜ୍ଞାନୀ ପୁରୁଷ ଜାଣିପାରେ ନାହିଁ । ଯିଏ ନୀଚ, ସାମାନ୍ୟ ସେ ବିବେକହୀନ । ତେଣୁ ପ୍ରଭୁ-ପ୍ରାପ୍ତିର ସୌଭାଗ୍ୟ ତା ପକ୍ଷରେ ସ୍ୱପ୍ନମାତ୍ର । ବିବେକଦ୍ୱାରା ହିଁ ଇହଲୋକ, ପରଲୋକର ସମସ୍ତ ସମସ୍ୟା ମେଣ୍ଟିଥାଏ ।

## ଅଷ୍ଟମ ସମାସ
## ।। ଅନ୍ତରାତ୍ମା ଦର୍ଶନ ।।

ଆତ୍ମା (ଅନ୍ତରାତ୍ମା) ସବିକାର ତଥା ଚଞ୍ଚଳ ଏବଂ ବ୍ରହ୍ମ ନିର୍ବିକାର, ନିଶ୍ଚଳ । ଆତ୍ମାକୁ ହିଁ ଲୋକେ ଈଶ୍ୱର ମନେ କରିଥାଆନ୍ତି ଏବଂ ଈଶ୍ୱର ସମ୍ପର୍କରେ ସେମାନେ ସମ୍ପୂର୍ଣ୍ଣ ନିଶ୍ଚିତ ହୋଇପାରନ୍ତି ନାହିଁ । ଈଶ୍ୱର ଯେ ଏକ ସେମାନେ ଜାଣନ୍ତି ନାହିଁ । ସେମାନେ ଅନେକ ଦେବତାଙ୍କ ମୁଖ୍ୟ ଈଶ୍ୱର-ତତ୍ତ୍ୱକୁ ଅନୁମାନ କରି ପାରନ୍ତି ନାହିଁ । ଅତଏବ ବିବେକ ଦ୍ୱାରା ମୁଖ୍ୟ ପରବ୍ରହ୍ମ-ତତ୍ତ୍ୱ (ପରମେଶ୍ୱର)କୁ ଚିହ୍ନିବା ଉଚିତ । ବହୁଦେବତାଙ୍କ ଚକ୍ରରେ ଘାଣ୍ଟି ହୁଅନାହିଁ । ତୀର୍ଥସ୍ଥାନମାନଙ୍କରେ ଯେଉଁ ପ୍ରତିମା ରହିଥାଏ, ସେହିଭଳି ପ୍ରତିମା ଘର ଭିତରେ ରଖି ପୂଜା ଅର୍ଚ୍ଚନା କରିବା ସମାଜରେ ଏକ ପରମ୍ପରା ଓ ପ୍ରଥା ହୋଇ ପଡ଼ିଚି । ପାଷାଣମୂର୍ତ୍ତି ସମ୍ପର୍କରେ ବିଚାର କଲେ ଜାଣିବ ଯେ ଏହା କୌଣସି ନା କୌଣସି ଦେବତାଙ୍କ ଅବତାରର ପ୍ରତିମୂର୍ତ୍ତି । ଅବତାରୀ ଭଗବାନ କୌଣସି ନା କୌଣସ

କାର୍ଯ୍ୟସିଦ୍ଧି ଲାଗି ଅବତରିତ ହୋଇଥାଆନ୍ତି ଏବଂ କାର୍ଯ୍ୟ ସମ୍ପନ୍ନ ହେବା ପରେ ନିଜ ମୂଳତତ୍ତ୍ୱରେ ମିଳେଇଯାଇ ଥାଆନ୍ତି ।

ଅତଏବ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ଦେବତାଙ୍କୁ ପ୍ରେରିତ କରିଥିବା ଅନ୍ତରାତ୍ମା ହିଁ ବାସ୍ତବିକ କର୍ତ୍ତା ଓ ଭୋକ୍ତା । ଯୁଗ ଯୁଗାନ୍ତ ଧରି ଏହି ଏକମାତ୍ର ଅନ୍ତରାତ୍ମା ତ୍ରିଲୋକକୁ ସଂଚାଳନ କରି ଆସୁଛନ୍ତି । ଏହି ଅନ୍ତର୍ଦେବ, ଅନ୍ତରର ଦେବତାଙ୍କୁ ଚିହ୍ନି ନ ପାରିବାରେ ଲୋକେ ଅନ୍ୟଦେବତାଙ୍କ ସନ୍ଧାନରେ ଏ ତୀର୍ଥରୁ ସେ ତୀର୍ଥ କ୍ଷେତ୍ରକୁ ବୁଲିବାରେ ଲାଗିଥାଆନ୍ତି । ତୀର୍ଥ ଯାତ୍ରାରୁ ମନ ହଟିଟିବା ପରେ ସେମାନେ ମନନ, ଚିନ୍ତନ କରିଥାଆନ୍ତି । ତାପରେ କହିଥାଆନ୍ତି- ''ତୀର୍ଥ ସ୍ଥାନରେ କେବଳ ପଥର ଓ ପାଣି ବ୍ୟତୀତ ଆଉ କ'ଣ ଅଛି ? ବୃଥାରେ ତୀର୍ଥାଟନ କରି କି ଲାଭ ?'' ଏହାଭାବି ସତ୍‌ସଙ୍ଗରେ ପ୍ରବୃତ୍ତ ହୋଇଥାଆନ୍ତି । ସତ୍‌ସଙ୍ଗ ଦ୍ୱାରା ହିଁ ଅନେକ ଜିଜ୍ଞାସୁଙ୍କର ଈଶ୍ୱର-ସାକ୍ଷାତ୍‌କାର ଅର୍ଥାତ୍ ଆତ୍ମ-ଦର୍ଶନ ହୋଇଥାଏ । ବିବେକୀ ପୁରୁଷ ହିଁ ଏହାର ମର୍ମ ବୁଝି ପାରନ୍ତି ।

ପ୍ରତିମା ପୂଜା ଅଜ୍ଞାନୀମାନଙ୍କ ଲାଗି । ପ୍ରତିମା ପୂଜାରୁ ଆରମ୍ଭ କରି ଯିଏ ବିବେକ ଦ୍ୱାରା ମୂଳତତ୍ତ୍ୱ ପର୍ଯ୍ୟନ୍ତ ଅନୁସନ୍ଧାନ କରିଥାଏ, ସେ ହେଉଚି ବିବେକୀ ସତ୍‌ପୁରୁଷ । ପରମେଶ୍ୱର ନାମ ଓ ରୂପର ଅତୀତ । ଅନ୍ତରାତ୍ମା ଚଞ୍ଚଳ ଏବଂ ବ୍ରହ୍ମ ନିଶ୍ଚଳ ଓ ଭ୍ରମରହିତ । ତେଣୁ ଯତ୍ନର ସହିତ ମନରୁ ଭ୍ରମ ଦୂର କରିବା ଉଚିତ । ବ୍ରହ୍ମସ୍ଥିତିକୁ ଅନୁଭବ କରିବା ଉଚିତ । ଏହାଙ୍କ ବିନା ସମସ୍ତ କର୍ମ ବ୍ୟର୍ଥ । ହଁ, ସଗୁଣର ଉପାସନା କର କିନ୍ତୁ କ୍ରମଶଃ ସଗୁଣକୁ ଛାଡ଼ି ନିର୍ଗୁଣକୁ ଗ୍ରହଣ କରିବା ଉଚିତ । ଶାନ୍ତି ଚିତ୍ତରେ ଏହା ଉପରେ ମନନ-ଚିନ୍ତନ ଓ ନିଦିଧ୍ୟାସନ କରିବା ଉଚିତ ।

## ନବମ ସମାସ
## ।। ନିଦ୍ରା-ବିଳାସ ଲକ୍ଷଣ ।।

ଏହି ଦଶକରେ ଶ୍ରୀସମର୍ଥ ବକ୍ତା ସ୍ୱାମୀଜୀ ଆଦି ପୁରୁଷ ପରମାତ୍ମାଙ୍କୁ ବନ୍ଦନ କରି ଏହାଙ୍କଠାରୁ ଉତ୍ପନ୍ନ ମାୟା-ନିଦ୍ରା-ବିଳାସର ବର୍ଣ୍ଣନା କରିଛନ୍ତି । ବକ୍ତା କହୁଛନ୍ତି— ନିଘୋଡ଼ ନିଦରେ ଶୋଇଥିଲେ ମନୁଷ୍ୟ କୌଣସି ପାଟିତୁଣ୍ଡ ହେଲେ

ମଧ୍ୟ ଜାଣିପାରେ ନାହିଁ । ନିଦରେ ମଣିଷ ଏକାବେଳକେ ଅଚେତ ଅବସ୍ଥାରେ ରହିଥାଏ । ମଶା, ଓଡ଼ଶ, ପୋକ ଆକ୍ରମଣ କଲେ ମଧ୍ୟ ଗଭୀର ନିଦ୍ରା ଫଳରେ ସେ କିଛି ଅନୁଭବ କରି ପାରେ ନାହିଁ । ନିଦ୍ରାରେ କେହି ହାଇମାରେ, କଡ଼ ଲେଉଟାଏ, ଘୁଙ୍ଘୁଡ଼ି ମାରେ, କାଶେ ମଧ୍ୟ, କିନ୍ତୁ ସେ କିଛି ଜାଣିପାରେ ନାହିଁ । ନିଦ୍ରାରେ ଏସବୁ ବ୍ୟାପାର ଚାଲିଥାଏ ।

ନିଦ ଭାଙ୍ଗିବା ପରେ ମନୁଷ୍ୟ ପୁଣି ନିଜ କାମରେ ଲାଗିପଡ଼େ । ସେହିଭଳି ମାୟାରୂପୀ ନିଦ୍ରାଭଙ୍ଗ ପରେ, ମାୟାରୁ ଜାଗ୍ରତ ହୋଇ ସାଧକମାତ୍ରେ ନିଷ୍ଠାର ସହିତ ନିଜ ସାଧନାରେ ପ୍ରବୃତ୍ତ ହୋଇଥାଏ । ଏହି ସାଧନା କ୍ରମରେ ସାଧକ ଅନ୍ତତଃ ତତ୍ତ୍ୱ-ଶୋଧନ ଦ୍ୱାରା ନିଜ ଆତ୍ମା ସ୍ୱରୂପର ଜ୍ଞାନ ଲାଭ କରି ଏବଂ ତୁରୀୟ ଅବସ୍ଥାକୁ ଅତିକ୍ରମ କରୁ କରୁ ବ୍ରହ୍ମରୂପ ହୋଇପଡ଼ିଥାଏ ।

## ଦଶମ ସମାସ
## ।। କଥା-ଶ୍ରବଣ ବିଧାନ ।।

ମନୁଷ୍ୟ ଯେତେବେଳେ କୌଣସି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ଉଦ୍ୟମ କରେ, ସେଥିରେ କୌଣସି ନା କୌଣସି ବାଧା-ବିକ୍ଷେପ ଦେଖା ଦେଇଥାଏ, କିନ୍ତୁ ସମୟ ଅନୁକୂଳ ହେଲେ ଅନାୟାସରେ କାର୍ଯ୍ୟ ସିଦ୍ଧି ହୋଇଥାଏ । କାର୍ଯ୍ୟ ସଫଳ ହେଲେ ମନୁଷ୍ୟ ସୁଖୀ ଓ ଉତ୍ସାହିତ ହୁଏ । ପରିଣାମରେ ତାର ବିଚାର ଶକ୍ତି ପ୍ରବଳ ହୋଇ ଉଠେ । ସବୁ ପ୍ରାଣୀଙ୍କ ଲାଗି ଦିନେ ନା ଦିନେ ଅନୁକୂଳ ସମୟ ଆସିଥାଏ । ଦୟାଳୁ ପରମାତ୍ମା ପ୍ରତ୍ୟେକ ପ୍ରାଣୀକୁ ଦୁଃଖ ପରେ ସୁଖ ଦେଇଥାଆନ୍ତି । ସମସ୍ତଙ୍କ ପାଇଁ ସମୟ ଅନୁକୂଳ ହେଲେ ତ ସମସ୍ତେ ରାଜା ହୋଇ ଉଠନ୍ତେ । ତେଣୁ ପରମାତ୍ମା ସମସ୍ତଙ୍କ ଲାଗି ଅନୁକୂଳତା ସାଙ୍ଗକୁ ପ୍ରତିକୂଳତାର ମଧ୍ୟ ବ୍ୟବସ୍ଥା କରିଛନ୍ତି । ଯେଉଁ ମନୁଷ୍ୟ ବିବେକ ପ୍ରପଞ୍ଚ ଓ ପରମାର୍ଥ ଉଭୟ ପ୍ରତି ଜାଗ୍ରତ ରହେ, ତା ଜୀବନରେ ପରମେଶ୍ୱରଙ୍କ କୃପାରୁ ବହୁତ ଅଘଟିତ ଓ ଅଦ୍ଭୁତ ଘଟନା ଘଟେ । ବିନା ଶ୍ରବଣ ଏବଂ ବିନା ଶିକ୍ଷଣରେ କେବେହେଲେ ଜ୍ଞାନ ଲାଭ ହୋଇ ନପାରେ । ଶ୍ରବଣ କରୁ କରୁ କ୍ରମଶଃ ଜ୍ଞାନଲାଭ ହୋଇ ମନୋଭାବ ଶୁଦ୍ଧ ହୋଇ ଉଠେ । ସେତେବେଳେ ଚିତ୍ତରେ ଜାଗ୍ରତ ହୁଏ ସାର-ଅସାର ବିବେକ ।

ଶ୍ରବଣ ଅର୍ଥାତ ଶୁଣିବା, ମନନ ଅର୍ଥାତ୍ ବିଚାର କରିବା । ଶ୍ରବଣରେ ନାନା ବାଧାବିଘ୍ନ ଘଟେ । କେହି କେହି ସତ୍‌ସଙ୍ଗରେ ବସିଥିବା ବେଳେ ଢୋଳେଇ ଥାଆନ୍ତି ତ କେହି କେହି ଅନ୍ୟ କଥା ଚିନ୍ତା କରିବାରେ ଲାଗି ଥାଆନ୍ତି । ଯାହା କିଛି ଶୁଣିବ ତା ଉପରେ ମନନ ବା ବିଚାର କରିବା ଦ୍ୱାରା ହିଁ ଶ୍ରବଣରୁ ଲାଭ ମିଳିଥାଏ । ସତ୍‌ସଙ୍ଗରେ ବସିଥିବା ବେଳେ କୌଣସି ଗଣ୍ଡଗୋଳ ହେବାମାତ୍ରେ ଲୋକେ ଇତସ୍ତତଃ ହୋଇ ପଡ଼ିଥାଆନ୍ତି । କେହି କେହି ହଟି ପଳେଇ ଥାଆନ୍ତି । କେହି କେହି ତରୁଣୀ ମହିଳାଙ୍କୁ ନଜର ପକାଇ ଥାଆନ୍ତି, କେହି କେହି ନିଜ ଜୋତା ଅଛି କି ନାହିଁ ଭାବୁଥାଆନ୍ତି । କେହି କେହି ନିଜ ଭିତରେ କଥାବାର୍ତ୍ତା କରିଥାଆନ୍ତି ।

ଏହିଭଳି ଭାବେ ସତ୍‌ସଙ୍ଗ ବେଳେ ନାନା ବିକ୍ଷେପ ଓ ବାଧା ବିଘ୍ନ ଘଟିବାରେ ଶ୍ରୋତାମାନଙ୍କୁ ଯଥୋଚିତ ଉପକାର ମିଳେ ନାହିଁ । ସତ୍‌ସଙ୍ଗରେ ବହୁ ଅହଂକାରୀ ଓ କ୍ରୋଧୀ ବ୍ୟକ୍ତି ମଧ୍ୟ ଥାଆନ୍ତି । ଭଲ କଥା ସେମାନଙ୍କୁ ମନ୍ଦବୋଧ ହୋଇଥାଏ । ତଥାପି ନାନା କୁ-ଉଦ୍ଦେଶ୍ୟରେ ବସି ରହିଥାଆନ୍ତି । ଏଭଳି ନାନା ପ୍ରକାରର ଶ୍ରୋତାଙ୍କୁ ଦେଖିବାକୁ ମିଳେ । ତେଣୁ ସାବଧାନ ଭାବେ ସତ୍‌ସଙ୍ଗ ଦ୍ୱାରା ନିଜ ହୃଦୟକୁ ଶୁଦ୍ଧ କରିବା ଆବଶ୍ୟକ । ମନକୁ ଏକାଗ୍ର କରି ଶାନ୍ତଚିତ୍ତରେ ବକ୍ତାଙ୍କ ବିଚାର ଶ୍ରବଣ କରି ତା ଉପରେ ମନନ ଚିନ୍ତନ କରିବା ଉଚିତ ।

ବିବେକୀ ପୁରୁଷର ସମସ୍ତ ବ୍ୟବହାର ବିବେକପୂର୍ଣ୍ଣ ହୋଇଥାଏ । ଦୁର୍ଜନଙ୍କ ବିତଣ୍ଡା ଏବଂ ମୁଢ଼ଲୋକଙ୍କ ନିନ୍ଦା-ଅପଯଶରେ ଘବଡ଼େଇ ଯାଇ କୌଣସି ସଜ୍ଜନ ବିବେକକୁ ତ୍ୟାଗ କରିବା ଠିକ ନୁହେଁ ।

ମୂର୍ଖ ଲୋକର ନ୍ୟାୟ ଓ ବିବେକବୋଧ ହୋଇ ନ ଥାଏ । ଏହିଭଳି ଲୋକ ଲାଗି ସତ୍‌ସଙ୍ଗରେ ନାନା ବିକ୍ଷେପ ତଥା ବାଧା ବିଘ୍ନ ସୃଷ୍ଟି ହୋଇଥାଏ, କିନ୍ତୁ ସଜ୍ଜନମାତ୍ରେ ଏସବୁ ବାଧା ବିଘ୍ନ ସହ୍ୟ କରି ମହାନ୍ କାର୍ଯ୍ୟରେ ପ୍ରବୃତ୍ତ ହୋଇଥାଆନ୍ତି । ଏମାନେ ଅନ୍ୟ ଲୋକଙ୍କୁ ମଧ୍ୟ ପ୍ରେରଣା ଦେଇଥାଆନ୍ତି ।

ସଂସାରରେ କୋଟି କୋଟି ଲୋକ ବାସ କରୁଛନ୍ତି । କିନ୍ତୁ ସଜ୍ଜନ-ମାନଙ୍କଠାରୁ ହିଁ ଅନ୍ୟଲୋକ ନିଜ ସମସ୍ୟାର ସମାଧାନ କରି ପାରନ୍ତି । ସମସ୍ତଙ୍କ

ମନକୁ ସନ୍ତୁଷ୍ଟ କରିବାର କଳା କେବଳ ସଜ୍ଜନମାନେ ଜାଣନ୍ତି । ଏମାନଙ୍କ ବିବେକ ଅତି ଉତ୍କୃଷ୍ଟ । କିନ୍ତୁ ଜନସାଧାରଣ ଏହାକୁ ବୁଝିପାରନ୍ତି ନାହିଁ । ଏଭଳି ମହାପୁରୁଷ ବହୁଲୋକଙ୍କୁ ପ୍ରେରଣା ଦେଇ ସେମାନଙ୍କୁ ସଙ୍ଗଠିତ କରିଥାଆନ୍ତି ।

ପରମାତ୍ମାଙ୍କୁ ଆପଣାର କରିବା ଲାଗି ଧ୍ୟାନ ଧାରଣା ଅବଲମ୍ବନ କରିବା ଉଚିତ । ଏକାନ୍ତରେ ବସି ଉପାସନା ଦ୍ୱାରା ବିବେକ ଲାଭ ଲାଗି ଯତ୍ନବାନ ହେବା ଉଚିତ । ବିବେକ ଦ୍ୱାରା ହିଁ ସବୁ ମାର୍ଗ ଉପଲବ୍ଧି ହୋଇଥାଏ । ତର୍କ ଦ୍ୱାରା ବ୍ରହ୍ମାଣ୍ଡର ଠିକଣା ଜାଣିହୁଏ ।

ଅନ୍ତରାତ୍ମା ଭଳି ବିଶାଳ ହୋଇ ସାରା ବ୍ରହ୍ମାଣ୍ଡରେ ଭ୍ରମଣ କରିବା ଉଚିତ । ଯିଏ ଏକାନ୍ତ-ମନନ କରିଥାଏ ସେ ସର୍ବପ୍ରଥମେ ଜ୍ଞାନ ଲାଭ କରେ । ଏହା ବ୍ୟତୀତ ମହତ୍ୱ ପ୍ରାପ୍ତି ଲାଗି ଅନ୍ୟ କୌଣସି ପନ୍ଥା ନାହିଁ ।



# ଊନବିଂଶ ଦଶକ

## ପ୍ରଥମ ସମାସ
## ।। ଲେଖନ -ଅଭ୍ୟାସ ।।

ଲେଖକ (ବ୍ରାହ୍ମଣ) ଏପରି ଅତି ସୁନ୍ଦର ଅକ୍ଷରରେ ଲେଖିବା ଉଚିତ ଯାହାକୁ ଦେଖିବା ମାତ୍ରେ ପାଠକ ପଢ଼ିବା ପାଇଁ ଆଗ୍ରହୀ ହୋଇ ପାରିବ । ଗାଢ଼କାଳିରେ ସ୍ପଷ୍ଟ ଭାବରେ ଛାଡ଼ି ଛାଡ଼ି ଲେଖିବା ଉଚିତ । ପଂକ୍ତିଗୁଡ଼ିକ ମୋତିମାଳା ଗୁନ୍ଥିଲା ଭଳି ସୁନ୍ଦର ଭାବେ ଲେଖାଯିବା ଆବଶ୍ୟକ । ସବୁ ଅକ୍ଷର ଏକାଭଳି (ବଡ଼ ନୁହଁ କି ଛୋଟ ନୁହଁ) ଏକ ଶୈଳୀରେ ଲେଖାଯିବା ଉଚିତ । ଅଥବା ଲେଖୁ ଲେଖୁ ଧାଡ଼ିଗୁଡ଼ିକ ଅଙ୍କା ବଙ୍କା ହୋଇଯିବ, ସେଥିଲାଗି ସାମାନ୍ୟ ଅସ୍ପଷ୍ଟ କାଳି (ପେନ୍‌ସିଲ)ରେ (ରୋଲବାଡ଼ିରେ) ସିଧା ସିଧା ଗାରଟାଣି ତା ଉପରେ ସୁଚାରୁରୂପେ ଲେଖାଯିବା ଆବଶ୍ୟକ । ଲେଖାରେ କୌଣସିଠି ଯେପରି ତ୍ରୁଟି ନ ରହେ ସେଥିଲାଗି ସାବଧାନ ହେବାକୁ ପଡ଼ିବ । ଏପରି ଲେଖାଯିବା ଆବଶ୍ୟକ ଯାହାକୁ ପଢ଼ିଲେ ଅକ୍ଷରପ୍ରମାଦ ଯୋଗୁଁ ପାଠକର କୌଣସି ସନ୍ଦେହ ରହିବ ନାହିଁ । ପିଲାମାନେ ଏପରି ହସ୍ତାକ୍ଷର ଲେଖିବାରେ ଅଭ୍ୟସ୍ତ ହେବା ଉଚିତ ଯାହାକୁ ବଡ଼ମାନେ ଦେଖି ଚକିତ ହୋଇ ପଡ଼ିବେ ।

କୌଣସି କୌଣସି ବ୍ୟକ୍ତି ଏପରି ସବୁ ଅକ୍ଷର ଲେଖିଥାଆନ୍ତି, ଯାହାକୁ ବୃଦ୍ଧାବସ୍ଥାରେ ନିଜେ ସେମାନେ ପଢ଼ିପାରନ୍ତି ନାହିଁ । ତେଣୁ ଅତି ଛୋଟ କିମ୍ବା ବଡ଼ ବଡ଼ ଅକ୍ଷର ନ ଲେଖି ମଧ୍ୟମ ଧରଣର ଅକ୍ଷର ଲେଖିବା ଉଚିତ । କାଗଜର ଚାରିପଟୁ କିଛି କିଛି ଜାଗା ଛାଡ଼ି (ମାର୍ଜିନ୍) ମଝିରେ ଏପରି ବଢ଼ିଆ ଚମତ୍କାର ଅକ୍ଷରରେ ଲେଖିବା ଉଚିତ, ଯଦ୍ଦ୍ୱାରା କେତେବର୍ଷ ପରେ କାଗଜ ମଳିନ ହୋଇ ପଡ଼ିଲେ ମଧ୍ୟ ଅକ୍ଷର ଯିମିତି ସିମିତି ରହିଥିବ । ଏପରି ସାବଧାନଭାବେ ହାତରେ ଗ୍ରନ୍ଥ ଲେଖିବା ଆବଶ୍ୟକ, ଯାହାକୁ ଦେଖିଲେ ଅନ୍ୟକୁ ପ୍ରେରଣା ମିଳିବ ଏବଂ ନିଜେ ମଧ୍ୟ ଖୁସି ହେବ ।

ଆମ୍ଭେମାନେ କଠୋର ପରିଶ୍ରମ, ଲୋକମଙ୍ଗଳ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଜଗତରେ ନିଜର ଉଜ୍ଜ୍ୱଳ କୀର୍ତ୍ତି ଛାଡ଼ିଯିବା ଉଚିତ । ଲୋକଙ୍କ ମନରେ ଯେପରି ନିଜପ୍ରତି ଆଦର ଉତ୍ପନ୍ନ ହେବ, ଉତ୍ସାହ ସୃଷ୍ଟି ହୋଇପାରିବ, ସେପରି ବାତାବରଣ ସୃଷ୍ଟି କରିବା ଉଚିତ । ଲେଖନ କାର୍ଯ୍ୟଲାଗି ଆଗରୁ ସମସ୍ତ ସାମଗ୍ରୀ ଉତ୍ତମଭାବେ ପ୍ରସ୍ତୁତ କରି ରଖିବା ଆବଶ୍ୟକ, ଯାହାଫଳରେ ଲେଖିବାବେଳେ କୌଣସି ବାଧାବିଘ୍ନ ଉପୁଜିବ ନାହିଁ କିମ୍ବା କୌଣସି ତ୍ରୁଟି ହେବ ନାହିଁ । ଯେଉଁଠି ଗ୍ରନ୍ଥ ଶେଷ ହେବ ସେଠାରେ କୌଣସି ଏକ ସୁନ୍ଦର ଚିତ୍ର ଅଙ୍କନ କରାଯିବା ଉଚିତ । ଗ୍ରନ୍ଥକୁ ସୁରକ୍ଷିତ ରଖିବା ଲାଗି ଏହା ଉପରେ ମୋଟା ମଲାଟ ବା ବସ୍ତ୍ରର ଆବରଣର ବ୍ୟବସ୍ଥା କରିବା ଉଚିତ ଏବଂ ଏହାକୁ ବାକ୍ସରେ ସାଇତି ରଖିବା ଉଚିତ ଯେପରିକି ଗ୍ରନ୍ଥର କୌଣସି କ୍ଷତି ହେବ ନାହିଁ ।

ଏହିଭଳି ଭାବେ ଲେଖନକାର୍ଯ୍ୟ ସମ୍ପାଦନ କରିବା ଉଚିତ ।

## ଦ୍ୱିତୀୟ ସମାସ
## ।। ବିବରଣ ନିରୂପଣ ।।

ପୂର୍ବ ସମାସରେ ଲେଖନ-କ୍ରିୟା କଥା କୁହାଗଲା । ବର୍ତ୍ତମାନ ଲେଖନର ଅର୍ଥ ସମ୍ପର୍କରେ କହିବି । ଲେଖା ଲେଖିବା ସମୟରେ ସବୁପ୍ରକାରର ସମ୍ବାଦକୁ ଅର୍ଥାତ୍ ବିଷୟବସ୍ତୁକୁ ଭଲ ଭାବରେ ବୁଝିବା ଉଚିତ । ଅନେକ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ହୋଇଥାଏ । ତେଣୁ ଶବ୍ଦାର୍ଥକୁ ବୁଝି ଏବଂ ବିଭିନ୍ନ ପ୍ରବନ୍ଧକୁ ଭଲ ଭାବରେ ଅଧ୍ୟୟନ କରିନେବା ଉଚିତ । ଅନେକ ସନ୍ଦେହ ସମାଧାନ, ଅନେକ ଅନୁଭବ ଏବଂ ସାକ୍ଷାତ୍କାରର ବିବରଣୀ ଶ୍ରୋତାମାନଙ୍କୁ ଏପରି ଭାବରେ ବୁଝେଇବା ଉଚିତ ଯାହାକୁ ଶୁଣି ସେମାନେ ଆଶ୍ଚର୍ଯ୍ୟ ଓ ଚକିତ ହୋଇ ପଡ଼ିବେ । ପ୍ରପଞ୍ଚ ହେଉ, ପରମାର୍ଥ ହେଉ ଦୁଇଟିଯାକର ପ୍ରଚିତି (ଅନୁଭବ) ବିନା ସମସ୍ତ ଜ୍ଞାନ ଭ୍ରମମାତ୍ର । ଓଦା ନଡ଼ାକୁ ଜାଳିବାକୁ ଉଦ୍ୟମ କଲେ ମଧ୍ୟ ଏହା ଯେପରି ଜଳି ନଥାଏ, ସେହିଭଳି ଅନୁଭବ-ଜ୍ଞାନ ବ୍ୟତୀତ ଜ୍ଞାନାଗ୍ନି ପ୍ରକଟିତ ହୋଇ ନପାରେ । ଅନ୍ୟର ଭାବକୁ ଧ୍ୟାନରେ ରଖି ତାର ସମାଧାନ କରିବାହିଁ ଚତୁରତାର ଲକ୍ଷଣ । ବିନାଚାତୁର୍ଯ୍ୟରେ ବିଦ୍ୟା ବ୍ୟର୍ଥ । ସଭା ସମ୍ମିଳନୀରେ ବାଦବିବାଦ କରି ବସିଲେ ସମାଧାନ ମିଳିବ କିପରି ?

ସମସ୍ତଙ୍କ କଥା ଶାନ୍ତ ଚିତ୍ତରେ ଶୁଣିବା ଉଚିତ । କିଏ କ'ଣ କହୁଥିବା ବେଳେ ଉପରେ ପଡ଼ି ମଝିରେ କିଛି କହିବା ଅନୁଚିତ । ଅନ୍ୟମାନଙ୍କ ମନୋଭାବକୁ ବୁଝିବା ପାଇଁ ଉଦ୍ୟମ କରିବା ଉଚିତ । ବ୍ୟର୍ଥ ଯୁକ୍ତିତର୍କ ଓ ବିବାଦ କରୁଥିବା ଲୋକଠାରୁ ଦୂରରେ ରହିବା ଉଚିତ । ଏଭଳି ଲୋକଙ୍କ ସହିତ ତର୍କ ବିତର୍କ କରିବା ଅନୁଚିତ । ନିଜର ନମ୍ରତାକୁ ଛାଡ଼ ନାହିଁ, ଅହଂକାର କରନାହିଁ, କୋମଳ ଭାଷାରେ ଲୋକଙ୍କ ହୃଦୟକୁ ନିଜର ଅନୁକୂଳ କରିବାପାଇଁ ଉଦ୍ୟମ କର । ନିଜ ବିରୁଦ୍ଧରେ ଯଦି ବହୁମତ ପ୍ରକାଶ ପାଉଥିବା ଲକ୍ଷ୍ୟ କରିବ, ସେଥିଲାଗି କଳହ କରିବା ଅନୁଚିତ । ନିଜ କଥା ଯଥାର୍ଥ ହେଲେ ମଧ୍ୟ ଯଦି ସେଥିପ୍ରତି ଲୋକଙ୍କ ଆଗ୍ରହ ନଥିବା ଲକ୍ଷ୍ୟ କରିବ, ସେଥିଲାଗି ସଭାକୁ ବିଘଟିତ କରିବା ଉଚିତ ନୁହଁ । ସର୍ବଦା ସଦ୍ୟ ଶୋଧନରେ ଅବହେଳା କରନାହିଁ । ଭ୍ରଷ୍ଟଲୋକଙ୍କ ସହିତ ସାଙ୍ଗ ହୁଅ ନାହିଁ । ସାଙ୍ଗ ହେଲେ ମଧ୍ୟ ଅନ୍ୟପ୍ରତି ମିଥ୍ୟା ଦୋଷାରୋପ କରନାହିଁ । ଦୁଃଖୀ ଅର୍ଥାତ୍ ଉତ୍ସୁକ ମନୁଷ୍ୟକୁ ଭଲ ଭଲ ଗ୍ରନ୍ଥ-ଉପଦେଶ ଶୁଣାଇ ସେମାନଙ୍କ ଦୁଃଖ ହାଲୁକା କରିବା ଉଚିତ । ସଜ୍ଜନମାନେ ଅନ୍ୟମାନଙ୍କ ମନରେ ସ୍ୱାଧ୍ୟାୟର ରୁଚି ସୃଷ୍ଟି କରିବା ଉଚିତ । ମଝି ମଝିରେ ସଭାରେ ଯାଇ ବସିବା ଅନୁଚିତ । ଯେଉଁଠି ସଦାବର୍ତ୍ତ ବଣ୍ଟା ଯାଉଥିବ, ସେଠାକୁଯାଇ ଭୋଜନ କରିବା ଅନୁଚିତ । ସଦାବର୍ତ୍ତରେ ଭୋଜନ କରିବାରେ ଜୀବନ ତୁଚ୍ଛ ଓ ଦୟନୀୟ ହୋଇ ପଡ଼େ ।

ସର୍ବଦା ଉତ୍ତମ ଗୁଣର ପରିଚୟ ଦେବା ଆବଶ୍ୟକ । ସବୁ ଲୋକ ସହିତ ସମ୍ପର୍କ ରକ୍ଷାକର; କିନ୍ତୁ କେବଳ ସଜ୍ଜନଙ୍କ ସହିତ ମୈତ୍ରୀ ସ୍ଥାପନ କର । ନିଜ ଉପାସନା ପଦ୍ଧତି ଅନୁଯାୟୀ ଉପଦେଶ ଦେବା ସଙ୍ଗେ ସଙ୍ଗେ ଅନ୍ୟର ଉପାସନାର ଅନୁକୂଳ ହେବାଭଳି ଏପରି ଭାଷଣ ଦେବା ଉଚିତ ଯେଉଁଥିରେ ଅନ୍ୟମାନେ ସନ୍ତୁଷ୍ଟ ହୋଇପାରିବେ । ସମସ୍ତଙ୍କ ସହିତ ସମାନ ଆଚରଣ କରିବା ଆବଶ୍ୟକ । ସବୁ ପ୍ରାଣୀଙ୍କ ସହିତ ଆତ୍ମୀୟତାପୂର୍ଣ୍ଣ ବ୍ୟବହାର କରିବା ଉଚିତ । ମନେର ଶ୍ରେଷ୍ଠ କନିଷ୍ଠ, ଧନୀ ଗରିବ ଭେଦଭାବ ନ ରଖି ସମସ୍ତଙ୍କୁ ସୁଖ ପ୍ରଦାନ କରିବା ଉଚିତ । ସୂର୍ଯ୍ୟାସ୍ତ ସମୟରେ କୌଣସି ନୂତନ ଗ୍ରାମରେ ପ୍ରବେଶ କରିବା ଉଚିତ ।

ନିଜ ଜିହ୍ୱାରେ ହିଁ ସମସ୍ତଙ୍କୁ ନିଜର କରିବାର କଳା ରହିଛି । ତଦ୍ୱାରା ସମସ୍ତଙ୍କର ସ୍ନେହପାତ୍ର ହେବା ଉଚିତ । ସଜ୍ଜନଙ୍କୁ ପାଇବାଲାଗି ସର୍ବଦା ଉଦ୍ୟମ କରିବା ଉଚିତ । ଯେଉଁଠି ସତ୍‌ସଙ୍ଗ ହେଉଥିବ, ସେଠାରେ ବସି ଯାହା କୁହାଯିବ, ସେ ସମ୍ପର୍କରେ ଅଧ୍ୟୟନ କରିବା ଉଚିତ । ଭଲ ଲୋକଙ୍କ ସହିତ ସମ୍ପର୍କ ବଢ଼ାଇବା ଉଚିତ । ସମସ୍ତଙ୍କ ମନରେ ଶ୍ରବଣ ମନନର ରୁଚି ସୃଷ୍ଟି କରିବା ଏବଂ ସବୁ ବିଷୟକୁ ଧ୍ୟାନପୂର୍ବକ ଅଧ୍ୟୟନ କରିବା ଅନୁଚିତ ।

## ତୃତୀୟ ସମାସ
## ।। ଭାଗ୍ୟହୀନର ଲକ୍ଷଣ ।।

ଏବେ ସ୍ଥିରଚିତ୍ତରେ ଭାଗ୍ୟହୀନର ଲକ୍ଷଣ ଶୁଣ । ଭାଗ୍ୟହୀନର ଲକ୍ଷଣ ତ୍ୟାଗ କଲେ ଅନାୟାସରେ ଭାଗ୍ୟବାନଙ୍କ ଲକ୍ଷଣ ଉପଲବ୍ଧ ହୋଇଥାଏ । ପାପ ବଢ଼ିଲେ ଆସେ ଦାରିଦ୍ର୍ୟ ଏବଂ ଦାରିଦ୍ର୍ୟ ଆସିବା ପରେ ବଢ଼େ ପାପ । ଏହା ଏକ ଦୁଷ୍ଟଚକ୍ର । ତେଣୁ ଭାଗ୍ୟହୀନର ଲକ୍ଷଣ ଶୁଣି ଏଗୁଡ଼ିକୁ ତ୍ୟାଗ କଲେ ଭାଗ୍ୟବାନଙ୍କ ଲକ୍ଷଣର ଅଧିକାରୀ ହୋଇପାରିବ ।

ଅଲକ୍ଷଣା, ଅଭାଗୀ ମନୁଷ୍ୟ ଆଳସ୍ୟ ପରାୟଣ ଅର୍ଥାତ୍ ପ୍ରମାଦପ୍ରିୟ ହୋଇଥାଆନ୍ତି । ସେ କୌଣସି ଉଦ୍ୟମ କରିବାକୁ ଚାହେଁନାହିଁ । ଅଧର୍ମରେ ହିଁ ଏହାର ଚିତ୍ତ ଲାଖି ରହିଥାଏ । ସେ ସର୍ବଦା ଭ୍ରମରେ ରହିଥାଏ, ଉନ୍ନିଦ୍ର ରହିଥାଏ ଏବଂ ଆଜେବାଜେ କଥାବାର୍ତ୍ତା କରିଥାଏ । ତାକୁ କୌଣସିକଥା ଭଲ ଲାଗେ ନାହିଁ । ଏହାକୁ ପଢ଼ା ଲେଖା ଆସେ ନାହିଁ । କାହାପ୍ରତି କିପରି ବ୍ୟବହାର କରାଯିବା ଉଚିତ— ଏମାନେ ଜାଣି ପାରନ୍ତି ନାହିଁ । ସେମାନଙ୍କର ଧାରଣଶକ୍ତି ମଧ୍ୟ ନଥାଏ । ଏମାନଙ୍କ ହାତରେ ଯେ କୌଣସି ଜିନିଷ ପଡ଼େ, ତାକୁ ସେମାନେ ଭାଙ୍ଗି ପକାନ୍ତି, ହାତରୁ ଖସେଇ ପକାନ୍ତି, ଭୁଲିଯାଆନ୍ତି ଏବଂ ନାନା ପ୍ରକାରର ଉତ୍ପାତ କରିଥାଆନ୍ତି । ଇଏ ନୀଚ, ଦୁରାଚାରୀ, ନଟଖଟିଆ ଓ ପାପୀ ଲୋକଙ୍କ ସହିତ ମିଶିକରି ଥାଏ । ସମସ୍ତଙ୍କ ସହିତ ଝଗଡ଼ା କରିବାକୁ ଭଲପାଏ । ଅନ୍ୟର ଚୋରି କରିବା, ଅନିଷ୍ଟ କରିବାରେ ତା ମନ ରହିଥାଏ । ନ୍ୟାୟ ନୀତି ପ୍ରତି ତାର ଖାତିର

ନଥାଏ । ଲୁଟତରାଜ କରିବାରେ ସେ ନିଜର ବାହାଦୁରୀ ପ୍ରକାଶ କରିଥାଏ । କୌଣସି କାମଧନ୍ଦା ଦିଆଗଲେ ସେ ମୁହଁମୋଡ଼ି ଖସିପଳାଏ । ଅନ୍ୟ ସମୟରେ ସେ ଶୋଇ ରହିବାକୁ ଭଲପାଏ ।

ଏଭଳି ବ୍ୟକ୍ତି କଡ଼ାକଡ଼ା କଥା କହି ଅନ୍ୟକୁ ଦୁଃଖ ଦେଇଥାଏ । ମୂର୍ଖତା ହେତୁ ସେ କାହାର ପ୍ରିୟପାତ୍ର ହୋଇପାରେ ନାହିଁ । ସଜ୍ଜନଙ୍କ ସତ୍‌ସଙ୍ଗ କରିବାକୁ ଭଲପାଏ ନାହିଁ । ବିପରୀତରେ ଦୁଷ୍ଟ ପ୍ରକୃତିର ଲୋକଙ୍କ ସହିତ ସାଙ୍ଗ ହୋଇ ସେମାନଙ୍କ ଗୁଣଗାନ କରିଥାଏ । ନିନ୍ଦନୀୟ କାମ ପ୍ରତି ସେ ଆଗ୍ରହୀ ହୋଇଥାଏ । ଏପରି ଅନ୍ୟର ଅନିଷ୍ଟ ଚିନ୍ତା କରୁଥିବା ଅଭାଗୀ ଅଲକ୍ଷଣା ଲୋକ ପରୋପକାର କରିବ କ'ଣ ? ସେ ପାପୀ, ଅନିଷ୍ଟକାରୀ ଓ ଭ୍ରାନ୍ତ ଏବଂ ଅବିଚାରୀ ଲୋକଙ୍କ ମଧ୍ୟରେ ଗଣ୍ୟ ହୋଇଥାଏ । ବିଶ୍ୱାସ, ମୈତ୍ରୀ ଏବଂ ବିଦ୍‌ବତ୍ତା ଆଦିର ଅଭାବରୁ ତା ମନରେ ଅହଂକାର ପରିପୂର୍ଣ୍ଣ ରହିଥାଏ । ସର୍ବଦା ସମସ୍ତଙ୍କୁ ସନ୍ତୁଷ୍ଟ ରଖିବାଦ୍ୱାରା ହିଁ ଯେ ନିଜର ଭାଗ୍ୟୋଦୟ ହୋଇଥାଏ—ଏହି ବିଶ୍ୱାସ ତାର ନଥାଏ ।

ଏଭଳି ମୂର୍ଖ ମନୁଷ୍ୟ ନିଜେ କିଛି ଜାଣେ ନାହିଁ, ତେଣୁ ଅନ୍ୟମାନଙ୍କୁ ଜଣାଇବା ଭଳି ଶକ୍ତି ତାର ହେବ କେଉଁଠୁ ? ସେ କଳ୍ପନା ଆକାଶରେ ଉଡ଼ିଥାଏ ।

ଯେଉଁ ବ୍ୟକ୍ତି ନ୍ୟାୟ, ନୀତି ଓ ନିୟମପୂର୍ବକ ଚାଲେ, ତାକୁ ବହୁଲୋକ ସମ୍ମାନ କରିଥାଆନ୍ତି । ବିନା ତ୍ୟାଗରେ ଯଶ କୀର୍ତ୍ତି ଆଶା କରିବା ବୃଥା । ଯିଏ ସଜ୍ଜନଙ୍କ ସଙ୍ଗତି କରେ ନାହିଁ, ନିଜେ ଜ୍ଞାନଲାଭ କରିବାକୁ ଉଦ୍ୟମ କରେ ନାହିଁ ଏବଂ ଆତ୍ମାର କଲ୍ୟାଣ ଚିନ୍ତା କରେ ନାହିଁ, ସେ ଆତ୍ମଘାତକ । ଯିଏ ଅନ୍ୟର କଲ୍ୟାଣକୁ ନିଜର କଲ୍ୟାଣ ମନେ କରେ ନାହିଁ, ଯାହାର କୌଣସି ଉତ୍ତମ ଗୁଣ ନାହିଁ, ସେ ଅଭାଗୀ । ଏ ସଂସାର କାର୍ଯ୍ୟ-କାରଣପ୍ରଧାନ । ଏହା ବିନା କୌଣସି ଲାଭ ହୋଇ ନପାରେ । ତେଣୁ ବେକାର ବ୍ୟକ୍ତି ଦୁଃଖ-ସାଗରରେ ବୁଡ଼ିରହେ । ଯିଏ ଅନ୍ୟକୁ ଭଲପାଏ ନାହିଁ, ସେ ଅନ୍ୟଠୁ ସ୍ନେହ ସୌହାର୍ଦ୍ଦ୍ୟ ଦାବୀ କରିବ କିପରି ? ଏଭଳି ବ୍ୟକ୍ତିକୁ ସମସ୍ତେ ଦୂର୍ ଦୂର୍ ମାର୍ ମାର୍ କରିଥାଆନ୍ତି ।

ତେଣୁ ଆମ୍ଭେମାନେ ଦୁର୍ଗୁଣ ତ୍ୟାଗ କରି ସୁଗୁଣ ଆହରଣ କରିବା ଉଚିତ । ଏହା କଲେ ମନରେ ସବୁକିଛି ଅନୁକୂଳ ହୋଇଥାଏ ।

## ଚତୁର୍ଥ ସମାସ
## ।। ଭାଗ୍ୟବାନ ପରିଚୟ ।।

ପୂର୍ବସମାସରେ ଅଭାଗାମାନଙ୍କ ଲକ୍ଷଣ କହିଛି । ଏହି ଲକ୍ଷଣଗୁଡ଼ିକୁ ବିବେକପୂର୍ବକ ତ୍ୟାଗ କରିବା ଉଚିତ । ଏବେ ଭାଗ୍ୟବାନଙ୍କ ଲକ୍ଷଣ ଶୁଣ । ଏହା ପରମ ସୁଖଦାୟୀ । ଭାଗ୍ୟବାନ ମନୁଷ୍ୟଠାରେ ଅନାୟାସରେ ବହୁ ସଦ୍‌ଗୁଣ ବିକଶିତ ହୋଇଥାଏ ଏବଂ ଏହାଙ୍କଦ୍ୱାରା ବହୁଲୋକଙ୍କ ଉପକାର ସାଧନ ହୋଇଥାଏ ଏବଂ ସମସ୍ତେ ତାକୁ ଭଲ ପାଇଥାଆନ୍ତି । ତାର ଲେଖାଗୁଡ଼ିକ ସୁନ୍ଦର ଓ ଶୁଦ୍ଧ । ସେ ସମସ୍ତ ଗୂଢ଼କଥାର ଅର୍ଥ କରିପାରେ । ଏଭଳି ବ୍ୟକ୍ତି ଅନ୍ୟ କାହାକୁ ଦୁଃଖ ଦେଇନଥାଏ । ସର୍ବଦା ସଜ୍ଜନଙ୍କ ସହିତ ସେ ସଙ୍ଗତି କରିଥାଏ ଏବଂ ଅନ୍ୟ ଭାଗ୍ୟବାନର ଲକ୍ଷଣକୁ ଗ୍ରହଣ କରିଥାଏ । ସେ ସନ୍ଦେହର ଭ୍ରମଜାଲରେ ପଡ଼େ ନାହିଁ । ଉତ୍ତମଗୁଣସମ୍ପନ୍ନ ବ୍ୟକ୍ତି ସଂସାରରେ ସମସ୍ତଙ୍କ ମିତ୍ର । ସେ କୀର୍ତ୍ତିଲାଭ କଲେ ମଧ୍ୟ ସର୍ବଦା ସ୍ୱତନ୍ତ୍ର ରହିଥାଏ । ସେ ଅଧ୍ୟୟନଶୀଳ ଏବଂ ଦୃଢ଼ପ୍ରତିଜ୍ଞ । ସେ ନମ୍ରତା ପୂର୍ବକ ପ୍ରଶ୍ନ କରିଥାଏ ଏବଂ ଅନ୍ୟର ସଦୁପଦେଶ ଅନୁସାରେ ନିଜ ଆଚରଣକୁ ଗଢ଼ିଥାଏ । ଏଭଳି ମନୁଷ୍ୟ ସର୍ବମାନ୍ୟ । କେହି ତାର କିଛି କ୍ଷତି କରି ପାରନ୍ତି ନାହିଁ ।

ଏଭଳି ପୁଣ୍ୟପୁରୁଷର ଚିତ୍ତ ପୂର୍ଣ୍ଣଶଶୀଭଳି ଉଜ୍ଜ୍ୱଳ ଓ ଶୀତଳ । ଯିଏ ଲୋକପ୍ରିୟ ଏବଂ ପରୋପକାରୀ, ତାପକ୍ଷରେ କୌଣସି କଥା ଊଣା ହୋଇନପାରେ । ଅନେକ ଲୋକ ତାଙ୍କୁ ସାହାଯ୍ୟ କରିବାଲାଗି ଅପେକ୍ଷା କରି ରହିଥାଆନ୍ତି ଏବଂ ସେ ସମସ୍ତଙ୍କ ସେବାରେ ଏବଂ ସମସ୍ତଙ୍କ ସେବାଲାଗି ସଦା ତତ୍‌ପର ରହିଥାଏ । ସେ ଅଭାବ କ'ଣ ଅନୁଭବ କରିନଥାଏ । ସେ ଚଉଦ ବିଦ୍ୟା ଓ ଚୌଷଠି କଳାରେ ନିପୁଣ । ସେ ସଙ୍ଗୀତ ମଧ ଜାଣେ ଏବଂ ଅଧ୍ୟାତ୍ମରେ ମଧ ତାର ପ୍ରଗାଢ଼ ରୁଚି ରହିଥାଏ । ସେ ସମସ୍ତଙ୍କ ସହିତ ନମ୍ରତାପୂର୍ବକ ବ୍ୟବହାର କରିଥାଏ । ସେ ନ୍ୟାୟନିତିରେ ଚଳିଥାଏ ଏବଂ ଭଜନ ପୂଜନ କରିଥାଏ । ଏଭଳି ଭାଗ୍ୟବାନ ପକ୍ଷରେ ଦାରିଦ୍ର୍ୟ ଓ କଷ୍ଟ ଅତି ତୁଚ୍ଛ । ଯେଉଁ ସମାଜରେ ଏଭଳି ପୁଣ୍ୟପୁରୁଷ ଥାଆନ୍ତି, ସେଠାରେ କୌଣସି କଳହ ହୋଇନଥାଏ । ସେ ପ୍ରପଞ୍ଚ ସଙ୍ଗେ ସଙ୍ଗେ ରାଜନୀତିରେ ମଧ ପ୍ରବୀଣ ହୋଇଥାଏ । ଏବଂ ସେ ପରମାର୍ଥରେ

ରହି ଅଧ୍ୟାତ୍ମ ବିଷୟରେ ଉତ୍କୃଷ୍ଟ ବିବରଣ କରିଥାଏ । ଯିଏ ଅନ୍ୟର ଭଲଗୁଣର ଭୋକ୍ତା, ସେ ପ୍ରକୃତରେ ଭାଗ୍ୟବାନ । ଏହାଙ୍କ ଆଚାର ଯେପରି ବିଚାର ମଧ୍ୟ ସେହିଭଳି ଅତି ଉତ୍ତମ । ସେ କେବେହେଲେ ଦୋମୁହାଁ କଥା କହିନଥାଏ । ତେଣୁ ସବୁଠାରେ ତାକୁ ଲୋକେ ଧନ୍ୟ ଧନ୍ୟ କରିଥାଆନ୍ତି ।

ଏଭଳି ବ୍ୟକ୍ତି ଅନ୍ୟ ମନରେ ଦୁଃଖ ହେବାଭଳି କୌଣସି କାର୍ଯ୍ୟ କରେ ନାହିଁ କିମ୍ବା କୌଣସି କଥା କହେ ନାହିଁ । ସେ ସର୍ବଦା ବିବେକ ସହିତ କାର୍ଯ୍ୟ କରିଥାଏ । ସେ କର୍ମ, ଉପାସନା, ଜ୍ଞାନ, ବୈରାଗ୍ୟ, ସ୍ଥିର ବୁଦ୍ଧି ଆଦି ସଦ୍‌ଗୁଣସମ୍ପନ୍ନ । ଯେପରି ଘଟ ଘଟରେ ଆତ୍ମାରାମଙ୍କ ନିବାସ, ସେହିଭଳି ସେ ସର୍ବାନ୍ତର୍ଯ୍ୟାମୀପ୍ରିୟ । ଯେପରି ଛୋଟ-ବଡ଼ ସମସ୍ତେ ନିଜ ନିଜ କାମରେ ତତ୍‌ପରତା ସହିତ ଲାଗି ଯାଇଥାଆନ୍ତି, ସେହିଭଳି ସେ ପରମାର୍ଥ କାର୍ଯ୍ୟରେ ନିମଗ୍ନ ରହିଥାଏ । ସେ ଅନ୍ୟର ସୁଖରେ ସୁଖୀ ହୋଇଥାଏ । ସେ ସମସ୍ତଙ୍କ ସୁଖ ଦେଖିବାକୁ ଚାହିଁଥାଏ । ଯେପରି ଭିନ୍ନ ଭିନ୍ନ ସ୍ୱଭାବର ପିଲା ହେଲେ ମଧ୍ୟ ସମସ୍ତଙ୍କର ପିତାଙ୍କ ପ୍ରତି ସମାନ ଭାବେ ପ୍ରେମଭାବ ରହିଥାଏ, ସେହିଭଳି ମହାପୁରୁଷ ସମସ୍ତଙ୍କ କଲ୍ୟାଣ ଚିନ୍ତା କରିଥାଆନ୍ତି । ସେ କାହାର ଖରାପ ଚିନ୍ତା କରନ୍ତି ନାହିଁ । ଯିଏ ନିର୍ଲୋଭ ଏବଂ ଯେତେ ଧିକ୍‌କାର କଲେ ମଧ୍ୟ ଯିଏ ଅନ୍ତରରେ ନିଶ୍ଚଳ ରହିଥାଏ, ସେ ହେଉଛନ୍ତି ପ୍ରକୃତ ମହାପୁରୁଷ । ଦେହୀ ହେଲେ ମଧ୍ୟ ଦେହ ସହିତ ତାଙ୍କର କୌଣସି ସମ୍ପର୍କ ନଥାଏ ।

ମନୁଷ୍ୟମାତ୍ରେ କୌଣସି ନା କୌଣସି ଉତ୍ତମ ଗୁଣର ପରିଚୟ ଦେବା ଉଚିତ । ଉତ୍ତମ ଗୁଣରେ ମନୁଷ୍ୟମାତ୍ରକେ ତୃପ୍ତ ହୋଇଥାଆନ୍ତି ଏବଂ ଦୁର୍ଗୁଣ ଦ୍ୱାରା ଦୁଃଖୀ ହୋଇଥାଆନ୍ତି । ଯିଏ ଅଧମ, ସେ ଜ୍ଞାନୀର ତୀକ୍ଷ୍ଣ ବୁଦ୍ଧିକୁ କଳ୍ପନା କରିବ କିପରି ? ଜ୍ଞାନୀ ବ୍ୟକ୍ତି ଅନ୍ୟ ଲୋକଙ୍କ ଦୁର୍ଗୁଣକୁ ଶାନ୍ତଚିତ୍ତରେ ସହ୍ୟ କରିଥାଆନ୍ତି । ତାଙ୍କର କ୍ଷମାଗୁଣକୁ ଅନୁଭବ କରି ବହୁଲୋକ ତାଙ୍କର ଭକ୍ତ ଓ ଶିଷ୍ୟ ହୋଇଥାଆନ୍ତି । ବହୁତ ଲୋକ ନିଜେ ନିଜକୁ ବଡ଼ ମନେ କରିଥାଆନ୍ତି; କିନ୍ତୁ ଯିଏ ଅନ୍ୟକୁ ବଡ଼ ମନେ କରନ୍ତି ସେ ହେଉଚନ୍ତି ମହାପୁରୁଷ । ମହାପୁରୁଷ ସର୍ବଦା ଧୀର, ଗମ୍ଭୀର ଏବଂ ଉଦାର । ଯେତେ ଉତ୍ତମ ଗୁଣ ରହିଛି, ଭାଗ୍ୟବାନ-ଠାରେ ସେ ସବୁ ପ୍ରକଟିତ ହୋଇଥାଏ । ଏହାର ବିପରୀତରେ ଯାହାଠି ଦୁର୍ଗୁଣ ଥାଏ, ସେ ଅଭାଗା ହୋଇଥାଏ ।

ଏହିଭଳି ଭାବେ ଭାଗ୍ୟବାନର ଲକ୍ଷଣ ବର୍ଣ୍ଣନା କରିବା ପରେ ବକ୍ତା ଶ୍ରୋତାମାନଙ୍କୁ ଅନୁରୋଧ କଲେ ଯେ ଆପଣମାନେ ପ୍ରପଞ୍ଚ ଓ ପରମାର୍ଥ ଦ୍ୱାରା ଉପକୃତ ହେବାକୁ ଯଦି ଚାହୁଁ ଥାଅ ତ ତତ୍‌ପରତା ସହିତ ଦୁର୍ଗୁଣକୁ ଛାଡ଼ି ସଦ୍‌ଗୁଣ ଆହରଣ କରିବା ଉଚିତ । ଏହା ହିଁ ଶ୍ରେୟମାର୍ଗ ।

## ପଞ୍ଚମ ସମାସ
## ।। ଦେହମାନ୍ୟ ନିରୂପଣ ।।

ବକ୍ତା କହୁଛନ୍ତି— ଲୋକେ ମାଟି, ସୁନା ରୂପା, କଂସା, ପିତଳ, ତମ୍ବାରେ ତିଆରି ଦେବଦେବୀଙ୍କ ମୂର୍ତ୍ତି ଏବଂ ସୁଗନ୍ଧିତ ଦ୍ରବ୍ୟରେ ନିର୍ମିତ (ଯଥା ଚନ୍ଦନକାଠ) ମୂର୍ତ୍ତିକୁ ପୂଜା କରିଥାଆନ୍ତି । ଅନେକ ଚିତ୍ରକୁ ମଧ୍ୟ ପୂଜା କରାଯାଇଥାଏ । କେହି କେହି କାଠ, ମୁଗୁନି ପଥର, ଆବଡ଼ାଖାବଡ଼ା ପଥର, ନର୍ମଦାରୁ ମିଳୁଥିବା ଗୋଲ ଗୋଲ ଚିକ୍‌କଣିଆ ପଥର (ନର୍ମଦେଶ୍ୱର), ଶାଳଗ୍ରାମ, ସୂର୍ଯ୍ୟକାନ୍ତମଣି ଓ ଚନ୍ଦ୍ରକାନ୍ତମଣିକୁ ମଧ୍ୟ ପୂଜା କରିଥାଆନ୍ତି । କେହି କେହି ତମ୍ବା ଓ ସୁନା ତିଆରି ପଦକକୁ ପୂଜା କରନ୍ତି । ଏଭଳି ଭାବେ ବହୁ ଉପାସନା ବିଧି ପ୍ରଚଳିତ । ପ୍ରତ୍ୟେକ ବ୍ୟକ୍ତି ନିଜର ପସନ୍ଦ ଓ ରୁଚି ଅନୁଯାୟୀ ଦେବତାଙ୍କ ଉପାସନା କରି ଥାଆନ୍ତି, କିନ୍ତୁ ସର୍ବପ୍ରଥମେ ଏ ସବୁର ମୂଳକାରଣର ବିଚାର କରିବା ଉଚିତ । ସବୁଦେବତା ଏହି ମୂଳକାରଣର ଅଂଶମାତ୍ର । ସମସ୍ତଙ୍କ ମୂଳରେ ଏକ ଦ୍ରଷ୍ଟା ଈଶ୍ୱର ହିଁ ବିଦ୍ୟମାନ । ତାଙ୍କଠାରୁ ହିଁ ଅନେକ ଦେବଦେବୀଙ୍କ ବିସ୍ତାର । ବିବେକପୂର୍ବକ ବିଚାର କଲେ ଏ କଥାଟିକୁ ଭଲଭାବେ ବୁଝିପାରିବ ।

ବିନା ଦେହରେ ଭକ୍ତି ହୋଇ ପାରେନା କିମ୍ବା ଈଶ୍ୱର ପ୍ରାପ୍ତି ହୋଇ ପାରେନାହିଁ । ଭଜନର ସାଧନ ହେଉଚି ଦେହ । ତେଣୁ ଦେହକୁ ଯଦି ଆମେମାନେ ପ୍ରଥମରୁ ମିଥ୍ୟା ମାନି ନେଉତ ଭଜନ କୀର୍ତ୍ତନାଦି କରିବୁ କାହା ମାଧ୍ୟମରେ ? ଭଜନ, ପୂଜନ, ଉତ୍ସବ, ସମାରୋହ, ଗନ୍ଧ ପତ୍ର, ପୁଷ୍ପଫଳ, ତାମ୍ବୁଳ, ଧୂପଦୀପ, ପୂଜା ସାମଗ୍ରୀ ଇତ୍ୟାଦିର ଉପଯୋଗ ଦେହ ଦ୍ୱାରା ହିଁ ହୋଇପାରେ । ତେଣୁ ଦେହ ବିନା କିଛି ହୋଇ ନପାରେ । ଦେହଦ୍ୱାରା ଅନେକ ଦେବଦେବୀଙ୍କ ଭଜନ ପୂଜନ ଦ୍ୱାରା ହିଁ ମୂଳପୁରୁଷ ପରମାତ୍ମାପ୍ରାପ୍ତି ସମ୍ଭବ । ତେଣୁ ବିବିଧ

ଉପାସନାଦ୍ୱାରା ସବୁ ଦେବତାଙ୍କୁ ସନ୍ତୁଷ୍ଟ କରିବା ଉଚିତ । ମୂଳମାୟା ଦ୍ୱାରା ସୃଷ୍ଟିର ବିକାଶ ହେବା ସଙ୍ଗେ ସଙ୍ଗେ ନାନା ଦେହ ପ୍ରକଟିତ ହୋଇଛି, ତେଣୁ ଦେହ ହେଉଚି ମୂଳମାୟାର ଫଳ । ଅନେକ ଦେବଦେବୀଙ୍କ ଭିତରେ ମଧ୍ୟ ମୂଳପୁରୁଷ ପରମାତ୍ମାଙ୍କ ସତ୍ତା ରହିଥାଏ—ଏକଥା ଜାଣି ସର୍ବଦା ଏହାଙ୍କୁ ସ୍ମରଣ କରିବା ଉଚିତ ।

ମନୁଷ୍ୟ-ପ୍ରାଣୀ ସଂସାରକୁ ଛାଡ଼ି ଭଗବାନକୁ ଏଠି ସେଠି ଖୋଜିବାରେ ଲାଗିଥାଏ, କିନ୍ତୁ ସେ କ୍ଷେତ୍ରରେ ସେ ଅନୁମାନ ଓ ସଂଶୟଗ୍ରସ୍ତ । ଲୋକେ ନାନାକଥା ଓ ପ୍ରଥା ଅନୁସାରେ ଦେବତାମାନଙ୍କ ପୂଜା କରିଥାଆନ୍ତି ଅଥବା ଅନେକ ତୀର୍ଥସ୍ଥାନକୁ ଯାଇ ସେଠାରେ ଦେବତାମାନଙ୍କୁ ଦର୍ଶନ କରିଥାଆନ୍ତି । ଏମାନେ ଦେବତାମାନଙ୍କ ଅବତାରର ବର୍ଣ୍ଣନା ଶୁଣି ଏମାନଙ୍କ ଭଜନ କୀର୍ତ୍ତନ କରିଥାଆନ୍ତି । ଏସବୁ ଠିକ୍ କିନ୍ତୁ ଏସବୁ ଦେବତା ସଗୁଣ । ତେଣୁ ଆମେମାନେ ନିରନ୍ତର ନିର୍ଗୁଣ ଅର୍ଥାତ୍ ଗୁଣାତୀତ ଜଗଦୀଶଙ୍କୁ ହିଁ ଧ୍ୟାନ କରିବା ଉଚିତ ।

ଏହି ପରମାତ୍ମା ଜଗଦୀଶ୍ୱରଙ୍କର ତ କୌଣସି ଏକ ସ୍ଥାନ ନାହିଁ ! ତେଣୁ ଏହାଙ୍କ ଭଜନପୂଜନ କରାଯିବ କିପରି ? ତାଛଡ଼ା ମନରେ ଏହି ସଂଦେହ ରହିଥିବାଯାଏଁ ଈଶ୍ୱର ଦର୍ଶନ ହେବ କିପରି ? ଯିଏ ଏହାର ରହସ୍ୟ ଜାଣିଥାଏ, ସେହି ସାଧୁ ପୁରୁଷ ଧନ୍ୟ । ସଂସାରରେ ଅସଂଖ୍ୟ ଦେବତା, ଏମାନଙ୍କ ପୂଜା କଲେ ମଧ୍ୟ ପରବ୍ରହ୍ମ ପରମାତ୍ମାଙ୍କ ସମ୍ପର୍କରେ ଉପଯୁକ୍ତ ଜ୍ଞାନ ହୋଇନଥାଏ । ତେଣୁ ଉଚିତ ହେଉଚି, ପ୍ରଥମେ ଏହି ପରମାତ୍ମାଙ୍କ କର୍ତ୍ତୃତ୍ୱ ଏବଂ ମାୟାର ଦୃଶ୍ୟକୁ ଏହି ସୃଷ୍ଟିରୁ ଅଲଗା କରି ଏହି ପରମାତ୍ମାଙ୍କୁ ଅନୁସଂଧାନ କରାଗଲେ ଗୂଢ଼ତତ୍ତ୍ୱକୁ ଜାଣିବା ସମ୍ଭବ । ଏହି ପରମତତ୍ତ୍ୱ ଦେଖାଯାଇ ନଥାଏ କିମ୍ବା ଏହାଙ୍କ ଆଭାସ ମଧ୍ୟ ମିଳି ନଥାଏ, ତଥାପି ଏହା କେବେ ନଷ୍ଟ ହୋଇନଥାଏ ଏବଂ ପୂଣ୍ୟବିନା ଏହାଙ୍କୁ ବିଶ୍ୱାସ କରିହୁଏ ନାହିଁ ।

ମନୁଷ୍ୟ ଯେପର୍ଯ୍ୟନ୍ତ ଦେହ ବୁଦ୍ଧିଗ୍ରସ୍ତ ସେପର୍ଯ୍ୟନ୍ତ ସେ ଅନନ୍ତ କଳ୍ପନା ଏବଂ ଅନନ୍ତ କାମନା ବାସନାର ଶିକାର ହୋଇଥାଏ । ତେଣୁ ଦେହାତୀତ ହୋଇ ନିର୍ବିକଳ୍ପ, ଶାଶ୍ୱତ ପରବ୍ରହ୍ମ ବସ୍ତୁକୁ ଲାଭ କରାଯାଇପାରେ । ଏ ସମ୍ପର୍କରେ ଜ୍ଞାନ ଦୃଷ୍ଟିରେ ବିଚାର କରି ସେଥିରେ ତନ୍ମୟ ହୋଇଯିବା ଉଚିତ ଏବଂ ଏହି ଆତ୍ମବସ୍ତୁର

ନିଦିଧ୍ୟାସନଦ୍ୱାରା ସର୍ବସଙ୍ଗ ତ୍ୟାଗକରି ତଦ୍ରୂପ ହୋଇଯିବା ଉଚିତ । ଏହି ତନ୍ମୟ ଓ ତଦ୍ରୂପ ଅବସ୍ଥାର କ'ଣ ବା ବର୍ଣ୍ଣନା କରାଯାଇପାରିବ ?

ଆମଭଳି ଦେହବୁଦ୍ଧି ସଂପନ୍ନ ପାମର ମନୁଷ୍ୟ ଏହି ପରମାନନ୍ଦଙ୍କୁ କଳ୍ପନା ସୁଦ୍ଧା କରିନପାରେ । ସତ୍‌ସଙ୍ଗ ଓ ସ୍ୱାନୁଭବଦ୍ୱାରା ହିଁ ଏହି ସ୍ଥିତି ଲାଭ କରାଯାଇପାରେ । ଏହି ସୂକ୍ଷ୍ମ ସ୍ଥିତିଗତିକୁ ଅନୁଭବ ଦ୍ୱାରା ମନୁଷ୍ୟକୁ ଅଧୋଗତିରୁ ମୁକ୍ତି ମିଳେ ଏବଂ ସଦ୍‌ଗୁରୁଙ୍କ ପ୍ରସାଦରୁ ସଦ୍‌ଗତି ଲାଭ ହୋଇଥାଏ ।

## ଷଷ୍ଠ ସମାସ
## ।। ବିବେକ ଦର୍ଶନ ।।

ଯେଉଁ ପୁରୁଷ ବିବେକୀ ଏବଂ ପରମାର୍ଥୀ ସେ ସମାଜରେ ସମ୍ମାନିତ ଓ ସୁପ୍ରତିଷ୍ଠିତ । କାରଣ କୌଣସି କାମରେ ଯେପରି ତିଳେହେଲେ ତ୍ରୁଟି ନ ରହେ, ସେଥିଲାଗି ସେ ବିଚାରପୂର୍ବକ କାମ କରିଥାଏ । ଲୋକଙ୍କ ମନରେ ସନ୍ଦେହ ଉପୁଜିବାଭଳି ସେ କୌଣସି କାମ କରିନଥାଏ । ସେ ପ୍ରତ୍ୟେକ କାର୍ଯ୍ୟ ବୁଝିସୁଝି କରିଥାଏ । ଯିଏ ସମ୍ପୂର୍ଣ୍ଣ ନିସ୍ପୃହ ନିଷ୍କାମ ନୁହଁ, ତା କଥା କେହି ମାନିନଥାନ୍ତି । ଜନତା-ଜନାର୍ଦ୍ଦନଙ୍କୁ ସନ୍ତୁଷ୍ଟ ରଖିବା ବଡ଼ କଠିନ । କେହି କେହି କଡ଼ା କଡ଼ା ଉପଦେଶ ଦେଇଥାଆନ୍ତି, କେହି କେହି ଅନ୍ୟ କାହାକୁ ମଧ୍ୟସ୍ଥ କରି ତାଦ୍ୱାରା ଲୋକଙ୍କୁ ପାଠପଢ଼ାନ୍ତି, କେହି କେହି ସ୍ୱାର୍ଥପୂର୍ଣ୍ଣ ଉଦ୍ଦେଶ୍ୟ ରଖି ଉପଦେଶ ଦେଇଥାଆନ୍ତି । ଶେଷରେ ଯାହାକୁ ଉପଦେଶ ଦିଆଯାଇଥାଏ, ସେ ତାର ପ୍ରତିକୂଳ ହୋଇଉଠେ ଏବଂ ପରିଶେଷରେ ତାର ସମସ୍ତ ପ୍ରତିଷ୍ଠା ଓ ପ୍ରଭାବ ନଷ୍ଟ ହୁଏ ।

କିନ୍ତୁ ବିବେକୀ ପୁରୁଷମାତ୍ରେ ନିରପେକ୍ଷ ଭାବରେ ଲୋକଙ୍କୁ ଭକ୍ତି-ମାର୍ଗରେ ଉପଦେଶ ଦେଇଥାଏ । ସେ ଅନ୍ୟର ବିବେକକୁ ଜାଗ୍ରତ ରଖେ ଏବଂ ଭଜନ କୀର୍ତ୍ତନ ଲାଗି ଅନ୍ୟକୁ ପ୍ରବୃତ୍ତ କରେ । ଅନ୍ୟର ମନକୁ ପ୍ରସନ୍ନ ରଖିବା କଠିନ କାର୍ଯ୍ୟ । ଲୋକେ ସ୍ୱେଚ୍ଛାରେ ସ୍ୱଧର୍ମ ପାଳନ କରିବା ଉଚିତ ଏବଂ ନିସ୍ପୃହ ଆଚରଣ ଦ୍ୱାରା ସଂସାରରେ ଯଶବିସ୍ତାର କରିବା ଆବଶ୍ୟକ । ଯିଏ ପ୍ରଭୁଙ୍କ

ଗୁଣାନୁବାଦରେ ସର୍ବଦା ଅଭ୍ୟସ୍ତ ଏବଂ ଯିଏ ଲୋକଙ୍କ ମଧ୍ୟରେ ନାମ-ସ୍ମରଣର ଅଭିରୁଚି ଉତ୍ପନ୍ନ କରାଏ ଏବଂ ସୂର୍ଯ୍ୟାଲୋକ ଭଳି ଯାହାର ଜ୍ଞାନ ଉଜ୍ଜ୍ୱଳ, ସେ ପ୍ରକୃତ ସତ୍‌ପୁରୁଷ । ଏଭଳି ପୁରୁଷ ଦୁର୍ଜନକୁ ମଧ୍ୟ ନିଜର ଅନୁକୂଳ ଏବଂ ଆପଣାର କରିନେଇଥାଏ ଏବଂ ସଜ୍ଜନଙ୍କୁ ସୁଖଶାନ୍ତି ଦେଇଥାଏ । ଏହାଙ୍କ ସତ୍‌ସଙ୍ଗ ଦ୍ୱାରା ମନୁଷ୍ୟର ଖଳପ୍ରକୃତି ମଧ୍ୟ ବଦଳେ ଏବଂ ସେ ଉତ୍ତମଗୁଣରେ ଭୂଷିତ ହୋଇଥାଏ । ତା କଥା ଶୁଣି ଲୋକେ ସତ୍‌ସଙ୍ଗରେ ପ୍ରବୃତ୍ତ ହୋଇଥାଆନ୍ତି । ଏଭଳି ସାଧୁ ପୁରୁଷ ଯେଉଁଠିକି ଯାଏ, ସେଠା ଲୋକେ ତାକୁ ଭଲପାଇଥାଆନ୍ତି; କିନ୍ତୁ କାହାର କୌଣସି ପ୍ରଲୋଭନରେ ସେ ପଡ଼ି ଯାଏ ନାହିଁ । ସେ ସର୍ବତ୍ର ଭକ୍ତି, ଚାତୁର୍ଯ୍ୟ ଏବଂ ଯୋଗାନୁଷ୍ଠାନ ଆଦିର ପ୍ରଚାର କରିଥାଏ । ନିରାସକ୍ତ ବୃତ୍ତି ଫଳରେ ସାରା ସଂସାରରେ ଏହାଙ୍କ ଖ୍ୟାତି ଖେଳିଯାଏ ।

ଉତ୍ତମଗୁଣ ବିନା କେହି କେବେ କୀର୍ତ୍ତିଶାଳୀ ହୋଇନପାରେ । କେବଳ ଭଡ଼ଭଡ଼ ହେବାରେ କି ଲାଭ ? ଏ ଦେହ ଉପରେ କୌଣସି ଭରସା ନାହିଁ । ଆୟୁ କେବେ ସମାପ୍ତ ହୋଇଯିବ କିଏ କହିବ ? କେତେବେଳେ କ'ଣ ଘଟିବ କେହି ଜାଣନ୍ତି ନାହିଁ । ତେଣୁ ଆମ୍ଭେମାନେ ସର୍ବଦା ସାବଧାନ ରହି ଯଥାସମ୍ଭବ ସତ୍‌କର୍ମ କରିବା ଉଚିତ । ଯାହା ଯେତେବେଳେ ଅନୁକୂଳ ତାହା ଯଥାଶୀଘ୍ର କରିନେବା ଉଚିତ ଏବଂ ଯାହା କଠିନ ମନେହେବ ସେ ସମ୍ପର୍କରେ ଶାନ୍ତଚିତ୍ତରେ ବିଚାର କରିବା ଉଚିତ ।

ବିବେକଦ୍ୱାରା କଲେ ସବୁ କାର୍ଯ୍ୟ ସୁଗମ ହୋଇଥାଏ । ତେଣୁ ଏକାନ୍ତରେ ବସି ବିବେକଦ୍ୱାରା ଯେ କୌଣସି କଥାକୁ ନିର୍ଣ୍ଣୟ କରିବା ଉଚିତ । ଯେଉଁଠି ନିତ୍ୟ ବିବେକ ଏବଂ ନିୟୋଜନର ଅଭ୍ୟାସ ଚାଲିଥାଏ, ସେଠାରେ କୌଣସି କାର୍ଯ୍ୟ ଅସଫଳ ହୁଏନାହିଁ । ଏକାନ୍ତରେ ବସି ଚିନ୍ତା ନ କଲେ ମନୁଷ୍ୟର ବୁଦ୍ଧି ଠିକ୍‌ଭାବରେ ନିର୍ଣ୍ଣୟ କରିପାରେ ନାହିଁ । ତେଣୁ କୌଣସି କଥାର ବିଚାର କରିବାକୁ ଥିଲେ, ଏକାନ୍ତରେ ଏକାଗ୍ର ଚିତ୍ତରେ କରିବା ଉଚିତ । ଆମ୍ଭେ ସର୍ବଦା ଆତ୍ମାରାମର ନିର୍ଦ୍ଦେଶ ମାନି ଚଳିବା ଉଚିତ ଏବଂ ସେହି ଅନୁସାରେ କାର୍ଯ୍ୟ କରିବା ଉଚିତ । ଆଦିରୁ ଅନ୍ତଯାଏଁ ଏହାର ବ୍ୟତିକ୍ରମ କରାଯିବା ଅନୁଚିତ ।

## ସପ୍ତମ ସମାସ
## ।। ବକ୍ତା ନିର୍ଦ୍ଦେଶ ।।

ହରିକଥା-କୀର୍ତ୍ତନ ପ୍ରଚାର କରିବା ଉଚିତ ଏବଂ ଲୋକଙ୍କୁ ଅଧ୍ୟାତ୍ମ ସମ୍ବନ୍ଧୀୟ ତତ୍ତ୍ୱକୁ ଭଲଭାବରେ ବୁଝାଇବା ଉଚିତ । ବକ୍ତାମାତ୍ରେ ବିଷୟକୁ ଦୀର୍ଘ ନ କରି ସଂକ୍ଷେପରେ ଶ୍ରୋତାଙ୍କୁ ବୁଝେଇବା ଆବଶ୍ୟକ । ଯଦି କୌଣସି ପ୍ରସଙ୍ଗ ବୁଝାଇବା ବେଳେ ଶ୍ରୋତାଙ୍କ ମନରେ କ୍ରୋଧ ପ୍ରକାଶ ପାଏ ତ ସେଥିରେ ବିରକ୍ତ ନ ହୋଇ ସେମାନଙ୍କୁ ପ୍ରେମଭାବ ଦ୍ୱାରା ଆପଣାର କରି ନେଇ ପରେ କ୍ରୋଧକୁ ପ୍ରଶମିତ କରିବା ଆବଶ୍ୟକ । ସେମାନେ ସନ୍ତୁଷ୍ଟ ନ ହେବା ପର୍ଯ୍ୟନ୍ତ ବକ୍ତା ସନ୍ତୁଷ୍ଟ ହେବା ଉଚିତ ନୁହଁ । ଯେଉଁ ବକ୍ତା ସହିଷ୍ଣୁ ନ ହୋଇ କ୍ରୋଧ ପ୍ରକାଶ କରିଥାଏ, ତାଙ୍କ ପ୍ରତି ଶ୍ରୋତାମାନଙ୍କ ପ୍ରେମଭାବ ପ୍ରକାଶ ନ ପାଇବା ସ୍ୱାଭାବିକ । ତେଣୁ ଶ୍ରୋତାଙ୍କ ମନୋଭାବକୁ ଠିକ୍ ବୁଝିବା ଉଚିତ । ଚାରିଆଡ଼େ ଯେପରି ନିଜର କୀର୍ତ୍ତି ବଢ଼ିବ, ସେଥିଲାଗି ନିଜର ଉପଦେଶ ଓ କାର୍ଯ୍ୟ ସୁସମ୍ପନ୍ନ ହେବା ଆବଶ୍ୟକ । ଏହା ବୁଝିବା ଉଚିତ ଯେ ଜଗତ ଯେଉଁ ଆଡ଼କୁ ଢଳେ, ସେ ଦିଗରେ ଜଗନ୍ନାଥଙ୍କ ହାତ ହିଁ ରହିଛି । ବିବେକୀ ପୁରୁଷ ସମସ୍ତ ପ୍ରକାରର ପରିସ୍ଥିତିକୁ ସମ୍ଭାଳି ସତର୍କ ଭାବେ ଚାଲିଥାଏ ।

କେତେକ ଲୋକ ଭାବିଥାଆନ୍ତି ଯେ ସଂସାରରେ ସବୁ ଲୋକ ଦୁଷ୍ଟ ଓ ଦୁର୍ନୀତିଗ୍ରସ୍ତ । ସମସ୍ତେ ଦୁଷ୍ଟ, ନିଜେ କେବଳ ଶିଷ୍ଟ ଏପରି ଭାବିବା କ'ଣ ଯୁକ୍ତିଯୁକ୍ତ ? କେହି କେବେହେଲେ ସମାଜଠାରୁ ଅର୍ଥାତ୍ ଲୋକଙ୍କଠାରୁ ଅଲଗା ରହିନପାରେ । ତେଣୁ ଏଭଳି ମିଥ୍ୟା ଧାରଣାର ବଶବର୍ତ୍ତୀ ନ ହୋଇ ସର୍ବଦା ସତ୍ୟର ଅନୁସରଣ କରିବା ଉଚିତ । ଯିଏ ଯେଉଁ ଲୋକ ସହିତ ଉଚିତ ବ୍ୟବହାର କରିପାରୁ ନାହିଁ, ତାକୁ ଉପଦେଶ ଦେବାକୁ ଉଦ୍ୟମ କରିବା ବୃଥା । ଯିଏ ନିଜକୁ ଗଢ଼ିପାରୁ ନାହିଁ, ଯାହାକୁ ପ୍ରେମପୂର୍ଣ୍ଣ ବ୍ୟବହାର କରି ଆସୁନି, ସେ ଅନ୍ୟକୁ ସଂସାର ସାଗରରୁ ଉଦ୍ଧାର କରିବ କିପରି ?

ମନୁଷ୍ୟଠାରେ ଅନୁରାଗ, ପ୍ରେମ ଓ ଉତ୍ସାହ ବଢ଼ିଲେ ଯାଇ ପରମାର୍ଥ ଲାଭ ହୋଇଥାଏ । ଯଦି ଉପଦେଶ ଦେବା ଲାଗି ଯୋଗ୍ୟ ନୁହଁ, ଅନ୍ୟକୁ

ଉପଦେଶ ଦେଇ ତାକୁ ଅଯୋଗ୍ୟ କରିବା କାହିଁକି ? ମୂର୍ଖ ନିଜ ଅଜ୍ଞାନତା ହେତୁ ବାରଦାଣ୍ଡ ଶୁଣ୍ଢିପିଣ୍ଡା ହୋଇଥାଏ, ସେହିଭଳି ତଥାକଥିତ ଜ୍ଞାନୀ ନିଜ ବିଦ୍ୟାର ଅହଂକାରରେ ଲୋକଙ୍କ ମଧ୍ୟରେ ଭ୍ରମ ଓ କଳହ ସୃଷ୍ଟି କରିଥାଏ । ଶେଷରେ ଦୁହିଁଙ୍କର ଅଧୋପତନ ଘଟିଥାଏ । ତେଣୁ ବିବେକୀ ପୁରୁଷ ଭ୍ରମଣ କରୁଥିବା ବେଳେ ସଦାଚାର ପୂର୍ବକ ନିଜ ଜୀବନ ସାର୍ଥକ କରିବା ଉଚିତ ।

ନିଜର ଉତ୍‌ଥାନ ପତନ ନିଜର ହାତରେ ରହିଛି । ତେଣୁ ମନରେ ବୁଝିବିଚାରି ଯଥୋଚିତ ନିର୍ଣ୍ଣୟପୂର୍ବକ ବ୍ୟବହାର କରିବା ଉଚିତ ।

## ଅଷ୍ଟମ ସମାସ
## ।। ଉପାଧି ପ୍ରତି ସାବଧାନ ।।

ସଂସାରରେ ଅନେକ ପ୍ରକାରର ଲୋକ । ଭ୍ରମଣ କରିବା ସମୟରେ ବହୁ ଲୋକଙ୍କ ସହିତ ପରିଚୟ ହୁଏ । ସେମାନଙ୍କ ଗୁଣକୁ ଜାଣିବାର ସୁଯୋଗ ମିଳେ । ପ୍ରବାସରେ ବହୁ ବିବେକୀ ପୁରୁଷଙ୍କ ସତ୍‌ସଙ୍ଗ କରିବାର ସୁଯୋଗ ମଧ୍ୟ ମିଳିଥାଏ । କୌଣସି ପୁରୁଷ ଗୃହସ୍ଥାଶ୍ରମ କଲେ ମଧ୍ୟ ଅନାସକ୍ତ ଭାବେ ଜୀବନଯାପନ କରିଥାଏ । ସୁଖ ଦୁଃଖରେ ଏଭଳି ବ୍ୟକ୍ତିର କିଛି ଯାଏ ଆସେ ନାହିଁ । ସେ ଏଥିପ୍ରତି ନିର୍ଲିପ୍ତ ରହିଥାଏ । ସେ ସହଜ ଭାବରେ ନ୍ୟାୟନୀତି ପାଳନ କରିଥାଏ । କେବେ ଏଭଳି ପରାକ୍ରମୀ ପୁରୁଷ ଜନ୍ମଗ୍ରହଣ କରିଥାଆନ୍ତି, ଯିଏ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରନ୍ତି । କେବେ କୌଣସି ଉଚ୍ଚକୋଟିର ପୁରୁଷ ଦେଖାଯାଆନ୍ତି, ଯାହାଠି ଅନାୟାସରେ ମହାନତାର ଲକ୍ଷଣ ଫୁଟି ଉଠେ । କେତେକ ଲୋକ ଗୁଣଗ୍ରାହକ ହୋଇଥାଆନ୍ତି ।

ନିଜଦୋଷକୁ ନିଜର ସୁଗୁଣ ବୋଲି ମାନିନେବା ପାପ । ଯେଉଁ କାର୍ଯ୍ୟ ଅନ୍ୟର ସାହାଯ୍ୟ ନେଲେ ମଧ୍ୟ ସଂପନ୍ନ କରିବା କାଠିକର ପାଠ ହୋଇପଡ଼େ, ଏଭଳି ବ୍ୟକ୍ତି ଅଛନ୍ତି, ଯାହାର ପ୍ରଭାବରେ ସେ କାମ ସହଜରେ ହୋଇପାରେ । ଏଭଳି ବ୍ୟକ୍ତି ପକ୍ଷରେ ସେ କାର୍ଯ୍ୟ ଆଦୌ କଷ୍ଟକର ହୁଏ ନାହିଁ । ଏସବୁ ଭଗବାନଙ୍କ ମହିମା । ଏ ସମ୍ପର୍କରେ ତର୍କ କରିବାର କିଛି ନାହିଁ ।

ଯିଏ ଉପାଧି (ପ୍ରବୃତ୍ତି)କୁ ନିୟନ୍ତ୍ରଣ କରିପାରେନା, ସେ ଉପାଧିକୁ ବଢ଼ାଇବା ଉଚିତ ନୁହଁ । ସେ ନିଜ ମନକୁ ସାବଧାନ ରଖି ଚିତ୍ତକୁ ନିଃସନ୍ଦେହ ରଖିବା ଉଚିତ । ଅନେକ ଲୋକ ଦୌଡ଼ଧାପଡ଼ କରି ବିଭିନ୍ନ ପ୍ରବୃତ୍ତି (ଉପାଧି)ରେ ଫଶି ଯାଇଥାଆନ୍ତି । ଯାହାଲାଗି ନିଜେ କଷ୍ଟ କରିବାକୁ ପଡ଼େ ଏବଂ ଅନ୍ୟମାନେ ମଧ୍ୟ ଦୁଃଖିତ ହୋଇଥାଆନ୍ତି, ଏଭଳି ଉପାଧି ବା ପ୍ରବୃତ୍ତିକୁ ବଢ଼ାଇବା କି ଲାଭ ? ପ୍ରବୃତ୍ତିଗୁଡ଼ିକ ମଧ୍ୟରୁ କେତେକ ଭଲ ହୋଇପାରେ, କେତେକ ଖରାପ ମଧ୍ୟ ହୋଇପାରେ । ତେଣୁ ବୁଝିସୁଝି ଯେକୌଣସି କାମରେ ହାତ ଦେବା ଉଚିତ ।

ବହୁତ କମ ଲୋକ ସଦ୍‌ଭାବନାସମ୍ପନ୍ନ ହୋଇଥାଆନ୍ତି; କିନ୍ତୁ ସଦ୍‌ଭାବନାର ହିଁ ପ୍ରଚାର କରିବା ଉଚିତ । କାହା ଉପରେ ଦୋଷାରୋପ କରିବା ଅନୁଚିତ । ସମସ୍ତ କାର୍ଯ୍ୟ ଅନ୍ତରାତ୍ମାଙ୍କ ପ୍ରେରଣାରୁ ହିଁ ହୋଇଥାଏ । ଏଥିସହିତ ନିର୍ଗୁଣ ପରବ୍ରହ୍ମଙ୍କର କୌଣସି ସମ୍ପର୍କ ନାହିଁ । ଅନେକ ପ୍ରକାରର ଦୋଷ ଚଞ୍ଚଳ ଆତ୍ମାରେ ହୋଇନଥାଏ । ନିର୍ମଳ, ନିଶ୍ଚଳ ପରବ୍ରହ୍ମ ହିଁ ଶାଶ୍ୱତ ଶାନ୍ତିର ପୀଠ । ଏଠାରେ ସମସ୍ତ ବିକାର ସାବାଡ଼ ହୋଇଥାଏ । ସମସ୍ତ ପ୍ରକାରର ଉଦ୍‌ବେଗର ଶେଷ ଏଇଠି । ମନ ଏଠାରେ ପାଏ ପରମ ଶାନ୍ତି । ବିବେକ ଦ୍ୱାରା ଆମ୍ଭେମାନେ ଏହି ଦୁର୍ଲଭ ପରବ୍ରହ୍ମ ପରମାତ୍ମାଙ୍କ ସ୍ଥିତିକୁ ଅନୁଭବ କରିବା ଉଚିତ । ଏହା ବୁଝିବା ଉଚିତ ଯେ ଏହି ଅନୁଭବ ଦ୍ୱାରା ହିଁ ମନୁଷ୍ୟ ସମସ୍ତ ଉପାଧିରୁ ମୁକ୍ତ ହୋଇପାରେ । ଆମେ ଯେଉଁ ସୁଖ ଓ ଦୁଃଖ ପାଉ ସେସବୁ ହେଉଛି ଆମ କର୍ମର ଶୁଭାଶୁଭ ଫଳ ।

ଏହା ବୁଝିବା ଉଚିତ ଯେ ସୁଖ-ଦୁଃଖ, ହାନିଲାଭ ସହିତ ଆମର କୌଣସି ସମ୍ପର୍କ ନାହିଁ । ଏହା ଆସୁଥିବ, ଯାଉଥିବ; ପୁଣି ଆସୁଥବ । ଏହା ବୁଝି ଆମେ ସର୍ବଦା ଶାନ୍ତ ରହିବା ଉଚିତ । ଯାହା ଆମ ନିଜର ନୁହଁ, ସେ ସମ୍ପର୍କରେ ବୃଥା ଚିନ୍ତା କରି କି ଲାଭ ? ସଂସାରରେ କେବେ ସଂଘର୍ଷ ତ କେବେ ଶାନ୍ତ ବାତାବରଣ ଲାଗି ରହିଥାଏ । ଆମେ ଏହି ଉଭୟ ପରିସ୍ଥିତିରୁ ନିଜକୁ ନିର୍ଲିପ୍ତ ରଖି ମନକୁ ଶାନ୍ତ ରଖିବା ଉଚିତ । ତାହାହେଲେ ଉପାଧି ଆମର ପିଛା କରି ପାରିବ ନାହିଁ । ଏହାଠାରୁ ଦୂରରେ ରହିବା ପାଇଁ ସବୁବେଳେ ଉଦ୍ୟମ କରିବା ଆବଶ୍ୟକ । ଏହାହିଁ ପ୍ରକୃତ ସମାଧାନ । ସମାଧାନ (ସ୍ଥିତପ୍ରଜ୍ଞଅବସ୍ଥା)ଠୁ ବଳି ସଂସାରରେ ମୂଲ୍ୟବାନ ବୋଲି କିଛି ନାହିଁ । ସର୍ବଦା ମନେ ରଖିବା ଉଚିତ ଯେ

ମାନବ ଶରୀର ବାରମ୍ବାର ମିଳେ ନାହିଁ । ତେଣୁ ଏଥିରେ ବୃଥାରେ ସଢ଼ି ଏହାକୁ ବରବାଦ କରିଦେବା ସବୁଠାରୁ ବଡ଼ ମୂର୍ଖତା ।

## ନବମ ସମାସ
## ।। ରାଜନୀତିକ ନିର୍ଦ୍ଦେଶ ।।

ଅଜ୍ଞାନୀ ହେଲେ ମଧ୍ୟ ବୈରାଗ୍ୟବାନ, ଯିଏ ମନକୁ ସନ୍ଦେହମୁକ୍ତ କରିବାକୁ ଚାହେଁ, ସେ ସୁସ୍ଥ ମନରେ ଏକାନ୍ତ ଭାବରେ ନିର୍ଜନତାକୁ ସେବନ କରିବା ଉଚିତ । ଏକାନ୍ତରେ ବସିଲେ ମନରେ ମୁକ୍ତି ଲାଗି ବହୁ ଉପାୟ ଢୁକେ । ଏକାନ୍ତରେ ବସି ଅନେକ ସମସ୍ୟା ସମ୍ପର୍କରେ ଶାନ୍ତଚିତ୍ତରେ ମନନ ଚିନ୍ତନ କରାଯାଇପାରେ ଏବଂ ସମାଜର ବର୍ତ୍ତମାନ ଓ ଭାବି ପରିସ୍ଥିତିକୁ ଠିକ୍ ଅନୁମାନ କରିହୁଏ । ଏପରି ନକଲେ ବସ୍ତୁ କିମ୍ବା ପରିସ୍ଥିତି ଯଥାର୍ଥ ଭାବରେ କଳନା କରିବା ସମ୍ଭବ ନୁହଁ । ଯିଏ ଏପରି କରେ ନାହିଁ ତାର ଅବସ୍ଥା ଦେବାଳିଆ ହେବା ସହିତ ସମାନ । ଅର୍ଥାତ୍ ଆୟବ୍ୟୟକୁ ଠିକ ହିସାବ ନ ରଖିବାରେ ସେ ଋଣୀ ହୋଇ ପଡ଼ିବ ।

କେହି କେହି ପୁରୁଷାର୍ଥ ଦ୍ୱାରା ବହୁ ସମ୍ପତ୍ତି ଉପାର୍ଜନ କରିଥାଏ । ଆଉ କେହି କେହି ପାଖରେ ଥିବା ସମ୍ପତ୍ତିକୁ ବରବାଦ କରି ଦେଇଥାଆନ୍ତି । ଏସବୁ ଉଦ୍ୟୋଗ ଓ ପୁରୁଷାର୍ଥ ଦ୍ୱାରା ହୋଇଥାଏ । ସବୁ କଥାକୁ ମନରେ ଯଥାର୍ଥ ଭାବେ ବିଶ୍ଳେଷଣ କରି ନେଲେ ଯାହା ମିଥ୍ୟା ନିରର୍ଥକ ସେ ସମ୍ପର୍କରେ ସହଜରେ ଜ୍ଞାନ ହୋଇଥାଏ ।

ଅତି ସର୍ବତ୍ର ବର୍ଜନୀୟ । ଅତି ପରିଚୟରୁ ସମୟ ଆସେ, ଅବଜ୍ଞା ଓ ଶତ୍ରୁତା ଉତ୍ପନ୍ନ ହୋଇଥାଏ । ତେଣୁ କାହା ସହିତ ଅତି ଘନିଷ୍ଠତା ବଢ଼ାଇବା ଉଚିତ ନୁହଁ କିମ୍ବା ଗୋଟିଏ ସ୍ଥାନରେ ବେଶିଦିନ ରହିବା ଉଚିତ ନୁହଁ । ଆଳସ୍ୟ ଓ ପ୍ରମାଦରୁ ସବୁ କାମ ନଷ୍ଟ ହୁଏ । ଆଳସ୍ୟ ହେତୁ ହିଁ ସମାଜକଲ୍ୟାଣ କିମ୍ବା ଲୋକ-ମଙ୍ଗଳ ଉଦ୍ଦେଶ୍ୟ ଅସଫଳ ହୋଇ ପଡ଼େ । ତେଣୁ ଉପାସନା ଆଦି କାର୍ଯ୍ୟ ଲାଗି ଲୋକଙ୍କୁ ନିତ୍ୟ ନୂତନ ପ୍ରେରଣା ଦେଉଥିବା ଆବଶ୍ୟକ । ବ୍ୟର୍ଥ ଆଡ଼ମ୍ବରରୁ ଦୂରରେ ରହିବା ଉଚିତ । କୌଣସି ଜୀବ ମନରେ କଷ୍ଟ ହେବାଭଳି କୌଣସ

କାର୍ଯ୍ୟ କରାଯିବା ଅନୁଚିତ । ରାଜନୀତିକୁ ଯଥୋଯୁକ୍ତ ପାଳନ କରିବା ସଙ୍ଗେ ସଙ୍ଗେ ଲୋକଙ୍କୁ ସୁସଙ୍ଗଠିତ କରିବା ଉଚିତ । ନଷ୍ଟ ଅର୍ଥାତ୍ ଦୁର୍ଜନ ଲୋକଙ୍କ ମୁକାବିଲା ଲାଗି ଦୁର୍ଜନ ଏବଂ ବାକ୍‌ପଟୁ ବ୍ୟକ୍ତିଙ୍କ ସହିତ ବାକ୍‌ପଟୁ ଯୋଜନା କରିବା ଆବଶ୍ୟକ । ଅର୍ଥାତ୍ ଯିଏ ଯେଉଁ ସ୍ୱଭାବର ଲୋକ ତା ଲାଗି ସେହି ସ୍ୱଭାବର ମନୁଷ୍ୟ ନିଯୁକ୍ତ କରାଯିବା ଆବଶ୍ୟକ । କଣ୍ଟାକୁ କଣ୍ଟାରେ କଢ଼ାଯାଇଥାଏ, କିନ୍ତୁ ଏହି ନୀତିକୁ ଅଭ୍ୟାସରେ ପକାଇବା ଅନୁଚିତ ।

ଯାହାର ମହିମା ଓ କୀର୍ତ୍ତି ଶୁଣିବ, ତା ପ୍ରତି ପ୍ରେମଭାବ ବଢ଼ାଇବା ଆବଶ୍ୟକ ଏବଂ ଏଭଳି ଲୋକ ସହିତ ଘନିଷ୍ଠତା ବଢ଼ାଇ ତାଙ୍କର ଅନୁଗାମୀ ହେବା ଉଚିତ ।

ଯେ କୌଣସି କାମ ହେଉ ମନଦେଇ କଲେ ଅବଶ୍ୟ ସଫଳ ହୋଇଥାଏ । ତେଣୁ କୌଣସି କାର୍ଯ୍ୟରେ ଆଳସ୍ୟ କିମ୍ବା ଶିଥିଳତା ଅନୁଚିତ । ଅନ୍ୟ ଉପରେ ନିର୍ଭର କରି ଚଳିଲେ ସବୁ କାମ ବିଗିଡ଼ି ଯାଇଥାଏ । ଯିଏ ଆତ୍ମନିର୍ଭରଶୀଳ ଭାବେ କାର୍ଯ୍ୟ କରେ, ସେ ସଫଳତା ଲାଭ କରିବା ନିଶ୍ଚିତ । ନିଜର ଗୋପନୀୟ କଥା କାହାକୁ ଜଣାଇବା ଅନୁଚିତ । ଜଣାଇଲେ ସମସ୍ତ ଉଦ୍ଯୋଗ ଓ ମନୋରଥ ବିଫଳ ହେବ । ଯେ କୌଣସି ବଡ଼ କାମରେ ପରିଚାଳନାର ସୂତ୍ର ନିଜ ହାତରେ ରଖି ଛୋଟ ଛୋଟ କାର୍ଯ୍ୟ ଲାଗି ଅନ୍ୟ ଲୋକଙ୍କୁ ନିଯୁକ୍ତ କରିବା ଆବଶ୍ୟକ । ଏହିଭଳି ଭାବେ ରାଜନୀତିର ମୂଢ଼ ସମସ୍ୟାଗୁଡ଼ିକୁ ନିବାରଣ କରିବା ଆବଶ୍ୟକ । ବହୁତ ବାଚାଳ, ଚାଲାକ ଓ ଧୂର୍ତ୍ତଲୋକଙ୍କୁ ମଧ୍ୟ ରାଜନୀତିରେ ଉପଯୋଗ କରିବା ଆବଶ୍ୟକ । ବିପକ୍ଷରେ ଥିବା ଅଧିକ ବାଚାଳଙ୍କ ନେତାକୁ ଦମନ କରି ତାର ଛୋଟ ଛୋଟ ସମର୍ଥକଙ୍କୁ ଉପେକ୍ଷା କରିବା ଉଚିତ । ରାଜନୀତିରେ ଦୁର୍ଜନଙ୍କ ବିରୁଦ୍ଧରେ ସେମାନେ ଜାଣିପାରିବା ଭଳି ଅବରୋଧ ବ୍ୟବସ୍ଥା ନ କରି ଯେଉଁମାନେ ବିରୋଧୀ, ସେମାନଙ୍କୁ ସୁବିଧା ପାଇବାମାତ୍ରେ ପରାଜିତ କରିବା ଆବଶ୍ୟକ ଏବଂ ପରେ ସେମାନଙ୍କୁ ନିଜ ସପକ୍ଷରେ ସଙ୍ଗଠିତ କରିବାଲାଗି ଉଦ୍ୟମ କରିବା ଆବଶ୍ୟକ । ଯଦି ଅଧିକ ଲୋକ ସଂଗ୍ରହ କରିବାକୁ ଇଚ୍ଛାହୁଏ ତ ସେଥିଲାଗି ନିଜର ପ୍ରଭାବ ବଢ଼ାଇବା ଉଚିତ । ସଜ୍ଜନ କିଏ ଦୁର୍ଜନ କିଏ ପ୍ରଥମେ ଭଲକରି ଚିହ୍ନିନେବା ଉଚିତ ଏବଂ ସଜ୍ଜନଙ୍କ ଭଳି ଦୁର୍ଜନମାନଙ୍କୁ ମଧ୍ୟ ସମ୍ମାନପୂର୍ବକ ଏକଜୁଟ କରି ରଖିବା ଉଚିତ ।

ଶାସକମାତ୍ରେ ପରମାର୍ଥୀ ଓ ଧର୍ମପରାୟଣ ହେବା ଆବଶ୍ୟକ । ତାହାହେଲେ ଶତ୍ରୁମାନଙ୍କ ମୁକାବିଲା କରିବା ଲାଗି ସୈନ୍ୟମାନେ ଅଧିକ ଉତ୍ସାହିତ ହୋଇପାରିବେ । ରାଜନୀତିରେ ସମସ୍ତ କାର୍ଯ୍ୟ ଯଥାବିଧି ଦୃଢ଼ତାପୂର୍ବକ ହେବା ଉଚିତ । ଚତୁର ରାଜନୀତିଜ୍ଞ ନିଜେ କେବେହେଲେ ଜନତାଆଗକୁ ଆସେ ନାହିଁ; କିନ୍ତୁ ତାଙ୍କ ସମ୍ପର୍କରେ ଲୋକଙ୍କ ମଧ୍ୟରେ ବହୁ ପ୍ରଶଂସା ଓ ଚର୍ଚ୍ଚା ହୋଇଥାଏ । ରାଜନୀତିରେ ସର୍ବଦା ଯେସାକୁ ତେସା ନୀତି ବ୍ୟବହାର କରାଯିବା ଆବଶ୍ୟକ । ମୂର୍ଖ ନିକଟରେ ମୂର୍ଖ, ଅଜ୍ଞାନୀ ଏବଂ ଉଦ୍ଧତ ସାମନାରେ ଅଜ୍ଞାନୀ, ଉଦ୍ଧତକୁ ଠିଆ କରାଯିବା ଆବଶ୍ୟକ । ଯେସାକୁ ତେସା କାର୍ଯ୍ୟ କଲେ ଲଢ଼େଇରେ ଆନନ୍ଦ ମିଳେ; କିନ୍ତୁ ଏସବୁ କରୁଥିବା ବେଳେ ସେ ପ୍ରକୃତରେ କ'ଣ କରୁଚି, ବ୍ୟୂହ ରଚନାର ସୂତ୍ରଧାର କିଏ, ସେ ସମ୍ପର୍କରେ କେହି ଯେପରି କିଛି ଜାଣିପାରିବେ ନାହିଁ, ସେଥିଲାଗି ଜଗିରଖି କାମ କରିବା ଆବଶ୍ୟକ ।

## ଦଶମ ସମାସ
## ।। ବିବେକ ସ୍ପଷ୍ଟୀକରଣ ।।

ଯାହା ନିକଟରେ ଅବିରାମ ଅଧ୍ୟାତ୍ମ-ଚର୍ଚ୍ଚା ହୋଇଥାଏ, ବିଚାର ବିନିମୟ ଓ ରାଜନୀତିକ ପ୍ରସଙ୍ଗ ଚାଲିଥାଏ, ଯାହାର ଉପଦେଶ ଦ୍ୱାର ଅନେକ ଉତ୍କୃଷ୍ଟ ଗୁଣର ନିରୂପଣ ହୋଇଥାଏ; ଯାହା ପାଖରେ ବସି ଶାସ୍ତ୍ରାନୁସାରେ ସନ୍ଦେହ ମୋଚନ ହୋଇଥାଏ; ଯାହାର ସାନିଧ୍ୟ ଫଳରେ ଭକ୍ତି, ଉପାସନାଜ୍ଞାନ, ବୈରାଗ୍ୟ, ଅନାସକ୍ତି ଆଦି ସୁଲଭ ଭାଷାରେ ଅନୁଭବସିଦ୍ଧ ହୋଇଥାଏ; ଯାହା ନିକଟରୁ ସୁନ୍ଦର ସୁନ୍ଦର କାବ୍ୟର ପାଠାନ୍ତର ଏବଂ ବିଦ୍‌ବତାପୂର୍ଣ୍ଣ ଭାଷଣ ଆଦି ଶୁଣିବାକୁ ମିଳେ— ଏଭଳି ମହାପୁରୁଷ ସହିତ ଲୋକଙ୍କ ପରିଚୟ ହେବାପରେ ମନୁଷ୍ୟ ନିର୍ଭିକ ହୋଇଉଠେ । ତା ଭିତରୁ କ୍ରମଶଃ ଆବର୍ଜନା ଦୂର ହେବାକୁ ଲାଗେ । ଏକ ବିଶେଷ କଥା ହେଉଚି ଏଭଳି ମହାପୁରୁଷଙ୍କ ପଛରେ ଲକ୍ଷ ଲକ୍ଷ ଲୋକ ଗୋଡ଼େଇ ଥାଆନ୍ତି । ଅନ୍ତଃସ୍ୱରୂପ ସମ୍ପର୍କରେ ଜ୍ଞାନ ବହୁତ କମ ଲୋକଙ୍କର ହୋଇଥାଏ । ଏଭଳି ମହାପୁରୁଷ ଭକ୍ତି ଏବଂ ଉପାସନାର ପ୍ରଚାର ଓ ପ୍ରସାର ଲାଗି ଯେଉଁ ଯେଉଁ ସ୍ଥାନକୁ ଯାଆନ୍ତି, ସେସବୁ ସ୍ଥାନର ଲୋକେ ତାଙ୍କୁ ସମ୍ମାନ ଦେଇଥାଆନ୍ତି, କିନ୍ତୁ ତାଙ୍କର ଆନ୍ତରିକ ଭାବନାକୁ ବହୁତ କମ ଲୋକ ଜାଣି

ପାରନ୍ତି । ଦେଶର ଚାରିଆଡୁ, ଅଦିକନ୍ଦି ସବୁଆଡୁ ଲକ୍ଷ ଲକ୍ଷ ଲୋକ ଏହାଙ୍କୁ ଦର୍ଶନ କରିବାକୁ ଆସନ୍ତି ଏବଂ ସେ ନିଜର ବିବେକପୂର୍ଣ୍ଣ ଉପଦେଶଦ୍ୱାରା ସମସ୍ତଙ୍କୁ ଆପଣାର କରି ନେଇଥାଆନ୍ତି ଏବଂ ତାଙ୍କ ଦର୍ଶନ ଦ୍ୱାରା ବହୁଲୋକଙ୍କ ଅସ୍ଥିର ମନ ସ୍ଥିର ହୋଇ ପଡ଼ିଥାଏ । ଲୋକେ ଶାନ୍ତି ପାଆନ୍ତି ।

ଧୀରେ ଧୀରେ ଲୋକଙ୍କୁ ଜ୍ଞାନ ବିତରଣ କରିବା ହେଉଚି ସଜ୍ଜନ ବ୍ୟକ୍ତିଙ୍କ ପରମ କର୍ତ୍ତବ୍ୟ । ଯାହା ତାଙ୍କୁ ଜଣା, ସେ ଅନ୍ୟକୁ ଶିଖେଇ ଅନ୍ୟକୁ ବୁଦ୍ଧିମାନ କରିବା ଉଚିତ । ନିଜେ ଯାହା କରିବା ସମ୍ଭବ, ସେ ନିଜେ କରିବା ଉଚିତ ଏବଂ ଯାହା କରିପାରିବେ ନାହିଁ, ଅନ୍ୟଦ୍ୱାରା କରେଇବା ଉଚିତ ।

ପ୍ରାଣୀମାତ୍ରେ ସମସ୍ତଙ୍କ ଧର୍ମ-କର୍ତ୍ତବ୍ୟ ହେଉଚି ଅଖଣ୍ଡ ଭଗବତ୍ ଭଜନରେ ମଗ୍ନ ରହିବା । ନିଜେ ଭଜନ କରିବା ସଙ୍ଗେ ସଙ୍ଗେ ଅନ୍ୟକୁ ମଧ୍ୟ ଏଥିଲାଗି ଅନୁପ୍ରାଣିତ କରିବା ଉଚିତ । ଏସବୁ କରି ମଧ୍ୟ କୌଣସି ଉପାଧି (ପ୍ରବୃତ୍ତି)ର ଅଧୀନ ହୋଇ ନପଡ଼ି ପ୍ରବୃତ୍ତିରୁ ଅଲିପ୍ତ ରହିବା ଉଚିତ । ପ୍ରବୃତ୍ତି-ଜାଲରେ ନପଡ଼ି, ଆଳସ୍ୟ ଓ ପ୍ରମାଦ ତ୍ୟାଗ କରି ଉତ୍ସାହପୂର୍ବକ ସବୁ କାର୍ଯ୍ୟ କରାଯିବା ଆବଶ୍ୟକ ।

ଯେପର୍ଯ୍ୟନ୍ତ ମନୁଷ୍ୟ ପ୍ରବୃତ୍ତିଠାରୁ ଅଲିପ୍ତ ରହିପାରିବ, ସେପର୍ଯ୍ୟନ୍ତ ସେ ସ୍ୱଚ୍ଛନ୍ଦଭାବରେ ଆନନ୍ଦପୂର୍ବକ ବିଚରଣ କରିପାରିବ । ଉପାଧି ଉପରୁ ବୈରାଗ୍ୟ ଭାବ ଆସିଲେ ହିଁ ମନୁଷ୍ୟ ନିସ୍ପୃହ ହୋଇପାରିବ । ଯିଏ ଶରୀରସୁଖ ତ୍ୟାଗ କରିପାରେ, ସେ ଯଶସ୍ୱୀ ହୋଇପାରେ । ଶାରୀରିକ-ସୁଖର କାମନା ରହିଥିବାଯାଏ ଯଶକୀର୍ତ୍ତି ସବୁ ଦୂରରେ ରହିଥାଆନ୍ତି ।

ଯାହା ହେବାର କଥା, ଅବଶ୍ୟ ହେବ । ମନୁଷ୍ୟ କେବଳ ନିମିତ୍ତ ମାତ୍ର । ଯଦି ମନୁଷ୍ୟ ପ୍ରଥମରୁ ନିରୁତ୍ସାହୀ ରହେ ତ କାର୍ଯ୍ୟ ସଫଳ ହେବ କିପରି ? ସଂସାର ପ୍ରାରମ୍ଭରୁ ବଳିଷ୍ଠ । ଏହାକୁ ବିବେକପୂର୍ଣ୍ଣ ଭାବରେ ବ୍ୟବହାର କରି ଏହାକୁ ସୁନ୍ଦର କରିନେବାହିଁ ପୁରୁଷାର୍ଥ । ଧୀରେ ଧୀରେ ସଂସାର ପ୍ରତି ଅରୁଚି ଆସିଥାଏ ଏବଂ ତାପରେ ମନୁଷ୍ୟ ଅଧ୍ୟାତ୍ମ ମାର୍ଗକୁ ଧରି ଏଥିପ୍ରତି ଅନାସକ୍ତ ହୋଇପଡ଼େ । ଏସବୁ ବିବେକ-ବିଚାର ଦ୍ୱାରା ହିଁ ହୋଇଥାଏ । ତେଣୁ ଆମ୍ଭେମାନେ ଧୈର୍ଯ୍ୟର ସହିତ ସତ୍‌ମାର୍ଗରେ ନିଜକୁ ପରିଚାଳିତ କରିବା ଉଚିତ ।



# ବିଂଶ ଦଶକ

## ପ୍ରଥମ ସମାସ
## ।। ପୂର୍ଣ୍ଣାପୂର୍ଣ୍ଣ ନିରୂପଣ ।।

ଶ୍ରୋତା କହୁଛନ୍ତି— ପ୍ରାଣୀ, ମନ, ପୃଥ୍ୱୀ, ଆପ, ତେଜ, ବାୟୁ ଓ ଆକାଶ ଆଦି ପଞ୍ଚ ମହାଭୂତ, ତ୍ରିଗୁଣ, ଅନ୍ତଷ୍କରାତ୍ମା ଓ ମୂଳମାୟା ସବୁ ବ୍ୟାପକ, ନିର୍ଗୁଣବ୍ରହ୍ମ ମଧ୍ୟ ବ୍ୟାପକ; କିନ୍ତୁ ଏସବୁ ସମାନ ବୋଲି ସ୍ୱୀକାର କରିବାରେ ଭୁଲ କେଉଁଠି ? ଯଦି ସମାନ ନୁହଁ, ବିଭେଦ କେଉଁଠି ? ଆତ୍ମାକୁ ମଧ୍ୟ ନିରଞ୍ଜନ କୁହାଯାଇଥାଏ । ପ୍ରକୃତରେ ଆତ୍ମା ସଗୁଣ, ନିର୍ଗୁଣ ନା ନିରଂଜନ ? କୃପାକରି ଏସବୁ ବିଷୟକୁ ସ୍ପଷ୍ଟ କରି କହନ୍ତୁ ।

ବକ୍ତା କହୁଛନ୍ତି— ଏ ସମ୍ପର୍କରେ ଯେଉଁସବୁ ସନ୍ଦେହ ରହିଛି, ତାର ସମାଧାନ ଧୀରେ ଧୀରେ ଶୁଣ । ବିବେକ ଜାଗ୍ରତ କରି ପ୍ରତ୍ୟୟ ଦ୍ୱାରା ଅନୁସନ୍ଧାନ କରିବା ଉଚିତ । ପ୍ରତ୍ୟେକ ପ୍ରାଣୀ ନିଜ ଶରୀରର ସାମର୍ଥ୍ୟ ଅନୁସାରେ ବଡ଼ ବଡ଼ ବ୍ୟାପକ କାର୍ଯ୍ୟ କରିଥାଏ; କିନ୍ତୁ ବିଚାର କଲେ ଜଣାଯିବ ଯେ ମନ ଭଳି ବ୍ୟାପକ କିଛି ନାହିଁ । ପୃଥ୍ୱୀ, ଆପ (ଜଳ), ତେଜ ଓ ବାୟୁ—ଏହି ଚାରିଭୂତ ଅପୂର୍ଣ୍ଣ ଏବଂ ଏକଦିଗଦର୍ଶୀ । ପୂର୍ଣ୍ଣ ବ୍ୟାପକ ନୁହଁ । କିନ୍ତୁ ଆକାଶ ଓ ନିରଞ୍ଜନ (ନିର୍ଗୁଣ ବ୍ରହ୍ମ) ଯେ ପୂର୍ଣ୍ଣ ବ୍ୟାପକ ଏଥିରେ ସନ୍ଦେହର ଅବକାଶ ନାହିଁ । ତ୍ରିଗୁଣ, ଗୁଣମାୟା ଓ ମୂଳମାୟାର ବିଲୟ ରହିଛି । ଏସବୁ ମଧ୍ୟ ଅପୂର୍ଣ୍ଣ, ଏକଦିଗଦର୍ଶୀ, ପୂର୍ଣ୍ଣ ବ୍ୟାପକ ନୁହଁ । ଆତ୍ମା (ଜୀବାତ୍ମା) ଓ ନିରଞ୍ଜନ (ନିର୍ଗୁଣ)—ଏହି ଦୁଇଟିଯାକ ପଦାକୁ ଅନ୍ତରାତ୍ମା (ଜୀବ) ଏବଂ ମୂଳମାୟା (ଶିବ) ଲାଗି ପ୍ରଯୁକ୍ତ କରାଯାଇଥାଏ । କିନ୍ତୁ କିପରି ଏବଂ କେଉଁ ଅର୍ଥରେ ଏହାର ଉପଯୋଗ କରାଯାଉଚି ତାହା ସଂଦର୍ଭଦ୍ୱାରା ଚିହ୍ନିବା ଉଚିତ । ଜୀବାତ୍ମା ଅର୍ଥାତ୍ ମନ ଅତି ଚଞ୍ଚଳ ଅର୍ଥାତ୍ ପୂର୍ଣ୍ଣ ବ୍ୟାପକ ନୁହଁ । ଯେତେବେଳେ ଏହା ଆକାଶରେ ରହିଥାଏ,

ଏହା ପାତାଳରେ ରହିନଥାଏ ଏବଂ ଯେତେବେଳେ ପାତାଳରେ ରହିଥାଏ, ଆକାଶରେ ରହି ନଥାଏ । ଏହା ଆଗରେ, ପଛରେ, ଡାହାଣରେ, ବାମରେ ଏକାବେଳକେ ରହିନପାରେ । ଏହା ଏକାସମୟରେ ସବୁ ଦଶାରେ ରହି ନଥାଏ, ତେଣୁ ଏହା ବ୍ୟାପକ ନୁହଁ ।

ଜଳରେ ସୂର୍ଯ୍ୟର ପ୍ରତିବିମ୍ବ ଦେଖାଯାଇଥାଏ; କିନ୍ତୁ ସେ ପ୍ରତିବିମ୍ବ ସୂର୍ଯ୍ୟ ନୁହଁ । ସେହିଭଳି ନିର୍ଗୁଣ ବ୍ରହ୍ମ ମନବୁର୍ଦ୍ଧି ଆଦି ଉପାଧି ଦ୍ୱାରା ଜୀବାତ୍ମା କିମ୍ବା ଶିବାତ୍ମା ଆଦି ବିଶିଷ୍ଟ ନାମରେ ବିଦିତ ହୋଇଥାଏ । କିନ୍ତୁ ଜୀବ (ଆତ୍ମା) କିବା ଶିବ (ମୂଳମାୟା) ନିର୍ଗୁଣ ବ୍ରହ୍ମ ହୋଇନପାରେ । ସୂର୍ଯ୍ୟଙ୍କ ଉପମା ଦେଇ ମଧ୍ୟ ନିର୍ଗୁଣ ବ୍ରହ୍ମର ପୂର୍ଣ୍ଣତାକୁ ବ୍ୟକ୍ତ କରାଯାଇ ନପାରେ । କାରଣ ସୂର୍ଯ୍ୟର ଉଦୟ ଅସ୍ତ ରହିଛି; କିନ୍ତୁ ନିର୍ଗୁଣ ବ୍ରହ୍ମ ସଦାସର୍ବଦା ସମାନ ଭାବରେ ପରିପୂର୍ଣ୍ଣ । ସୂର୍ଯ୍ୟ ଅପେକ୍ଷା ଆକାଶର ଉପମା ହୁଏ ତ ଅଧିକ ଯୁକ୍ତିଯୁକ୍ତ ହୋଇପାରେ । ଘଟାକାଶଭଳି ଦେହ ପରିମିତ ଜୀବାତ୍ମା ଏବଂ ମଠାକାଶ ଭଳି ବ୍ରହ୍ମାଣ୍ଡ ପରିମିତ ଶିବାତ୍ମା ଏଭଳି କାମନା କଲେ ମଧ୍ୟ ଘଟ ଓ ମଠର ବିନାଶ ପରେ ଆକାଶ ବ୍ୟାପକ ରହିଥାଏ । ସେହିଭଳି ଜୀବ ଓ ଶିବର କଳ୍ପନାକୁ ଛାଡ଼ି ନିର୍ଗୁଣ ବ୍ରହ୍ମର ବିଚାର କରାଯାଇପାରେ । ବ୍ରହ୍ମର ଅଂଶ ଆକାଶ ଓ ଆକାଶର ଅଂଶ ମନ ଜୀବାତ୍ମା । ମନଠାରୁ ବହୁ ଗୁଣରେ ଆକାଶ ହେଉଛି ବ୍ୟାପକ ତତ୍ତ୍ୱ ଏବଂ ଆକାଶଠାରୁ ବ୍ରହ୍ମ ବହୁଗୁଣରେ ବ୍ୟାପକ । ଆକାଶ ସହିତ ମନକୁ ଯଦି ତୁଳନା କରାଯାଇ ନପାରେ, ଏହା ବ୍ରହ୍ମ ସହିତ ସମାନ ବୋଲି କୁହାଯିବ କିପରି ?

ଜୀବାତ୍ମା ହିଁ ଜ୍ଞାନ ଦ୍ୱାରା ଶିବାତ୍ମା ହୋଇଥାଏ ଏବଂ ଶିବାତ୍ମା ହିଁ ଜନ୍ମ ଗ୍ରହଣ କରି ଜୀବାତ୍ମା ହୋଇଥାଏ । ଆତ୍ମା ଜନ୍ମ-ମରଣଧର୍ମୀ, ତେଣୁ ଭଗବାନ ଗୀତାରେ ଶିବାତ୍ମାର ଭୂମିକା ଗ୍ରହଣ କରି "ସଂଭବାମି ଯୁଗେ ଯୁଗେ" ବୋଲି କହିଛନ୍ତି ।

ଜୀବ ବାସ୍ତବରେ ଏକମୁଖୀ ପିଣ୍ଡର ଉପାଧିରେ ବଦ୍ଧ । ଏହା ବିବେକଦ୍ୱାରା ହିଁ ବିଶ୍ୱମ୍ଭର (ଶିବ) ହୋଇଥାଏ ଏବଂ ବିଶ୍ୱମ୍ଭର ମଧ୍ୟ ସଂସାରରୁ ମୁକ୍ତ ନୁହଁନ୍ତି । ଅଜ୍ଞାନ ଭଳି ଜ୍ଞାନ ମଧ୍ୟ ଏକ ବୃତ୍ତି । ତେଣୁ ଏହି ବୃତ୍ତି ଓ ଦୃଷ୍ଟି ଦୁହେଁ (ଜୀବ ଓ ଶିବ) ସମାନ । ତେଣୁ ନିବୃତ୍ତିଦ୍ୱାରା ଜ୍ଞାନକୁ ବିଜ୍ଞାନରେ ପରିଣତ

କରିବା ଉଚିତ । ଯେପର୍ଯ୍ୟନ୍ତ ଜ୍ଞାନ ବିଜ୍ଞାନରେ ପରିଣତ ନହୋଇଛି– ସେ ପର୍ଯ୍ୟନ୍ତ ରହିଥାଏ କେବଳ ଅଜ୍ଞାନ । ପିଣ୍ଡଭଳି ବ୍ରହ୍ମାଣ୍ଡର ମଧ୍ୟ ଚାରୋଟି ଦେହ । ଦୁହେଁ ସମାନ ହୋଇଥିବାରୁ, ଜ୍ଞାନ ଅର୍ଥାତ୍ ସ୍ଥୂଳମାୟାରୁ ହିଁ ବ୍ରହ୍ମାଣ୍ଡର ଉତ୍ପତ୍ତି ହୋଇଛି । ଏହିଥିରୁ ଏହାର ବିସ୍ତାର । ଅର୍ଥାତ୍ ଜ୍ଞାନ ବହୁବିକାରସମ୍ପନ୍ନ । ବ୍ରହ୍ମାଣ୍ଡର ଅଷ୍ଟଦେହ ସ୍ଥିତି ଅନ୍ତରାତ୍ମା ହିଁ ଜ୍ଞାନରୂପ । ଏହି ଜ୍ଞାନ ବିଜ୍ଞାନରେ ରୂପାନ୍ତରିତ ହେବା ଉଚିତ । ତାହାହେଲେ ଯାଇ ବ୍ରହ୍ମପ୍ରାପ୍ତି ସମ୍ଭବ ହୋଇପାରେ । ଜ୍ଞାନାତୀତ ବିଜ୍ଞାନର ପ୍ରାପ୍ତି ହିଁ ମୁକ୍ତି ବା ମୋକ୍ଷ ।

## ଦ୍ୱିତୀୟ ସମାସ
## ।। ତ୍ରିବିଧ ସୃଷ୍ଟି ନିରୂପଣ ।।

ଯେପରି ଆକାଶ ଚାରିଆଡ଼େ ସର୍ବତ୍ର ବ୍ୟାପି ରହିଛି, ସେହିଭଳି ଚଞ୍ଚଳ ମୂଳମାୟାର ଅସ୍ତିତ୍ୱ ନ ଥିବା ନିର୍ଗୁଣ ବ୍ରହ୍ମ ନିଶ୍ଚଳ । ଦୃଶ୍ୟ ଆସେ ଯାଏ; କିନ୍ତୁ ପରବ୍ରହ୍ମ ବ୍ୟାପ୍ତ ଆକାଶଭଳି ନିଶ୍ଚଳ । ଏହା ଅପାର, ସ୍ୱତନ୍ତ୍ର ଓ ଅଦ୍ୱୈତ । ତେଣୁ ଆମେମାନେ ବ୍ରହ୍ମାଣ୍ଡକୁ ଅତିକ୍ରମ କରି ଉପରେ ପହଞ୍ଚିବା ଆବଶ୍ୟକ । ଏକଥା ଭାବିବା ଉଚିତ ଯେ ବ୍ରହ୍ମାଣ୍ଡର କୌଣସି ଅସ୍ତିତ୍ୱ ନାହିଁ । ସେହିଭଳି ଆକାଶକୁ ମଧ୍ୟ କଳ୍ପିତ ବୋଲି ମାନିବା ଉଚିତ । ତାହାହେଲେ ଆକାଶ ମଧ୍ୟ ଶୂନ୍ୟ ପ୍ରତୀତ ହେବ । ଯଦି ବିବେକଦ୍ୱାରା ଦୃଶ୍ୟକୁ ହଟାଯାଇପାରେ ତାହାହେଲେ ସର୍ବତ୍ର ବ୍ରହ୍ମ ବ୍ୟାପ୍ତ ଥିବା ଜଣାପଡ଼ିବ । ଦୃଶ୍ୟ ଏପଟ ସେପଟ ହୋଇଥାଏ ଅର୍ଥ ଚଞ୍ଚଳ ଏବଂ ଏହା ଦେଖାଯାଇଥାଏ; କିନ୍ତୁ ପରବ୍ରହ୍ମ ନିଶ୍ଚଳ ଏବଂ ଏହା ଦେଖାଯାଏ ନାହିଁ । ବ୍ରହ୍ମକୁ କଳ୍ପନା ମଧ୍ୟ କରାଯାଇ ନପାରେ । ତେଣୁ ସର୍ବଦା ମହାବାକ୍ୟର ତାତ୍ପର୍ଯ୍ୟକୁ ମନନ ଚିନ୍ତନ କରାଯିବା ଆବଶ୍ୟକ । ପରବ୍ରହ୍ମଠୁ ବଳି ଶ୍ରେଷ୍ଠ କିଛି ନାହିଁ । ଶ୍ରବଣଠୁ ବଳି କୌଣସି ସାଧନ ନାହିଁ ଏବଂ ଜ୍ଞାନବିନା ସମାଧାନ ନାହିଁ ।

ତେଣୁ ସାଧକ ମାତ୍ରେ ସର୍ବଦା ମନନ ଚିନ୍ତନ କରିବା ଉଚିତ । ପରବ୍ରହ୍ମ ନିରୂପମ, ଅତୁଳନୀୟ । ଯେପରି ନାଭିଦେଶରୁ ପରବାଚା (ପରମବଚନ)ର ସ୍ଫୁରଣ ହୋଇଚି, ସେହିଭଳି ବ୍ରହ୍ମରୁ ସ୍ଫୁରିତ ହୋଇଚି ମୂଳମାୟା । ଅଷ୍ଟଧା ପ୍ରକୃତିର ମୂଳ କେବଳ ମୂଳମାୟା ଏବଂ ସବୁ ବୀଜ ଆରମ୍ଭରୁ ହିଁ ଏଥିରେ ସୂକ୍ଷ୍ମରୂପରେ

ବର୍ଦ୍ଧମାନ । ଏହା ଜଡ଼ପଦାର୍ଥକୁ ମଧ୍ୟ ଚେତନଶୀଳ କରିଥାଏ । ତେଣୁ ଏହାକୁ କୁହାଯାଏ ଚୈତନ୍ୟଶକ୍ତି । ସଙ୍କେତରୁ ହିଁ ସବୁକଥା ବୁଝିନେବା ଉଚିତ । ପ୍ରକୃତି, ପୁରୁଷ, ଧର୍ମନାରୀ, ନରେଶ୍ୱର ଏବଂ ଅଷ୍ଟଧା ପ୍ରକୃତି ସବୁ ହେଉଚି ଏହାର ରୂପ । ତିନିଗୁଣ ମଧ୍ୟ ଗୁପ୍ତଭାବରେ ଏଥିରେ ରହିଥାଏ । ଯିଏ ଏହି ତିନିଗୁଣର ରହସ୍ୟ ଭେଦ କରିପାରେ, ସେ ଧନ୍ୟ । ମୂଳମାୟାରୁ ହିଁ ତ୍ରିଗୁଣ ପ୍ରକଟିତ ଏବଂ ଏସବୁ ଚଞ୍ଚଳ । ଧ୍ୟାନପୂର୍ବକ ବିଚାର କଲେ ଏକଥା ବୁଝିହେବ । ଏହାପରେ ପଞ୍ଚମହାଭୂତର ବିଶାଳ ବିସ୍ତାର । ପୃଥିବୀର ସପ୍ତଦ୍ୱୀପ ଓ ନବଖଣ୍ଡ ଏହିଥିରେ ହିଁ ମିଶିଯାଇଥାଏ । ଏହି ତିନିଗୁଣ ଯୋଗୁ ହିଁ ପୃଥିବୀରେ ପ୍ରକୃତିର ନାନା ପାର୍ଥକ୍ୟ ଦେଖା ଯାଇଥାଏ । ତିନି ଗୁଣ ଓ ପଞ୍ଚଭୂତ ବ୍ୟତୀତ ଆଉ ଏକ ତୃତୀୟ ତତ୍ତ୍ୱ ରହିଛି । ସେ ବିଷୟରେ ପରେ ବର୍ଣ୍ଣନା କରିବି । ପୃଥ୍ୱୀରେ ରହିଛି ଅନେକ ପଦାର୍ଥର ବୀଜ ଯଥା ଅଣ୍ଡଜ, ଜାରଜ, ସ୍ୱେଦଜ ଓ ଉଦ୍‌ଭିଦଜ । ତା ଛଡ଼ା ରହିଛି ଚାରି ଦିଗ ଓ ଚାରି ବାଣୀ । ଏସବୁ ପ୍ରତିମୁହୂର୍ତ୍ତରେ ବିସ୍ତୃତ ହେବାରେ ଲାଗିଥିଲେ ମଧ୍ୟ ପୃଥିବୀ ଯାହାଥିଲା, ସେହିଭଳି ରହିଛି । ବହୁ ପ୍ରାଣୀ ଏଠାରେ ନିତ୍ୟ ପ୍ରତିନିତ୍ୟ ଜନ୍ମୁଛନ୍ତି, ମରୁଛନ୍ତି ।

## ତୃତୀୟ ସମାସ
## ।। ସୂକ୍ଷ୍ମନାମ ଅଭିଧାନ ।।

ମୂଳମାୟାର ଶେଷ ପର୍ଯ୍ୟନ୍ତ ତିନିପ୍ରକାରରେ ସୃଷ୍ଟିର ବିକାଶ କିପରି ହେଲା ସେହିକଥା କୁହାଯାଇଚି । ଏବେ ସେ ସମ୍ପର୍କରେ ବିଚାର ଓ ମନନ କରିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ପୁଣି ମୂଳମାୟାକୁ ଫେରି ଆସିବାକୁ ପଡ଼ିବ । ସୃଷ୍ଟିରେ ଚାରିଦିଗ, ଚାରିବାଣୀ, ଚୌରାଶୀ ଲକ୍ଷ ଯୋନିରୁ ଅଗଣିତ ପ୍ରାଣୀଙ୍କ ଜନ୍ମ ହୋଇଥାଏ । ଏସବୁ ପୃଥିବୀରୁ ହିଁ ଉତ୍ପନ୍ନ ହୋଇ ଅନନ୍ତ ପୃଥ୍ୱୀତତ୍ତ୍ୱରେ ହିଁ ବିଲୀନ ହୋଇଥାଆନ୍ତି । ଅନେକ ପ୍ରାଣୀ ଓ ପଦାର୍ଥ ପୃଥ୍ୱୀକୁ ଆସନ୍ତି, ନଷ୍ଟ ହୁଅନ୍ତି; କିନ୍ତୁ ପୃଥିବୀ ଯିମିତି ସିମିତି ରହିଥାଏ । ଦ୍ୱିତୀୟଭାଗ ପଞ୍ଚଭୂତର । ତୃତୀୟ ମୂଳମାୟାରୁ ଆରମ୍ଭ କରି ତ୍ରିଗୁଣ ପର୍ଯ୍ୟନ୍ତ ସୂକ୍ଷ୍ମଭାଗ । ତେଣୁ ସ୍ଥୂଳକୁ ଛାଡ଼ି ସୂକ୍ଷ୍ମର ବିଚାର କରିବା ଉଚିତ । ଗୁଣରୁ ପଛକୁ ଫେରି ଆସି ସୂକ୍ଷ୍ମ ମୂଳମାୟା ପର୍ଯ୍ୟନ୍ତ ଅନୁସନ୍ଧାନ

କରିବା ଉଚିତ । ସୂକ୍ଷ୍ମଦୃଷ୍ଟିର ବିଚାରତ ଏହାର ବହୁତ ଆଗକୁ । ଶୁଦ୍ଧ ଅଚୈତନ୍ୟ ଅବସ୍ଥା ହେଉଚି ତମୋଗୁଣ ଏବଂ ଶୁଦ୍ଧ ଚୈତନ୍ୟାବସ୍ଥା ହିଁ ସତ୍ତ୍ୱଗୁଣ । ରଜୋଗୁଣ ଚେତନ ଓ ଅଚେତନର ମିଶ୍ରଣ । ଗୁଣର ମିଶ୍ରଣକୁ ହିଁ ଗୁଣମାୟା କୁହାଯାଇଥାଏ ।

ତ୍ରିଗୁଣର ଗୂଢ଼ତତ୍ତ୍ୱକୁ ମହୋତତ୍ତ୍ୱ ପ୍ରକୃତି-ପୁରୁଷ, ଶିବ-ଶକ୍ତି, ମୂଳମାୟା, ଅର୍ଦ୍ଧନାରୀନଟେଶ୍ୱର କୁହାଯାଇଥାଏ; କିନ୍ତୁ ଏହି ମହତତ୍ତ୍ୱ ଅର୍ଥାତ୍ ମୂଳମାୟା କର୍ଦମରୂପ । ଏହି ଗୁଣ ହେଉଚି ସାମ୍ୟ-ଚୈତନ୍ୟ । ମୂଳମାୟାର ଏହା ବ୍ରହ୍ମରୂପ । ବ୍ରହ୍ମାଣ୍ଡର ଚାରି ଦେହରେ ଥିବା ଚତୁର୍ଥ ଦେହ ହେଉଚି ମୂଳମାୟା । ଚାରିଦିଗ, ପଞ୍ଚଭୂତ ଓ ମୂଳମାୟା ସମସ୍ତେ ସୂକ୍ଷ୍ମ ରୂପରେ ରହିଥାଆନ୍ତି । ଏହାକୁ ଜାଣି ନ ପାରି ଅଜ୍ଞାନୀ ଜୀବ ସନ୍ଦେହଗ୍ରସ୍ତ ହୋଇପଡ଼େ ।

ମୂଳମାତ୍ରାରେ ହିଁ ରହିଛି ସକଳ ତତ୍ତ୍ୱର ବୀଜ । ଏ ସମ୍ପର୍କରେ ଯଥୋଚିତ ଜ୍ଞାନଲାଭ କରିବାକୁ କୁହାଯାଏ ପରମାର୍ଥ । ଯାହାର ପରମାର୍ଥଜ୍ଞାନ ହୋଇଯାଏ, ତାର ମନରେ ଭ୍ରମ ବା ସନ୍ଦେହ ରହେ ନାହିଁ । ଏହି ଶବ୍ଦାତୀତ ସମ୍ପର୍କରେ ଯାହାସବୁ କୁହାଗଲା ତାକୁ ବାଚ୍ୟାଂଶ କୁହାଯାଏ; କିନ୍ତୁ ବାଚ୍ୟାଂଶକୁ ଛାଡ଼ି ଶୁଦ୍ଧ ଲକ୍ଷ୍ୟାଂଶକୁ ବିବେକଦ୍ୱାରା ଦେଖିବା ଉଚିତ । ଯଦି ତଳେ ମାୟାକୁ ଦେଖାଯାଏ ତ ଭେଦଭାବ ହିଁ ବଢ଼ିବାରେ ଲାଗିବ ଏବଂ ସବୁ ଉପରେ ରହିଥିବା ବ୍ରହ୍ମଦିଗରେ ଦୃଷ୍ଟି ରଖିଲେ ସବୁ ଭେଦ ଲୁପ୍ତ ହୋଇଯାଏ ।

ଯିଏ ନିଃସଙ୍ଗ ଓ ନିର୍ଗୁଣ, ସେ ମହାଯୋଗୀ । ମାୟା ମିଥ୍ୟା ବୋଲି ଜାଣିବା ପରେ ଆଉ ଭୟ ରହିବ କେଉଁଠି ? ମାୟାର ଭୟ ଥିବା ଯୋଗୁଁ ହିଁ ମନୁଷ୍ୟ ସ୍ୱ ସ୍ୱରୂପର ସ୍ଥିତି ଲାଭ କରିପାରେ ନାହିଁ । ମିଥ୍ୟା ମାୟାର ଭ୍ରମରେ ପରମସତ୍ୟ ପରମବ୍ରହ୍ମକୁ ଛାଡ଼ିବ କାହିଁକି । ଆତ୍ମାସ୍ୱରୂପର ଯଥାର୍ଥ ଦର୍ଶନ ହୋଇଯିବା ପରେ ବୃଥାରେ ଏଠି ସେଠି ବୁଲିବା କ'ଣ ଦରକାର ? ସାଧୁ ନହେଲେ ସାଧୁକୁ ଚିହ୍ନିପାରିବ ନାହିଁ । ତେଣୁ ମାୟା ମୋହରୁ ନିର୍ଲିପ୍ତ ହୋଇ ସାଧୁ ସନ୍ଥଙ୍କ ସହିତ ମିଶିବା ଲାଗି ଉଦ୍ୟମ କରିବା ଆବଶ୍ୟ । ବିନା ଅନୁଭବରେ କେହି ସଚ୍ଚା ଜ୍ଞାନୀ ହୋଇ ନ ପାରେ । ତେଣୁ ଦିନରାତି ମନନ ଚିନ୍ତନ କରିବା ଉଚିତ । ଯିଏ ଆଧ୍ୟାତ୍ମ୍ୟର ଅର୍ଥ ଉପରେ ବିଚାର କରି ତାକୁ ଅନୁଭବ କରିଥାଏ, ତାକୁ ହିଁ କୁହାଯାଏ ସମର୍ଥ । ଥରେ କୌଣସି ବିଷୟକୁ ବୁଝିପାରିଲେ ମଧ୍ୟ ସେ

ସଂପର୍କରେ ବାରମ୍ବାର ଚିନ୍ତନ କରିବା ଉଚିତ । ସାଧକମାତ୍ରେ ସତ୍ୟବସ୍ତୁର ଅନୁସନ୍ଧାନ କରି ସମସ୍ତ ସନ୍ଦେହ ମୋଚନ କରିନେବା ଆବଶ୍ୟକ ।

## ଚତୁର୍ଥ ସମାସ
## ।। ଆତ୍ମା ନିବେଦନ ।।

ହେ ଶ୍ରୋତାଗଣ ! ଆପଣମାନଙ୍କୁ ମୋର ପ୍ରାର୍ଥନା, ବୃଥା ଉଦାସ ନ ହୋଇ ଏଥିରେ ଅନୁଭୂତିର ଯେଉଁସବୁ କଥା କୁହାଗଲା, ତା ଉପରେ ଭଲଭାବେ ବିଚାର କରନ୍ତୁ । ଯଦି ଅନୁଭୂତି ବିଷୟକୁ ଛାଡ଼ି ମନେ ମନେ ନିଜକୁ ସର୍ବଜ୍ଞାନ୍‌ତା ମନେକର, ତାହାହେଲେ ସାର ଅସାର ନିର୍ଣ୍ଣୟ ଅସମ୍ଭବ ଏବଂ ସୃଷ୍ଟିର କାର୍ଯ୍ୟରେ ନାନା ଗୋଳମାଳ ଦେଖାଯାଏ । କିନ୍ତୁ ଈଶ୍ୱରୀୟ ସତ୍ତାରେ କୌଣସି ଗୋଳମାଳ ନାହିଁ । ପୃଥିବୀରେ ଯେତେ ଶରୀର ରହିଛି ସବୁ ହେଉଚି ପରମେଶ୍ୱରଙ୍କ ଘର ବା ମନ୍ଦିର । ଏହି ଶରୀର ନାନା ପ୍ରକାରର ସୁଖ ଦୁଃଖ ଭୋଗ କରିଥାଏ; କିନ୍ତୁ ପରମାତ୍ମାଙ୍କ ମହିମାକୁ ଜାଣିବ ବା କିଏ ? କୃପାନିଧାନ ଭଗବାନ ମାତାପିତାଙ୍କ ପରି ପ୍ରତ୍ୟକ୍ଷଭାବେ ସାରା ସୃଷ୍ଟିକୁ ରକ୍ଷା କରିଥାଆନ୍ତି । ତାଙ୍କ ସତ୍ତା ସର୍ବତ୍ର ବ୍ୟାପ୍ତ ଏବଂ ତାଙ୍କରି ଦ୍ୱାରା ହିଁ ସୃଷ୍ଟିର ସମସ୍ତ କାର୍ଯ୍ୟ ସମ୍ପନ୍ନ ହୋଇଥାଏ ।

ଦେଖିଲେ ମନେହୁଏ କି ସମଗ୍ର ସୃଷ୍ଟି ଏକ ସତ୍ତାର ଅଧୀନ ନୁହେଁ; କିନ୍ତୁ ବାସ୍ତବରେ ଏକ ପରମାତ୍ମା ହିଁ ଅନେକ ଶରୀର ଧାରଣ କରି ସୃଷ୍ଟିର ସଞ୍ଚାଳନ କରିଥାଆନ୍ତି । ତାଙ୍କଠି ଉଚ୍ଚ ନୀଚ, ଭଲ ମନ୍ଦର ବିଚାର ନାହିଁ । ସେ କେବଳ ଏତିକି ଚାହାଁନ୍ତି ଯେ ସୃଷ୍ଟିର ସମସ୍ତ କାର୍ଯ୍ୟ ଭଲ ଭାବରେ ଚାଲୁ । ପରମାତ୍ମା ସଂସାର କାର୍ଯ୍ୟରେ ବାଧା ଦେବା ପାଇଁ ଅଜ୍ଞାନୀମାନଙ୍କୁ ରଚନା କରିଛନ୍ତି କି ସଂସାରରୁ ଶିକ୍ଷା ଗ୍ରହଣ କରିବା ଲାଗି ସେମାନଙ୍କୁ ସୃଷ୍ଟି କରିଛନ୍ତି, ତାହା କୁହାଯାଇ ନ ପାରେ ।

ଲୋକଙ୍କ ଅନ୍ତଃକରଣକୁ ଅଧ୍ୟୟନ କରିବା ହିଁ ଧ୍ୟାନ । ଧ୍ୟାନ ଓ ଜ୍ଞାନ ଏକ ବସ୍ତୁ । ରାମଙ୍କ ଝଣ୍ଡା ଚାରିଆଡ଼େ ଉଡ଼ିବାରେ ଲାଗିଚି ଏବଂ ଏହି ଆତ୍ମା ହିଁ ରାମ-ଜ୍ଞାନ-ଧନ । ଏହି ବିଶ୍ୱମ୍ଭର ସର୍ବତ୍ର ବିଦ୍ୟମାନ । ତାଙ୍କ ଠିକଣା ଭାଗ୍ୟଥିଲେ ମିଳେ । ଏହି ପରବ୍ରହ୍ମଙ୍କ ମହିମା ଅପାର । ତେଣୁ ଅନନ୍ତରୂପୀ ପରମାତ୍ମାଙ୍କୁ ଚିହ୍ନିବା

ଉଚିତ । ସଜ୍ଜନଙ୍କ ସଙ୍ଗତି ଏବଂ ଭଗବଦ୍ ଭଜନରେ ଯେଉଁ ପ୍ରୀତି ବା ଆନନ୍ଦରେ ମନକୁ ବିଶ୍ରାମ ମିଳେ, ଅନୁଭବ ନ କଲେ କେହି ବିଶ୍ୱାସ ନ କରିବା ସ୍ୱାଭାବିକ । ବିନା ଅନୁଭବରେ ପ୍ରକୃତ ସମାଧାନ ମିଳି ନ ଥାଏ ।

ଉପାସନା ହେଉଚି ଜ୍ଞାନସ୍ୱରୂପ ଏବଂ ତୁରୀୟ ଅବସ୍ଥାରେ ହିଁ ଜ୍ଞାନପ୍ରାପ୍ତି ଘଟିଥାଏ । ତେଣୁ ସବୁ ପ୍ରକାରର ସଙ୍କଳ୍ପ ଛାଡ଼ି ଭାବିବା ଉଚିତ ଯେ ପରବ୍ରହ୍ମ ଆକାଶଭଳି ବିଶାଳ, ବ୍ୟାପକ, ସଘନ ଓ କୋମଳ । ଆମ୍ଭେମାନେ ସ୍ୱୟଂ ଉପାସନା-ସ୍ୱରୂପ । ଜୀବ ବସ୍ତୁତଃ ଶିବ ସ୍ୱରୂପ । କିନ୍ତୁ ଆମ୍ଭେମାନେ ଜୀବକୁ ଅର୍ଥାତ୍ ଶରୀରକୁ ହିଁ ବିଚାର କରି ଶିବ ବିଚାରକୁ ଛାଡ଼ି ଦେଉଚୁ । ଏହିଭଳି ଦ୍ୱୈତଭାବନା ସୃଷ୍ଟି ହେଉଚି । ବଣରେ ପଶୁ, ଜଳରେ ଜଳଚର ଓ ପୃଥ୍ୱୀରେ ମାନବର ସତ୍ତା ରହିଥାଏ । ଆଲୋଡ଼ନ ଦ୍ୱାରା ହିଁ ସାମର୍ଥ୍ୟ ଲାଭ ହୋଇଥାଏ । ଯିଏ ଯେପରି ଆଲୋଡ଼ନ କରିବ, ସେ ସେହିଭଳି ଶକ୍ତିଲାଭ କରିବ । କିନ୍ତୁ ସେଥିରେ ସତ୍ୟରୂପୀ ପରମାତ୍ମାଙ୍କ ଅଧିଷ୍ଠାନ ହେବା ଉଚିତ । ଜଗନ୍ନାଥ ହିଁ ସବୁ କିଛି କରିଥାଆନ୍ତି ଏବଂ ତାଙ୍କରି ସତ୍ତା ହିଁ ସବୁ ପ୍ରାଣୀଙ୍କଠି ବିଭକ୍ତ ହୋଇ ରହିଚି ଏବଂ ପରମାତ୍ମା ଏହି ପ୍ରାଣୀଙ୍କ ଦ୍ୱାରା ହିଁ ସବୁ କାର୍ଯ୍ୟ ସମ୍ପନ୍ନ କରିଥାଆନ୍ତି ।

ତେଣୁ "ହରିଦାତା, ହିରିଭୋକ୍ତା"— ଏହା ସ୍ୱୀକାର କରିବା ଦ୍ୱାରା ହିଁ ଅହଂଭାବ ନଷ୍ଟ ହୋଇଥାଏ । କର୍ତ୍ତା, ଧର୍ତ୍ତା ସବୁ ହେଉଚନ୍ତି ପରମେଶ୍ୱର । ମୁଁ କରିବାବାଲା କିଏ ? ଯାହା କିଛି ହେଉଚି, ସବୁ ହେଉଚି ପରମେଶ୍ୱରଙ୍କ ଇଚ୍ଛାନୁସାରେ । ସେ ସବୁକିଛି କରୁଛନ୍ତି—ମନରେ ଏହି ଦୃଢ଼ ବିଶ୍ୱାସ ରଖିବା ଉଚିତ ଏବଂ ସର୍ବଦା ଈଶ୍ୱରଙ୍କ ଇଚ୍ଛାନୁମୂଳ ରହି କାର୍ଯ୍ୟ କରିବା ଉଚିତ ।

## ପଞ୍ଚମ ସମାସ
## ।। ପଦାର୍ଥ-ବିବେଚନ ।।

ଆଦିରୁ ଅନ୍ତଯାଏ ନିରୀକ୍ଷଣ କଲେ ଜାଣିପାରିବ ସୃଷ୍ଟିରେ ରହିଚି କେବଳ ଚାରି ପ୍ରକାରର ଜିନିଷ । ଏକ—ସନାତନ ବ୍ରହ୍ମ । ଦ୍ୱିତୀୟରେ—ଚଉଦ ମୂଳମାୟା । ତୃତୀୟରେ—ପଞ୍ଚମହାଭୂତ । ଚତୁର୍ଥରେ—ଚାରିଦିଗ । ପରବ୍ରହ୍ମ ଏ

ସବୁଠାରୁ ଶ୍ରେଷ୍ଠ ଏବଂ ନିରାଳା, ନିର୍ଲିପ୍ତ । ସେ କଳ୍ପନାତୀତ, ନିର୍ମଳ, ନିଶ୍ଚଳ, ନିର୍ବିକାର ଓ ଅଖଣ୍ଡ । ପରବ୍ରହ୍ମହିଁ ମୁଖ୍ୟ । ଏହାକୁ ତୁଳନା କରାଯାଇ ନ ପାରେ ।

ଦ୍ୱିତୀୟରେ ଅନନ୍ତ କଳ୍ପନାରୂପୀ ମୂଳମାୟା । ଏହା ଅନେକ ସୂକ୍ଷ୍ମରୂପାତ୍ମକ ତଥା କର୍ଦ୍ଦମରୂପୀ । ବ୍ରହ୍ମରେ "ଏକୋହଂ ବହୁସ୍ୟାମ୍"- ଏହି ଯେଉଁ ଆଦି ସଙ୍କଳ୍ପ ହେଲା ତାହା ହିଁ ମୂଳମାୟା । ଏ ମୂଳମାୟାର ପ୍ରରିଚୟ ଲାଗି ଚଉଦଟି ବିଭିନ୍ନ ସାଙ୍କେତିକ ନାମ ଦିଆଗଲା । ନିଶ୍ଚଳରୁ ଚଞ୍ଚଳ ହେବା ଯୋଗୁଁ ଏହାକୁ ଚୈତନ୍ୟ, ଗୁଣର ସମନତା ଯୋଗୁଁ ଏହାକୁ ଗୁଣସାମ୍ୟ, ଅର୍ଦ୍ଧନାରୀ ନଟେଶ୍ୱର, ପ୍ରକୃତି ପୁରୁଷ ଶିବଶକ୍ତି, ଷଡ଼ଗୁଣେଶ୍ୱର ଆଦି କୁହାଯାଇଥାଏ । ତ୍ରିଗୁଣ, ମନ, ମାୟା, ଅନ୍ତରାତ୍ମା ସବୁ ହେଉଚି ଏହାର ରୂପ ।

ତୃତୀୟ ହେଉଚି ପଞ୍ଚଭୂତ । ପଞ୍ଚଭୂତରେ ଚେତନ, ଅଚେତନ, ଉଭୟ ସମାବିଷ୍ଟ । ପଞ୍ଚଭୂତର ଆଦି ଅଛି, ଅନ୍ତ ଅଛି, ଅର୍ଥାତ୍ ଏହାର ଉତ୍ପତ୍ତି, ବିପତ୍ତି ଓ ବିନାଶ ଘଟିଥାଏ ।

ଚତୁର୍ଥଟି ହେଲା—ସୃଷ୍ଟିର ଚାରିଦିଗ । ଏହି ଚାରିଦିଗ ହେଉଚି ଅନନ୍ତ ପ୍ରାଣୀଙ୍କ ଚୈତନ୍ୟରୂପ । ଏହିଭଳି ଭାବେ ଚାରିପଦାର୍ଥର କାହାଣୀ । ଗୋଟିଏ ବୀଜରୁ ଅନେକ ବୀଜ ଉତ୍ପନ୍ନ ହୋଇଥାଏ । ଏହିଭଳିଭାବେ ଆତ୍ମାରାମରୁହିଁ ଚାରିଖଣ୍ଡ (ଦିଗ), ଚାରିବାଣୀ ଏବଂ ଚୌରାଶୀ ଲକ୍ଷ ଯୋନିଙ୍କ ବିସ୍ତାର । ଏହି ଆତ୍ମା-ରାମହିଁ ନରଦେହ ଦ୍ୱାରା ସୃଷ୍ଟିର ଅନେକ ପ୍ରକାରର ଉପଭୋଗ କରାଇଥାଏ । ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଅର୍ଥାତ୍ ପଞ୍ଚ ବିଷୟର ଭୋଗ ନର ଦେହଦ୍ୱାରା ହିଁ ହୋଇଥାଏ । ଅମୂଲ୍ୟ ବସ୍ତ୍ରାଳଙ୍କାର, ଅନେକ ବାହନ ଏବଂ ଶସ୍ତ୍ର, ଅନେକ ବିଦ୍ୟା ତଥା ଜ୍ଞାନଦେହ ଦ୍ୱାରା ହିଁ ହୋଇଥାଏ । ସମଗ୍ର ସୃଷ୍ଟି ଐଶ୍ୱରୀକ ସତ୍ତାରେ ବ୍ୟାପ୍ତ । ସର୍ବତ୍ର ଏହାର ବିଦ୍ୟମାନ । ସମସ୍ତ ବିଦ୍ୟା, ଧାରଣା ଓ କଳା ଏହା ଉପରେ ଆଶ୍ରିତ ।

ଇହଲୋକ ଓ ପରଲୋକ, ବିବେକ ଓ ଅବିବେକିକତା ସବୁ ମନୁଷ୍ୟ ହିଁ ଜାଣିଥାଏ । ପିଣ୍ଡ-ବ୍ରହ୍ମାଣ୍ଡର ରଚନା, ଅନନ୍ତ କଳ୍ପନା, ଧାରଣା, ଅଷ୍ଟଭୋଗ, ନବରସ ଓ ନାନା ବିଳାସ ସବୁ ନରଦେହରେ ହିଁ ସମ୍ଭବ । ପଞ୍ଚଭୂତ ହିଁ ମନୁଷ୍ୟକୁ

ନିଜର ବଶ କରି ନେଇଥାଏ, କିନ୍ତୁ ମନୁଷ୍ୟର ପାଳନକର୍ତ୍ତା ହେଉଛନ୍ତି ପରମେଶ୍ୱର । ଏସବୁ ଜ୍ଞାନ ଏହି ନରଦେହରେ ହିଁ ହୋଇଥାଏ । ନରଦେହ ଅତ୍ୟନ୍ତ ଦୁର୍ଲ୍ଲଭ । ଏହାଦ୍ୱାରା ଅଲଭ୍ୟ ଲାଭ ପ୍ରାପ୍ତ ହୋଇଥାଏ । ଦୁର୍ଲ୍ଲଭ ମଧ୍ୟ ହୋଇଥାଏ । ବନ୍ୟଦେହ କଷ୍ଟକାରକ । କେବଳ ନର-ଦେହ ହିଁ ସର୍ବୋତ୍ତମ । ତେଣୁ ଅତ୍ୟନ୍ତ ସୂକ୍ଷ୍ମ ବିଚାର ଦ୍ୱାରା ଏହାର ଉଚିତ ଉପଯୋଗ କରି ଜନ୍ମକୁ ସାର୍ଥକ କରିବା ଉଚିତ । ଆଳସ୍ୟ ଓ ପ୍ରମାଦ ଦ୍ୱାରା ଯଦି ଆମ୍ଭେମାନେ ଜୀବନକୁ ସାର୍ଥକ ନକରୁ ତାହାହେଲେ ସର୍ବନାଶ ହିଁ ହେବ । ସର୍ବଦା ଅନୁଭବ ସମ୍ପର୍କରେ ଚିନ୍ତନ କରିବା ଦ୍ୱାରା ନର ହିଁ ନାରାୟଣ ହୋଇଥାଏ । ଯାହାକୁ ପହଁରା ଆସିଥାଏ, ସେ ଅନ୍ୟର ଅଣ୍ଟାକୁ ଧରିବ କାହିଁକି ? ତେଣୁ ସ୍ୱତନ୍ତ୍ର ବୁଦ୍ଧିରେ ସତ୍ୟର ଅନୁସନ୍ଧାନ କରିବା ଉଚିତ । ସତ୍ୟ-ସ୍ୱରୂପ ସମ୍ପର୍କରେ ଜ୍ଞାନ ହେବା ପରେ ସବୁ ସନ୍ଦେହ ନଷ୍ଟ ହୋଇଥାଏ ଏବଂ ପରମାନନ୍ଦ ପ୍ରାପ୍ତି ହୋଇଥାଏ ।

## ଷଷ୍ଠ ସମାସ
## ।। ଆତ୍ମାନୁସନ୍ଧାନ ।। (୧)

ଏହି ଭୂମଣ୍ଡଳକୁ ବିଚାର କଲେ ଦେଖାଯିବ ଏବଂ ଏ କଥା ଜଣାଯିବ ଯେ ଏଠାରେ କେଉଁଠି ଖାଲି ଜଳ ତ ଜଳ, କେଉଁଠି କେଉଁଠି ରୁକ୍ଷ ମରୁଭୂମି, ଯେଉଁଠି କି ଜଳର ସତ୍ତା ସୁଦ୍ଧା ନାହିଁ । ଏହି ଦୃଶ୍ୟଜଗତର ଅବସ୍ଥା ଏହିପରି । ପୃଥିବୀରେ ଥିବା କେତେକ ପଦାର୍ଥରେ ପର୍ଯ୍ୟାପ୍ତ ଚେତନା ରହିଥିବା ସ୍ଥଳେ କେତେକ ପଦାର୍ଥ ବିଲ୍‌କୁଲ ଚେତନାଶୂନ୍ୟ । ଚାରିଭାଗ, ଚାରିବାଣୀ ଏବଂ ପ୍ରାଣୀଙ୍କ ମଧ୍ୟରେ ଚୌରାଶୀ ଲକ୍ଷ ଯୋନିଙ୍କ ବର୍ଣ୍ଣନା ଶାସ୍ତ୍ରରେ ଚାରିଲକ୍ଷ ମାନବ, କୋଡ଼ିଏ ଲକ୍ଷ ପଶୁ, ଏଗାର ଲକ୍ଷ କୃମି ଓ କୀଟ, ଦଶଲକ୍ଷ ଖେଚର, ନଅଲକ୍ଷ ଜଳଚର ଏବଂ ତିନିଲକ୍ଷ ସ୍ଥାବରର ପ୍ରକାର-ଭେଦ କରାଯାଇଛି । ଏହି ଚୌରାଶୀ ଲକ୍ଷ ଯୋନିର ପ୍ରାଣୀଙ୍କର ଚୈତନ୍ୟ ରହିଥାଏ ଏବଂ ଏମାନଙ୍କ ଦେହ ବିଭିନ୍ନ ପ୍ରକାରର ହୋଇଥାଏ । ଅଗଣିତ ପ୍ରାଣୀ ପ୍ରତି ମୁହୂର୍ତ୍ତରେ ଜନ୍ମଗ୍ରହଣ କରିଥାଆନ୍ତି ଏବଂ ମରି ଥାଆନ୍ତି । ଏ ସମସ୍ତଙ୍କ ଆଧାର ହେଉଛି ପୃଥିବୀ । ପଞ୍ଚଭୂତ ମଧ୍ୟରେ

ପୃଥିବୀ (ମୃତ୍ତିକା), ଆପ (ଜଳ), ତେଜ୍ (ଅଗ୍ନି) ବ୍ୟକ୍ତ ଏବଂ ବାୟୁ ଓ ଆକାଶ ଅବ୍ୟକ୍ତ ।

ସୁଖ, ଦୁଃଖର ଅନୁଭବ ଜୀବ ଓ ଶିବ ଉଭୟଙ୍କ ଗୁଣ । ଅନ୍ତଃକରଣ ପଞ୍ଚକ, ସ୍ଥୂଳ ଦେହରେ ଆକାଶର ଅଂଶ, ତ୍ରିଗୁଣ, ଚାଞ୍ଚଲ୍ୟ, ଧୃତି, ନବଧା ଭକ୍ତି, ଚତୁର୍ବିଧ ମୁକ୍ତି, ନିର୍ଲିପ୍ତତା, ସହଜାବସ୍ଥା—ଏସବୁ ହେଉଚି ଆତ୍ମାର ଗୁଣ । ଦ୍ରଷ୍ଟା, ସାକ୍ଷୀ, ଜ୍ଞାନଧନ, ସଦ୍ରୂପ, ଚିଦ୍ରୂପ—ଏସବୁ ମଧ୍ୟ ଆତ୍ମାର ଗୁଣ । ବେଦ, ଶାସ୍ତ୍ର, ପୁରାଣ ଚର୍ଚ୍ଚା, ଗୁପ୍ତ ପରମାର୍ଥ, ସର୍ବଜ୍ଞାତା ଆଦି ସମସ୍ତ ସାମର୍ଥ୍ୟ ଆତ୍ମାରେ ନିହିତ । ବଦ୍ଧ, ମୁମୁକ୍ଷୁ, ସାଧକ, ସିଦ୍ଧ, ସ୍ୱପ୍ନ, ଜାଗୃତି, ସୁଷୁପ୍ତି, ତୁରୀୟାବସ୍ଥା, ପିଣ୍ଡ ବ୍ରହ୍ମାଣ୍ଡର ମୋଟ ଆଠଦେହ, ସୂକ୍ଷ୍ମ ନାମରୂପ ଆଦି ସବୁ ହେଉଚି ଆତ୍ମାର ଗୁଣ । ମୂଳମାୟା, ଚାରି ପଦାର୍ଥର ଚବିଶ ପ୍ରକାର ଭେଦ, ଜ୍ଞାନ-ଅଜ୍ଞାନ, ଦେବ, ଅସୁର, ଗନ୍ଧର୍ବ ଆଦି ଦେବଯୋନି, ଭୂତ ଭୌତିକ—ସବୁକିଛି ଆତ୍ମାରାମର ଗୁଣ । ଆତ୍ମାହିଁ ଏକଦେଶୀୟ ଓ ପୂର୍ଣ୍ଣକାମ । ଏହାକୁ ଅନୁସନ୍ଧାନ କରିବା ଏବଂ ଅନୁଭବ କରିବା ହେଉଚି ଆତ୍ମାରାମର ଉପାସନା ଏବଂ ଏହି ଉପାସନା ଦ୍ୱାରା ହିଁ ନିର୍ଗୁଣ-ପଦ ଲାଭ ହୋଇଥାଏ ।

## ସପ୍ତମ ସମାସ
## ।। ଆତ୍ମାନୁସନ୍ଧାନ ।। (୨)

ଆତ୍ମାରାମର ଆହୁରି ଅନେକ ଗୁଣ । କାଶୀ-ବିଶ୍ୱେଶ୍ୱର, ସେତୁବନ୍ଧ, ରାମେଶ୍ୱର, ମୁଖ୍ୟ ବାର ଶିବଲିଙ୍ଗ, ନାନା ତୀର୍ଥକ୍ଷେତ୍ରର ମହିମା, ସାକ୍ଷାତ୍କାର, ନାନା ଚମତ୍କାରିତା, ନାନା ଦେବଦେବୀଙ୍କ ମୂର୍ତ୍ତି—ଏସବୁ ଆତ୍ମାରାମଙ୍କ ଗୁଣ । ସଂସାରରେ ଯାହାସବୁ ଶ୍ରେଷ୍ଠ ସବୁ ହୋଇଥାଏ ଆତ୍ମାରାମଙ୍କ ଗୁଣରୁ । ସଂସାରରେ ଭଲ ମନ୍ଦ ସବୁ ଆତ୍ମାରାମଙ୍କ ପ୍ରଭାବରୁହିଁ ହୋଇଥାଏ । ସାଧୁ ସନ୍ଥମାନଙ୍କ ଶରୀରରେ ସ୍ଥିତ ଶୁଦ୍ଧଆତ୍ମା ସୁଲକ୍ଷଣୀ ଏବଂ ଅଧମ ପାମର ବ୍ୟକ୍ତିଙ୍କଠାରେ ଥିବା ମିଶ୍ରଆତ୍ମା କୁଲକ୍ଷଣୀ । ଆତ୍ମାରେ ଭଲ ମନ୍ଦ ଉଭୟ ରହିଥାଏ । ନାନାପ୍ରକାରର ଅଭିମାନ କରିବା; ପ୍ରତିକ୍ରିୟା ସୃଷ୍ଟି କରିବା; ଶାପ

ବା ଅଭିଶାପ ଦେବା ଆଦି ହେଉଛି ଆତ୍ମାର ଗୁଣ । ପଞ୍ଚୀକରଣକୁ ଅଧ୍ୟୟନ କରି ପିଣ୍ଡର ତତ୍ତ୍ୱକୁ ବୁଝିବା ଉଚିତ । ଜଡ଼ଦେହ ପଞ୍ଚଭୂତ ଦ୍ୱାରା ନିର୍ମିତ ଏବଂ ଚଞ୍ଚଳତା ଓ ଚୈତନ୍ୟ ଆତ୍ମାର ଗୁଣ; କିନ୍ତୁ ନିଶ୍ଚଳ ବ୍ରହ୍ମ ସର୍ବତ୍ର ପରିବ୍ୟାପ୍ତ । ନିଶ୍ଚଳ ବ୍ରହ୍ମ, ଚଞ୍ଚଳ ଆତ୍ମା ଓ ଜଡ଼ଦେହ ଏ ସବୁର ଅନୁଭବ ନରଦେହରେ ଥାଇ କରିବା ଉଚିତ । ଅନୁଭବ ଭଳି ସାର୍ଥକ ଭାଷଣ ଆଉକିଛି ନାହିଁ । ପିଣ୍ଡ (ଦେହ)କୁ ଛାଡ଼ି ଆତ୍ମା ଚାଲିଯାଏ । ଏଥିରୁ ଏକଥା ପ୍ରମାଣିତ ଯେ ଆତ୍ମା ପିଣ୍ଡଠାରୁ ଭିନ୍ନ । ଦେହ ପ୍ରେତ ହୋଇ ପଡ଼ିରହେ ଏବଂ ଚଞ୍ଚଳ ଆତ୍ମା ଦେହ ଛାଡ଼ି ଚାଲିଯାଏ । ଜଡ଼ ଚଞ୍ଚଳର ନିର୍ଣ୍ଣୟ କରାଗଲା । ନିଶ୍ଚଳ ବ୍ରହ୍ମ ଯେ ସର୍ବତ୍ର ପରିବ୍ୟାପ୍ତ ଏକଥା ବାରମ୍ବାର କହିବାର କୌଣସି ଆବଶ୍ୟକତା ନାହିଁ । ବ୍ରହ୍ମରେ ଆତ୍ମାଭଳି କୌଣସି ଗୁଣ-ବିକାର ନାହିଁ । ପିଣ୍ଡ ସମ୍ପର୍କରେ ଯେଉଁ ବିଚାର, ବ୍ରହ୍ମାଣ୍ଡ ସମ୍ପର୍କରେ ମଧ୍ୟ ସେହି ବିଚାର । ଏଥିରେ ମଧ୍ୟ ଜଡ଼-ଚଞ୍ଚଳର ଖେଳ ଚାଲିଥାଏ । ପଞ୍ଚମହାଭୂତିର ପଞ୍ଜୁରୀରେ ଆତ୍ମାକୁ ବସେଇ ଏକ କଣ୍ଢେଇ ତିଆରି ହୋଇଥାଏ ଏବଂ ଏହିଭଳି ଭାବେ ପ୍ରାଣୀମାନଙ୍କର ଉତ୍ପତ୍ତି ହୋଇ ସୃଷ୍ଟିର କ୍ରମ ନିରନ୍ତର ଚାଲିଥାଏ । ମାୟାର ସମସ୍ତ ବିକାର ଆତ୍ମା ଯୋଗୁଁ ହିଁ ପ୍ରକଟିତ ହୋଇଥାଏ; କିନ୍ତୁ ଆମ୍ଭେମାନେ ବ୍ରହ୍ମ ଉପରେ ଏହାକୁ ଆରୋପ କରିଥାଉ ।

ବ୍ରହ୍ମର ବ୍ୟାପକତା ଅଖଣ୍ଡ; କିନ୍ତୁ ଅନ୍ୟ ସବୁ ବ୍ୟାପକତା ଖଣ୍ଡିତ । ମହାପ୍ରଳୟ ଦ୍ୱାରା ସୃଷ୍ଟିର ସଂହାରହେଲେ ମଧ୍ୟ ଆକାଶ ଅଖଣ୍ଡ ରହିଥାଏ । ଯାହାର ସଂହାର ହୋଇଥାଏ, ତାହା ବିନାଶୀଳ । ଜ୍ଞାନୀ ପୁରୁଷ ଏହି ଗୂଢ଼ତତ୍ତ୍ୱକୁ ବୁଝିନେବା ଉଚିତ । ଏକାନ୍ତରେ ବସି ମନନ ଚିନ୍ତନ କଲେ ସବୁ ବିଷୟର ନିରାକରଣ ହୋଇଥାଏ । ଅନୁଭବୀ ସନ୍ଥଙ୍କ ସତ୍‌ସଙ୍ଗ ହିଁ ପ୍ରକୃତ ଏକାନ୍ତ । ତାଙ୍କ ନିକଟରେ ବସି ସାବଧାନତା ସହିତ ତାଙ୍କ କଥା ବୁଝିବା ଉଚିତ । ମନୁଷ୍ୟ ବିବେକ ଦୃଷ୍ଟି ପାଇଲେ, ମାୟାଜାଲର ପଟଳ ଦୂର ହୋଇଥାଏ । ନିଶ୍ଚୟ ବ୍ରହ୍ମସିଦ୍ଧାନ୍ତ ବ୍ୟତୀତ ଅନ୍ୟସବୁ ସିଦ୍ଧାନ୍ତ ଅନୁମାନିକ, ସତ୍ୟ ନୁହଁ । ଯିଏ କହିବା ବାଲା ଅନର୍ଗଳ ଇଆଡୁ ସିଆଡୁ ନାନା କଥା କହିଚାଲେ କିନ୍ତୁ ଅନୁଭବୀ ସନ୍ଥ ପକ୍ଷରେ ସେସବୁ ସ୍ୱୀକାର୍ଯ୍ୟ ନୁହଁ । ମନକୁ ମନ ବିଚାର—ବିଚାର ନୁହଁ, ଅବିଚାର । କୃତ୍ରିମ ଅସତ୍ୟକୁ ତ୍ୟାଗ କରି ନିଶ୍ଚଳ ବ୍ରହ୍ମର ସାରାସାର ବିଚାର ଦ୍ୱାରା ଅନୁଭବ କରିବା ଉଚତ ।

## ଅଷ୍ଟମ ସମାସ
## ।। ଶରୀର ଗୁଣ ।।

ବକ୍ତା କହୁଛନ୍ତି—ବ୍ରହ୍ମା ଏହି ସଂସାର-ବୃକ୍ଷକୁ ବଢ଼େଇଲେ ଏବଂ ଏହା ବଢୁ ବଢୁ ଅତି ବିଶାଳ ହୋଇ ଉଠିଲା । ଯେତେବେଳେ ଏଥିରେ ଫଳହେଲା, ତାକୁ ଖାଇ ବହୁପ୍ରାଣୀ ସନ୍ତୁଷ୍ଟ ହେଲେ । ଅନେକ ଫଳ (ବିଷୟବୁଦ୍ଧିରୁ ମିଳୁଥିବା ସୁଖ) ଭାରି ମିଠା ଲାଗିଲା । ଏଥିରେ ରୁଚି ଉତ୍ପନ୍ନ ହେବାରେ ବ୍ରହ୍ମା ଉତ୍ସାହିତ ହୋଇ ଅନେକ ପ୍ରକାର ସ୍ୱାଦୁର ଫଳ ସୃଷ୍ଟି କଲେ । ବିଷୟ ଉତ୍ତମ ହେଲେ କ'ଣ ହେବ ଶରୀର ବିନା ଏହାକୁ ଭୋଗ କରାଯାଇ ନପାରେ । ତେଣୁ ଅନେକ ଶରୀର-ସୃଷ୍ଟିର ଆବଶ୍ୟକତା ପଡ଼ିଲା । ବିଧାତା ପଞ୍ଚଜ୍ଞାନେନ୍ଦ୍ରିୟ ନିର୍ମାଣ କରି ସେଥିରେ ସୃଷ୍ଟି କଲେ ନାନାଗୁଣ । ଏସବୁ ଗୁଣ ଏକ ଶରୀରରେ ରହି ଭିନ୍ନ ଭିନ୍ନ ଇନ୍ଦ୍ରିୟର ବିଷୟ ହୋଇପଡ଼ିଥାଏ । ଶ୍ରବଣେନ୍ଦ୍ରିୟ (କାନ)କୁ ମିଳିଲା ଶବ୍ଦ ବିଷୟ । ତ୍ୱଚା ବା ଚର୍ମକୁ ଅର୍ଥାତ୍ ସ୍ପର୍ଶେନ୍ଦ୍ରିୟକୁ ଶୀତ, ଉଷ୍ଣ ଆଦି ଅନୁଭବ କରିବାର ଶକ୍ତି ମିଳିଲା । ଚକ୍ଷୁ-ଇନ୍ଦ୍ରିୟ ବା ଆଖିକୁ ମିଳିଲା ରୂପ ଦେଖିବା ଶକ୍ତି । ଜିହ୍ୱାକୁ ରସ ଚାଖିବା ଏବଂ ଘ୍ରାଣେନ୍ଦ୍ରିୟ (ନାକ)କୁ ମିଳିଲା ଗନ୍ଧ ଗ୍ରହଣ କରିବାର ବିଷୟ-ଗୁଣ । ବାୟୁ ପଞ୍ଚକ ଅର୍ଥାତ୍ ପ୍ରାଣ, ଅପାନ, ଉଦାନ, ସମାନ ଓ ବ୍ୟାନ—ଏହି ପଞ୍ଚପ୍ରାଣରେ ଆକାଶ ପଞ୍ଚକ ଅର୍ଥାତ ଚିତ୍ତ, ଅହଂକାର, ବୁଦ୍ଧି, ମନ ଓ ଅନ୍ତଃକରଣର ପଞ୍ଚକକୁ ସମ୍ମିଳିତ କରି ନିଃଶଙ୍କଭାବେ ଭ୍ରମଣ କରିବା ଏବଂ ଏଥିରେ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟକୁ ନିରୀକ୍ଷଣ କରିବାର ଶକ୍ତି ଦିଆଗଲା । ବିଧାତା କର୍ମେନ୍ଦ୍ରିୟ ଦ୍ୱାରା ଜୀବକୁ ବିଷୟୋପଭୋଗ କରିବାର ଶକ୍ତି ପ୍ରଦାନ କଲେ । ବିଷୟକୁ ଭୋଗିବା ଲାଗି ହିଁ ନାନା ପ୍ରକାରର ଶରୀର ଉତ୍ପନ୍ନ କଲେ । ଅସ୍ଥି, ମାଂସର ଏହି ଶରୀରକୁ ସତ୍ତ୍ୱ, ରଜ, ତମ— ଏହି ତିନିଗୁଣରେ ଅଳଂକୃତ କରାଗଲା । ଏହିଭଳି ଭାବେ ହାଡ଼ ମାଂସର ଏହି ପୁତୁଳି ଜ୍ଞାନଦ୍ୱାରା ସକାମ କଳା ଓ ଗୁଣରେ ପ୍ରବୀଣ ହୋଇ ଉଠିଲା ।

ସୃଷ୍ଟିର ଉତ୍ପତ୍ତି-କାର୍ଯ୍ୟରେ ନାନା ପ୍ରଭେଦ ରହିଛି; କିନ୍ତୁ ସଂହାର କାଳରେ ସବୁ ଭେଦ ବା ପାର୍ଥକ୍ୟ ନଷ୍ଟ ହୋଇଥାଏ । ପରମାତ୍ମା ସୃଷ୍ଟିରେ ଏକ

ବିଲକ୍ଷଣ ଗଡ଼ ନିର୍ମାଣ କଲେ । ଏକ ମହାଭୂତରୁ ଅନ୍ୟ ମହାଭୂତ ସୃଷ୍ଟି କଲା ହେବାରେ ଲାଗିଲା । ଯେପରି ଜଳ ପୃଥିବୀକୁ ଏବଂ ତେଜ ଜଳକୁ ସୃଷ୍ଟିକଲା— ସେହି କ୍ରମରେ ସବୁ ସୃଷ୍ଟିର କ୍ରମବିକାଶ ଚାଲିଲା । ତଥାପି ସମଗ୍ର ସୃଷ୍ଟିର ବ୍ୟବସ୍ଥା ସୁବ୍ୟବସ୍ଥିତ ଭାବରେ ଚାଲି ଆସିଛି । ଏହି ଅନନ୍ତ ଖେଳ ହେଉଚି ଆତ୍ମାର । ଆବାହନ ଓ ବିସର୍ଜନ ଏସବୁ ହେଉଚି ଉପାସନାର ଲକ୍ଷଣ ।

## ନବମ ସମାସ
## ।। ନିରାକାର ବିବେଚନ ।।

ମୃତ୍ତିକା-ପୂଜା (ମାଟିରେ ମୂର୍ତ୍ତିକରି ପୂଜା କରିବା) କରି ପରେ ତାକୁ ବିସର୍ଜନ ଦେବାକୁ ଭଲ ଲାଗେ ନାହିଁ । ଯେଉଁ ଦେବତାକୁ ପୂଜା କରିବ, ତାକୁ କେତେ ସମୟ ପରେ ବିସର୍ଜନ କରିଦେବାରେ ମନରେ ଦୁଃଖ ହୁଏ । କିନ୍ତୁ ଏହି ବିଷୟଟିକୁ ଗଭୀର ଭାବେ ଚିନ୍ତା କରିବା ଉଚିତ । ଭଗବାନ ଏଭଳି କୌଣସି ବସ୍ତୁ ନୁହଁନ୍ତି ଯାହାକୁ ପ୍ରତିଷ୍ଠା କରାଯାଇ ପୁଣି ବିସର୍ଜନ କରାଯାଇ ପାରିବ । ତେଣୁ ଆବାହନ ଓ ବିସର୍ଜନର ଅର୍ଥ ସମ୍ପର୍କରେ ଠିକ୍ ଭାବେ ବିଚାର କରିବା ଉଚିତ । ଦେବତା (ଅନ୍ତରାତ୍ମା) ଅନେକ ଶରୀର ଧାରଣ କରିଥାଏ ଏବଂ ପୁଣି ସେଗୁଡ଼ିକୁ ତ୍ୟାଗ କରିଥାଏ । ତେଣୁ ଏହି ବ୍ୟାପାରକୁ ବିବେକ ସହିତ ପରିଶୀଳନ କରିବା ଉଚିତ । ଶ୍ରବଣ, ମନନ ଆଦି ସାଧନ ତଥା ନିରୂପଣ ଭଗବାନଙ୍କୁ ପାଇବା ଲାଗି କରିବା ଉଚିତ । ଏକଥା ପ୍ରତି ଧ୍ୟାନ ରଖିବା ଉଚିତ ଯେ ବ୍ରହ୍ମଜ୍ଞାନର ବିଧାନକୁ ନିଜେ ଅନୁଭବ ନ କଲେ ଅନ୍ୟକୁ ବୁଝେଇ ହେବ ନାହିଁ । ସମସ୍ତେ ଭଗବାନଙ୍କ ସାକ୍ଷାତ୍‌କାର ଚାହିଁ ଥାଆନ୍ତି; କିନ୍ତୁ ତାଙ୍କୁ ଲାଭ କରିବା ଲାଗି ମାର୍ଗ ଅଲଗା । ଭଗବାନ ଏଭଳି କୌଣସି ଦୃଶ୍ୟ ପଦାର୍ଥ ନୁହନ୍ତି ଯାହାକୁ ହାତରେ ଉଠାଇ ଦିଆଯାଇପାରିବ । ଯିଏ ବିଚାର ରୂପକ କଷଟି ପଥରରେ କଷି ସାର ଅସାର କ'ଣ ବୁଝିପାରି ନାହିଁ ସେ ଭଗବାନ ନିକଟରେ ପହଞ୍ଚି ନପାରେ ।

ଲୋକେ ମହାପୁରୁଷମାନଙ୍କ ପ୍ରତିମାଗଢ଼ି ସେହି ପ୍ରତିମାର ଆଦର, ସତ୍‌କାର କରିଥାଆନ୍ତି । ଭାବନ୍ତି ଏହାଦ୍ୱାରା ଉପାସନା ହୋଇଗଲା । ଅଜ୍ଞାନ ଯୋଗୁଁ ଏହା ଏକ ଭୋଳା ଭାବ ଅର୍ଥାତ ଭେଳିକି । ଅଜ୍ଞାନଦ୍ୱାରା ଜ୍ଞାନ-ସ୍ୱରୂପ

ପରମାତ୍ମାଙ୍କ ପରିଚୟ ହେବ କିପରି ? ତେଣୁ ଆମ୍ଭେମାନେ ଅନୁଭବୀ ସନ୍ଥ ପୁରୁଷଙ୍କ ଅନୁଗମନ କରିବା ଉଚିତ । ବିବେକ ବୁଦ୍ଧିଦ୍ୱାରା ମାୟା ମୋହକୁ ତ୍ୟାଗ କରି ମୂଳତତ୍ତ୍ୱକୁ ଅନୁସନ୍ଧାନ କଲେ ହିଁ ପ୍ରଭୁପ୍ରାପ୍ତି ଦିଗରେ ସମାଧାନ ମିଳିପାରେ । ନଚେତ ମନକୁ ଇତଃସ୍ତତଃ ଦୌଡ଼େଇବାରେ କୌଣସି ଲାଭ ନାହିଁ । ଦୃଢ଼ ସିଦ୍ଧାନ୍ତ ଏବଂ ଅଧ୍ୟାତ୍ମ୍ୟ ବିଷୟରେ ଶ୍ରବଣ-ମନନ ଦ୍ୱାରା ପ୍ରଭୁଙ୍କ ପ୍ରତି ପ୍ରତ୍ୟୟ ଭାବ ସୃଷ୍ଟି ହୋଇପାରିବ ।

ବ୍ରହ୍ମ ସତ୍ୟ, ଅନ୍ୟ ସବୁ କିଛି ମିଥ୍ୟା ଓ ମାୟା । ଅଧ୍ୟାତ୍ମ-ଶ୍ରବଣ ଦ୍ୱାରା ହିଁ ଏହା ବୁଝାଯିବ । ଅତି ସାବଧାନତା ସହିତ ଯେପରି ଭୂତ ଛଡ଼ା ଯାଇଥାଏ, ସେହିଭଳି ମନକୁ ବିଷୟରୁ ଅଲଗାକରି ଏହାକୁ ମୂଳବ୍ରହ୍ମପ୍ରତି ଆକୃଷ୍ଟ କରିନେବା ଆବଶ୍ୟକ । ଏହି ନରଦେହରେ ହିଁ ଏହି ସାରବିଚାର ହୋଇପାରେ ।

ମୂଳମାୟା ହେଉଚି ସଙ୍କଳ୍ପରୂପ ଏବଂ ଏହା ଦେହରେ ଅନ୍ତଃକରଣ ରୂପରେ ରହିଥାଏ । ଜଡ଼କୁ ଚେତନ କରୁଥିବା ଚୈତନ୍ୟ-ତତ୍ତ୍ୱ ମଧ୍ୟ ଶରୀରରେ ବିଦ୍ୟମାନ । ସବୁ ଗୁଣ ଏହି ଦେହରେ ଗୁଣସାମ୍ୟ ଅବସ୍ଥାରେ ସ୍ଥିର ରହିଥାଏ । ଏସବୁ ସୂକ୍ଷ୍ମ-ବିଚାରକୁ ଶବ୍ଦରେ ବର୍ଣ୍ଣନା କରିବା ଅସମ୍ଭବ । ଜ୍ଞାନୀ-ମହାତ୍ମାମାନଙ୍କ ଦ୍ୱାରା ହିଁ ଏହାର ପରିଚୟ ହୋଇପାରେ । ତେଣୁ ଏହାକୁ ବନ୍ଦନ କରିବା ଉଚିତ । ଦେହରେ ହିଁ ଡାହାଣ ଓ ବାଁ (ଦକ୍ଷିଣ ଓ ବାମ) ଦୁଇଭାଗ ରହିଥାଏ, ସେଥିମଧ୍ୟରୁ ଗୋଟିଏ ଚୈତନ୍ୟରୂପ ଓ ଅନ୍ୟଟି ବାୟୁରୂପ । ଏହାକୁ ହିଁ ପିଣ୍ଡରେ ଅର୍ଦ୍ଧନାରୀ ନଟେଶ୍ୱର କୁହାଯାଇଥାଏ । ଚୈତନ୍ୟ, ଗୁଣ-ସାମ୍ୟ, ଅର୍ଦ୍ଧନାରୀ ନଟେଶ୍ୱର, ଷଡ଼ଗୁଣେଶ୍ୱର, ପ୍ରକୃତି-ପୁରୁଷ, ଶିବ-ଶକ୍ତି, ଶୁଦ୍ଧସତ୍ତ୍ୱ, ଗୁଣ-ମାୟା, ସତ୍ୱ, ରଜ, ତମ, ମନ, ମାୟା ଏବଂ ଅନ୍ତରାତ୍ମା—ଏହି ଚଉଦ ତତ୍ତ୍ୱ ହେଉଚି ଗୁଣମାୟା । ମୂଳ ହେଉଚି କର୍ଦ୍ଦମଭଳି (କାଦୁଅଭଳି) । ଏଥିରେ ଚଉଦ ତତ୍ତ୍ୱର ମିଶ୍ରଣ ଘଟିଚି । ସମଗ୍ର ପ୍ରପଞ୍ଚ ଏହି ପିଣ୍ଡଦେହରେ ହିଁ ରହିଛି । ଏକଥା ବିଚାରପୂର୍ବକ ଜାଣିବା ଉଚିତ । ପିଣ୍ଡ ଅର୍ଥାତ୍ ଦେହର ସମାପ୍ତି ମାତ୍ରେ ହିଁ ସବୁ କିଛି ନଷ୍ଟ ହୋଇ ଯାଇଥାଏ, କେବଳ ରହିଥାଏ ପରବ୍ରହ୍ମ । ତେଣୁ ଏକମାତ୍ର ଏହାହିଁ ଯେ ଶାଶ୍ୱତ, ଏକଥା ମନରେ ସ୍ଥିର କରି ବ୍ରହ୍ମକୁ ହୃଦୟରେ ଧାରଣ କରିବା ଉଚିତ ।

## ଦଶମ ସମାସ
## ।। ସୂକ୍ଷ୍ମ-ବ୍ରହ୍ମ ଦର୍ଶନ ।।

ପରବ୍ରହ୍ମ ସର୍ବତ୍ର ବ୍ୟାପ୍ତ । ଏଥିରୁ କେହି ପୃଥକ ହୋଇ ନପାରେ । ଯେପରି ମନୁଷ୍ୟ ଯେଉଁଠିକି ଯାଉ ନା କାହିଁକି ଆକାଶଠାରୁ ସେ ଯେପରି ପୃଥକ ରହି ନପାରେ, ଯେଉଁଠିକି ଗଲେ ମଧ୍ୟ ସାଥେ ସାଥେ ଆକାଶ ହିଁ ରହିଥାଏ; ସେହିଭଳି ପରବ୍ରହ୍ମ ସମସ୍ତଙ୍କ ସହିତ ରହିଥାଆନ୍ତି । ତାଙ୍କୁ ପାଇବା ଲାଗି କୌଣସି କଷ୍ଟ କରିବା ଦରକାର ନାହିଁ କିମ୍ବା ଏଠି ସେଠି ଖୋଜି ବୁଲିବାର ଆବଶ୍ୟକତା ନାହିଁ । ଅନେକ ଦେଶ ଓ ତୀର୍ଥ ଭ୍ରମଣ ଲାଗି ନାନା କଷ୍ଟ ସହ୍ୟ କରିବାକୁ ପଡ଼ିଥାଏ; କିନ୍ତୁ ପରବ୍ରହ୍ମ ପ୍ରାପ୍ତି ଲାଗି କୌଣସି ଦୌଡ଼ଧାପଡ଼ କରିବାକୁ ପଡ଼ିନଥାଏ ।

ପରବ୍ରହ୍ମ ପ୍ରତ୍ୟେକ ପଦାର୍ଥରେ ପୂରିରହିଛନ୍ତି । ସାରା ବ୍ରହ୍ମାଣ୍ଡ, ସବୁ ଦୃଶ୍ୟପଦାର୍ଥ, ଅଣୁପରମାଣୁର ଭିତରେ ଓ ବାହାରେ ସର୍ବତ୍ର ଏହା ପରିପୂର୍ଣ୍ଣ । ଏହି ବିମଳବ୍ରହ୍ମର ତୁଳନା ନାହିଁ । ବୈକୁଣ୍ଠ, କୈଳାସ, ସ୍ୱର୍ଗଲୋକ, ଇନ୍ଦ୍ରଲୋକ, ଚଉଦ ଭୁବନ, ପନ୍ନଗାଦି ପାତାଳଲୋକ, କାଶୀ, ରାମେଶ୍ୱର ପର୍ଯ୍ୟନ୍ତ ସର୍ବତ୍ର ବ୍ରହ୍ମର ହିଁ ବିସ୍ତାର । ଏହାକୁ କେହି କଳନା କରିନପାରେ । ସାଧୁ, ସନ୍ଥ, ଦେବ-ଦାନବ, ମାନବ ସମସ୍ତଙ୍କ ଅନ୍ତିମ ବିଶ୍ରାମସ୍ଥଳ ପରବ୍ରହ୍ମ । କିନ୍ତୁ ଏହାକୁ ଜ୍ଞାନଦୃଷ୍ଟି ଦ୍ୱାରା ନ ଜାଣିଲେ ସମାଧାନ ମିଳି ନପାରେ । ଏହା ପାଖରେ ଶବ୍ଦ ମଧ୍ୟ ପ୍ରବେଶ କରିନପାରେ । ତେଣୁ ଏହା ନିଃଶବ୍ଦ । ଏହାକୁ କଳ୍ପନା କରାଯାଇ ନପାରେ, ତେଣୁ ଏହା ନିର୍ବିକଳ୍ପ ଓ ନିରଞ୍ଜନ । ଏହାକୁ ବିବେକଦ୍ୱାରା ହିଁ ଚିହ୍ନିବା ଆବଶ୍ୟକ । ଶୁଦ୍ଧ ବିମଳ ବ୍ରହ୍ମର ଶ୍ରବଣ, ମନନ, ଚିନ୍ତନ କରିବାରେ ହିଁ ସାକ୍ଷାତ୍କାର ହୋଇଥାଏ ଏବଂ ସାକ୍ଷାତ୍କାର ହେବା ପରେ ମନ ସହଜ ଓ ଉନ୍ମନ ହୋଇଥାଏ ।

ପରିଶେଷର ବକ୍ତା ସ୍ୱାମୀ ସମର୍ଥ ରାମଦାସ କହୁଛନ୍ତି, ଭକ୍ତମାନଙ୍କ ପ୍ରତି ଦାଶରଥୀ ଭଗବାନ ଶ୍ରୀରାମଙ୍କ କୃପାହେଉ । ଏହି ସମର୍ଥପ୍ରଭୁଙ୍କ କରୁଣାରୁ ହିଁ ମୋ ମୁହଁରେ ବଚନର ସ୍ଫୁରଣ ହୋଇପାରିଚି ଏବଂ ଏହି ବଚନ ବା ପ୍ରବଚନର ସଂଗ୍ରହ ହେଉଚି "ଦାସବୋଧ" । ଏହି ଗ୍ରନ୍ଥକୁ ଯିଏ ଧ୍ୟାନପୂର୍ବକ ଶ୍ରବଣ ମନନ କରିବ, ତାର ପରମାର୍ଥ ଅବଶ୍ୟ ସିଦ୍ଧ ହେବ ।

ଏହି ଗ୍ରନ୍ଥରେ କୋଡ଼ିଏଟି ଦଶକ ଏବଂ ଦୁଇଶହ ସମାସ ରହିଛି । ଏଗୁଡ଼ିକୁ ମୁମୁକ୍ଷୁ ସାଧକ ଭଲଭାବରେ ଅଧ୍ୟୟନ ଓ ପରିଶୀଳନ କରିବା ଉଚିତ । ଏହାକୁ ଗଭୀରଭାବରେ ଅଧ୍ୟୟନ କଲେ ଏହାର ବିଶେଷତ୍ୱକୁ ଅନୁଭବ କରିହେବ ।

ଗ୍ରନ୍ଥର ଅଧିକ ପ୍ରଶଂସା କରିବା ବୃଥା । ଜିଜ୍ଞାସୁ ସାଧକ ଅନୁଭବ ଦ୍ୱାରା ହିଁ ଏହାର ମୂଲ୍ୟାଙ୍କନ କରି ପାରିବେ । ଏ ଶରୀର ପଞ୍ଚମହାଭୂତରେ ତିଆରି ଏବଂ ଏଥିରେ ଆତ୍ମା ହେଉଚି କର୍ତ୍ତା । ତେଣୁ ଏହି ଗ୍ରନ୍ଥରେ ଯେଉଁ ସବୁ ପଦ ଥୁଆ ଯାଇଚି (ମୂଳ ମରାଠୀ ଗ୍ରନ୍ଥ ପଦ୍ୟାକାରରେ ରହିଛି), ତାହା ମନୁଷ୍ୟକୃତ ବୋଲି କୁହାଯାଇ ନପାରେ । ଏସବୁ ପରମେଶ୍ୱରଙ୍କ ପ୍ରେରଣାର ପରିଣାମ । ଈଶ୍ୱର ହିଁ ସବୁକିଛି କରିଥାଆନ୍ତି । ତେଣୁ ଇଏ "ମୋର ରଚନା" ବୋଲି ବୃଥା ଅଭିମାନ କରିବି କାହିଁକି ?

ଶରୀର ପଞ୍ଚତତ୍ତ୍ୱର ଏକ ପୁତୁଳିମାତ୍ର । ସବୁ ତତ୍ତ୍ୱ ତ ନଶ୍ୱର । ତେଣୁ କେଉଁ ପଦାର୍ଥକୁ ମୋର ବୋଲି ଅଭିମାନ କରାଯିବ ? ଅଭିମାନ କରିବା ହିଁ ଅଜ୍ଞାନ । ଏସବୁ ବିଷୟରେ ସୂକ୍ଷ୍ମ ଓ ଗଭୀର ଭାବରେ ବିଚାର କରିବା ଉଚିତ । ଆଜେବାଜେ କଥାରେ ବ୍ୟର୍ଥ ସମୟ ନଷ୍ଟ କରି ବୃଥା ଭ୍ରମରେ ପଡ଼ି ଘାଣ୍ଟି ହେବା ଅନୁଚିତ ।

ଏହି ଗ୍ରନ୍ଥ ଜଗଦୀଶ୍ୱରଙ୍କ ରଚନା ଏବଂ ତାଙ୍କରି ଚରଣରେ ଏହାକୁ ଅର୍ପଣ କରାଗଲା । ପରିଶେଷରେ ଆତ୍ମସ୍ୱରୂପ ସମସ୍ତ ଶ୍ରୋତାଙ୍କୁ ସାଦର ପ୍ରଣାମ ।

ଜୟ ଶ୍ରୀରଘୁପତି ରାଘବ ଶ୍ରୀରାମଚନ୍ଦ୍ରକି ଜୟ । ରାମ, ରାମ, ରାମ ।

